# ଭାବୁକ ଭାଗବତ

## ଚତୁର୍ଥ ଖଣ୍ଡ



ଅପଣ୍ଡିତ ଦାମୋଦର ବଳୀୟାରସିଂହ

॥ ଓଁ ନମୋ ଭଗବତେ ବାସୁଦେବାୟ ॥

# ଭାବୁକ ଭାଗବତ

## ଚତୁର୍ଥ ଖଣ୍ଡ

**ସ୍କନ୍ଧ:**

ସପ୍ତମ- ନବମ

**ନକ୍ଷତ୍ର:**

ପଞ୍ଚଦଶ ସ୍ୱାତୀ-ଅଷ୍ଟାଦଶ ଜ୍ୟେଷ୍ଠା

**ପ୍ରକରଣ:**

୧୮ଶ-ଅସଦ୍ ବାସନା-୨୬ଶ ଚନ୍ଦ୍ରବଂଶ ଚରିତ


ପରିବେଷକ

ଅପଣ୍ଡିତ ଦାମୋଦର ବଳୀୟାରସିଂହ

ଭାବୁକ ଭାଗବତ
ଅପଣ୍ଡିତ ଦାମୋଦର ବଳୀୟାରସିଂହ

ପ୍ରଥମ ସଂସ୍କରଣ: ଖ୍ରୀଷ୍ଟାବ୍ଦ - ୨୦୧୫
ବିକ୍ରମ ସମ୍ବତ୍- ୨୦୭୧

ପ୍ରକାଶକ:
ଶ୍ରୀମତୀ କଳ୍ପନା ବଳୀୟାରସିଂହ
ନୀଳକଣ୍ଠନଗର ବ୍ରିଟ୍ କଲୋନି
ଷ୍ଟେଜ-୨, ଶ୍ୟାମ କୁଞ୍ଜମ୍
ବ୍ରହ୍ମପୁର (ଗଂଜାମ)
ମୋବାଇଲ: ୯୪୩୭୧୦୯୧୨୦

ଅକ୍ଷର: ସନ୍ତୋଷ ପଟ୍ଟନାୟକ
ପ୍ରଚ୍ଛଦ: କମ୍ପ୍ୟୁଟର ସଲ୍ୟୁସନ୍

ମୁଦ୍ରଣ : ମନମୋହନ ଟ୍ରେଡ଼ର୍ସ
ବାଲାଜୀପେଣ୍ଠ ଲେନ୍, ବ୍ରହ୍ମପୁର
ମୋ. : ୯୮୬୧୧୬୭୬୦୮

ମୂଲ୍ୟ: ଏକ ସେଟ୍ (ଛଅଖଣ୍ଡ) ପନ୍ଦରଶହ ଟଙ୍କା

# ଉତ୍ସର୍ଗ

ଲେଖକର ଜଡ଼ ଶରୀରକୁ ସଂସାରକୁ ଆଣିଥିଲେ ଯେଉଁ ପିତୃଦେବ ପୁଣି ଜୀବନକାଳରେ ଅଧ୍ୟାୟେ ଭାଗବତ ପାଠ ନକଲେ ମଧ୍ୟାହ୍ନ ଭୋଜନ ନ କରିବାର ବ୍ରତ କରିଥିଲେ, ଲେଖକର ଦୋଷ, ଦୁର୍ବଳତା, ତ୍ରୁଟି ଯାହାଙ୍କ ଚକ୍ଷୁରେ କେବେ ବି ପଡ଼ିନାହିଁ, କେବେ ପଡ଼ିଲେ ମଧ୍ୟ ଯେ ସଦା ସର୍ବଦା ତାକୁ ଉଦାର ହୃଦୟରେ କ୍ଷମା କରିଦେଇଛନ୍ତି ସେହି ପରଲୋକଗତ ମହାତ୍ମାଙ୍କର ଜଗତକୁ ଅଦୃଶ୍ୟ ମୋତେ କିନ୍ତୁ ଦୃଶ୍ୟମାନ ସେଇ ସୂକ୍ଷ୍ମ କରକମଳରେ ଶ୍ରୀମଭାଗବତଙ୍କର ଚତୁର୍ଥ ଖଣ୍ଡକୁ ସବିନୀତ ଅର୍ପଣ କରୁଛି ଉତ୍କଳଭାରତୀଙ୍କ ଗଳାରେ ଅର୍ପଣ କରିବାକୁ ତାଙ୍କ କୃଷ୍ଣପ୍ରେମ ପ୍ରାପ୍ତି ଆଶୀର୍ବାଦ ଲକ୍ଷ୍ୟରେ ।

ଅଧମ ପୁତ୍ର

# ଭୂମିକା

ବୈଦିକ କର୍ମକାଣ୍ଡୀଙ୍କ ପୁଣ୍ୟ କର୍ମ କରି ସୁଖ ଚାହିଁଲେ ଭଗବାନ ତାକୁ ସ୍ୱର୍ଗ ସୁଖ ଦିଅନ୍ତି । ଜ୍ଞାନ କାଣ୍ଡୀ ସାଧକ ଧ୍ୟାନ କରି ଅଣିମାଦି ସୁଖ ଚାହିଁଲେ ଭଗବାନ ତାକୁ ୨୮ ସିଦ୍ଧି ଦେଇଦିଅନ୍ତି । ଜ୍ଞାନଯୋଗୀ ସାଧକ ଅହଂବ୍ରହ୍ମାସ୍ମି ଚିନ୍ତନ କରି କରି ନିର୍ବିକଳ୍ପ ସମାଧି ପ୍ରାପ୍ତ ହୋଇ ମୁକ୍ତି ଚାହିଁଲେ ତାଙ୍କୁ ନାରାୟଣ ଭଗବାନ ୫ ମୁକ୍ତିରୁ କ୍ରମାନ୍ୱୟରେ ଗୋଟିଏ ଗୋଟିଏ ମୁକ୍ତିସୁଖ ଦେଇ କୃତାର୍ଥ କରନ୍ତି । ନିଷ୍କାମ ଭକ୍ତ ଏ ତିନୋଟି ମଧ୍ୟରୁ (ସ୍ୱର୍ଗ, ସିଦ୍ଧି, ମୁକ୍ତି) କେଉଁଟି ହେଲେ ନ ଚାହିଁଲେ ତାକୁ ବାଧ୍ୟ ହୋଇ ନିଜକୁ ଦେଇଦିଅନ୍ତି । ପରମ ଆନନ୍ଦରେ ତାର ଯୋଗ କ୍ଷେମ ବହନ କରି ନିଜ ଭକ୍ତିର ସେବା ସୁଯୋଗ ଅପେକ୍ଷାରେ ରହନ୍ତି । ଏହାହିଁ ଏ ଭକ୍ତିମାର୍ଗର ବାହାଦୂରୀ । ଭକ୍ତ ଓ ଭଗବାନ ଏଥିରେ ପରସ୍ପର ସେବା ଆକାଙ୍କ୍ଷୀ ହୁଅନ୍ତି ।

କାମୀର ପ୍ରେମ ସଂସାର ଭୋଗରେ, ଜ୍ଞାନୀର ପ୍ରେମ ସଂସାର ବୈରାଗ୍ୟ ସଂଗ୍ରହ ଓ ମୁକ୍ତି ଆଶାରେ କିନ୍ତୁ ଭକ୍ତର ପ୍ରେମ ଭଗବାନ ଓ ଭଗବାନଙ୍କ ଭକ୍ତର ସେବାପ୍ରାପ୍ତିରେ । ଭକ୍ତିମାର୍ଗରେ ଭକ୍ତ ଏବଂ ଭଗବାନ ଦୁଇଜଣଯାକ ରହି ନିତ୍ୟ ନୂତନ, ନବାୟମାନ, ନିତ୍ୟ ବର୍ଦ୍ଧନଶୀଳ ପରମ ଆନନ୍ଦ ଲାଭ କରୁଥାଆନ୍ତି । ପ୍ରେମରେ କିନ୍ତୁ ଭଗବାନ ଓ ଭକ୍ତ ଦୁଇଜଣ ହୋଇ ରହିବା ଅସମ୍ଭବ ହୁଏ । ସେଥିପାଇଁ କୁହାଯାଏ ଭକ୍ତି ସାଧନ ହେଲେ କୃଷ୍ଣ ପ୍ରେମ ତା'ର ପରିପକ୍ୱ ଫଳ ।

କର୍ମଯୋଗୀ ଲାଗି ସଂସାର ସତ୍ୟ । ସେ ବୈଦିକ ମାର୍ଗରେ ପୁରୁଷାର୍ଥ କରି ସ୍ୱର୍ଗ ସୁଖ ପାଇବ ଏକ ମନ୍ୱନ୍ତରକାଳ ଦେବୀ ଦେବତା ହୋଇ । ଜ୍ଞାନଯୋଗୀ ପାଇଁ ସଂସାର ମିଥ୍ୟା । ସତ୍ୟ ଭାବିଲେ ଜ୍ଞାନମାର୍ଗୀ ସାଧକ ବିଷୟ ସୁଖ ଲାଳସାରେ ମାୟା ଜାଲରେ ପଡ଼ିଯିବ ଯେ । ଭକ୍ତ ପାଇଁ କିନ୍ତୁ ସଂସାର ନା ସତ୍ୟ ନା ମିଥ୍ୟା । ଉଭୟ ମଧ୍ୟ ନୁହେଁ । ଭକ୍ତପାଇଁ ସଂସାର କେବଳ ଲୀଳାମୟ କୃଷ୍ଣଙ୍କର ଲୀଳା ଭୂଇଁ । ସେ କୌରବ ପାଣ୍ଡବଙ୍କ ମହାଭାରତ ଯୁଦ୍ଧଭୂମି ହେଉ ବା ହେଉ ପଛକେ ଗୋପୀ ଗୋପୀନାଥଙ୍କ ମହାରାସ ମଣ୍ଡଳ ।

ଭାଗବତଙ୍କର ୭ମ ସ୍କନ୍ଧର ଲକ୍ଷଣ ଉତି ବା କର୍ମବାସନା । ଜୀବର ଅନନ୍ତ

କୋଟି ଜନ୍ମର ସାତ୍ତ୍ୱିକ, ରାଜସିକ ଓ ତାପସିକ କର୍ମବାସନାର ସଫ୍ଟ ଓୟାର୍ ତାର ନିଜର ଅନ୍ତଃକରଣରେ ଗଛିତ ଥାଏ । ଜୀବ ଜନ୍ମ ହେଉ ହେଉ ତାର ଜଡ଼ ଶରୀରରେ ନିଃଶ୍ୱାସ ପ୍ରବାହ ହେଲେ ପ୍ରାଣରୂପୀ ଶକ୍ତିରେ ସେସବୁ ୱେବ୍‌ସାଇଟ୍‌ମାନଙ୍କର ଭିନ୍ନ ଭିନ୍ନ ସମୟରେ ଜନ୍ମ ଜନ୍ମାନ୍ତରର ସାଇତା ଫାଇଲ୍‌ମାନ ଖୋଲିବାକୁ ଲାଗନ୍ତି । ସୁତରାଂ ଜୀବର ଶୈଶବ, ବାଲ୍ୟ, କୈଶୋର, ଯୁବକ, ପ୍ରୌଢ଼ ଅବସ୍ଥା ଅନୁଯାୟୀ ବିଷୟ ଭୋଗ ବାସନା କିନ୍ତୁ ଭଗବତ୍ ଶରଣାଗତିର ବେଗରେ ପଡ଼ୁଉଠ ହୁଏ । ସତ୍ତ୍ୱଗୁଣୀ ବାସନାରେ ଭକ୍ତ ପ୍ରହ୍ଲାଦ (ହରିଶରଣାଗତି) ତମୋଗୁଣୀ ବାସନାରେ ହିରଣ୍ୟାକ୍ଷ ଓ ହିରଣ୍ୟ କଶିପୁ (ଭୋଗ ସଂଗ୍ରହର ପ୍ରତୀକ) ଓ ରଜୋଗୁଣୀ ବାସନାରେ ରାଜା ଯୁଧିଷ୍ଠିରଙ୍କୁ ନିମିତ୍ତ କରି ଉତି ଲକ୍ଷଣ ପରିବେଷଣ କରିଛନ୍ତି ଶ୍ରୀଶୁକଦେବ ପରମହଂସ ।

ଅଷ୍ଟମ ସ୍କନ୍ଧର ବିଷୟ ବସ୍ତୁ ମନ୍ୱନ୍ତର ଲୀଳା ଉପରେ ଆଧାରିତ । ବ୍ରହ୍ମାଜୀଙ୍କର ଏକ କଳ୍ପ (୪୩୨ କୋଟି ମାନବ ବର୍ଷ)ରେ ସ୍ୱାୟମ୍ଭୁବ, ସ୍ୱାରୋଚିଷ ଆଦି ଚଉଦ ଜଣ ମନୁ କ୍ଷମତାରେ ରହି ସୃଷ୍ଟି ପରିଚାଳନା କରନ୍ତି । ଯଜ୍ଞ, ଦାନ, ତପ ଓ କ୍ରିୟା ଏହି ଚାରି ପ୍ରକରଣ ମାଧ୍ୟମରେ କେଉଁଠାରେ ସଂକ୍ଷେପରେ ତ ପୁଣି କେଉଁଠାରେ ବିସ୍ତୃତ ଭାବରେ ଷଟ୍ ମନ୍ୱନ୍ତର ଲୀଳା ବର୍ଣ୍ଣନା କଲାପରେ ଅତ୍ୟନ୍ତ ବିସ୍ତାରିତ ଭାବରେ ଚଳିତ ସପ୍ତମ ମନ୍ୱନ୍ତର ଲୀଳା କୀର୍ତ୍ତନ ହୋଇଛନ୍ତି । ଶେଷରେ ପ୍ରଚଳିତ ଚତୁର୍ଯୁଗର ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ସହିତ ପବିତ୍ର ଯଦୁବଂଶ ଚରିତ ବର୍ଣ୍ଣିତ ହୋଇଛନ୍ତି ନବମ ସ୍କନ୍ଧରେ ।

ନବମ ସ୍କନ୍ଧର ଲକ୍ଷଣ ଈଶ ଅନୁକଥା ବା ଭଗବାନଙ୍କ ଭକ୍ତ ଚରିତ କଥା । ପ୍ରଥମ ସ୍କନ୍ଧଠାରୁ ଏହି ନବମ ସ୍କନ୍ଧର ଶେଷ ଯାଏ ଏକଶତ ଆଠଜଣ ବଛା ବଛା ସନ୍ଥ ବା ନିଷ୍କାମ ଭଗବତ ଭକ୍ତର ଜ୍ଞାନ ନିଷ୍ଠା ଓ ଭକ୍ତି ନିଷ୍ଠା ଦ୍ୱାରା ହରିଶରଣାଗତି କିପରି ସମ୍ଭବ ହୋଇପାରେ ତାହାକୁ ସୁନ୍ଦର ଭବ୍ୟ ଦୃଷ୍ଟାନ୍ତ ମାଧ୍ୟମରେ ପରିବେଷଣ କରିଛନ୍ତି ଭାଗବତଙ୍କର ଶ୍ରେଷ୍ଠ ବକ୍ତା (ନିର୍ଗୁଣୀ) ଶିରୋମଣି ଜନ୍ମଜାତ ପରହଂସ ଶ୍ରୀଶୁକଦେବ । ବିନା ଖାଦ୍ୟ, ବିନା ଜଳପାନ ଓ ବିନା ଶୟନରେ ତିନିଦିନ ତିନି ରାତି ଅକଥନୀୟ ପୀଡାକୁ ଭ୍ରୂକ୍ଷେପ ନକରି ତତ୍‌କାଳୀନ ଚକ୍ରବର୍ତ୍ତୀ ସମ୍ରାଟ୍ ପରୀକ୍ଷିତ ଶ୍ରବଣ କରିଛନ୍ତି ଯୋଡ଼ହସ୍ତ ଓ ସିଦ୍ଧ ଆସନରେ । ବାସ୍ତବରେ ବ୍ରହ୍ମଜ୍ଞାନ ପରିବେଷଣ ସତ୍‌ସଙ୍ଗ ସଭାରେ ଶ୍ରୀ ଶୁକଦେବଙ୍କ ଭଳି ନିର୍ଗୁଣୀ ବକ୍ତା ଓ ପରୀକ୍ଷିତଙ୍କ ଭଳି ଜଣେ ନିର୍ଗୁଣୀ ଶ୍ରୋତା ଏ ପର୍ଯ୍ୟନ୍ତ ଆଉ ଭାରତଭୂମିରେ ପ୍ରକଟ ହୋଇନାହାନ୍ତି ।

ଧନ୍ୟ ସେ ବକ୍ତା, ଧନ୍ୟ ସେ ଶ୍ରୋତା ଓ ଧନ୍ୟ ସେଇ ଶ୍ରୀମଭାଗବତ ବର୍ଣ୍ଣିତ କୃଷ୍ଣପ୍ରେମର ଦିବ୍ୟ କଥାବସ୍ତୁ ।

–o–

# ଦୈନିକ ପ୍ରାର୍ଥନା

ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ ନ-ଅବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟ ବୁଦ୍ଧ୍ୟା-ଅସୂୟେତ ସର୍ବ ଦେବମୟୋ ଗୁରୁଃ ॥

ଭା-୧୧-୧୭-୨୭

ହେ' ପରମ ପ୍ରିୟତମ ପୂର୍ଣ୍ଣତମ ଶ୍ରୀକୃଷ୍ଣ, ତୁମ୍‌ସେ ବିମୁଖ ହୋନେ କେ କାରଣ ଅନାଦି କାଳ ସେ ହମ୍‌ନେ ଅନନ୍ତ-ଅନନ୍ତ ଦୁଃଖ ପାୟେ ଏବଂ ପା ରହେ ହେଁ । ପାପ କରତେ କରତେ ଅନ୍ତଃକରଣ ଇତ୍‌ନା ମଲିନ୍ ହୋ ଚୁକା ହେ କି ରସିକୋଁ ଦ୍ୱାରା ୟହ ଜାନ୍‌ନେ ପର୍‌ଭୀ କି ତୁମ୍ ଅପନି ଭୁଜାଓଁ କୋ ପସାରେ ଅପନି ବାତ୍ସଲ୍ୟମୟୀ ଦୃଷ୍ଟି ସେ ହମାରି ପ୍ରତୀକ୍ଷା କର୍ ରହେ ହୋ ତୁହ୍ମାରୀ ଶରଣ ମେଁ ନହିଁ ଆ ପାତା ।

ହେ' ଅଶରଣ ଶରଣ, ତୁହ୍ମାରୀ କୃପା କେ ବିନା ତୁହ୍ମେ କୋଇ ଜାନ୍ ଭି ତୋ ନହିଁ ସକ୍‌ତା । ଐସି ସ୍ଥିତି ମେଁ ହେ ଅକାରଣ କରୁଣ ପତିତପାବନ ଶ୍ରୀକୃଷ୍ଣ, ତୁମ ଅପନି ଅହୈତୁକୀ କୃପା ସେ ହୀ ହମ୍‌କୋ ଅପନା ଲୋ ।

ହେ' କରୁଣା ସାଗର, ହମ୍ ଭୁକ୍ତି ମୁକ୍ତି ଆଦି କୁଛ ଭି ନହିଁ ଚାହତେ । ହମେଁ ତୋ କେବଲ ତୁହ୍ମାରେ ନିଷ୍କାମ ଭକ୍ତି କୀ ହି ଏକମାତ୍ର ଚାହ ହୈ ।

ହେ' ନାଥ ଅପନି ବିରଦ (ପ୍ରତିଜ୍ଞା) କୀ ଔର ଦେଖକର ଇସ୍ ଅଧମକୋ ନିରାଶ ନ କରୋ ।

ହେ' ଜୀବନ ଧନ୍, ଅବ୍ ବହୁତ ହୋ ଚୁକା, ଅବ୍ ତୋ ତୁହ୍ମାରେ ପ୍ରେମ କେ ବିନା ୟହ ଜୀବନ ମୃତ୍ୟୁ ସେ ଭୀ ଅଧିକ ଭୟାନକ ହୈ । ଅତଏବ

ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ହି ଦେହି ।

ବୋଲିଏ-

ସାକେତ ବିହାରୀ ଶ୍ରୀ ରାଘବେନ୍ଦ୍ର ସରକାର କୀ ଜୟ ।
ବୃନ୍ଦାବନ ବିହାରୀ ଶ୍ରୀ ଯାଦବେନ୍ଦ୍ର ସରକାର କୀ ଜୟ ।
ଶ୍ରୀମଦ୍ ସଦ୍‌ଗୁରୁ ସରକାର କୀ ଜୟ ।

-୦-

# ସୂଚୀପତ୍ର

ପଞ୍ଚଦଶ ନକ୍ଷତ୍ର-ସ୍ୱାତୀ

# ସପ୍ତମ ସ୍କନ୍ଧଃ

## (ଅଧ୍ୟାୟ-୧୫,ଶ୍ଳୋକ-୭୫୦)

## ଲକ୍ଷଣ-ଉତି(ଜୀବର ଜ୍ଞାନ,ଭକ୍ତି ଓ କର୍ମ ବାସନା)

## ପ୍ରକରଣ-୧୮

### ଅସତ୍ ବାସନା-କର୍ମ (ଅଧ୍ୟାୟ ୧ମ-୫ମ)

## ଅଥ ପ୍ରଥମ ଅଧ୍ୟାୟଃ

### (ସମଦର୍ଶୀ ଭଗବାନ ଓ ତାଙ୍କ ପାର୍ଷଦ ଜୟ-ବିଜୟ ଚରିତ)

ରାଜା ଉବାଚ

ପ୍ରଶ୍ନ-୧ ଇନ୍ଦ୍ରଦେବଙ୍କ ପକ୍ଷ ସମର୍ଥନ କରି ଭଗବାନ ବିଷ୍ଣୁ ବୃତ୍ର ଅସୁର ବଧ କରିବା ଶୁଣି ରାଜା ପରୀକ୍ଷିତଙ୍କର କାହିଁକି ଏବଂ କି ସନ୍ଦେହ ଉତ୍ପନ୍ନ ହେଲା ?

**ସମଃ ପ୍ରିୟଃ ସୁହୃତ୍ ବ୍ରହ୍ମନ୍ ଭୂତାନାଂ ଭଗବାନ୍ ସ୍ୱୟମ୍ ।**
**ଇନ୍ଦ୍ରସ୍ୟ-ଅର୍ଥେ କଥଂ ଦୈତ୍ୟାନ୍ ଅବଧୀତ୍ ବିଷମୋ ଯଥା ।୧।**

ଉ. ପରୀକ୍ଷିତ ପଚାରିଲେ, 'ହେ, ବ୍ରହ୍ମନ୍! ଭଗବାନ ଆତ୍ମାରାମ, ଆପ୍ତକାମ ଓ ସମଦର୍ଶୀ ଅଟନ୍ତି । କି ସୁର କି ଅସୁର ସମସ୍ତଙ୍କର ଶୁଭଚିନ୍ତକ, ପ୍ରିୟ-ଅପ୍ରିୟ ଭେଦ ଶୁନ୍ୟ । ଭେଦ ଦୃଷ୍ଟି ରଖି ସାଧାରଣ ବିଷୟୀ (ବିଷମୋ ଯଥା) ଲୋକ ଭଳି ସେ କାହିଁକି ଏଭଳି ପକ୍ଷପାତ ଦୋଷରେ ଦୋଷୀ ହେଲେ ?

ବିଷ୍ଣୁ ସଂପୂର୍ଣ୍ଣ ନିର୍ଭୟ । ସ୍ୱୟଂ ଭୟମଧ୍ୟ ତାଙ୍କୁ ଭୟ କରନ୍ତି । ସୁତରାଂ ସେ କାଳଙ୍କର ମଧ୍ୟ କାଳ ମହାକାଳ । ବୃତ୍ରଙ୍କୁ ସେ ଡରିବା ଅସମ୍ଭବ । ଅନ୍ୟ ପକ୍ଷରେ ଇନ୍ଦ୍ରଦେବଙ୍କ ଠାରୁ ତାଙ୍କର କିଛି ପ୍ରାପ୍ତବ୍ୟ ମଧ୍ୟ ନଥିଲା । ଏହା ନିଶ୍ଚୟ କିଛି ରହସ୍ୟ। ବୃତ୍ର ଭଗବତ୍ ଲୀଳା ।

ପ୍ରଶ୍ନ-୨. ଏ ପ୍ରଶ୍ନର କେଉଁ ବିଶେଷ ଗୁଣ ଦେଖି ଶ୍ରୀ ଶୁକ ଦେବ ରାଜାଙ୍କୁ ପ୍ରଶଂସା (ସାଧୁ ପୃଷ୍ଟଂ) କଲେ ?

**ସାଧୁ ପୃଷ୍ଟଂ ମହାରାଜ ହରେଃ ଚରିତଂ ଅଦ୍ଭୁତମ୍ ।**
**ଯତ୍ ଭଗବତ୍ ମାହାତ୍ମ୍ୟଂ ଭଗବତ୍ ଭକ୍ତି ବର୍ଦ୍ଧନମ୍ ।।୪।।**

ଉ. ଶ୍ରୀ ହରିଙ୍କ ଲୀଳା ସାଧାରଣ ମନୁଷ୍ୟର ଅତ୍ୟନ୍ତ ଅଗମ୍ୟ । ଏହା ମଧ୍ୟରେ ଭଗବାନଙ୍କ କୃପା ଶକ୍ତି ଲୁଚି ରହିଥାନ୍ତି । ଏଭଳି ପ୍ରଶ୍ନ କର୍ତ୍ତା, ଏ ପ୍ରଶ୍ନର ଉତ୍ତର ଦାତା ଓ ପ୍ରଶ୍ନୋତ୍ତର ଶୈଳୀରେ ଶୁଣିବାକୁ ଆଗ୍ରହୀ ଶ୍ରୋତା ସମସ୍ତଙ୍କର ହରିଭକ୍ତି ଅଜାଣତରେ ବୃଦ୍ଧି ପାଇଥାଏ । ମନୁଷ୍ୟର ସେଇ ତ କେବଳ ଶ୍ରେଷ୍ଠ ସାଧନା ଯାହାଦ୍ୱାରା ଭକ୍ତି ବୃଦ୍ଧିପାଏ ।

ଏହି ଭାଗବତ ମାହାତ୍ମ୍ୟ ପ୍ରଚାର ପ୍ରସାର ଉଦ୍ଦେଶ୍ୟରେ ନାରଦଜୀ, ଚତୁଃସନ ଆଦି ଭକ୍ତମାନେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଭ୍ରମଣ କରନ୍ତି । ପ୍ରଶ୍ନଟି ଶ୍ରବଣ କରୁ କରୁ ଅତ୍ୟନ୍ତ ପ୍ରସନ୍ନ ହେଲେ ବକ୍ତା ମହାଶୟ । ନିଜ ସଦ୍‌ଗୁରୁ ପିତା ବେଦବ୍ୟାସଜୀଙ୍କୁ ନମସ୍କାର କରି ଉତ୍ତର ଦେବା ପ୍ରାରମ୍ଭ କଲେ ।

ପ୍ରଶ୍ନ-୩. ସ୍ୱୟଂ ଭଗବାନ୍ ନିର୍ଗୁଣ, ଅଜନ୍ମା, ଅବ୍ୟକ୍ତ ପୁଣି ମାୟାଧ୍ୟକ୍ଷ ଏ କଥା ସର୍ବବାଦୀ ସମ୍ମତ । ବିନା ଗୁଣରେ କର୍ମ କରିବା ସମ୍ଭବ ହୁଏନା । ପରମେଶ୍ୱର ରଜ-ତମ ଆଦି ଗୁଣ ସ୍ୱୀକାର କରି ରାଗ ଦ୍ୱେଷ ଯୁକ୍ତ କର୍ମ କରନ୍ତି କାହିଁକି ?

**ନିର୍ଗୁଣୋଽପି ହି-ଅଜୋଽବ୍ୟକ୍ତୋ ଭଗବାନ୍ ପ୍ରକୃତେଃ ପରଃ ।**
**ସ୍ୱମାୟା ଗୁଣଂ ଆବିଶ୍ୟ ବାଧ୍ୟ ବାଧକତାଂ ଗତଃ ।।୬।।**

ଉ. ଭଗବାନଙ୍କ ଦ୍ୱାରା କର୍ମ ହୁଏ ସତ୍ୟ କିନ୍ତୁ ରାଗ-ଦ୍ୱେଷରେ ହୁଏନା । ବିଚାରାଳୟରେ ବିଚାର ପତି କୌଣସି ଅଭିଯୁକ୍ତକୁ ଦଣ୍ଡିତ କଲେ କିମ୍ବା ନିର୍ଦ୍ଦୋଷ ବୋଲି କହି ଛାଡ଼ି ଦେଲେ କ'ଣ ସେ ରାଗ-ଦ୍ୱେଷରୁ କଲେ ବୋଲି ଧରାଯାଏ କି ? ପିତା -ମାତା ସନ୍ତାନଙ୍କୁ ଦଣ୍ଡଦେଲେ କ'ଣ ସେ ଦ୍ୱେଷ ହେତୁ ଏହା କରୁଛନ୍ତି ବୋଲି ଅଭିଯୁକ୍ତରେ ଗଣ୍ୟ ହୁଅନ୍ତି କି ?ଏହା ଆଦୌ ବାଧ୍ୟ ବାଧକତା ନୁହେଁ ।

ଦ୍ରୋଣାଚାର୍ଯ୍ୟ ପୁତ୍ର ଅଶ୍ୱତ୍‌ଥାମାଙ୍କୁ ଓ ଶିଷ୍ୟ ଅର୍ଜୁନଙ୍କୁ ଅସ୍ତ୍ରବିଦ୍ୟା ପ୍ରଦାନ କଲା ବେଳେ ବ୍ରହ୍ମ-ଅସ୍ତ୍ର ପ୍ରତ୍ୟାହାର ରହସ୍ୟଟି କେବଳ ଅର୍ଜୁନଙ୍କୁ ଶିକ୍ଷା ଦେବାରେ କେହି ତାଙ୍କୁ ପକ୍ଷପାତୀ ବୋଲି କହିବାକୁ ସାହସ କରିବ କି ?

ପ୍ରଶ୍ନ-୪. କଣ ପାଇଁ ତେବେ ଆମେ ପ୍ରାୟ ସମସ୍ତଙ୍କୁ ରାଗ-ଦ୍ୱେଷ ହେତୁ କର୍ମ କରୁଥିବା ଅଭିଯୋଗ କରୁ ?

**ସତ୍ତ୍ୱଂ ରଜଃ ତମ ଇତି ପ୍ରକୃତେଃ ନ-ଆତ୍ମନୋ ଗୁଣାଃ ।**
**ନ ତେଷାଂ ଯୁଗପଦ୍ ରାଜନ୍ ହ୍ରାସ ଉଲ୍ଲାସ ଏବ ବା ॥୭॥**

ଉ. ପ୍ରକୃତିଙ୍କର ତିନି ଗୁଣରେ ସକଳ କ୍ରିୟା ହୁଏ ସତ୍ୟ କିନ୍ତୁ ଗୋଟିଏ ଗୁଣ ଦ୍ୱାରା କର୍ମ ହେଲାବେଳେ ଅନ୍ୟ ଦୁଇଗୁଣ ଚାପି ହୋଇ ରହିବାକୁ ବାଧ୍ୟ । ଏକ ସମୟରେ (ଯୁଗପଦ୍) ଦୁଇ କିମ୍ବା ତିନି ଗୁଣ ମିଶ୍ରଣରେ କର୍ମ ହେବା ଅସମ୍ଭବ । ଗୋଟିଏ ଗୁଣର ବୃଦ୍ଧି (ଉଲ୍ଲାସ) ହେଲେ ଅନ୍ୟ ଦୁଇଗୁଣଙ୍କର ହ୍ରାସ ହୋଇଥାଏ ।

ଭଗବାନଙ୍କ ଇଚ୍ଛାରେ କେବେ ଦେବତା କୁଳ ଉତ୍ପାତ ହେଲାବେଳେ ସେ ଅସୁର-ଦୈତ୍ୟମାନଙ୍କ ଦ୍ୱାରା ତାଙ୍କୁ ଦଣ୍ଡ ଦେଇ ଶାସନ କରନ୍ତି । କେବେକେବେ ତାର ଓଲଟା କର୍ମ ମଧ୍ୟ ସେ କରିଥାନ୍ତି । ଏହା ଭଗବାନଙ୍କ ରାଗ-ଦ୍ୱେଷରୁ ହୁଏନା । ସମଗ୍ର ସୃଷ୍ଟିକୁ ସନ୍ତୁଳନରେ ରଖିବା ତାଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ମଧ୍ୟ ।

ପ୍ରାଶ୍ନ-୫ ସୃଷ୍ଟିରେ ଗୁଣମାନଙ୍କର ହ୍ରାସ ବୃଦ୍ଧିର ଲକ୍ଷଣ କିପରି ପ୍ରକାଶ ପାଏ ?

**ଜୟକାଳେ ତୁ ସତ୍ତ୍ୱସ୍ୟ ଦେବ-ଋଷୀନ୍ ରଜସୋଽସୁରାନ୍ ।**
**ତମସୋ ଯକ୍ଷ ରକ୍ଷାଂସି ତତ୍କାଳ -ଅନୁଗୁଣୋଽଭଜତ୍ ॥୮॥**

ଉ. ସତ୍ୱ ଗୁଣର ବୃଦ୍ଧି ହେଲେ ଦେବୀ-ଦେବତା ଋଷିମାନେ ରଜଗୁଣର ଅଭିବୃଦ୍ଧିରେ ଅସୁରମାନେ ଓ ତମୋଗୁଣର ବୃଦ୍ଧି ହେଲେ ଯକ୍ଷ-ରାକ୍ଷସମାନେ ସମୃଦ୍ଧି ଲାଭ କରୁଥାନ୍ତି । ଭଗବାନ ସବୁ ସମୟରେ ସେମାନଙ୍କ ହୃଦୟରେ ବସି ଅବସ୍ଥା ଦେଖି ସେହି ସେହି ଗୁଣମାନଙ୍କୁ ପୁଷ୍ଟ କରିଥାନ୍ତି କେବଳ ।

କାଠ ମଧ୍ୟରେ ଅଗ୍ନି ଲୁଚି ରହିବା ଭଳି ଏ ତିନିଗୁଣ ଯାକ ସକଳ ଜୀବର ଅନ୍ତଃକରଣ ମନ-ବୁଦ୍ଧି-ଚିତ୍ତ-ଅହଂକାର ମଧ୍ୟରେ ଛପି ରହନ୍ତି । ସେମାନଙ୍କ କର୍ମ ଦେଖି ଅନୁମାନ କରାଯାଇ ପାରେ କେତେବେଳେ କେଉଁ ଗୁଣ କାମ କରୁଛି । ସୁତରାଂ ସୃଷ୍ଟି ଇଚ୍ଛାରେ ସେ ରଜଗୁଣ, ପାଳନ ଇଚ୍ଛାରେ ସତ୍ୱଗୁଣ ଓ ସଂହାର ଇଚ୍ଛାରେ ଜୀବ ମଧ୍ୟରେ ଓ ସାମଗ୍ରିକ ଭାବରେ ସଂସାରରେ ତମୋ ଗୁଣକର ଅଭିବୃଦ୍ଧି କରାଇ ତିନିଗୁଣର ସନ୍ତୁଳନ ବଜାୟ ରଖନ୍ତି ।

ପ୍ରଶ୍ନ-୬. ଭଗବାନ ସତ୍ୟ ସଂକଳ୍ପ(ସତ୍ୟକୃତ୍) ଅଟନ୍ତି । ଏ ଭୌତିକ ଗୁଣମାନଙ୍କ ହ୍ରାସ ବୃଦ୍ଧି ନିଜେ ନ କରି କାହାଦ୍ୱାରା କରାନ୍ତି ?

**କାଳଂ ଚରନ୍ତଂ ସୃଜତି-ଈଶ ଆଶ୍ରୟମ୍ ।**
**ପ୍ରଧାନ ପୁଂଭ୍ୟାଂ ନରଦେବ ସତ୍ୟକୃତ୍ ॥୧୧॥**

ଉ. ଶୁକଦେବ କହିଲେ, 'ହେ' ରାଜନ(ନରଦେବ) ! ପରମେଶ୍ୱରଙ୍କ ଶକ୍ତି କାଳକୁ ଈଶ୍ୱର କୁହାଯାଏ । କାଳଙ୍କର ନିୟନ୍ତଣରେ (ମାୟା/ବହିରଙ୍ଗା ଶକ୍ତି ପ୍ରଧାନ) ଓ ଜୀବ/ତଟସ୍ଥା ଶକ୍ତି (ପୁଂଭ୍ୟାଂ)ଙ୍କୁ ଛାଡ଼ିଦିଅନ୍ତି ଓ ସ୍ୱୟଂ ସାକ୍ଷୀ ଅକର୍ତ୍ତା ହୋଇ ବିରାଜମାନ କରନ୍ତି ।'

ପ୍ରଶ୍ନ-୭. ପରୀକ୍ଷିତ ତଥାପି କଥାଟିର ମର୍ମ ବୁଝିବାରେ ଅସମର୍ଥ ହେଲେ । ସୁତରାଂ କେଉଁ ଉଦାହରଣର ଆଶ୍ରୟ ନେଲେ ବକ୍ତା ମହାଶୟ ?

**ଅତ୍ର-ଏବ-ଉଦାହୃତଃ ପୂର୍ବଂ ଇତିହାସଃ ସୁରର୍ଷିଣା ।**
**ପ୍ରୀତ୍ୟା ମହାକ୍ରତୌ ରାଜନ୍ ପୃଚ୍ଛତେଽଜାତ ଶତ୍ରବେ ॥୧୩॥**

ଉ. କହିଲେ,'ହେ, ପରୀକ୍ଷିତ ! ଠିକ୍ ଏଇ ଅଡୁଆ ପ୍ରଶ୍ନ ତୁମ ଜେଜେ ବାପା ଯୁଧିଷ୍ଠିର ପଚାରିଥିଲେ ଦେବର୍ଷି ନାରଦଙ୍କୁ ରାଜସୂୟ ଯଜ୍ଞ (ମହାକ୍ରତୌ) ଅନୁଷ୍ଠାନ କାଳରେ । ସେତେବେଳେ ଯୁଧିଷ୍ଠିର ଅତ୍ୟନ୍ତ ଆଶ୍ଚର୍ଯ୍ୟ ଚକିତ ହେଲେ ଚେଦି ରାଜ ଶିଶୁପାଳଙ୍କଙ୍କ ଦେହରୁ ଦିବ୍ୟ ଜ୍ୟୋତି ନିର୍ଗତ ହୋଇ ଶ୍ରୀକୃଷ୍ଣଙ୍କ ଦିବ୍ୟଦେହରେ ମିଶି ତାଙ୍କୁ ସାଯୁଜ୍ୟ ମୁକ୍ତି ମିଳିବା ଦେଖି । ଏ କାଣ୍ଡ ପୁଣି ଘଟିଲା ହଜାର ହଜାର ମୁନି-ଋଷିମାନଙ୍କ ଉପସ୍ଥିତିରେ ।'

ପ୍ରଶ୍ନ-୮.ଯୁଧିଷ୍ଠିରଙ୍କୁ ଶିଶୁପାଳଙ୍କ ମୁକ୍ତି କାହିଁକି ଅତ୍ୟଦ୍ଭୁତ ମନେହେଲା ?

ଯୁଧିଷ୍ଠିର ଉବାଚ

**ଅହୋଽତି-ଅଦ୍ଭୁତଂ ହି-ଏତତ୍ ଦୁର୍ଲ୍ଲଭ-ଏକାନ୍ତିନାଂ ଅପି ।**
**ବାସୁଦେବେ ପରେ ତତ୍ତ୍ୱେ ପ୍ରାପ୍ତିଃ ଚୈଦ୍ୟସ୍ୟ ବିଦ୍ୱିଷଃ ॥୧୬॥**

ଉ.ଜନ୍ମ-ଜନ୍ମାନ୍ତର ତପସ୍ୟା କରି ଯୋଗୀମୁନି ମାନଙ୍କୁ ସାଯୁଜ୍ୟ ମୁକ୍ତି ମିଳେ ନା । ଦୁଷ୍ଟ ଶିଶୁପାଳ ସାରା ଜୀବନ କୃଷ୍ଣ ଦ୍ୱେଷୀ ଥିଲା । କେଉଁ ନିୟମ ବଳରେ ସେ ସାଯୁଜ୍ୟ ମୁକ୍ତିର ଅଧିକାରୀ ହେଲା ? ଏହା ତ ମନୁଷ୍ୟ ବୁଦ୍ଧିର ଅଗମ୍ୟ କଥା ।

ଭଗବାନଙ୍କ ନିନ୍ଦୁକଙ୍କୁ ନରକ ମିଳିବା କଥା ଶାସ୍ତ୍ରରେ ବର୍ଣ୍ଣିତ ଅଛି । ଏଭଳି ନିନ୍ଦୁକଙ୍କର ଜିହ୍ୱାରେ ଶ୍ୱେତ କୁଷ୍ଠ ହେବା କଥା । ବିନା ଶ୍ରୀକୃଷ୍ଣ ଜପ-ତପ-ଭକ୍ତି-ପୂଜନରେ ଜଣେ କୃଷ୍ଣ ଅପରାଧୀକୁ ମୁକ୍ତି ମିଳିବାର ରହସ୍ୟ କ'ଣ ? ଦେବର୍ଷି ନାରଦ ଧର୍ମରାଜଙ୍କ ପ୍ରଶ୍ନ ଶୁଣି ଅତି ପ୍ରସନ୍ନ ହୋଇ ସମସ୍ତ ସଭାକୁ ଶୁଣାଇ ରହସ୍ୟ ଖୋଲି କହିଲେ ।

## ଶ୍ରୀ ନାରଦ ଉବାଚ

ପ୍ରଶ୍ନ-୯. ନିନ୍ଦା, ସ୍ତୁତି, ସତ୍କାର, ତିରସ୍କାର ଏ ସବୁ ଦେହର କରାଯାଏ । ଦେହ ପୁଣି ଜଡ଼ । ସେହି ଦେହ ଏଥିରେ ପ୍ରଭାବିତ ହୁଏ କି ? ପୁରଷ୍କାର-ଦଣ୍ଡ ନେଇ ପାରେ କି ?

**ନିନ୍ଦନ ସ୍ତବ ସତ୍କାର ନ୍ୟକ୍କାର-ଅର୍ଥଂ କଳେବରମ୍ ।**
**ପ୍ରଧାନ ପରୟୋ ରାଜନ୍ ଅବିବେକେନ କଲ୍ପିତମ୍ ॥୨୩॥**

ଉ. ନା ଆଦୌ ପ୍ରଭାବିତ ହୁଏନା କି ପୁରସ୍କାର ଅପମାନ (ନ୍ୟକ୍କାର) ଦେଇପାରେ ନା ମଧ୍ୟ । ଦେହ (ପ୍ରଧାନ) -ପରୟୋ (ଆତ୍ମା) ମଧ୍ୟରେ ପାର୍ଥକ୍ୟ ନ ଜାଣି ପାରି ଦେହାତ୍ମ୍ୟ ବୁଦ୍ଧିକୁ ଅବିବେକ କୁହାଯାଏ (କଲ୍ପିତ) । ଏଭଳି ଅଜ୍ଞାନୀ ଲୋକକୁ ବଦ୍ଧ ଜୀବ ମଧ୍ୟ କୁହାଯାଏ । ତାର ମନ-ବୁଦ୍ଧିରେ ମମ-ଅହଂ ବୃତ୍ତି ପ୍ରଭାବିତ ହୋଇ ସୁଖ-ଦୁଃଖ ଭୋଗ କରନ୍ତି । ଭଗବାନ ବଦ୍ଧ ଜୀବ ନୁହନ୍ତି । ତାଙ୍କ ଅନ୍ତଃକରଣ ଆଦୌ ବାରିପାରେନା ନିନ୍ଦା-ପ୍ରଶଂସାର, ପୁରସ୍କାର-ତିରସ୍କାରର ପାର୍ଥକ୍ୟ ।

ପ୍ରଶ୍ନ-୧୦.ସ୍ତୁତି-ସ୍ତବ ବଦଳରେ ଭଗବାନଙ୍କୁ କ'ଣ ନିନ୍ଦାକରି ମଧ୍ୟ ପ୍ରସନ୍ନ କରାଯାଇ ପାରେ ?

**ତସ୍ମାତ୍ ବୈର-ଅନୁବନ୍ଧେନ ନିର୍ବୈରେଣ ଭୟେନ ବା ।**
**ସ୍ନେହାତ୍ କାମେନ ବା ଯୁଞ୍ଜ୍ୟାତ୍ କଥଞ୍ଚିତ୍ ନ ଈକ୍ଷତେ ପୃଥକ୍ ॥୨୬॥**

ଉ. କେବଳ ନିନ୍ଦା କ'ଣ,ଶତ୍ରୁଭାବରେ, କିମ୍ବା ଶତ୍ରୁତା ଶୂନ୍ୟ ଭୟ, ସ୍ନେହ, ବିଷୟ ବାସନା ଇତ୍ୟାଦିକୁ ସଂସାରରୁ ଟାଣି ଆଣି ଶ୍ରୀକୃଷ୍ଣ କେନ୍ଦ୍ରିକ କରି ମନ-ବୁଦ୍ଧି-ଅହଂକାର ଦ୍ୱାରା ଚିନ୍ତନ ଧ୍ୟାନ କରିପାରିଲେ ଠାକୁରଜୀ ପ୍ରସନ୍ନ ହୋଇଥାନ୍ତି ।

ପ୍ରଶ୍ନ-୧୧.ସାଧକର ମନକୁ କୃଷ୍ଣ ତନ୍ମୟ କରିବାରେ ଶତ୍ରୁତା -ମିତ୍ରତା ଭାବ ମଧ୍ୟରୁ କେଉଁଟି ଅଧିକ ପ୍ରଭାବଶାଳୀ ଓ କଲ୍ୟାଣ କାରକ ?

**ଯଥା ବୈର-ଅନୁବନ୍ଧେନ ମର୍ତ୍ତ୍ୟଃ ତନ୍ମୟତାଂ ଇୟାତ୍ ।**
**ନ ତଥା ଭକ୍ତି ଯୋଗେନ ଇତି ମେ ନିଶ୍ଚିତା ମତିଃ ॥୨୭॥**

ଉ. ଦେବର୍ଷି ନାରଦ ଶ୍ରୀମନ୍ ନାରୟଣଙ୍କର ଜଣେ ଶ୍ରେଷ୍ଠ ଭକ୍ତ । ସେ କହିଲେ, 'ହେ' ଯୁଧିଷ୍ଠିର ! ମୋ ମତରେ ଶତ୍ରୁତା ଭାବ ଅଧିକ ପ୍ରଭାବଶାଳୀ କାରଣ ମିତ୍ରତା ଭାବ ଠାରୁ ଏହା ଶୀଘ୍ରତର ଫଳ ଦେଖାଏ ।

ପ୍ରଶ୍ନ-୧୨. ବୈର ଭାବ ବ୍ୟତୀତ ଆଉ କି କି ଭାବରେ ଚିନ୍ତନ କରିପାରିଲେ ଜୀବର କଲ୍ୟାଣ ବା ଉର୍ଦ୍ଧ୍ୱଗତି ସାଧିତ ହୁଏ ?

**କାମାତ୍ ଦ୍ୱେଷାତ୍ ଭୟାତ୍ ସ୍ନେହାତ୍ ଯଥା ଭକ୍ତ୍ୟା ଈଶ୍ୱରେ ମନ ।**
**ଆବେଶ୍ୟ ତତ୍ ଅଘଂ ହିତ୍ୱା ବହବଃ ତଦ୍ ଗତିଂ ଗତାଃ ॥୩୦॥**

ଉ. ଜଣେ ଦୁଇଜଣ ନୁହନ୍ତି, ଅନେକ ସାଧକ କାମ, ଦ୍ୱେଷ, ଭୟ କିମ୍ବା ସ୍ନେହ ଭାବରେ ମନକୁ ଶ୍ରୀହରି ଚିନ୍ତନରେ ତନ୍ମୟ କରି (ଆବେଶ୍ୟ) ପାପମୁକ୍ତ ହୋଇପାରିଛନ୍ତି । ସଦ୍‌ଗତି ପ୍ରାପ୍ତ ହୋଇଛନ୍ତି ଯେମିତି ଭକ୍ତି ଦ୍ୱାରା ଅନ୍ୟମାନେ ଭୁକ୍ତି-ମୁକ୍ତି ପ୍ରାପ୍ତ ହୋଇଥାନ୍ତି ।

ପ୍ରଶ୍ନ-୧୩. ତଥାପି ରାଜା ଯୁଦ୍ଧିଷ୍ଠିରଙ୍କ ପକ୍ଷେ ରହସ୍ୟଟି ବୁଝିହେଉ ନଥିବା ଜାଣି କେଉଁ କେଉଁ ଦୃଷ୍ଟାନ୍ତ ରଖିଲେ ନାରଦଜୀ ?

**ଗୋପ୍ୟଃ କାମାତ୍ ଭୟାତ୍ କଂସୋ ଦ୍ୱେଷାତ୍ ଚୈଦ୍ୟ-ଆଦୟ ନୃପ ।**
**ସମ୍ବନ୍ଧାତ୍ ବୃଷ୍ଣୟଃ ସ୍ନେହାତ୍ ଯୂୟଂ ଭକ୍ତ୍ୟା ବୟଂ ବିଭୋ ॥୩୧॥**

ଉ. ଗୋପୀଗଣ କାମଭାବରେ, କଂସ ଭୟରେ, ଶିଶୁପାଳ ଇତ୍ୟାଦି (ଚୈଦ୍ୟ-ଆଦୟଃ)ଦ୍ୱେଷରେ, ବୃଷ୍ଣିବଂଶୀମାନେ ପାରିବାରିକ ସମ୍ବନ୍ଧ ଚିନ୍ତନରେ,ତୁମେ (ପାଣ୍ଡବ) ମାନେ ସ୍ନେହରେ ଓ ଆମ (ନାରଦ) ମାନଙ୍କ ଭଳି ସାଧାରଣ ଲୋକମାନେ ଭକ୍ତିରେ ତାଙ୍କଠାରେ ମନ ଲଗାଇ ମୁକ୍ତ ହେବା ଏହାର ପ୍ରତ୍ୟକ୍ଷ ଉଦାହରଣ ।

ପ୍ରଶ୍ନ-୧୪. ବେନ ରାଜା ତ ମହାନ୍ ଈଶ୍ୱର ବିଦ୍ୱେଷୀ ଥିଲେ । ତଥାପି ତାଙ୍କର ମୁକ୍ତି କାହିଁ ହେଲା ନାହିଁ ?

**କତମୋଽପି ନ ବେନଃ ସ୍ୟାତ୍ ପଞ୍ଚାନାଂ ପୁରୁଷଂ ପ୍ରତି ।**
**ତସ୍ମାତ୍ କେନାପି-ଉପାୟେନ ମନଃ କୃଷ୍ଣେ ନିବେଶୟେତ୍ ॥୩୨॥**

ଉ. କାମ, ଭୟ, ଦ୍ୱେଷ, ସ୍ନେହ, ଓ ସମ୍ବନ୍ଧ ମଧ୍ୟରୁ କୌଣସି ଗୋଟିଏରେ ମଧ୍ୟ ରାଜା ବେନ ମନ ଲଗାଇ ନଥିଲେ । ବରଂ ନିଜକୁ ଈଶ୍ୱର ମନେ କରି ତାଙ୍କୁ ମୁନିଋଷି ପ୍ରଜାଗଣଙ୍କ ଦ୍ୱାରା ପୂଜନ କରାଇବାକୁ ବାଧ୍ୟ କରୁଥିଲେ । ଫଳ ହେଲା ଓଲଟା ଅଧୋ ଗତି । ସୁତରାଂ ସାର ନିଷ୍କର୍ଷ ହେଲା ଯେ କୌଣସି ଗୋଟିଏ ଉପାୟରେ ନିଜ ମନକୁ କୃଷ୍ଣ ତନ୍ମୟ କରି ରଖିବା ।

ନାରଦଜୀ କହିଲେ,'ହେ, ଯୁଦ୍ଧିଷ୍ଠିର ! ଶୁଣ ତେବେ ଶିଶୁପାଳଙ୍କ ପୂର୍ବ ଜନ୍ମ କାହାଣୀ । ତୁମ ମାଉସୀ ପୁଅ ଭାଇ ଶିଶୁପାଳ ଓ ଦନ୍ତା ବକ୍ର ଉଭୟେ ସାଧାରଣ ଲୋକ

ବା ବଦ୍ଧିଜୀବ ନୁହନ୍ତି । ସେମାନେ ବୈକୁଣ୍ଠ ଲୋକର ଜୟ-ବିଜୟ ରୂପୀ ବିଷ୍ଣୁଙ୍କ ପାର୍ଷଦ । ଚତୁଃସନଙ୍କ ବ୍ରହ୍ମଶାପ ହେତୁ ତିନି ଜନ୍ମ ଲାଗି ଅସୁର ଯୋନିରେ ଭ୍ରମଣ କଲେ । ପ୍ରଥମ ଜନ୍ମରେ ହିରଣ୍ୟାକ୍ଷ -ହିରଣ୍ୟ କଶିପୁ, ଦ୍ୱିତୀୟ ଜନ୍ମରେ ରାବଣ-କୁମ୍ଭକର୍ଣ୍ଣ ହୋଇ ଶ୍ରୀହରି ବିଷ୍ଣୁଙ୍କ ହସ୍ତରେ ମରି ଅପେକ୍ଷା କରିଥିଲେ ଶ୍ରୀକୃଷ୍ଣଙ୍କ ହସ୍ତରେ ଉଦ୍ଧାର ହେବା ଲାଗି । ଏବେ ତାଙ୍କ ଉଦ୍ଧାର ତୁମେ ସ୍ୱଚକ୍ଷୁରେ ଦର୍ଶନ କଲ ।

ପ୍ରଶ୍ନ-୧୫. ହିରଣ୍ୟ କଶିପୁ ଶ୍ରୀହରିଙ୍କୁ ଦ୍ୱେଷ କରୁଥିଲେ ମୁକ୍ତି ଲାଗି କିନ୍ତୁ ନିଜର (ଆତ୍ମଜା) ହରି ଭକ୍ତ ପୁତ୍ର ପ୍ରହ୍ଲାଦଙ୍କୁ ଦ୍ୱେଷ କଲେ କାହିଁକି ?

**ଯୁଧିଷ୍ଠିର ଉବାଚ**

**ବିଦ୍ୱେଷୋ ଦୟିତେ ପୁତ୍ରେ କଥଂ ଆସୀତ୍ ମହାତ୍ମନି ।**
**ବ୍ରୂହି ମେ ଭଗବନ୍ ଯେନ ପ୍ରହ୍ଲାଦସ୍ୟ-ଅଚ୍ୟୁତ-ଆତ୍ମତା ॥୪୮॥**

ଉ.ପ୍ରହ୍ଲାଦଜୀ ମହାରାଜ ମହାନ ହରି ଭକ୍ତ ଥିଲେ । ତାଙ୍କଠାରେ କୌଣସି ଦୋଷ ରହିବା ଆଶା କରାଯାଏନା । ଅତଏବ ପିତା-ପୁତ୍ରଙ୍କ ସ୍ନେହ (ଦୟିତେ) ଦ୍ୱେଷରେ (ବିଦ୍ୱେଷୋ) ରୂପାନ୍ତର ହେବାର ରହସ୍ୟ ପ୍ରକଟ କରନ୍ତୁ ପ୍ରଭୋ ।

## ଅଥ ୨ୟ ଅଧ୍ୟାୟଃ

## (ହିରଣ୍ୟାକ୍ଷଙ୍କ ଉଦ୍ଧାର ଓ ହିରଣ୍ୟ କଶିପୁଙ୍କ କ୍ରୋଧ)

**ନାରଦ ଉବାଚ**

ପ୍ରଶ୍ନ-୧୬. ଶ୍ରୀହରି ବିଷ୍ଣୁଙ୍କ ସହିତ ଅଯଥା ଯୁଦ୍ଧ କରି ମଧ୍ୟ ହିରଣ୍ୟାକ୍ଷ ଉଦ୍ଧାର ହେଲା । ତା ମୃତ୍ୟୁରେ ତାର ଭାଇ ହିରଣ୍ୟ କଶିପୁ ମନେ ମନେ କିଭଳି ଦୁଃଖିତ ହେଲା ?

**ଭ୍ରାତରି-ଏବ ବିନିହତେ ହରିଣା କ୍ରୋଡ଼ ମୂର୍ତ୍ତିନା ।**
**ହିରଣ୍ୟ କଶିପୁ ରାଜନ୍ ପର୍ଯ୍ୟତପ୍ୟତ-ରୁଷା ଶୁଚା ॥୧॥**

ଉ. ଭ୍ରାତୃହତ୍ୟାର ପ୍ରତିଶୋଧ ନେବା ଲାଗି ସଂସାରି ଶୋକରେ ଦୁଃଖିତ ହୋଇ ଶୂକର (କ୍ରୋଡ଼) ରୂପ ଧାରୀ ଭଗବାନଙ୍କ ଉପରେ ଅତ୍ୟନ୍ତ କ୍ରୋଧ ପ୍ରକଟ କଲା । ସେ ଅସୁରମାନଙ୍କୁ ଏକତ୍ର କରି ଶ୍ରୀହରିଙ୍କ ବିରୁଦ୍ଧରେ ଯୁଦ୍ଧପାଇଁ ଉସ୍କେଇଲା ।

ପ୍ରଶ୍ନ-୧୭. ସମ୍ମିଳିତ ରାକ୍ଷସ୍ ଏବଂ ଦୈତ୍ୟମାନଙ୍କୁ କ'ଣ କରିବା ପାଇଁ ପରାମର୍ଶ ଦେଲେ ହିରଣ୍ୟ କଶିପୁ ?

**ତସ୍ମିନ୍ କୂଟେଽହିତେ ନଷ୍ଟେ           କୃତମୂଳେ ବନସ୍ପତୌ ।**
**ବିଟପ୍ୟା ଇବ ଶୁଷ୍ୟନ୍ତି           ବିଷ୍ଣୁ ପ୍ରାଣା ଦିବୌକସଃ ॥୯॥**

ଉ. କହିଲା,'ବୃକ୍ଷର ମୂଳ ଉପାଡ଼ି ଦେଲେ ବୃକ୍ଷର ଗଣ୍ଡି, ଶାଖା ପ୍ରଶାଖା ପତ୍ର ପୁଷ୍ପ ଆଦି ମଧ ବିନଷ୍ଟ ହୁଅନ୍ତି । ଆମେ ଏଣିକି ଦେବତା ମାନଙ୍କ (ଦିବୌକସଃ) ସଙ୍ଗେ ଲଢ଼ିବା ଦରକାର ନାହିଁ । ଦେବତାମାନେ ବିଷ୍ଣୁଙ୍କର ଅଙ୍ଗ ପ୍ରତ୍ୟଙ୍ଗ ମାତ୍ର । ଆମେ ବିଷ୍ଣୁଙ୍କୁ କୌଶଳ କରି ମାରିଦେଲେ ଇନ୍ଦ୍ର ଅଗ୍ନି ଆଦି ଦେବଗଣ ସ୍ୱତଃ ମରିଯିବେ । ଆମ ଭୋଗରେ ବାଧା ଦେଉଥିବା କଣ୍ଟା ସବୁଦିନ ଲାଗି ଦୂର ହୋଇଯିବ । ତେଣୁ ତୁମେ-ମାନେ ପ୍ରଥମେ ଋଷି ବ୍ରାହ୍ମଣ ମାନଙ୍କ ଦ୍ୱାରା କରାଯାଉଥିବା ଯଜ୍ଞ, ପୂଜନ, ଜପ, ତପ, ବ୍ରତ ଆଦି ବନ୍ଦ କରାଅ ସାରା ରାଜ୍ୟରେ ।'

ବୈଦିକ ବ୍ରାହ୍ମଣ ସଂସ୍କୃତି ମୂଳତଃ ବିଷ୍ଣୁଙ୍କୁ ପ୍ରସନ୍ନ କରିବାକୁ ଉଦ୍ଦିଷ୍ଟ, ସୁତରାଂ ଗୋ, ବ୍ରାହ୍ମଣ,ବର୍ଣ୍ଣ, ଆଶ୍ରମ ଧର୍ମ ପାଳନ କରାଉଥିବା ଆର୍ଯ୍ୟ ସଂସ୍କୃତିର ମୂଳ ଉତ୍ପାଟନ କର । ସଙ୍ଗେ ସଙ୍ଗେ ଅସୁର ମାନେ ସତ୍ତ୍ୱଗୁଣୀ ଲୋକଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରିଦେଲେ । ସମଗ୍ର ଧରିତ୍ରୀ ଗୋ, ବ୍ରାହ୍ମଣାଦିକଙ୍କ ପୀଡ଼ାରେ ଥରି ଉଠିଲା । ଗୋପାଳ ବସ୍ତିରେ ଅଗ୍ନି ସଂଯୋଗ କରନ୍ତେ ସୃଷ୍ଟି ହାହାକାର କରିଉଠିଲା । ଦେବତାମାନେ ସ୍ୱର୍ଗ ରାଜ୍ୟ ଛାଡ଼ି ପୃଥିବୀରେ ଲୁଚିଲେ ।

ପ୍ରଶ୍ନ-୧୮. ହରିଣ୍ୟାକ୍ଷ ମୃତ୍ୟୁରେ ତା'ର ପତ୍ନୀ ଓ ମାତା ଦିତି ଶୋକ ଅଭିଭୂତ ହେଲାବେଳେ ହିରଣ୍ୟ କଶିପୁ ସେମାନଙ୍କୁ କି ଭଳି ସାନ୍ତ୍ୱନା ଦେଲେ ?

ହିରଣ୍ୟ କଶିପୁ ଉବାଚ

**ଅମ୍ବ-ଅମ୍ବ ହେ ବଧୂଃ ପୁତ୍ରା          ବୀରଂ ମା-ଅର୍ହଥ ଶୋଚିତୁମ୍ ।**
**ରିପୋଃ ଅଭିମୁଖେ ଶ୍ଲାଘ୍ୟଃ          ଶୂରାଣାଂ ବଧ ଈପ୍ସିତଃ ॥୨୦॥**

ଉ.ହିରଣ୍ୟ କଶିପୁ କହିଲେ,'ହେ, ମାତ! ହିରଣ୍ୟାକ୍ଷ, ଯୁଦ୍ଧ କରୁ କରୁ ଦେହ ତ୍ୟାଗ କରି ବୀରଗତିକୁ ପ୍ରାପ୍ତ ହୋଇଛି । ତାଙ୍କ ପାଇଁ ଶୋକ କରିବା ଅନୁଚିତ । ଏ ସଂସାର କ୍ଷଣିକ ଆଶ୍ରୟ ଦାତା । ଏକ ଧର୍ମଶାଳା ମାତ୍ର । କେହି ଏଠାରେ ସବୁଦିନ ରହି ନାହାନ୍ତି କି ରହିବେ ନାହିଁ ମଧ ।

ଜୀବ ବାସ୍ତବରେ ଦେହ ନୁହେଁ ଆତ୍ମା । ଆତ୍ମା ଅମର । ସେ ଗୋଟିକ ପରେ ଗୋଟିଏ ଦେହ ତିଆରି କରିପାରେ । ଦେହ ପାଇଁ କାନ୍ଦିବା ଅବିବେକିତା ମାତ୍ର । ଏକ ଇତିହାସର କାହାଣୀ କହୁଛି-ଶୁଣ ମାତେଶ୍ୱରୀ ।

ଉଶୀନର ଦେଶରେ ସୁଯଜ୍ଞ ନାମରେ ଜଣେ ରାଜା ଥିଲେ । ସେ ଯୁଦ୍ଧ କରୁ କରୁ ଶତ୍ରୁ ହସ୍ତରେ ପ୍ରାଣ ତ୍ୟାଗ କଲେ । ଶବକୁ ଜ୍ଞାତି କୁଟୁମ୍ବ ଘେରି ବସିଲେ । ଯମଦୂତମାନଙ୍କୁ ଘଉଡ଼େଇବାରେ ଲାଗିଲେ । ଶୋକ ପ୍ରକଟ କଲେ । ରାଣୀମାନେ ବକ୍ଷରେ ହସ୍ତ ପିଟି ଭୂମିରେ ମସ୍ତକ ପିଟି କରୁଣ କନ୍ଦ୍ରନ କଲେ । ସେମାନେ ଶବଦାହ କରାଇ ଦେଲେ ନାହିଁ । ସୂର୍ଯ୍ୟଦେବ ଅସ୍ତମିତ ହୋଇଗଲେ । ରାଣୀମାନେ ବାସ୍ତବରେ ଶବଦାହ କରାଇ ନଦେବାର କାରଣ- ମାତ୍ରାଧିକ ଶୋକ ପ୍ରକଟ ନୁହେଁ । ପ୍ରଚଳିତ ପ୍ରଥା ଅନୁସାରେ ସେମାନଙ୍କୁ ରାଜାଙ୍କ ଶବ ସଙ୍ଗରେ ଅଗ୍ନି ପ୍ରବେଶ କରିବାକୁ ପଡ଼ିବା ଭୟ ଥିଲା ।'

ପ୍ରଶ୍ନ-୧୯. ସୁଯଜ୍ଞରାଜାଙ୍କ ଜ୍ଞାତି ଓ ରାଣୀ ମାନଙ୍କର (ପ୍ରେତବନ୍ଧୂନାଂ) ଅତ୍ୟନ୍ତ କରୁଣ ବିଳାପର କି ଅନ୍ତିମ ପରିଣତି ହେଲା ?

**ତତ୍ର ହ ପ୍ରେତବନ୍ଧୂନାଂ ଆଶ୍ରୁତ୍ୟ ପରିଦେବିତମ୍ ।**
**ଆହ ତାନ୍ ବାଳକୋ ଭୂତ୍ୱା ଯମଃ ସ୍ୱୟଂ ଉପାଗତଃ ॥୩୬॥**

ଉ. ଯମ ରାଜା ପ୍ରେତ ପୁରୀରୁ ନିଜେ ଆସି ପହଞ୍ଚିଲେ ସେଠାରେ । ବାଳକ ବେଶରେ ଦର୍ଶନ ଦେଲେ ।

ପ୍ରଶ୍ନ-୨୦. ଯମରାଜା ବାଳକ ବେଶରେ କହିଲେ, 'ଆହା, କି ଆଶ୍ଚର୍ଯ୍ୟ କଥା ! ଆପଣମାନେ ମୋ ଠାରୁ ବୟସରେ କେତେ ବଡ଼ ! କେତେ ଲୋକ ମରୁଛନ୍ତି । ଏ ଜଣେ ଆଜି ମରିବେ । କିଏ ଜାଣେ କାଲି କାହା ପାଳି ପଡ଼ିବ ? ତଥାପି ଆପଣମାନେ ଜଣକ ମରଣ ଲାଗି ଏତେ ବ୍ୟାକୁଳ ।' ମୃତ୍ୟୁ କବଳରୁ କିଏ ରକ୍ଷା ପାଇପାରେ ବୋଲି ଯମ ଦେବତା କହିଲେ ?

**ଅହୋ ବୟଂ ଧନ୍ୟତମା ଯତ୍ଅତ୍ର**
**ତ୍ୟକ୍ତାଃ ପିତୃଭ୍ୟାଂ ନ ବିଚିନ୍ତୟାମଃ ।**
**ଅଭକ୍ଷ୍ୟମାଣା ଅବଳା ବୃକ୍ ଆଦିଭିଃ**
**ସ ରକ୍ଷିତା ରକ୍ଷତି ଯୋ ହି ଗର୍ଭେ ॥୩୮॥**

ଉ. ଯମରାଜ କହିଲେ,'ଆହା, ଆମେ କେତେ ଭଗ୍ୟବାନ, ଆମ ପିତା ମାତା ଆମକୁ ଜନ୍ମ ସିନା ଦେଲେ କିନ୍ତୁ ମୃତ୍ୟୁ ମୁଖରୁ ବଂଚେଇ ରଖିବା କଥା ଚିନ୍ତା କଲେ ନାହିଁ । ଆମକୁ ଜନ୍ମ ପୂର୍ବରୁ ଯେଉଁ ପରମାତ୍ମା ଗର୍ଭମଧରେ ପାଳନ ପୋଷଣ କରୁଥିଲେ ସେ ହିଁ ନିଶ୍ଚୟ ଆମକୁ ଏ ପର୍ଯ୍ୟନ୍ତ ରକ୍ଷା କରିଛନ୍ତି । ତାଙ୍କ ଶରଣଗଲେ ସେ ଆମକୁ ରକ୍ଷା କରନ୍ତେ ।'

ପ୍ରଶ୍ନ-୨୧. ଏ ସୃଷ୍ଟି ସେଇ ପରମେଶ୍ୱରଙ୍କ କ୍ରୀଡ଼ାଭୂମି । ସେ ସିନା ଆମକୁ କ୍ରୀଡ଼ା କରାଉଅଛନ୍ତି । ସେ କ'ଣ ଆମ ସହିତ ନିଜେ ମଧ କ୍ରୀଡ଼ା କରୁଛନ୍ତି ?

**ପଥି ଚ୍ୟୁତଂ ତିଷ୍ଠତି ଦିଷ୍ଟରକ୍ଷିତଂ**
**ଗୃହେ ସ୍ଥିତଂ ତତ୍ ବିହତଂ ବିନଶ୍ୟତି ।**
**ଜୀବତି-ଅନାଥୋଽପି ତଦ୍ ଈକ୍ଷିତୋ ବନେ**
**ଗୃହେଽପି ଗୁପ୍ତୋଽସ୍ୟ ହତୋ ନ ଜୀବତି ॥୪୦॥**

ଉ. ତାଙ୍କ କୃପାହେଲେ ଆମ ନିଜ ଧନ ବାଟରେ ପଡ଼ିଗଲେ ମଧ କେହି ନେଇ ପାରନ୍ତି ନାହିଁ । ତାହା ଆମକୁ ମିଳେ । ଅନ୍ୟଥା ଆମ ଗୃହ ସାଇତା ଧନ ବିନାଶ ହୋଇଯାଏ । ତାଙ୍କ ରକ୍ଷଣରେ ବଣ ଜଙ୍ଗଲରେ ମଧ ମନୁଷ୍ୟଙ୍କୁ ହିଂସ୍ର ପଶୁ ଖାଇପାରନ୍ତି ନାହିଁ । ସେ ରକ୍ଷା ନ କଲେ ଆମେ ନିଜ ଗୃହରେ ରହି ମଧ ମରିଯାଉଛେ ।

ଦେହ ଓ ଆତ୍ମା ଦୁଇଟି ଅଲଗା ବସ୍ତୁ । ଜଡ଼ ଚେତନ, ନାଶବାନ୍-ଅବିନାଶୀ କଥା ନ ଜାଣିପାରିଲେ ଜୀବ ଦୁଃଖ ଭୋଗେ । ଆମର ଗୃହରେ ଅବଶ୍ୟ ଆମେ ରହୁ । ଆମଠାରୁ ଆମ ଗୃହ କିନ୍ତୁ ଭିନ୍ନ । ସେହି ଭଳି ଆମେ ଦେହରେ ଥାଇ ଦେହ ଠାରୁ ଭିନ୍ନ । ଦେଖନ୍ତୁ- କାଠ ମଧରେ ଅଗ୍ନି ଲୁଚି ରହେ । ଅଗ୍ନି କିନ୍ତୁ କାଠ ଠାରୁ ଭିନ୍ନ । ସେହିଭଳି ଆକାଶରେ ମେଘ ସୃଷ୍ଟି ହୁଏ । ବିନାଶ ମଧ ହୁଏ । କିନ୍ତୁ ଆକାଶ ସବୁବେଳେ ଥିଲା, ଅଛି ଓ ରହିବ ମଧ । ମେଘର ସୃଷ୍ଟି ବିନାଶ ଦୁଇକଥା ହେଉଥାଏ ।

ତୁମେ ମାନେ ଯଦି ରାଜାଙ୍କ ଦେହକୁ ରାଜା ମାନୁଥାଅ ତେବେ ତ' ସେ ଏବେ ତୁମ ପାଖରେ ଅଛନ୍ତି । ଅନ୍ୟ ପକ୍ଷରେ ଯଦି ଆତ୍ମା ମାନୁଥାଅ ତେବେ ସେ ପୁଣି ଅନ୍ୟ ଦେହକୁ ଆଶ୍ରୟ କରିବେଣି । ଆମ ସମସ୍ତଙ୍କର ଦେହ ନାଶବାନ୍ । ଆଜି ରାଜାଙ୍କ ଦେହ ନାଶ ହେବ । କାଲି ଆମମାନଙ୍କର ମଧ ନାଶ ଯିବ ।

ପ୍ରଶ୍ନ-୨୨. ତେବେ ସଂସାରରେ ଜଣେ ମରିଗଲେ ଲୋକେ ଶୋକ କରନ୍ତି କାହିଁକି ?

**ଅଥ ନିତ୍ୟଂ ଅନିତ୍ୟଂ ବା ନ-ଇହ ଶୋଚନ୍ତି ତଦ୍‌ବିଦଃ ।**
**ନ-ଅନ୍ୟଥା ଶକ୍ୟତେ କର୍ତ୍ତୁଂ ସ୍ୱଭାବଃ ଶୋଚତାଂ ଇତି ॥୪୯॥**

ଉ. ଦେହ (ଜଡ଼), ଆତ୍ମା (ଚେତନ) ଦୁହିଁଙ୍କୁ ତତ୍ତ୍ୱତଃ ଅନୁଭବରେ ନ ଆଣିବା ଲୋକେ ଶୋକ କରନ୍ତି । ଆତ୍ମସାକ୍ଷାତକାର କରିଥିବା ଲୋକ ଶୋକ କରିବ କିପରି ? କେତେ ସୁନ୍ଦର ଯମରାଜାଙ୍କ ପ୍ରବଚନ ! !

ପ୍ରଶ୍ନ-୨୩. ତଥାପି ସୁଯଜ୍ଞଙ୍କ ପାଇଁ ଶୋକକରୁଥିବା ଲୋକେ କଥାଟିକୁ ଆଦୌ ବୁଝିପାରିଲେ ନି । ସୁତରାଂ ଜୀବନ-ମୃତ୍ୟୁର କଠିନ ରହସ୍ୟକୁ ଯମରାଜା କେଉଁ ଦୃଷ୍ଟାନ୍ତ ଆଧାରରେ ବୁଝାଇବାକୁ ଚେଷ୍ଟା କଲେ ?

**ଲୁବ୍‌ଧକୋ ବିପିନେ କଶ୍ଚିତ୍ ପକ୍ଷିଣାଂ ନିର୍ମିତୋଽନ୍ତକଃ ।**
**ବିତତ୍ୟ ଜାଲଂ ବିଦଧେ ତତ୍ର ତତ୍ର ପ୍ରଲୋଭୟନ୍ ॥୫୦॥**

ଉ. କହିଲେ,'ଥରେ ବଣରେ ଏକ ଶିକାରୀ ପକ୍ଷୀ ଧରିବାକୁ ଜାଲଟିଏ ବିଛାଇ ଖୁଦ ବୁଣି ଜଗି ରହିଲା । ସେଠାରେ ଏକ କଜଳପାତୀ ଦମ୍ପତି ଛୁଆ ପିଲାମାନଙ୍କୁ ଧରି ରହୁଥିଲେ । ଦେଖାଗଲା ପ୍ରଥମେ ଖୁଦ ଲୋଭରେ ପିଲାମାନେ ଜାଲରେ ପଡ଼ି ଶିକାରୀ ଦ୍ୱାରା ଧରାଗଲେ । ତା ପାଇଁ ଶୋକ କରି ବିଚରା ମାଈ ପକ୍ଷୀଟି ମଧ୍ୟ ଧରା ପଡ଼ି ମଲା । ଆଛା,ପୁରୁଷ ପକ୍ଷୀଟି ସେମାନଙ୍କ ପାଇଁ ଶୋକ କରି ଜାଲରେ ଧରା ପଡ଼ି ମରିବା ବୁଦ୍ଧିମାନର କାମ କି ?' ଏହା କହି ଯମରାଜା ସେଠାରୁ ଅନ୍ତର୍ହିତ ହୋଇଗଲେ ।

ପ୍ରଶ୍ନ-୨୪. ହିରଣ୍ୟ କଶିପୁଙ୍କ କଥା ଶୁଣି ମାତା ଦିତି ଓ ପୁତ୍ରବଧୂ ଋଷଭାନୁ ଆଦି କଣ ଶୋକ ମୁକ୍ତ ହୋଇପାରିଲେ ?

ନାରଦ ଉବାଚ

**ଇତି ଦୈତ୍ୟପତେଃ ବାକ୍ୟଂ ଦିତିଃ ଆକର୍ଣ୍ଣ୍ୟ ସସ୍ନୁଷା ।**
**ପୁତ୍ର ଶୋକଂ କ୍ଷଣାତ୍ ତ୍ୟକ୍ତ୍ୱା ତତ୍ତ୍ୱେ ଚିତ୍ତଂ ଅଧାରୟତ୍ ॥୬୧॥**

ଉ. ଦୈତ୍ୟମାତା ଦିତି କଶ୍ୟପ ଋଷିଙ୍କ ପତ୍ନୀ ଥିଲେ । ତେଣୁ ପୁତ୍ରବଧୂ (ସସ୍ନୁଷା) ସହିତ ଦିତି ତତ୍ତ୍ୱ ଚିନ୍ତନ କରି ଶୋକ ମୁକ୍ତ ହୋଇଗଲେ ।

# ଅଥ ୩ୟ ଅଧ୍ୟାୟଃ

## (ହିରଣ୍ୟ କଶିପୁଙ୍କର ଅମର ବର ପ୍ରାର୍ଥନା)

ପ୍ରଶ୍ନ-୨୫.ଭାଇ ହିରଣ୍ୟାକ୍ଷର ମୃତ୍ୟୁରେ ନାରାୟଣ ଉପରେ ଅତ୍ୟନ୍ତ କ୍ରୁଦ୍ଧ ହେଲେ ହିରଣ୍ୟ କଶିପୁ । ଏବେ ଭଗବାନ ମାରଣ ଯୋଜନା କଲେ ଅନ୍ୟାନ୍ୟ ଅସୁରମାନଙ୍କ ସହିତ ହସ୍ତ ମିଳାଇ । ଏଭଳି ଅଦ୍ଭୁତ ଇଚ୍ଛା ପଛପଟେ କେଉଁ ଅଜଣା ଉଦ୍ଦେଶ୍ୟ ଲୁଚି ରହିଥିଲା ତାଙ୍କର ?

ନାରଦ ଉବାଚ

**ହିରଣ୍ୟ କଶିପୁ ରାଜନ୍ ଅଜେୟଂ ଅଜରଂ ଅମରମ୍ ।**
**ଆତ୍ମାନଂ ଅପ୍ରତିଦ୍ୱନ୍ଦ୍ୱଂ ଏକରାଜଂ ବ୍ୟଧିତ୍‌ସତ ।।୧।।**

ଉ. ସମଗ୍ର ସୃଷ୍ଟିର ଏକ ଛତ୍ର ଶାସକ, ଅପ୍ରତିଦ୍ୱନ୍ଦୀ ବୀର ହୋଇ ବିଳାସ ବ୍ୟସନରେ ରହି ବିଷୟ ଭୋଗ କରି ଅଖଣ୍ଡ ଜୀବନ ଲାଭ କରିବା । ଅନ୍ୟ ଶବ୍ଦରେ ମୃତ୍ୟୁ ଉପରେ ବିଜୟ । ସେ ଜାଣିଥିଲେ ତପସ୍ୟା ଦ୍ୱାରା ଅଦ୍ଭୁତ ଶକ୍ତି ଐଶ୍ୱର୍ଯ୍ୟ ଲାଭ କରାଯାଏ । ସେ ମନ୍ଦରାଚଳ ପର୍ବତ ଉପରେ କଠିନ ତପସ୍ୟା କଲେ ସୃଷ୍ଟି କର୍ତ୍ତାଙ୍କୁ ପ୍ରସନ୍ନ କରିବା ଲକ୍ଷ୍ୟରେ । ସ୍ୱଭାବତଃ ବିଷ୍ଣୁପାର୍ଷଦ ହୋଇଥିବାରୁ ତାଙ୍କର ତପସ୍ୟା ସଫଳ ହେଲା । ଅନେକ ଅଲୌକିକ ଘଟଣା ଘଟିଲା ତାଙ୍କ ତପସ୍ୟା ସ୍ଥଳରେ । ତାଙ୍କ ଜଟା ଜୁଟ ମଣ୍ଡିତ ଶରୀର ପ୍ରଳୟକାଳୀନ ସୂର୍ଯ୍ୟଙ୍କ କିରଣ ଭଳି ଲାଲ ଦେଖାଗଲା । ସେ ଆଲୋକ ଶକ୍ତି ଏତେ ପ୍ରଭାବଶାଳୀ ଥିଲା ଯେ ସମଗ୍ର ଆକାଶ ମଣ୍ଡଳ ଆଲୋକିତ ହୋଇଗଲା । ସୂର୍ଯ୍ୟ ଚନ୍ଦ୍ରଙ୍କ ପ୍ରଭାବ ହ୍ରାସ ପାଇଲା । ଦେବୀ ଦେବତାମାନେ ନିଷ୍ପ୍ରଭ ହୋଇଗଲେ । ସାଗର, ପର୍ବତ, ଭୂମଣ୍ଡଳ, ପ୍ରକମ୍ପିତ ହେଲେ ଭୟରେ । ଦେବଗଣ ପହଞ୍ଚିଲେ ବ୍ରହ୍ମାଜୀଙ୍କ ପାଖରେ ଗୁହାରି କଲେ ସୃଷ୍ଟି ରକ୍ଷଣ ଲାଗି ।

ବ୍ରହ୍ମାଜୀ ପଚାରିଲେ ଅସୁର ରାଜଙ୍କ ତପସ୍ୟାର ଲକ୍ଷ୍ୟ । ଦେବତାମାନେ ଉତ୍ତର ଦେଲେ-ସେ ଚାହାନ୍ତି ଇନ୍ଦ୍ର-ଆସନ, ସ୍ୱର୍ଗରାଜ୍ୟ ଭୋଗ କରିବା ପାଇଁ ଅଜର, ଅମର, ଅପ୍ରତିଦ୍ୱନ୍ଦୀ ବୀର ହେବାପାଇଁ । ଇନ୍ଦ୍ରାସନ ପ୍ରାପ୍ତି ପରେ, ବ୍ରହ୍ମାପଦ ମଧ୍ୟ ତାଙ୍କର ଲକ୍ଷ୍ୟ ଥାଇପାରେ । କାରଣ ତାଙ୍କର ଅନ୍ତିମ ଲକ୍ଷ୍ୟ ଭଗବାନ ଶ୍ରୀହରି ବିଷ୍ଣୁଙ୍କୁ ହତ୍ୟା କରିବା । ବୈଷ୍ଣବମାନଙ୍କୁ ପୀଡ଼ା ଯାତନା ଦେବା ।

ପ୍ରଶ୍ନ-୨୬. ଇନ୍ଦ୍ର ଆଦି ଦେବତା ମାନଙ୍କୁ ସାଙ୍ଗରେ ଧରି ମରାଳ ବାହନରେ ବସି ବ୍ରହ୍ମାଜୀ ମନ୍ଦରାଚଳରେ ପହଞ୍ଚି କ'ଣ ଦେଖିଲେ ?

**ନ ଦଦର୍ଶ ପ୍ରତିଚ୍ଛନ୍ନଂ ବଲ୍ମୀକ ତୃଣ କୀଚକୈଃ ।**
**ପିପୀଲିକାଭିଃ ଆଚୀର୍ଣ୍ଣଂ ମେଦ ତ୍ୱକ୍ ମାଂସ ଶୋଣିତମ୍ ॥୧୫॥**

ଉ. ହିରଣ୍ୟ କଶିପୁଙ୍କ ଦେହ ଉଇହୁଙ୍କା, ଘାସ, ବାଉଁଶ ପତ୍ର ଆଦି ଦ୍ୱାରା ଆଚ୍ଛନ୍ନ ହୋଇଛି । ଦେହରୁ ରକ୍ତ, ମାଂସ, ଚର୍ମ, ଚର୍ବି, ଆଦିକୁ ଉଇମାନେ ଚାଟି ଖାଇ ସାରିଲେଣି, ଅଛି କେବଳ ଅସ୍ଥିସାର କଂକାଳ ମାତ୍ର ।

ବ୍ରହ୍ମଦେବ ଦୈତ୍ୟରାଜଙ୍କ ତପସ୍ୟାର ଭୂରି ଭୂରି ପ୍ରଶଂସା କଲେ । ତାଙ୍କୁ ଯେ କୌଣସି ବର ଦେବାକୁ ଆଶ୍ୱସନା ଦେଇ ତପସ୍ୟା ବନ୍ଦ କରିବାକୁ ପରାମର୍ଶ ଦେଲେ ବ୍ରହ୍ମାଜୀ ।

ପ୍ରଶ୍ନ-୨୭. ଅସୁରରାଜଙ୍କ ଦେହ ଉଇ (ପିପୀଲିକୈଃ) ଖାଇସାରିଥିଲେ । ସେ ତପସ୍ୟାରୁ ଉଠିଲେ କିପରି ?

**ଇତି-ଉକ୍ତ୍ୱା-ଆଦିଭବୋ ଦେବୋ ଭକ୍ଷିତ-ଅଙ୍ଗ ପିପୀଲିକୈଃ ।**
**କମଣ୍ଡଳୁ ଜଳେନ-ଔକ୍ଷତ୍ ଦିବ୍ୟେନ-ଅମୋଘ ରାଧସା ॥୨୨॥**

ଉ. ଭଗବାନ ବ୍ରହ୍ମାଜୀ (ଆଦି ଭବୋ ଦେବୋ)ତାଙ୍କ ଦିବ୍ୟ କମଣ୍ଡଳୁରୁ ଅଭିମନ୍ତ୍ରିତ ଜଳ ସିଞ୍ଚନ କଲେ ଅସୁର ରାଜଙ୍କ ଦେହରେ । ତପ, ପବିତ୍ର ଦେହ ଧରି ବାହାରି ଆସିଲେ ହିରଣ୍ୟ କଶିପୁ । ପ୍ରଣାମ କଲେ ବ୍ରହ୍ମଦେବଙ୍କୁ ।

ପ୍ରଶ୍ନ-୨୮. ସେ କିଭଳି ଶବ୍ଦରେ ସ୍ତୁତି କରି ପ୍ରସନ୍ନ କଲେ ବେଦଗର୍ଭ ବ୍ରହ୍ମାଜୀଙ୍କୁ ?

**ନମ ଆଦ୍ୟାୟ ବୀଜାୟ ଜ୍ଞାନ ବିଜ୍ଞାନ ମୂର୍ତ୍ତୟେ ।**
**ପ୍ରାଣ-ଇନ୍ଦ୍ରିୟ ମନୋ ବୁଦ୍ଧି ବିକାରୈଃ ବ୍ୟକ୍ତିଂ ଈୟୁଷେ ॥୨୮॥**

ଉ. କହିଲେ, 'ହେ' ଆଦି ପୁରୁଷ ! ଅଦୃଶ୍ୟମାନ କାରଣ ଅବସ୍ଥାରେ ପଡ଼ିଥିବା ସୃଷ୍ଟିକୁ ନିଜ ମନ-ପ୍ରାଣ-ଇନ୍ଦ୍ରିୟ-ବୁଦ୍ଧି ବଳରେ ଦୃଶ୍ୟମାନ (କାର୍ଯ୍ୟ ଅବସ୍ଥାରେ ରୂପାନ୍ତରଣ) କରିଥିବା (ବ୍ୟକ୍ତିଂ ଈୟୁଷେ) ଭଗବାନ ରୂପେ ମୁଁ ଆପଣଙ୍କୁ ସଭକ୍ତିକ ପ୍ରଣାମ କରୁଛି ।'

ପ୍ରଶ୍ନ-୨୯. ଦଶଟି ଶ୍ଳୋକ (୨୬-୩୫) ରେ ସ୍ତୁତି କରି ଦୈତ୍ୟେନ୍ଦ୍ର ହିରଣ୍ୟ କଶିପୁ କି ବର ପ୍ରାର୍ଥନା କଲେ ?

**ଯଦି ଦାସ୍ୟସି- ଅଭିମତାନ୍ ବରାନ୍ ମେ ବରଦ -ଉତ୍ତମ ।**
**ଭୂତେଭ୍ୟଃ ତ୍ୱତ୍ ବିସୃଷ୍ଟେଭ୍ୟଃ ମୃତ୍ୟୁଃ ମା ଭୂତ୍ ମମ ପ୍ରଭୋ ||୩୫||**

ଉ. କହିଲେ, 'ଆପଣଙ୍କ ସୃଷ୍ଟ ଦେବତା-ଦାନବ-ମାନବ-ପଶୁ-ପକ୍ଷୀ ଇତ୍ୟାଦି କୌଣସି ପ୍ରାଣୀ ହାତରେ ମୁଁ ଯେଭଳି ନ ମରେ (ମୃତ୍ୟୁଃ ମା ଭୂତ୍) । ଏହି ମନୋ ବାଞ୍ଛିତ (ଅଭିମତାନ୍ ବରାନ୍) ବର ମୋତେ ପ୍ରଦାନ କରନ୍ତୁ ।

ପୁଣି ମୁଁ ଗୃହ ଭିତରେ, ଗୃହ ବାହାରେ,କୌଣସି ଅସ୍ତ୍ର-ଶସ୍ତ୍ରରେ, ଜଳରେ, ସ୍ଥଳରେ, ଅକାଶରେ ମରିବି ନାହିଁ । ମୁଁ ସମଗ୍ର ସୃଷ୍ଟିରେ ଅପ୍ରତିଦ୍ୱନ୍ଦୀ ବୀର ହୋଇ ବିଷୟ ଉପଭୋଗ କରିବି ଅନନ୍ତ ଯୌବନ ଶକ୍ତି ବଳରେ ।'

ପ୍ରଶ୍ନ-୩୦. ଇନ୍ଦ୍ର ଆଦି ବଡ଼ ବଡ଼ ସମର୍ଥବାନ ଲୋକ ପାଳମାନେ ସୃଷ୍ଟି ରକ୍ଷା କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ତଥାପି ସେ ଅପ୍ରତିଦ୍ୱନ୍ଦୀ ବୀର ହେବା ପାଇଁ କ'ଣ ସେମାନଙ୍କୁ ମରିବାକୁ ପଡ଼ିବ ବୋଲି ବର ମାଗିଲେ ?

**ସର୍ବେଷାଂ ଲୋକ ପାଳାନାଂ ମହିମାନଂ ଯଥା-ଆତ୍ମନଃ ।**
**ତପୋ ଯୋଗ ପ୍ରଭାବାଣାଂ ଯତ୍ ନ ରିଷ୍ୟତି କର୍ହିଚିତ୍ ||୩୮||**

ଉ. ନା,ନା, ସକଳ ଦେବତା, ଲୋକ ପାଳମାନେ ଏଣିକି ବ୍ରହ୍ମାଜୀଙ୍କ ସେବା ନ କରି ଅସୁର ରାଜାଙ୍କ ସେବାରେ ସଂଲଗ୍ନ ହେବେ । ଏପର୍ଯ୍ୟନ୍ତ ତାଙ୍କ ଦ୍ୱାରା କରାଯାଇଥିବା ତପସ୍ୟା ଓ ଅଲୌକିକ ଯୋଗ ଶକ୍ତି ତାଙ୍କ ସାଙ୍ଗରେ ଅକ୍ଷୟ ହୋଇ ରହୁ । ଅର୍ଥାତ ସବୁଦିନ ପାଇଁ ସେ ଅଜର, ଅମର, ଓ ଅଜେୟ ହେବା ବର ମାଗିଲେ ।

# ଅଥ ୪ର୍ଥ ଅଧ୍ୟାୟଃ

## (ସମଗ୍ର ବ୍ରହ୍ମାଣ୍ଡରେ ହିରଣ୍ୟ କଶିପୁଙ୍କ ଆତଙ୍କରାଜ)

## ନାରଦ ଉବାଚ

ପ୍ରଶ୍ନ-୩୧. ଏଭଳି ଅଭୁତ ପୂର୍ବ ଅଶ୍ରୁତ ପୂର୍ବ ଦୁର୍ଲ୍ଲଭ ବର ଦେବା ପାଇଁ କ'ଣ ସୃଷ୍ଟି କର୍ତ୍ତା ବ୍ରହ୍ମାଜୀ (ଶତଧୃତିଃ) ମନା କରିଦେଲେ ?

**ଏବଂ ବୃତ୍ତଃ ଶତଧୃତିଃ ହିରଣ୍ୟ କଶିପୋଃ ଅଥ ।**
**ପ୍ରାଦାତ୍ ତତ୍ ତପସା ପ୍ରୀତୋ ବରାନ୍ ତସ୍ୟ ସୁଦୁର୍ଲ୍ଲଭାନ୍ ||୧||**

ଉ. ଆଦୌ ଅମଙ୍ଗ ହେଲେ ନାହିଁ । ବରଂ ପ୍ରସନ୍ନ ହୋଇ ଏବଂ ଅସ୍ତୁ ବୋଲି ଆଶୀର୍ବାଦ କରି ଅନ୍ତର୍ହିତ ହୋଇଗଲେ ।

ପ୍ରଶ୍ନ-୩୨. ହିରଣ୍ୟ କଶିପୁ ବ୍ରହ୍ମାବରରେ ବଳୀୟାନ ହୋଇ ଶ୍ରୀହରି ବିଷ୍ଣୁଙ୍କ ପ୍ରତି ଦ୍ୱେଷ କଲେ କାହିଁକି ?

**ଏବଂ ଲବ୍ଧ ବରୋ ଦୈତ୍ୟୋ ବିଭ୍ରତ୍ ହେମମୟଂ ବପୁଃ ।**
**ଭଗବତି-ଅକରୋତ୍ ଦ୍ୱେଷଂ ଭ୍ରାତୁଃ ବଧଂ ଅନୁସ୍ମରନ୍ ।।୪।।**

ଉ. ଭାଇ ହିରଣ୍ୟାକ୍ଷର ହତ୍ୟାକାରୀ ଭଗବାନ୍ ବିଷ୍ଣୁଙ୍କ ପ୍ରତି ପ୍ରତିହିଂସା ପରାୟଣ ହେବା କାରଣରୁ । ତପଶକ୍ତି ବଳରେ ବ୍ରହ୍ମଦେବଙ୍କ କମଣ୍ଡଳୁ ଜଳ ଦ୍ୱାରା ତାଙ୍କୁ ସୁବର୍ଣ୍ଣ ସଦୃଶ ପ୍ରକାଶମାନ ଶରୀର ମିଳି ସାରିଥିଲା ସେତେବେଳେକୁ ।

ସ୍ୱ ତପ ଶକ୍ତି ବଳରେ ସେ ସକଳ ଦିଗ, ସକଳ ରାଜ୍ୟ ଓ ସକଳ ଲୋକ ଜୟ କରି ଅଖଣ୍ଡ ଐଶ୍ୱର୍ଯ୍ୟ ଭୋଗ କରିବାରେ ଲାଗିଲେ । ସ୍ୱର୍ଗର ନନ୍ଦନ କାନନରେ ବାସ କଲେ କୟାଧୁ ରାଣୀଙ୍କୁ ଧରି । ବ୍ରହ୍ମା-ବିଷ୍ଣୁ-ଶଙ୍କର ତିନି ଠାକୁରଙ୍କ ବ୍ୟତୀତ ଅନ୍ୟ ସକଳ ଯକ୍ଷ-ରକ୍ଷ-କିନ୍ନର-ଅପସରା ଦେବୀ ଦେବତାଙ୍କୁ ନିଜ ସେବା କାର୍ଯ୍ୟରେ ନିଯୁକ୍ତ କରାଇଲେ । ଯଜ୍ଞରେ ଅଗ୍ନିଙ୍କୁ, ବିଷ୍ଣୁଙ୍କୁ ଆହୂତି ନ ଦେଇ ତାଙ୍କୁ ଦେବାର ବ୍ୟବସ୍ଥା କରାଇଲେ ।

ପ୍ରଶ୍ନ-୩୩. ଏଭଳି ଅକଥନୀୟ ଅସହ୍ୟ ଅତ୍ୟାଚାର ସର୍ବଂସହା ଧରିତ୍ରୀ ସହିଲେ କିପରି ?

**ଅକୃଷ୍ଟ ପଚ୍ୟା ତସ୍ୟ-ଆସୀତ୍ ସପ୍ତଦ୍ୱୀପ ବତୀ ମହୀ ।**
**ତଥା କାମ ଦୁଘା ଗାବୋ ନାନା- ଆଶ୍ଚର୍ଯ୍ୟ ପଦଂ ନଭଃ ।।୧୬।।**

ଉ. ବ୍ରହ୍ମାଙ୍କ ବର ମାନିନେଲେ ସେ ମଥା ପାତି । ଏପରିକି ବିନା କୃଷିରେ (ଅକୃଷ୍ଟ) ମଧ୍ୟ ଅନ୍ନ, ଔଷଧ, ଫଳ ଫୁଲ ଆଦି ଦେଲେ । ଗୋ ମାତା ବିନା ବାଛୁରୀରେ ଦୁଗ୍ଧ ଦେଲେ । ଆକାଶ ସର୍ବଦା କିଛି କିଛି ଅଲୌକିକ ଘଟଣା ମଧ୍ୟ ଦେଖାଇବାକୁ ବାଧ ହେଲେ ରାଜାଙ୍କ ଆଦେଶରେ ତାଙ୍କ ମନୋରଞ୍ଜନ ଉଦ୍ଦେଶ୍ୟରେ ।

ଅଗ୍ନି, ବାୟୁ, ଇନ୍ଦ୍ର, ଯମ ରାଜାଙ୍କ କାରବାର ଏଣିକି ହିରଣ୍ୟ କଶିପୁଙ୍କ ଆଦେଶରେ ଚାଲିଲା । ଅମାପ ଅଲୌକିକ ଐଶ୍ୱର୍ଯ୍ୟ ହଜାର ହଜାର ବର୍ଷ ଭୋଗ କରି ମଧ୍ୟ ତାଙ୍କ ଇନ୍ଦ୍ରିୟ ତୃପ୍ତି ହେଉ ନଥାଏ । ଦେବତା ମାନଙ୍କ ପୀଡ଼ା ସୀମା ଲଙ୍ଘନ କଲା । ସେମାନେ ବାଧ ହୋଇ ବ୍ରହ୍ମାଜୀ ଓ ଶଙ୍କରଜୀଙ୍କୁ ସଙ୍ଗରେ ନେଇ ପୁରୁଷ ସୂକ୍ତ

ଗାନ କରି ଭଗବାନ ନାରାୟଣଙ୍କୁ ପ୍ରସନ୍ନ କଲେ ।

ପ୍ରଶ୍ନ–୩୪. ବ୍ରହ୍ମାଜୀ ଓ ଦେବତା ମାନଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ ସେମାନଙ୍କୁ ଅଭୟ ଦାନ କରି କ'ଣ କରିବାକୁ ପରାମର୍ଶ ଦେଲେ ?

**ଜ୍ଞାତଂ ଏତସ୍ୟ ଦୌରାତ୍ମ୍ୟଂ ଦୈତେୟ-ଅପସଦସ୍ୟ ଚ ।**
**ତସ୍ୟ ଶାନ୍ତିଂ କରିଷ୍ୟାମି କାଳଂ ତାବତ୍ ପ୍ରତୀକ୍ଷତ ॥୨୬॥**

ଉ. ଭଗବାନ କହିଲେ, 'ମହାନ୍ ଅସୁର (ଅପସଦସ୍ୟ) ହିରଣ୍ୟ କଶିପୁଙ୍କର ଅତ୍ୟାଚାର ଖବର-ମୋତେ ଜଣା ଅଛି । ମୁଁ ତାଙ୍କୁ ଶାନ୍ତ କରିବାର ସମୁଚିତ ବ୍ୟବସ୍ଥା କରୁଛି । ତୁମେମାନେ ସେ ସମୟ ପର୍ଯ୍ୟନ୍ତ ଅପେକ୍ଷା କର । ଠିକଣା ସମୟ ଆସୁ । ଠିକଣା ଉପାୟ କରାଯିବ ।'

ପ୍ରଶ୍ନ–୩୫. ସେ ସମୟ କେବେ କିପରି ଆସିଲା ବୋଲି ଜଣା ପଡ଼ିବ ?

**ଯଦା ଦେବେଷୁ ବେଦେଷୁ ଗୋଷୁ ବିପ୍ରେଷୁ ସାଧୁଷୁ ।**
**ଧର୍ମେ ମୟି ଚ ବିଦ୍ୱେଷଃ ସ ବା ଆଶୁ ବିନଶ୍ୟତି ॥୨୭॥**

ଉ. ଜଣେ ଅସୁର ଦେବ, ବେଦ, ଗୋ, ବ୍ରାହ୍ମଣ, ସାଧୁ, ଧର୍ମ, ଓ ଈଶ୍ୱର (ମୟି) ବିଦ୍ୱେଷୀ ହେଲେ ଜାଣିବ ତାର ମୃତ୍ୟୁକାଳ ସନ୍ନିକଟ ।

ଦେବତାମାନେ ଫେରି ଆସିଲେ ସ୍ୱର୍ଗକୁ । ଅସୁରରାଜ ହିରଣ୍ୟ କଶିପୁଙ୍କର ଚାରି ପୁତ୍ର ହେଲେ । ସେମାନଙ୍କ ମଧ୍ୟରେ ପ୍ରହ୍ଲାଦ କନିଷ୍ଠ କିନ୍ତୁ ଜଣେ ସର୍ବଶ୍ରେଷ୍ଠ ବିଷ୍ଣୁ ଭକ୍ତ ଥିଲେ । ଅସୁର କୁଳରେ ଜନ୍ମ ଲାଭ କରି ସେ ଏପରି ଜଣେ ଆଦର୍ଶ ଭକ୍ତ ଥିଲେ ଯେ-ବଡ଼ ବଡ଼ ମୁନୀନ୍ଦ୍ର, ଯୋଗୀନ୍ଦ୍ର, ଦେବତାମାନେ ମଧ୍ୟ ଆଲୋଚନା ବେଳେ ତାଙ୍କ ସଦ୍‌ଗୁଣମାନଙ୍କର ଉଦାହରଣ ଦିଅନ୍ତି । ପିଲାଦିନେ ସେ ପିଲାଖେଳ ନ ଖେଳି ମନରେ ଶ୍ରୀକୃଷ୍ଣ ଚିନ୍ତନ କରୁଥିଲେ । ଆମଭଳି ସେ ସଂସାରକୁ ଜଡ଼ ବୁଦ୍ଧିରେ ନ ଦେଖି ବିଷ୍ଣୁମୟ ଦେଖୁଥିଲେ ।

ପ୍ରଶ୍ନ–୩୬. ସାରା ସଂସାରକୁ ବିଷ୍ଣୁମୟ ଦେଖିଲେ ସେ ଖାଇବା ପିଇବା, ବସିବା ଉଠିବା ଆଦି ସଂସାରୀ କର୍ମ କରୁଥିଲେ କିପରି ?

**ଆସୀନଃ ପର୍ଯ୍ୟଟନ୍ ଅଶ୍ନନ୍ ଶୟାନଃ ପ୍ରପିବନ୍ ବ୍ରୁବନ୍ ।**
**ନ-ଅନୁସନ୍ଧତେ ଏତାନି ଗୋବିନ୍ଦ ପରିରମ୍ଭିତଃ ॥୩୮॥**

ଉ.ବସିବା, ବୁଲଚାଲ କରିବା, ଖାଇବା, ଶୋଇବା, ପିଇବା,ଇତ୍ୟାଦି ସେ ତାଙ୍କ ମନଦ୍ୱାରା କରୁ ନଥିଲେ । ସେ ସକଳ କାର୍ଯ୍ୟ ମାୟାଧୀଶ ଭଗବାନଙ୍କ ନିର୍ଦ୍ଦେଶରେ

ମାୟା /ପ୍ରକୃତି ଦ୍ୱାରା ସ୍ୱତଃ ହେଉଥିଲା । ସେ ସର୍ବଦା ଗୋବିନ୍ଦଙ୍କ ଆଲିଙ୍ଗନ-ବଦ୍ଧ(ପରିରମ୍ଭିତଃ) ହେବାରେ ମନକୁ ନିଯୁକ୍ତି କରି ନିଶ୍ଚିନ୍ତ ରହୁଥିଲେ ।

ପ୍ରଶ୍ନ-୩୭. ଏଭଳି ପରମ ବୈଷ୍ଣବଙ୍କ ସତ୍ ସଙ୍ଗ ପ୍ରାପ୍ତ କରି ରାଜା ହିରଣ୍ୟ କଶିପୁ ନିଶ୍ଚୟ ଅତ୍ୟନ୍ତ ପ୍ରଭାବିତ ହୋଇ ବଦଳି ଯାଇଥିବେ ?

**ତସ୍ମିନ୍ ମହାଭାଗବତେ ମହାଭାଗେ ମହାତ୍ମନି ।**
**ହିରଣ୍ୟ କଶିପୁ ରାଜନ୍ ଅକରୋତ୍ ଅଘ ଆତ୍ମଜେ ॥୪୩॥**

ଉ. ରାଜାଙ୍କର ଏହା ଏକ ଦୁର୍ଭାଗ୍ୟ । ସେ ପରିସ୍ଥିତିର ଲାଭ ଉଠାଇବା ପରିବର୍ତ୍ତେ ନିଜ ପୁତ୍ର ମହାତ୍ମା ପ୍ରହ୍ଲାଦଙ୍କ ଠାରେ ଦ୍ୱେଷ କରି ତାଙ୍କୁ ଅସହ୍ୟ ପୀଡ଼ାଦେଇ ବୈଷ୍ଣବ ଅପରାଧୀ (ଅଘ ଆତ୍ମଜେ) ହୋଇଗଲେ । ଅଯଥା ଦଣ୍ଡ ମୂଲେଇଲେ । ନିଜର ଅକାଳ ମୃତ୍ୟୁକୁ ନିମନ୍ତ୍ରଣ କରି ବସିଲେ ।

ପ୍ରଶ୍ନ-୩୮. ଯୁଦ୍ଧିଷ୍ଠିର ପଚାରିଲେ ଏହାର କାରଣ । ଜଣେ ପିତା ହୋଇ ନିଜ ବାଳକ ପୁତ୍ର ପ୍ରତି ସେ ଏତେ ନିଷ୍ଠୁର ହେଲେ କାହିଁକି ?

ଯୁଦ୍ଧିଷ୍ଠିର ଉବାଚ

**ଦେବର୍ଷେ ଏତତ୍ଇଚ୍ଛାମୋ ବେଦିତୁଂ ତବ ସୁବ୍ରତ ।**
**ଯଦା-ଆତ୍ମଜାୟ ଶୁଦ୍ଧାୟ ପିତା-ଅଦାତ୍ ସାଧବେ ହି-ଅଘମ୍ ॥୪୪॥**

ଉ. ଜଣେ ରାଜା ତାଙ୍କର ସତ୍ପୁତ୍ର, ବିଷ୍ଣୁଭକ୍ତ ପ୍ରତି ନିଷ୍ଠୁର ହେବାର ରହସ୍ୟ ଜାଣିବାକୁ ରାଜା ଯୁଦ୍ଧିଷ୍ଠିର କୌତୁହଳୀ ହେବା ସ୍ୱାଭାବିକ ।

ପ୍ରଶ୍ନ-୩୯. ରାଜା ପୁଣି କହିଲେ, 'ପୁଅ ଅମାନିଆ ଦୁଷ୍ଟ ହେଲେ ତ ଆଦର୍ଶ ପିତା ମଧ୍ୟ ତାଙ୍କୁ ଦଣ୍ଡ ଦେଇ ସୁଧାରିବାକୁ ଚେଷ୍ଟା କରନ୍ତି । ରାଜା ହୁଏତ ସେ ଭଳି କିଛି ଉଦ୍ୟମ କରିଥିଲେ କି ?'

**ପୁତ୍ରାନ୍ ବି ପ୍ରତିକୂଳାନ୍ ସ୍ୱାନ୍ ପିତରଃ ପୁତ୍ରବତ୍ସଳାଃ ।**
**ଉପାଲଭନ୍ତେ ଶିକ୍ଷାର୍ଥଂ ନ-ଏବ ଅଘ ଅପରୋ ଯଥା ॥୪୫॥**

ଉ. ନା,ନା ତା ମଧ୍ୟ କହିହେବନି । ସାଧାରଣ ପିତାମାନଙ୍କ ଭଳି ସ୍ୱାଭାବିକ ଭାବରେ ସେ ମଧ୍ୟ ଅତ୍ୟନ୍ତ ପୁତ୍ର ବତ୍ସଳ ଥାଇପାରନ୍ତି । କେହି କେହି (ଅପରୋ) ପିତା ନିଜର ଦୁଷ୍ଟ ସ୍ୱଭାବ ହେତୁ ଅକାରଣରେ ପୁତ୍ରକୁ ଦଣ୍ଡ ଦେଇପାରିବା ମଧ୍ୟ ସମ୍ଭବ ।

# ଅଥ ୫ମ ଅଧ୍ୟାୟଃ

## (ହରିଭକ୍ତ ପ୍ରହ୍ଲାଦଜୀଙ୍କ ମାହାତ୍ମ୍ୟ ପ୍ରକଟନ)

### ନାରଦ ଉବାଚ

ପ୍ରଶ୍ନ-୪୦. ଅସୁରରାଜ ହିରଣ୍ୟ କଶିପୁ ପୁତ୍ରଙ୍କ ଶିକ୍ଷା ଦୀକ୍ଷା ଲାଗି କାହାକୁ ନିଯୁକ୍ତ କଲେ ?

**ପୌରୋହିତ୍ୟାୟ ଭଗବାନ୍ ବୃତଃ କାବ୍ୟଃ କିଳ-ଅସୁରୈଃ ।**
**ଷଣ୍ଡ-ଅମର୍କୌ ସୁତୌ ତସ୍ୟ ଦୈତ୍ୟରାଜ ଗୃହ-ଅନ୍ତିକେ ॥୧॥**

ଉ. ସେତେବେଳେ ଗୁରୁ ଶୁକ୍ରାଚାର୍ଯ୍ୟ ତପସ୍ୟାମଗ୍ନ ଥିଲେ । ତେଣୁ ତାଙ୍କ ଦୁଇ ପୁତ୍ର (କାବ୍ୟଃ) ଷଣ୍ଡ ଓ ଅମର୍କଙ୍କୁ ବାଛିଲେ (ବୃତଃ) । ରାଜମହଲ ସନ୍ନିକଟ ପାଠଶାଳାରେ ତାଙ୍କ ଶିକ୍ଷା ବ୍ୟବସ୍ଥା କରିଥିଲେ । ଧର୍ମ-ଅର୍ଥ-କାମ ଶାସ୍ତ୍ର ପଢ଼ାଇଲେ ଗୁରୁ ଦ୍ୱୟ ପ୍ରହ୍ଲାଦଜୀଙ୍କୁ ଅନ୍ୟ ଅସୁର ବାଳକ ମାନଙ୍କ ସହିତ । ଗୁରୁ ଯଦି ପାଠଶାଳାରେ ପିଲାଙ୍କୁ ପଚାରନ୍ତି-ପିଲାଏ ତୁମ ମାନଙ୍କର ଜୀବନର ଲକ୍ଷ୍ୟ କଅଣ ? ପିଲାଏ ଉତ୍ତର ଦିଅନ୍ତି-ଜ୍ଞାନୀ ହେବା, ରାଜା ହେବା, ଧନୀ ହେବା, ଇତ୍ୟାଦି ।

ପ୍ରଶ୍ନ-୪୧. ପ୍ରହ୍ଲାଦଜୀଙ୍କୁ ଗୁରୁଙ୍କ ଏ ପାଠ କେମିତି ଲାଗିଲା ?

**ଯତ୍ ତତ୍ର ଗୁରୁଣା ପ୍ରୋକ୍ତଂ ଶୁଶ୍ରୁବେଽନୁପପାଠ ଚ ।**
**ନ ସାଧୁ ମନସା ମେନେ ସ୍ୱ ପର-ଅସଦ୍‌ଗ୍ରହ -ଆଶ୍ରୟମ ॥୩॥**

ଉ.ଏ ତିନି ଶାସ୍ତ୍ର ବିଷୟରେ ଗୁରୁଙ୍କ ପ୍ରଶ୍ନ ଓ ପିଲାମାନଙ୍କ ଉତ୍ତର ଶୁଣି ମହାତ୍ମା ପ୍ରହ୍ଲାଦ ମନେ ମନେ ଅତ୍ୟନ୍ତ ଦୁଃଖିତ ହେଉଥିଲେ । କାରଣ ଏ ପାଠରେ ଜୀବ ଜୀବ ମଧ୍ୟରେ ମିତ୍ରତା-ଶତ୍ରୁତା ଭାବ ପୋଷଣ ହେତୁ ହିଂସା, ଦ୍ୱେଷ, ଅହଂକାର ବୃଦ୍ଧିହୁଏ ।

ପ୍ରଶ୍ନ-୪୨. ଦିନେ ରାଜା ହିରଣ୍ୟ କଶିପୁ ପୁତ୍ରକୁ ପାଠଶାଳାରୁ ଡ଼କାଇ ଆଣି କୋଳରେ ବସାଇ କୋମଳ କଣ୍ଠରେ କଅଣ ପଚାରିଲେ ?

**ଏକଦା-ଅସୁରରାଟ୍ ପୁତ୍ରଂ ଅଙ୍କ ଆରୋପ୍ୟ ପାଣ୍ଡବ ।**
**ପପ୍ରଚ୍ଛ କଥ୍ୟତାଂ ବତ୍ସ ମନ୍ୟତେ ସାଧୁ ଯତ୍ ଭବାନ୍ ॥୪॥**

ଉ. ନାରଦଜୀ କହିଲେ, 'ହେ' ଯୁଦ୍ଧିଷ୍ଠିର (ପାଣ୍ଡବ) ! ମହାରାଜ ପ୍ରହ୍ଲାଦଜୀଙ୍କୁ ପଚାରିଲେ ତାଙ୍କୁ କେଉଁ ପାଠ ଭଲ ଲାଗୁଛି ବୋଲି ।'

ପ୍ରଶ୍ନ-୪୩. ପିତାଜୀଙ୍କ ପ୍ରଶ୍ନର ଉତ୍ତରରେ ପ୍ରହ୍ଲାଦଜୀ କହିଲେ, 'ଦେହକୁ ମୁଁ ଭାବି,ଧନ -ଦାରା-ସୁତଙ୍କୁ ମୋର ଭାବିବାରୁ ଜୀବ ଜୀବନ ସାରା ଶୋକ-ମୋହ-ଚିନ୍ତା ଗ୍ରସ୍ତ ହେଉଛି । ସୁତରାଂ ସଂସାର ଆସକ୍ତିରୁ ମୁକ୍ତ ହେବା ପାଇଁ ଗୃହସ୍ଥାଶ୍ରମରେ ପଚାଶ ବର୍ଷ କଟାଇବା ପରେ ସେ ବାନପ୍ରସ୍ଥ ଆଶ୍ରମରେ ପ୍ରବେଶ କରି ଏକାନ୍ତରେ ହରିଭଜନ କରିବା ଉଚିତ୍ ।'ଏଭଳି ଅସୁର ଧର୍ମ ବିରୋଧୀ ଓ ବିଷ୍ଣୁ-ବୈଷ୍ଣବ ମାନଙ୍କ ଅନୁକୂଳ ଚିନ୍ତାଧାରାର ସଂକେତ ପାଇ ଦୈତ୍ୟ ରାଜ ହିରଣ୍ୟ କଶିପୁ କଅଣ ପ୍ରତିକ୍ରିୟା ପ୍ରକାଶ କଲେ ?

**ଶ୍ରୁତ୍ୱା ପୁତ୍ର ଗିରୋ ଦୈତ୍ୟଃ ପରପକ୍ଷ ସମାହିତାଃ ।**
**ଜହାସ ବୁଦ୍ଧିଃ ବାଳାନାଂ ଭିଦ୍ୟତେ ପରବୁଦ୍ଧିଭିଃ ॥୬॥**

ଉ. ଅସୁର ସମ୍ରାଟ କଣ ଆଉ କରନ୍ତେ ? ହସରେ ଉଡ଼ାଇ ଦେଲେ ପ୍ରହ୍ଲାଦଙ୍କ ଉତ୍ତରକୁ । ଓଲଟି କହିଲେ ଶତ୍ରୁ ମାନଙ୍କ ଶିକ୍ଷାରେ (ପରପକ୍ଷ) ପିଲାଙ୍କ ବୁଦ୍ଧି ଇମିତି ବିଗିଡ଼ିଯାଏ । କିଏ ଅଛରେ, ଏ ପିଲା ପ୍ରତି ନଜର ରଖ । ଆଜିଠାରୁ ବ୍ରାହ୍ମଣ-ବୈଷ୍ଣବଙ୍କ ଛାଇ ନ ପଡୁ ଏ ପିଲା ଉପରେ । ବୋଧେ ଶତ୍ରୁ ପକ୍ଷର ଲୋକ ଲୁଚି ଛପି କିଛି କୂଟ କପଟ-ଚକ୍ରାନ୍ତ କରିବାରେ ବ୍ୟସ୍ତ ଅଛନ୍ତି ।

ପ୍ରଶ୍ନ-୪୪. ଗୁରୁ ଦୁହେଁ ପ୍ରହ୍ଲାଦଜୀଙ୍କୁ ନେଇ ଏକାନ୍ତରେ ଏ ଅଦ୍ଭୁତ ବିଚାର ବିଷୟରେ କ'ଣ ପ୍ରଶ୍ନକଲେ ?

**ବତ୍ସ ପ୍ରହ୍ଲାଦ ଭଦ୍ରଂତେ ସତ୍ୟଂ କଥୟ ମା ମୃଷା ।**
**ବାଳାନ୍ ଅତି କୁତଃ ତୁଭ୍ୟଂ ଏଷ ବୁଦ୍ଧି ବିପର୍ଯ୍ୟୟଃ ॥୯॥**

ଉ. ପଚାରିଲେ,'ହେ ବତ୍ସ ! ତୁମେ ସତକଥା କହ । ଆଦୌ ମିଥ୍ୟା କହନାହିଁ । ତୁମର କଲ୍ୟାଣ ହେଉ । ତୁମେ ଏତେ ସାନ ବାଳକ । ତୁମର ବୁଦ୍ଧି କେଉଁ ବୈଷ୍ଣବ ଏପରି ବିଗାଡ଼ି ଦେଲା (ବିପର୍ଯ୍ୟୟଃ) ? ଏହା ତୁମେ କେଉଁଠି କୁସଙ୍ଗରେ ପଡ଼ି ଶିକ୍ଷା କରିଛ ନା ଜନ୍ମରୁ ଏମିତି ତୁମର ସ୍ୱଭାବ ହୋଇ ଯାଇଛି । କାରଣ ଆମେ ଦୁହେଁ କେବେ ବି ଏ ବିଷ୍ଣୁଭକ୍ତି ପାଠ ତୁମକୁ ପାଠଶାଳାରେ ପଢ଼ାଇନାହୁଁ ।'

ପ୍ରଶ୍ନ-୪୫.ଏ ଶତ୍ରୁ-ମିତ୍ର ଉତ୍ପନ୍ନକାରୀ ଭୌତିକ ବୁଦ୍ଧିର କୁପରିଣାମ ବିଷୟ କେଉଁ ସ୍ରୋତରୁ ପ୍ରାପ୍ତ ହେଲେ ବୋଲି ପ୍ରହ୍ଲାଦଜୀ ପ୍ରକାଶ କଲେ ?

ପ୍ରହ୍ଲାଦ ଉବାଚ

**ପରଃ ସ୍ୱଃ ଚ-ଇତି-ଅସତ୍ ଗ୍ରାହଃ ପୁଂସାଂ ଯତ୍ ମାୟୟା କୃତଃ ।**
**ବିମୋହିତ ଧିୟାଂ ଦୃଷ୍ଟଃ ତସ୍ମୈ ଭଗବତେ ନମଃ ॥୧୧॥**

ଉ. ପ୍ରହ୍ଲାଦଜୀ କହିଲେ, 'ଦେହକୁ ମୁଁ, ସଂସାରକୁ ମୋର ଭାବିବା ଭଗବାନଙ୍କ ମାୟା ଆକ୍ରମଣର ସଂକେତ । ଯାହାଙ୍କ କୃପାରୁ ମୁଁ ଏ ସଦ୍‌ବୁଦ୍ଧି ପ୍ରାପ୍ତ ହୋଇଛି ସେହି ମାୟାଧୀଶ ଭଗବାନଙ୍କୁ ମୋର କୋଟି ପ୍ରଣାମ ଜଣାଉଛି ।

ଶତ୍ରୁ-ମିତ୍ର ଭାବ ଏକ ମାୟା ଜାଲ ଅଟେ । ପୁଣି କହିଲେ,'ହେ,ଗୁରୁଦେବ ଦ୍ୱୟ ଲୁହା, ଚୁମ୍ବକ ସଂପର୍କରେ ଆସିଲେ ଚୁମ୍ବକ ମଧ୍ୟ ବଦଳି ଯାଏ । ନିଜ ସ୍ୱଭାବ ଛାଡ଼ି ଚୁମ୍ବକର ଧର୍ମକୁ ଆତ୍ମସାତ କରିଦିଏ । ସେହି ଭଳି ସାଧୁ ସଙ୍ଗ ହେତୁ ସଦ୍‌ଗୁରୁଙ୍କ ସାନ୍ନିଧ୍ୟରେ ମୋର ଅସୁର ସ୍ୱଭାବ କେବଳ ରୂପାନ୍ତରଣ ହୋଇଯାଇଛି । ବିଗିଡ଼ି ଯାଇନାହିଁ । ଏ ହରିଭକ୍ତିର କମାଲ । ଭକ୍ତିଧର୍ମ ଏକ ପବିତ୍ର ଧର୍ମ । ଏଥିରେ ବେଦଜ୍ଞ,ମୁନୀନ୍ଦ୍ର, ଯୋଗୀନ୍ଦ୍ର, ବ୍ରହ୍ମା-ଶଙ୍କର ଆଦିଙ୍କର ବୁଦ୍ଧି ମଧ୍ୟ କୁଣ୍ଠିତ ହୋଇଯାଏ ।' ଏତିକି କହି ପ୍ରହ୍ଲାଦଜୀ ମୌନ ହୋଇଗଲେ ।

ଦୁଇଜଣ ଯାକ ଗୁରୁ କିନ୍ତୁ ଦୁଃଖ ସାଗରରେ ବୁଡି ଗଲେ । ତାଙ୍କର ପେଟ ପାଟଣା ଚିନ୍ତା । ଭାବିଲେ ଏ ପିଲା ଆମ ଚାକିରୀ ଖାଇବ । ଅସୁର ରାଜଙ୍କ ବୁଦ୍ଧି କିପରି ଏହା ମସ୍ତିଷ୍କରେ ଭରତି କରିବା-ଏହି ଚିନ୍ତା କରିବାରେ ସେମାନେ ଲାଗିଲେ ।

ପ୍ରଶ୍ନ-୪୬:ଗୁରୁଦ୍ୱୟ ଭାବିଲେ କି ଏ ପିଲା ନିଶ୍ଚୟ ଏ ଅସୁର ବଂଶର ଯଶ ଉଜ୍ଜ୍ୱଳ କରିବ ?

**ଦୈତେୟ ଚନ୍ଦନବନେ ଜାତୋଽୟଂ କଣ୍ଟକ ଦ୍ରୁମଃ ।**
**ଯତ୍ ମୂଳ-ଉନ୍ମୂଳ ପରେଶୋଃ ବିଷ୍ଣୋଃ ନାଳୟିତୋଽର୍ଭକ ॥୧୭॥**

ଉ. ଅସୁର ପିଲାଙ୍କୁ ଧର୍ମ-ଅର୍ଥ-କାମ ତ୍ରିବର୍ଗ ଶିକ୍ଷା ଦେଇ ଦେଇ ସେମାନଙ୍କ ବୁଦ୍ଧି ମଧ୍ୟ ମୋକ୍ଷ ଲକ୍ଷ୍ୟକୁ ଭୁଲି ସାରିଥାନ୍ତି । ସୁତରାଂ ତାଙ୍କ ଓଲଟ ବୁଦ୍ଧିରେ ସେମାନେ ଭାବିଲେ -ଏ ବାଳକ (ଅର୍ଭକ) ଅସୁର ବଂଶ ରୂପୀ ଚନ୍ଦନ ବୃକ୍ଷମାନଙ୍କୁ କାଟିବା ଲାଗି ବିଷ୍ଣୁଭକ୍ତି ରୂପକ କୁରାଢ଼ି (ପରେଶୋଃ ବିଷ୍ଣଃ) ବେଣ୍ଟ (ନାଳୟିତୋ) ହେବ ନିଶ୍ଚୟ । ଏ ଚନ୍ଦନ ବଣରେ ଏକ କଣ୍ଟା ଗଛ ଅଟେ ।

ନିରୁପାୟ ହୋଇ ସେମାନେ ପ୍ରହ୍ଲାଦଜୀଙ୍କୁ ପସନ୍ଦ ଲାଗୁ ନ ଥିଲେ ମଧ୍ୟ

ଧର୍ମ-ଅର୍ଥ-କାମ ଶାସ୍ତ୍ର ଶିକ୍ଷା ଦେବାପାଇଁ ନାନା ଧମକ ଚମକ ଦଣ୍ଡ ବ୍ୟବସ୍ଥା କଲେ । ଆଉ ଦିନେ ହିରଣ୍ୟ କଶିପୁ ଷଣ୍ଡ-ଅମର୍କଙ୍କ ଦ୍ୱାରା ପ୍ରହ୍ଲାଦଜୀଙ୍କୁ ହାଜର କରିବାକୁ ଆଦେଶ ଦେଲେ । ଉଦ୍ଦେଶ୍ୟ ପ୍ରହ୍ଲାଦଙ୍କ ପାଠ ପରୀକ୍ଷା କରିବା । ମା'କୟାଧୂ ପୁତ୍ରଙ୍କୁ ସ୍ନାନ ଶୌଚ କରାଇ ବସ୍ତ୍ର ଅଳଙ୍କାର ଭୂଷିତ କରି ରାଜାଙ୍କ କୋଳରେ ବସାଇ ଦେଲେ ।

ପ୍ରହ୍ଲାଦଜୀ କିନ୍ତୁ ପ୍ରଥମେ ପିତାଙ୍କୁ ଭୂମିଷ୍ଟ ପ୍ରଣାମ କରି ପରେ କୋଳରେ ବସିଲେ । ରାଜା ବାତ୍ସଲ୍ୟ ଭାବରେ ଦୃଢ ଆଲିଙ୍ଗନ କଲେ ପ୍ରହ୍ଲାଦଜୀଙ୍କୁ । ଅତ୍ୟନ୍ତ ଆନନ୍ଦରେ ପଚାରିଲେ, ପୁତ୍ର ପ୍ରହ୍ଲାଦ! ତୁମେ ଗୁରୁଙ୍କ ପାଖରେ ଅନେକ ପାଠ ପଢିଲଣି । କଅଣ ଶିଖିଛ କହିଲ ଦେଖି । ଜୀବର ଲକ୍ଷ୍ୟ କଅଣ ?'

ପ୍ରଶ୍ନ-୪୭. ଉତ୍ତରରେ ପ୍ରହ୍ଲାଦଜୀ ଧନୀ ହେବାକୁ, ଜ୍ଞାନୀ ହେବାକୁ ନା ରାଜା ହେବା, ଜୀବର ଲକ୍ଷ୍ୟ ବୋଲି କହିଲେ ?

ପ୍ରହ୍ଲାଦ ଉବାଚ

**ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।**
**ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟଂ ଆତ୍ମନିବେଦନମ୍ ॥୨୩॥**

ଉ. ନା, ଏ ତିନୋଟି ମଧ୍ୟରୁ କେଉଁଟି ନୁହେଁ । ସେ ରାଜାଙ୍କୁ ବିସ୍ମିତ କରି ନବଧା ଭକ୍ତି ଜୀବର ଲକ୍ଷ୍ୟ ହେବା ଉଚିତ ହୋଇ କହିଲେ । ଧର୍ମ-ଅର୍ଥ-କାମ-ମୋକ୍ଷ ଏ ସକଳ ଲକ୍ଷ୍ୟ ଅଟନ୍ତି ସତ୍ୟ । ହେଲେ ଏ ଲକ୍ଷ୍ୟମାନଙ୍କର ଲକ୍ଷ୍ୟ, ପରମ ଲକ୍ଷ୍ୟ ନିରନ୍ତର ହରିଭଜନ ବା ଶ୍ରୀହରି ବିଷ୍ଣୁଙ୍କ ଶରଣାଗତି ।

ପ୍ରଶ୍ନ-୪୮. ହିରଣ୍ୟ କଶିପୁ ମଧ୍ୟ ଜଣେ ସିଦ୍ଧି ପ୍ରାପ୍ତ ଭକ୍ତ ଥିଲେ । ହଜାର ହଜାର ବର୍ଷ ତପସ୍ୟା କରି ସେ ବ୍ରହ୍ମାଜୀଙ୍କୁ ଭକ୍ତି ଦ୍ୱାରା ପ୍ରସନ୍ନ କରି ଅଜର, ଅମର, ଅଜେୟ ବର ମଧ ପ୍ରାପ୍ତ ହୋଇଥିଲେ । ପ୍ରହ୍ଲାଦଙ୍କ ମୁଖରୁ ହରି ଭକ୍ତି ଲକ୍ଷ୍ୟ କଥା ଶୁଣି ରାଜା ଖୁବ୍ ଖୁସି ହୋଇଥିବେ ନିଶ୍ଚୟ ?

**ଇତି ପୁଂସା -ଅର୍ପିତା ବିଷ୍ଣୋଃ ଭକ୍ତିଃ ଚେତ୍ ନବ ଲକ୍ଷଣା ।**
**କ୍ରିୟତେ ଭଗବତି-ଅଦ୍ଧା ତତ୍ମନ୍ୟେଽଧୀତଂ ଉତ୍ତମମ୍ ॥୨୪॥**

ଉ. ଖୁସି ହୁଅନ୍ତେ କିପରି ? କ୍ରୋଧରେ ଅଗ୍ନିଶର୍ମା ହୋଇଗଲେ । କାରଣ ସେ ରଜୋଗୁଣୀ ଠାକୁର ସୃଷ୍ଟିକର୍ତ୍ତାଙ୍କୁ ଭକ୍ତି କରି ବର ପାଇଥିଲେ ଅଜର-ଅମର-

ଅଜେୟ ହୋଇ ଅଖଣ୍ଡ ଐଶ୍ୱର୍ଯ୍ୟ ବିଳାସ ଭୋଗ କରି ଦେବତାମାନଙ୍କ ଅରାଧ୍ୟ ହୋଇ ନିତ୍ୟ ପ୍ରତିଷ୍ଠିତ ହେବାକୁ ।

ଅନ୍ୟ ପକ୍ଷରେ ପୁତ୍ର ଓଲଟା କଥା କହିଲାଣି । ଧନ-ଦାରା-ସୁତ-ସିଂହାସନ ବିଷ୍ଣୁଙ୍କୁ ଅର୍ପଣ କରି ତାଙ୍କ ପାଖରେ ଶରଣ ପଶିବାକୁ । ଅନ୍ୟଦେବତା ପୂଜନ ବନ୍ଦ କରି ପ୍ରତ୍ୟକ୍ଷ ଭାବରେ (ଅଦ୍ଧା) ବିଷ୍ଣୁଙ୍କୁ ଭକ୍ତି କରିବାକୁ । ତେବେ ଜୀବକୁ ଦାସାନୁଦାସ, ଅକିଂଚିନ ଭକ୍ତ, ଭିକାରୀ ହେବାକୁ ପଡ଼ିବ । ଏଭଳି ପାଠକୁ ପୁତ୍ର ପୁଣି କହୁଛି ତା ମତରେ ଏହା ହିଁ ସକଳ ଶିକ୍ଷା ମଧ୍ୟରେ ଶ୍ରେଷ୍ଠତମ ଶିକ୍ଷଣୀୟ ବିଷୟ (ଅଧୀତଂ ଉତ୍ତମମ) ।

ରାଜା ହିରଣ୍ୟ କଶିପୁ ଦୁଇ ଗୁରୁ ପୁତ୍ରଙ୍କୁ ଧିକ୍‌କାର କଲେ । ତାଙ୍କୁ ପତିତ ବ୍ରାହ୍ମଣ ଓ ପ୍ରଚ୍ଛନ୍ନ ବୈଷ୍ଣବ ବୋଲି ଆକ୍ଷେପ କଲେ । କହିଲେ ବ୍ୟାଧି ପୀଡ଼ିତ ହେଲେ ଜଣେ ପାପୀ ବୋଲି ସଂସାର ଜାଣନ୍ତି । ପୁତ୍ର ପ୍ରହ୍ଲାଦଙ୍କୁ ସେମାନେ ଶିକ୍ଷା ଦେଇଥିବା ପାଠରୁ ସ୍ପଷ୍ଟ ଅନୁମେୟ ଯେ-ନିଶ୍ଚୟ ତାର ଗୁରୁ ବୈଷ୍ଣବଙ୍କ ହୋଇଥିବେ ।

ପ୍ରଶ୍ନ- ୪୯. ଏଭଳି ତୀବ୍ର ଆକ୍ଷେପର ଉତ୍ତରେ ଗୁରୁ ଷଣ୍ଡ-ଅମର୍କ କହିଲେ, 'ହେ, ଇନ୍ଦ୍ର ଶତ୍ରୁ ମହାରାଜ ! ଶ୍ରବଣ କରନ୍ତୁ । ଏ ପାଠ ଆମ ଦ୍ୱାରା ବା ଅନ୍ୟ କାହା ଦ୍ୱାରା ପଢ଼ାଯାଇନାହିଁ । ମାଆ ପେଟରୁ ଏ ପିଲା ଏ ସବୁ ଶିଖି ଆସିଛି । ଅଯଥା ଆପଣ ଆମ ଉପରେ ଦୋଷ ଲଦୁଛନ୍ତି ।'

ରାଜା ଏହାର ସତ୍ୟାସତ୍ୟ ଜାଣିବା ପାଇଁ ପୁତ୍ରକୁ ପଚାରିଲେ-ଏ ଦୁର୍ବୁଦ୍ଧି ପ୍ରହ୍ଲାଦଜୀଙ୍କ ମସ୍ତିଷ୍କରେ କିଏ ପୂରାଇଲା ବୋଲି । ପ୍ରହଲ୍ଲାଦ ଏବେ ଅତ୍ୟନ୍ତ ଧୀର ସ୍ଥିର ନମ୍ରତାର ସହିତ ବୁଦ୍ଧି ବିପର୍ଯ୍ୟୟ ଅଭିଯୋଗର କି ଉତ୍ତର ଦେଲେ ?

ପ୍ରହ୍ଲାଦ ଉବାଚ

**ମତିଃ ନ କୃଷ୍ଣେ ପରତଃ ସ୍ୱତଃ ବା**
**ମିଥୋଽଭିପଦ୍ୟେତ ଗୃହବ୍ରତାନାମ୍ ।**
**ଅଦାନ୍ତ ଗୋଭିଃ ବିଶତାଂ ତାମିସ୍ରଂ**
**ପୁନଃ ପୁନଃ ଚର୍ବିତ ଚର୍ବଣାନାମ୍ ।।୩୦।।**

ଉ. କହିଲେ,'ହେ' ପିତାଜୀ ! ବିନା ବୈରାଗ୍ୟରେ ଗୃହସ୍ଥାଶ୍ରମ ବୃଥା । ଏହା ତ ଠିକ୍ ପେଷା ଅଟାକୁ ପୁଣି ପେଷେଇବା, ଚୋବାଇ ସାରିଥିବା ଚିଜକୁ ପୁଣି ଚୋବାଇ

ଢୋକିବା । ନିଜ ଚେଷ୍ଟାରେ ବା ଅନ୍ୟକାହା ଶିକ୍ଷାରେ କେବେ କାହାରି ବିଷ୍ଣୁଭକ୍ତି ହୁଏନା । ଗୃହସ୍ଥାଶ୍ରମରୁ ସୁଖ ଖୋଜୁଥିବା ଲୋକେ ନିଜ ଇନ୍ଦ୍ରିୟ ଅସଂଯମୀ ହୋଇଥାନ୍ତି । ଇନ୍ଦ୍ରିୟମାନଙ୍କ ଦୌରାତ୍ମ୍ୟରୁ ସେମାନେ ନରକରେ ପଡ଼ନ୍ତି । ବାରମ୍ବାର ଜନ୍ମ-ମରଣ ଚକ୍ରରେ ପଡ଼ି ଥାନ୍ତି । ତାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ତ ସ୍ୱୟଂ ଆପଣ ।'

ପ୍ରଶ୍ନ-୫୦. ଜଣେ ଅନ୍ଧ ଆଉ ଜଣେ ଅନ୍ଧକୁ ବାଟ କଢ଼େଇବା ହାସ୍ୟାସ୍ପଦ କଥା । ଗୃହମେଧୀ ଲୋକମାନେ ବୈଦିକ କଠିନ ନିୟମ ରୂପକ ଦଉଡ଼ି(ଉରୁଦାମ୍ନି ବଦ୍ଧାଃ)ରେ ବନ୍ଧା । ସ୍ୱଧର୍ମପାଳନ କରିବାକୁ ବିଷ୍ଣୁଙ୍କ ଶାସନାଧୀନ ବ୍ରହ୍ମା-ଇନ୍ଦ୍ର-ଶଙ୍କର ଆଦି ସମସ୍ତେ ବାଧ୍ୟ । ବିନା ହରି ଶରଣାଗତରେ ସେମାନେ ମଧ୍ୟ ମୁକୁଳିବାରେ ଅସମର୍ଥ । ସେମାନେ କଅଣ ତେବେ ଜୀବନର ଚରମ ଲକ୍ଷ୍ୟ ବିଷୟରେ ଅଜ୍ଞାତ କି ?

**ନ ତେ ବିଦୁଃ ସ୍ୱାର୍ଥଗତିଂ ହି ବିଷ୍ଣୁଂ**
**ଦୁରାଶୟା ଯେ ବହିଃ ଅର୍ଥମାନିନଃ ।**
**ଅନ୍ଧା ଯଥା-ଅନ୍ଧୈଃ ଉପନୀୟମାନାଃ**
**ବାଚ-ଈଶ ତନ୍ତ୍ର୍ୟାଂ ଉରୁଦାମ୍ନି ବଦ୍ଧାଃ ॥୩୧॥**

ଉ. ନା,ନା ତାହା ଠିକ୍ ନୁହେଁ । ସେମାନେ ପରମ ଲକ୍ଷ୍ୟ ବିଷୟରେ ଜାଣିନ ଥିବାରୁ ଭୋଗ ପଛରେ ଦୌଡୁ ନାହାନ୍ତି, ଯେମିତି ଆପଣ ଓ ଆପଣଙ୍କ ଭଳି ଅନ୍ୟାନ୍ୟ ଅସୁରମାନେ ନିଜ ଅନ୍ତର ମଧ୍ୟସ୍ଥ ଆନନ୍ଦ ରୂପୀ ନାରାୟଣଙ୍କୁ ନ ଖୋଜି ବାହାରେ ବିଶ୍ୱବ୍ରହ୍ମାଣ୍ଡରେ ବିଷୟ ଭୋଗରୁ ଆନନ୍ଦ ଖୋଜୁଛନ୍ତି । ପିତାଜୀ, ଏଥର ବହିର୍ମୁଖୀ ନ ହୋଇ ଇନ୍ଦ୍ରିୟମାନଙ୍କୁ ଅନ୍ତର୍ମୁଖୀ କରନ୍ତୁ । ଯଦି ବାସ୍ତବରେ ଆପଣ ଅଜର-ଅମର ହେବାକୁ ଚାହୁଁ ଥାଆନ୍ତି ।

ପ୍ରଶ୍ନ-୫୧.ହରି ଭକ୍ତ ପ୍ରହ୍ଲାଦ ପିତାଜୀଙ୍କୁ ହରି ଭକ୍ତି କରିବା ପାଇଁ ନବଧା ଭକ୍ତି ମଧ୍ୟରୁ କେଉଁଟିକୁ ଆଶ୍ରୟ କରିବାକୁ ନିବେଦନ କଲେ ?

**ନ-ଏଷାଂ ମତିଃ ତାବତ୍ ଉରୁକ୍ରମ-ଅଙ୍ଘ୍ରିଂ**
**ସ୍ପୃଶତି-ଅନର୍ଥ-ଅପଗମୋ ଯତ୍ ଅର୍ଥଃ ।**
**ମହୀୟସାଂ ପାଦରଜୋଽଭିଷେକଂ**
**ନିଷ୍କିଞ୍ଚନାନାଂ ନ ବୃଣୀତ ଯାବତ୍ ॥୩୨॥**

ଉ. ଧର୍ମ-ଅର୍ଥ-କାମ ସବୁ ଭକ୍ତି ସାଧକ ଜୀବନର ଅନର୍ଥ । ହେୟ ଲକ୍ଷ୍ୟ

ମାତ୍ର । ଶ୍ରୀହରି ଚରଣ କମଳ ଧ୍ୟାନ କରିବା ହିଁ ମନ-ବୁଦ୍ଧିର ଲକ୍ଷ୍ୟ ହେବା ଉଚିତ୍ । କିନ୍ତୁ ଜଣେ ଅକିଂଚନ ବୈଷ୍ଣବ ଗୁରୁ(ନାରଦ-ଚତୁଃସନକଙ୍କ ସଦୃଶ)ଙ୍କ ପାଦଧୂଳି ମୁଣ୍ଡରେ ବୋଳି ନ ହେବା ବା ତାଙ୍କର ଶରଣାଗତ ନ ହେବା ଯାଏ ଆମର ଏ ଦୁଷ୍ଟ ମନ-ବୁଦ୍ଧି ସହଜରେ ଶ୍ରୀହରି ଚରଣ କମଳ ଧ୍ୟାନ କରି ପାରନ୍ତି ନାହିଁ । ଏଣେ ତେଣେ ଆମକୁ ଟଣା ଓଟରା କରନ୍ତି । ସ୍ୱର୍ଗ-ମର୍ତ୍ତ୍ୟ-ନରକରେ ଆମଙ୍କୁ ଉଠାପକା କରନ୍ତି । ଆମେ ଅଣନିଃଶ୍ୱାସୀ ହେଉ ।

ପ୍ରହ୍ଲାଦଙ୍କ ପ୍ରବଚନରେ ପିତା ହିରଣ୍ୟ କଶିପୁ ଅତିଷ୍ଠ ହୋଇ ନିଜ ଜୀବନ ଦର୍ଶନ ଶୁଣାଇଲେ ରାଜ ସଭାରେ । କହିଲେ, 'ଦେଖ ପାଞ୍ଚ ବର୍ଷର ବାଳକ, କେତେ ବଡ଼ି ବଡ଼ି କଥା କହୁଛି । ପିଲାଟିଏ ହିତକାରୀ ହୋଇଥିଲେ ଲୋକେ ପରପିଲାଙ୍କୁ ମଧ୍ୟ ପୋଷନ୍ତି । ବଣ ଜଙ୍ଗଲର ଔଷଧକୁ ଆଣି ଘରେ ସାଇତି ରଖନ୍ତି । ଉପକାରରେ କାଳେ ଆସିବ ବୋଲି । ଅନ୍ୟ ପକ୍ଷରେ ନିଜର କୌଣସି ଅଙ୍ଗ ପଚି ସଢ଼ି ଗଲେ ତାକୁ ନିର୍ମମ ହୋଇ କାଟି ଫିଙ୍ଗି ଦିଆଯାଏ । ତେବେ ଜୀବନ ଭଲରେ କଟେ । ନଚେତ ଅଯଥା ଅଶାନ୍ତି । ତପସ୍ୱୀ ମାନଙ୍କ ପାଇଁ ତାଙ୍କ ନିଜ ଇନ୍ଦ୍ରିୟମାନେ ଶତ୍ରୁ । ପୁତ୍ର ରୂପେ ଜନ୍ମ ହୋଇ ଏ ମୋର ମିତ୍ର ନୁହେଁ, ଶତ୍ରୁ ଅଟେ । ଶତ୍ରୁ ବିନାଶ କରିବା ରାଜାର ଧର୍ମ । ଆଦେଶ ଦେଲେ-'କିଏ ଅଛରେ,ଏହାକୁ କାଟି ପକାଅ । ହାଣି ପକାଅ । ଟୁକୁଡ଼ା ଟୁକୁଡ଼ା କରିଦିଅ । ମୋର ଭୋଗମାର୍ଗରେ ଏ ଏକ ଅସହ୍ୟ କଣ୍ଟା ।'

ରାଜାଙ୍କ ଆଦେଶରେ ସେବକମାନେ ଭକ୍ତ ପ୍ରହ୍ଲାଦଜୀଙ୍କୁ ତୀକ୍ଷ୍ଣ ଖଣ୍ଡାରେ ହାଣି, ସର୍ପ ଦଂଶନ କରାଇ, ପର୍ବତ ଉପରୁ ଫିଙ୍ଗି,ସମୁଦ୍ରରେ ବୁଡ଼ାଇ, କ୍ଷୁଦ୍ଧାର୍ତ୍ତ ହିଂସ୍ର ପଶୁ ମୁଖରେ ପକାଇ, ପଥରରେ ଛେଚି, ହସ୍ତୀ ପଦତଳେ ଚପାଇ, ଅଗ୍ନି ଶିଖାକୁ ଦେଖାଇ, ମାରିବାକୁ ଚେଷ୍ଟାକଲେ । କିନ୍ତୁ ମାରିବାର ସକଳ ଚେଷ୍ଟା ବ୍ୟର୍ଥ ହେଲା । ତାଙ୍କ ତୁଣ୍ଡରୁ ନିରନ୍ତର ଶ୍ରୀହରି ଶରଣମ୍ ମନ୍ତ୍ର(ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ ହେ ନାଥ, ନାରାୟଣ ବାସୁଦେବ) ଉଚ୍ଚାରିତ ହେଉଥାଏ ।

ପ୍ରଶ୍ନ-୫୨.ପ୍ରହ୍ଲାଦଜୀ ସଂପୂର୍ଣ୍ଣ ନିର୍ଭୀକହେବା ଦେଖି ରାଜା ମନେ ମନେ ପୁଣି କଅଣ ଚିନ୍ତନ କଲେ ?

**ବର୍ତ୍ତମାନୋଽବିଦୂରେ ବୈ ବାଳୋଽପି-ଅଜଡ଼ଧୀଃ ଇୟମ୍ ।**
**ନ ବିସ୍ମରତି ମେଽନାର୍ଯ୍ୟଂ ଶୁନଃ ଶେପ ଇବ ପ୍ରଭୁଃ॥୪୬॥**

ଉ. ମୁଁ ତାକୁ ଏତେ ଦୁଃଖ, କଷ୍ଟ, ଦଣ୍ଡ, ମୃତ୍ୟୁ ଭୟ ଦେଖାଇଲି । ସେ ମୋ

ପାଖରେ ଥାଇ ମୋତେ ଆଦୌ ଡ଼ରୁନାହିଁ । ପିଲା ବକଟେ । ପାଞ୍ଚବର୍ଷ ତାର ବୟସ । କିନ୍ତୁ ଦେଖୁଛି ସେ ହୋସିଆର (ଅଜଡ଼ଧୀଃ) ନିର୍ଭୀକ । ହରିନାମ ଉଚାରଣ ଆଦୌ ଛାଡୁନାହିଁ । କୁକୁର ଲାଞ୍ଜ (ଶୁନଃଶେପ) ଯେତେ ସଳଖିଲେ ସଳଖ ହୁଏନା । ଅଥବା ଅଜୀଗର୍ତ୍ତଙ୍କ ୨ୟ ପୁତ୍ର ଶୂନଃଶେପ ମଧ୍ୟ ବଧ ପାଇଁ ନିଆଗଲା ବେଳେ ଯୁପକାଠରେ ମୁଣ୍ଡ ଦେଖାଇଲା ଭଳି ଏତେ ନିର୍ଭୀକ ରହିବା ବୋଧେ କୌଣସି ଅଦୃଶ୍ୟ ଅଚିନ୍ତ୍ୟ ଶକ୍ତି (ପ୍ରଭୁଃ)ର ପ୍ରଭାବ ନିଶ୍ଚୟ । ଜଣା ପଡିଲାଣି ବିନା ଅମରବରରେ ମଧ୍ୟ ସେ ଅମର । ବ୍ରହ୍ମାଙ୍କ ଅମର ବର ପାଇ ମଧ୍ୟ ମୋତେ ହୁଏତ ମରିବାକୁ ପଡିପାରେ ।

ଷଣ୍ଡ- ଅମର୍କ ରାଜାଙ୍କୁ କାନରେ କିଛି ରହସ୍ୟମୟ ପରାମର୍ଶ ଦେଲେ । କହିଲେ,‘ ହେ ଦୈତ୍ୟେନ୍ଦ୍ର, ଇନ୍ଦ୍ର, ଚନ୍ଦ୍ର ଆଦି ଆପଣଙ୍କ ଭ୍ରୂକୁଟୀ କୁଞ୍ଚନରେ କମ୍ପମାନ ହେଉଛନ୍ତି । ଏ ପିଲାଟା ପାଇଁ ଆପଣ କାହିଁକି ଏତେ ଚିନ୍ତିତ ? ୟାକୁ ବରୁଣ ପାଶରେ ବାନ୍ଧି ରଖନ୍ତୁ । ଡରରେ ସେ ଯେପରି କୁଆଡ଼େ ପଳାଇ ନଯାଏ । ବୟସ ହେଲେ ବୁଦ୍ଧି ହେଲେ ଆପେ ଆପେ ବଦଳି ଯିବନିକି । ଆମେ ଏତେ ବୁଦ୍ଧିମାନ କୌଶଳୀ ଲୋକ ଅଛେ । ସେ କ'ଣ ଇମିତି ଆମକୁ ବଳେଇଯିବ ! ! !’

ରାଜାଙ୍କ ମନକୁ କଥାଟା ପାଇଗଲା । କହିଲେ,‘ତେବେ ସେଇ କଥା କର । ଗୃହମେଧୀ ଧର୍ମ ପଢ଼ାଇ ତାର ବୁଦ୍ଧି ସଜାଡ଼ ପ୍ରଥମେ । ରାଜାଙ୍କ ଆଦେଶରେ ସେମାନେ ପ୍ରହ୍ଲାଦଙ୍କୁ ମୋକ୍ଷ ଧର୍ମକୁ ଛାଡ଼ି ଆଉ ସବୁ ଶିକ୍ଷା ଦାନ କରୁଥାନ୍ତି । ପ୍ରହ୍ଲାଦ ସେ ସବୁ ଉପଦେଶକୁ ଭିତରକୁ ନ ନେଇ ଭଣ୍ଡାରୀ ଜଳାରେ ବାହାର କରି ଦିଅନ୍ତି ।’

ପ୍ରଶ୍ନ-୫୩ ଦିନେ ଗୁରୁଦ୍ୱୟ ସଂସାରୀ କାମରେ ବ୍ୟସ୍ତ ଥାଆନ୍ତି । ଏହି ଅବସରରେ (କୃତକ୍ଷଣୈଃ) ପିଲାମାନେ ଖେଳିବାକୁ ବାହାରିଲେ । ପ୍ରହ୍ଲାଦଜୀଙ୍କୁ ମଧ୍ୟ ଖେଳିବାକୁ ଡାକିଲେ । ପ୍ରହ୍ଲାଦଜୀ କ'ଣ ସେମାନଙ୍କ ସଙ୍ଗେ ଖେଳିବାକୁ ଗଲେ ?

**ଯଦା-ଆଚାର୍ଯ୍ୟଃ ପରାବୃତ୍ତୋ ଗୃହମେଧୀୟ କର୍ମସୁ ।**
**ବୟସ୍ୟୈ ବାଳକୈଃ ତତ୍ର ସୋଽପହୂତଃ କୃତକ୍ଷଣୈଃ ॥୫୪॥**

ଉ.ପିଲାମାନେ ପ୍ରହ୍ଲାଦଜୀଙ୍କର ସମବୟସ୍କ (ବୟସ୍ୟୈଃ) ଥିଲେ । ଅତ୍ୟନ୍ତ ମଧୁର ବାଣୀରେ ସେ ଓଲଟି ସେମାନଙ୍କୁ ହରିଭଜନ କରି ସମୟ, ଶକ୍ତି, ସାମର୍ଥ୍ୟ ଓ ସୁଯୋଗର ସଦୁପଯୋଗ କରିବାକୁ ପରାମର୍ଶ ଦେଲେ । ସ୍ୱଭାବରେ ବୈଷ୍ଣବ ହୋଇଥିବାରୁ ସେମାନଙ୍କ ଦୁରବସ୍ଥା ସେ ଜାଣିପାରୁଥିଲେ ।

ପ୍ରଶ୍ନ-୫୪.ପ୍ରହ୍ଲାଦଜୀଙ୍କ ପରାର୍ଶକୁ କ'ଣ ଅସୁର ବାଳକ ମାନେ ଗ୍ରହଣ କଲେ କି ?

**ତେ ତୁ ତତ୍ ଗୌରାବାତ୍ ସର୍ବେ ତ୍ୟକ୍ତ କ୍ରୀଡ଼ା ପରିଚ୍ଛଦାଃ ।**
**ବାଳା ଅଦୂଷିତ ଧିୟୋ ଦ୍ୱନ୍ଦ-ଆରାମ-ଇରିତ-ଈହିତୈଃ ।।୫୬।।**

ଉ. ସେମାନେ ସମସ୍ତେ ଅଳ୍ପ ବୟସ୍କ ଥିଲେ । ବୟସ୍କ ଅସୁରମାନଙ୍କ ଭଳି ଶତ୍ରୁ-ମିତ୍ର ଭାବରେ ଏଯାଏଁ ସେମାନଙ୍କ ବୁଦ୍ଧି ଦୂଷିତ ହୋଇ ନଥାଏ । ଗୁରୁଦ୍ୱୟଙ୍କ ଉପଦେଶ ଓ କାର୍ଯ୍ୟଧାରା ସେମାନଙ୍କୁ ପ୍ରଭାବିତ କରିନଥିଲା । ଭୌତିକ ସୁଖର ଆକର୍ଷଣ କ'ଣ ସେମାନେ ଅବଗତ ନଥିଲେ । ସୁତରାଂ ସେମାନେ ସଙ୍ଗେ ସଙ୍ଗେ ପ୍ରହ୍ଲାଦଜୀଙ୍କ ସଦୁପଦେଶ ମାନି ବହିପତ୍ର ସବୁ ଛାଡ଼ି ପକାଇ ଆସିଲେ । ହରି ଭଜନ କରିବା ନିମିତ୍ତ । ରାଜକୁମାରଙ୍କୁ କେନ୍ଦ୍ରରେ ବସାଇ ତାଙ୍କ ଚାରିପାଖେ ଘେରି ବସିଲେ । ଭକ୍ତ କଥା ମାନି ଭଜନ କୀର୍ତ୍ତନରେ ମାତିଗଲେ ।

## ୧୮.ଅସଦ୍ ବାସନା ପ୍ରକରଣ ସାର (ହିରଣ୍ୟ କଶିପୁ ଚରିତ)

### ଅଧ୍ୟାୟ ୧ମ-୫ମ

ପୂର୍ବରୁ ଷଷ୍ଠ ସ୍କନ୍ଧରେ ଦେବତା ପ୍ରତି କୃପା, ଦାନବ ପ୍ରତି କୃପା ଓ ମାନବ ପ୍ରତି କୃପା ବର୍ଣ୍ଣିତ ହେଲା । ରାଜା ପରୀକ୍ଷିତ ଶଙ୍କା କଲେ ଯେ ଭଗବାନ କୃପାମୟ ସତ । ତଥାପି ଦେବତା ଇନ୍ଦ୍ରଙ୍କ ପକ୍ଷ ନେଇ ଦୈତ୍ୟ ବୃତ୍ତଙ୍କୁ ମାରିବା କ'ଣ ଠିକ୍ କଥା ? ଦାନବ ହେଲେ ମଧ୍ୟ ସେ ଭଗବାନଙ୍କ ଭକ୍ତ ଥିଲେ । ଧର୍ମ-ଅର୍ଥ-କାମ-ମୋକ୍ଷକୁ ତୁଚ୍ଛ କରୁଥିବା ଶ୍ରେୟ ମାର୍ଗୀ ସାଧକ ଥିଲେ । ଭଗବାନ ତାଙ୍କ ପ୍ରତି ନିଷ୍ଠୁର ଆଚରଣ କରିବା ଅନୁଚିତ କଥା ନିଶ୍ଚୟ । ପୁଣି ଶିଶୁପାଳଙ୍କ ଭଳି ଅଭକ୍ତକୁ ଶ୍ରୀକୃଷ୍ଣ ହତ୍ୟା କଲେ ସୁଦ୍ଧା ସାଯୁଜ୍ୟ ମୁକ୍ତି ଦେବା ଠିକ୍ ହେଲା କିପରି ?

ଶୁକଦେବଜୀ ଏହାର ସମାଧାନ କରିବାକୁ ଯାଇ ଏହି ସ୍କନ୍ଧରେ ଆହୁରି ପ୍ରକାଣ୍ଡ ନାସ୍ତିକ ହିରଣ୍ୟ କଶିପୁ ଓ ଅନନ୍ୟ ଭକ୍ତ ପ୍ରହ୍ଲାଦ ଚରିତ ଶୁଣାଇଛନ୍ତି ରାଜାଙ୍କୁ । ଶିଶୁପାଳଙ୍କ ପୂର୍ବ ଜନ୍ମ ହିରଣ୍ୟ କଶିପୁ ଚରିତ ଏକ ଅତୀବ ଶିକ୍ଷଣୀୟ ଦୃଷ୍ଟାନ୍ତ । ରହସ୍ୟଟି ହେଲା ଜଣେ ଦେବତା ଜନ୍ମ ପାଉଥିଲା ବେଳେ ଆଉ ଜଣେ ଦାନବ, ମାନବ ଜନ୍ମ ପାଏ କାହିଁକି ? ଏହା ନିଶ୍ଚୟ ଈଶ୍ୱରଙ୍କ ନିଷ୍ଠୁରତା ହୋଇଥିବ । କଥାଟି

କିନ୍ତୁ ଭିନ୍ନ ପ୍ରକାରର । ଭିନ୍ନ ଭିନ୍ନ ଯୋନି ମିଳେ ଜୀବକୁ ତାର ଜନ୍ମ ଜନ୍ମାନ୍ତରର କୃତ କର୍ମର ଫଳ ରୂପେ । ତେବେ ଜଣେ ସତ୍ କର୍ମ କରୁଥିବା ବେଳେ ଜଣେ ଅସତ୍ କର୍ମ ମଧ୍ୟ କରେ । ଏହାର କାରଣ ପରମେଶ୍ୱରଙ୍କ ନିଷ୍ଠୁରତା ହୋଇପାରେ । ଏହା ମଧ୍ୟ ଏକ ପ୍ରମାଦ ପୂର୍ଣ୍ଣ ସିଦ୍ଧାନ୍ତ । ଏଥିରେ ଭଗବାନଙ୍କ ନିର୍ଦ୍ଦୟତା ନ ଥାଏ ବରଂ କୃପା ଲୁଚି ରହିଥାଏ ।

ହିରଣ୍ୟକଶିପୁ, ରାବଣ, ଶିଶୁପାଳ ତିନି ଜନ୍ମରେ ସେଇ ଜଣେ ସାଧକ ନିତ୍ୟ ବିଷ୍ଣୁପାର୍ଷଦ ଜୟ ଏକ ବ୍ରହ୍ମଶାପର ଫଳ ଭୋଗ କରିଛନ୍ତି । ପ୍ରାୟଶ୍ଚିତ କର୍ମ ପୂର୍ଣ୍ଣ କରିସାରି ପୁଣି ବୈକୁଣ୍ଠରେ ସ୍ଥାନ ପାଇଛନ୍ତି ନିଜ ପଦବୀରେ । ସେଇ ଭଳି ହିରଣ୍ୟାକ୍ଷ, କୁମ୍ଭକର୍ଣ୍ଣ ଓ ଦନ୍ତବକ୍ତ୍ରଙ୍କ ଚରିତ, ବିଜୟଙ୍କର । ଜନ୍ମ ସିନା ହେଲା ତିନୋଟି କିନ୍ତୁ ଆତ୍ମା ପରା ସେଇ ଗୋଟିକ ।

ଇନ୍ଦ୍ରିୟମାନଙ୍କୁ କଲବଲ କରନ୍ତି ଜୀବର ଭୋଗ ସଂଗ୍ରହ ଇଚ୍ଛା ସ୍ଥୂଳ ଶରୀରରେ । ସୂକ୍ଷ୍ମ ଶରୀରରେ ସେ ଇଚ୍ଛାଙ୍କ ନାମ କାମନା; ଯେଉଁମାନେ ଜୀବର ମନ, ବୁଦ୍ଧିକୁ ପକାଉଠା କରନ୍ତି । ସେଇ କାମନାମାନଙ୍କର ଗନ୍ତାଘର ଆମର ନିଜର କାରଣ ଶରୀର । ସେଠାରେ ସେମାନଙ୍କର ନାମ ରାଗ ଓ ଦ୍ୱେଷ ରୂପ ବାସନା । ଏବେ ବୁଝାଯାଉ ଏ ବାସନାର ସଦ୍ ଅସଦ୍ ଭେଦ କାହିଁକି ? ଏମାନେ ଯଦି ବିଷୟ ଭୋଗ ଆଡକୁ ମୁହାଁନ୍ତି, ଏମାନଙ୍କ ନାମ ଅସଦ୍ ବାସନା । ଯାହା ଘଟିଛି ହିରଣ୍ୟାକ୍ଷଙ୍କ କ୍ଷେତ୍ରରେ ବିଷୟ ସଂଗ୍ରହ ବୃତ୍ତି ଭାବରେ । ପୁଣି ଘଟିଛି ହିରଣ୍ୟ କଶିପୁଙ୍କ ଜୀବନରେ ବିଷୟ ଭୋଗ ବୃତ୍ତି ଆକାରରେ । ଏହି ବିଷୟ ସଂଗ୍ରହ ଓ ଭୋଗ ବୃତ୍ତିର ଅନ୍ୟ ନାମ ଲୋଭ । ଆଉ ଏକ ନାମ ଅସଦ୍ ବାସନା ।

କାମ ରୂପୀ ରାବଣ ଓ କୁମ୍ଭକର୍ଣ୍ଣଙ୍କୁ ଉଦ୍ଧାର କରିବାକୁ ଭଗବାନଙ୍କର କେବଳ ରାମ ଅବତାର ହୋଇଛି । କ୍ରୋଧରୂପୀ ଶିଶୁପାଳ ଓ ଦନ୍ତବକ୍ତ୍ରଙ୍କୁ ଉଦ୍ଧାର କରିବାକୁ କୃଷ୍ଣ ଅବତାର ଯଥେଷ୍ଟ ହୋଇଛି କିନ୍ତୁ ଲୋଭରୁ ଉଦ୍ଧାର କରିବାକୁ ହିରଣ୍ୟାକ୍ଷ ଓ ହିରଣ୍ୟ କଶିପୁଙ୍କ ପାଇଁ ଭଗବାନଙ୍କର ଦୁଇ ଦୁଇ ଅବତାର, ବରାହ ଓ ନୃସିଂହ ଅବତାର ଦରକାର ପଡିଲା । କାମ ଓ କ୍ରୋଧଠାରୁ ଲୋଭ ଅଧିକ ଭୟଙ୍କର । ତାର ଅନ୍ୟ ଏକ ନାମ ଅସଦ୍ ବାସନା ।

ଜୀବ ସ୍ୱଭାବରେ ଅଭିମାନୀ, ଅହଂକାରୀ । ସେ ଯାହା କରେ କର୍ମ । ଈଶ୍ୱର ନିରଭିମାନୀ । ଯାହା କରନ୍ତି ସେ ଲୀଳା । ରାଗ ଦ୍ୱେଷରେ ସମତା ଏକ ଈଶ୍ୱରୀୟ

ଭାବ । ବିଷମତା ମାୟା ମହାରାଣୀଙ୍କ ପ୍ରେରିତ ଜୀବର ଅସତ୍ କର୍ମ । ସଂସାରରେ ମାଆ ଛୁଆକୁ ଦଣ୍ଡ ଦିଏ । ଆମେ ଦେଖୁ ମାଆର ନିଷ୍ଠୁର କର୍ମ । ଅଥଚ ମାଆର ସେ ବ୍ୟବହାରରେ ଛୁଆ ପ୍ରତି ସର୍ବଦା ପ୍ରେମ, କୃପା, ଶୁଭେଚ୍ଛା ଛପି ରହିଥାଏ । ସେହିଭଳି ଠିକ୍ ଈଶ୍ୱରୀୟ କୃପା । ଜୀବର କର୍ମ ସିନା ବନ୍ଧନ କାରକ । ହେଲେ ଈଶ୍ୱରଙ୍କ ଲୀଳା ସର୍ବଦା ଜୀବର ମୁକ୍ତିଦାୟକ । ରାକ୍ଷସରାଜ ହିରଣ୍ୟ କଶିପୁ ଜୀବର ଅହଂକାରର ପ୍ରତୀକ । ତଥାପି ହିରଣ୍ୟ କଶିପୁ ଥିଲେ ଜଣେ ମହାନ୍ ତପସ୍ୱୀ ଓ ମହାଜ୍ଞାନୀ ମଧ୍ୟ । ସାନ ଭାଇ ହିରଣ୍ୟାକ୍ଷଙ୍କ ମୃତ୍ୟୁବେଳେ ସେ ବନ୍ଧୁ କୁଟୁମ୍ବଙ୍କୁ ବ୍ରହ୍ମଜ୍ଞାନ, ଆତ୍ମାର ଅବିନଶ୍ୱରତା ଆଦି ଉପଦେଶ ଦେଉଥିଲେ । କହିଲେ; କାହାରି ମୃତ୍ୟୁରେ ଆମେ ଶୋକ, ଦୁଃଖ ପ୍ରକାଶ କରିବା ଅଦରକାରୀ । ସେ ନିଜେ କିନ୍ତୁ ଭ୍ରାତୃବଧର ପ୍ରତିଶୋଧ ନେବା ପାଇଁ ମନ୍ଦରାଚଳ ଚାଲିଲେ ତପସ୍ୟା କରିବାକୁ । ଯେ ଅନ୍ୟକୁ ଉପଦେଶ ଦିଏ କିନ୍ତୁ ସ୍ୱୟଂ ତାଙ୍କୁ ପାଳନ କରେ ନା; ସେଇ ତ' ଅସୁର । ସୁତରାଂ ଅହଂକାରୀ କିଏ ? ଯେ ନିଜକୁ ନିରହଂକାରୀ ବୁଝେ । କହିବୁଲେ ମଧ୍ୟ ।

ଦୈତ୍ୟରାଜ ବତିଶି ହଜାର ବର୍ଷ ତପସ୍ୟା କଲେ । ବ୍ରାହ୍ମାଙ୍କୁ ସନ୍ତୁଷ୍ଟ କଲେ । ଅମର ବର ପ୍ରାର୍ଥନା କଲେ । ଭାଗବତଙ୍କ ମତରେ ନିଜକୁ ଅମର କରିବା ଇଚ୍ଛା ହିଁ ଅସଦ୍ ବାସନା । ତପସ୍ୟା ଶକ୍ତି ସିନା ବୃଦ୍ଧି ହେଲା ରାକ୍ଷସ ରାଜଙ୍କର । ତାଙ୍କର ବୁଦ୍ଧି କିନ୍ତୁ ଥିଲା ଅଶୁଦ୍ଧ । ପରେ ପରେ ନିଜ ସମ୍ପତ୍ତି, ସିଂହାସନ ଓ ଶକ୍ତିର ଦୁରୁପଯୋଗ କଲେ ସେ । ଭଗବାନଙ୍କ କୃପାରୁ ପ୍ରହ୍ଲାଦଙ୍କ ଭଳି ମହାନ୍ ହରି ଭକ୍ତଙ୍କ ସତ୍ସଙ୍ଗର ମଧ୍ୟ ଲାଭ ଉଠାଇପାରିଲେ ନି । ଧର୍ମ-ଅର୍ଥ-କାମ ଲକ୍ଷ୍ୟ ପୂର୍ତ୍ତିରେ ଲାଗିଲେ । ମୋକ୍ଷକୁ ଭୁଲିଗଲେ । ଭକ୍ତ ପ୍ରହ୍ଲାଦ ବୁଝାଇଲେ ପିତାଙ୍କୁ, ସଂସାରୀ ପ୍ରେମ ମାତ୍ରକେ ସ୍ୱାର୍ଥ ପରକ । ହରି ପ୍ରେମ କେବଳ ନିର୍ମଳ । ହିରଣ୍ୟ କଶିପୁ କିନ୍ତୁ ଓଲଟା ବୁଝିଲେ । ପୁତ୍ରକୁ ମାରିବାକୁ ଯାଇ ନିଜେ ପୈତୃକ ପ୍ରାଣଟି ହରାଇ ବସିଲେ । ତଥାପି ନାରାୟଣଙ୍କ ହସ୍ତରେ ପ୍ରାଣ ଛାଡିବାରୁ ତାଙ୍କର କୃପା ମଧ୍ୟ ପ୍ରାପ୍ତ ହେଲେ । ଏବେ ନୃସିଂହ ମନ୍ଦିରରେ ଠାକୁରଜୀଙ୍କ ସହ ପୂଜାଫୁଲ, ଧୂପ, ଦୀପ, ଭୋଗ ସବୁ ମିଳୁଛି ତାଙ୍କୁ । ଏହା କ'ଣ କମ୍ ଗୌରବର କଥା !!!

ପରବର୍ତ୍ତୀ ପ୍ରସଙ୍ଗରେ ଆଜନ୍ମ ବୈଷ୍ଣବ ପ୍ରହ୍ଲାଦଜୀଙ୍କ ଚରିତ ଆଲୋଚିତ ହେବ ସତ୍ ବାସନା ପ୍ରକରଣରେ ।

-୦-

# ପ୍ରକରଣ-୧୯

## ସତ୍ ବାସନା (ଭକ୍ତି) ।(ଅଧ୍ୟାୟ ୬ଷ-୧୦ମ)

## ଅଥ ୬ଷ୍ଠ ଅଧ୍ୟାୟଃ

### (ଅସୁର ବାଳକ ମାନଙ୍କୁ ପ୍ରହ୍ଲାଦଜୀଙ୍କ ହରିଭଜନ ଉପଦେଶ)

ପ୍ରହ୍ଲାଦ ଉବାଚ

ପ୍ରଶ୍ନ-୫୫. ପିଲାଦିନରେ ହସି ଖେଳି ଯୌବନକାଳରେ ଜୀବନ ଭୋଗ ବିଳାସରେ କଟାଇ ବୃଦ୍ଧକାଳରେ ହରିଭଜନରେ କଅଣ କିଛି କ୍ଷତି ହେବ କି ?

**କୌମାର ଆଚରେତ୍ ପ୍ରାଜ୍ଞୋ ଧର୍ମାନ୍ ଭାଗବତାନ୍ ଇହ ।**
**ଦୁର୍ଲ୍ଲଭଂ ମାନୁଷଂ ଜନ୍ମ ତଦ୍ ଅପି-ଅଧ୍ରୁବଂ ଅର୍ଥଦମ୍ ॥୧॥**

ଉ.ପ୍ରହ୍ଲାଦଜୀ କହିଲେ , 'ଦେଖ ପିଲାଏ, ଏ ଜୀବନ ଆମକୁ ମିଳିଛି ଏକ ଉଚ୍ଚତର ଲକ୍ଷ୍ୟ (ଅର୍ଥଦଂ) ପ୍ରାପ୍ତି ପାଇଁ । ଏହା ପୁଣି କ୍ଷଣଭଙ୍ଗୁର ଓ ଅନିଶ୍ଚିତ ମଧ୍ୟ (ଅଧ୍ରୁବଂ) । କିଏ ଜାଣେ, ଜଣେ ଯୁବକ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ବଂଚିବ କି ନା ! ସୁତରାଂ ବାଳକ ଅବସ୍ଥାରୁ ଭକ୍ତି କଲେ ଫଳ ପ୍ରାପ୍ତି ନିଶ୍ଚୟ ଘଟିବ । ହରି ମିଳିବେ ।'

ପ୍ରଶ୍ନ-୫୬. ଅଳ୍ପଦିନ ତପସ୍ୟା କରି ବ୍ରହ୍ମା ଶଙ୍କର ଇନ୍ଦ୍ର, ଆଦି ଦେବତାଙ୍କୁ ଭକ୍ତି ଦ୍ୱାରା ପ୍ରସନ୍ନ କରି ଜଣେ ଭୋଗ୍ୟ ବସ୍ତୁ ହାସଲ କଲେ ଅସୁବିଧା କ'ଣ ?

**ଯଥା ହି ପୁରୁଷସ୍ୟ-ଇହ ବିଷ୍ଣୋଃ ପାଦ-ଉପସର୍ପଣମ୍ ।**
**ଯତ୍ ଏଷ ସର୍ବ ଭୂତାନାଂ ପ୍ରିୟ ଆତ୍ମା -ଈଶ୍ୱରଃ ସୁହୃତ୍ ॥୨॥**

ଉ.ବିଷ୍ଣୁଙ୍କ ବ୍ୟତୀତ ବ୍ରହ୍ମାଜୀ ଇନ୍ଦ୍ରାଦି ସମସ୍ତ ଦେବତା ଅତ୍ୟନ୍ତ ସ୍ୱାର୍ଥପର । ସେମାନେ ଏହି ସଂସାରରେ (ଇହ )ଆମେ ମାଗୁଥିବା ପଦାର୍ଥର ଭଲ-ମନ୍ଦ ବିଚାର ନ କରି ସବୁ ଦେଇପକାନ୍ତି । ସେ ସବୁ ଭୋଗ କଲେ ଆମର କେଉଁ ଅସୁବିଧା ହେବ ସେମାନେ ସେ ସବୁଙ୍କୁ ଆଦୌ ବିଚାର କରନ୍ତି ନାହିଁ । ଆମେ ହୁଏତ ପରେ ଅସୁବିଧାରେ ପଡ଼ିବା । ଠିକ୍ ଯେମିତି ଆମ ରାଜା, ମୋ ପିତା ହିରଣ୍ୟ କଶିପୁ ହଇରାଣରେ ପଡ଼ିଛନ୍ତି । ଶ୍ରୀହରି ବିଦ୍ୱେଷୀ ହୋଇ ପଡ଼ିଛନ୍ତି । ଭଗବାନ ଶ୍ରୀହରି କିନ୍ତୁ ଆମ ସମସ୍ତଙ୍କର ଆତ୍ମା, ଶାସନ କର୍ତ୍ତା ଓ ଶୁଭଚିନ୍ତକ (ସୁହୃତ) ।

ପ୍ରଶ୍ନ-୫୭. ଧର୍ମ-ଅର୍ଥ-କାମ ଶାସ୍ତ୍ର ଅଧ୍ୟୟନ କଲେ ସଂସାରରେ ଲୋକ

ସୁଖୀ ହେବା କୌଶଳ ଜାଣିପାରେ । ଜଣେ ସଂସାରରେ ସୁଖୀ ହେବାକୁ ଚେଷ୍ଟା କରିବାରେ ଭୁଲ ରହିଲା କେଉଁଠି ?

**ସୁଖଂ ଐନ୍ଦ୍ରିୟକଂ ଦୈତ୍ୟା ଦେହ ଯୋଗେନ ଦେହିନାମ୍ ।**
**ସର୍ବତ୍ର ଲଭ୍ୟତେ ଦୈବାତ୍ ଯଥା ଦୁଃଖଂ ଅଯତ୍ନତଃ ।।୩।।**

ଉ.ନା,ନା କଦାପି ନୁହେଁ । ଇନ୍ଦ୍ରିୟ ଭୋଗ ସୁଖ ତ ପଶୁ -ପକ୍ଷୀ ଯୋନିରେ ମଧ୍ୟ ମିଳି ପାରିବ କିନ୍ତୁ ସେଥିରେ ହରିଭଜନ କରିହେବ କି ? ଆଦୌ ନୁହେଁ । ସୁଖ-ଦୁଃଖ ତ ପ୍ରାରବ୍ଧରୁ ମିଳେ । ପୂର୍ବଜନ୍ମ କୃତ ପୁଣ୍ୟର ଫଳ ଆମକୁ ଆପେ ଆପେ(ଦୈବାତ) ମିଳେ ସୁଖ ରୂପେ । ଯେମିତି ଦୁଃଖ ପାଇବାକୁ କାହାକୁ ଯତ୍ନ କରିବାକୁ ପଡ଼େନା । ଆପେ ଆପେ ମିଳେ । ବିନା ଚେଷ୍ଟାରେ ! !

ପ୍ରଶ୍ନ-୫୮. ଇନ୍ଦ୍ରିୟ ସୁଖ ପ୍ରାପ୍ତି ପାଇଁ ପୁରୁଷାର୍ଥ କଲେ କଅଣ ମୁକ୍ତିଦାତା (ମୁକୁନ୍ଦ)ଙ୍କର ଚରଣ କମଳ ପ୍ରାପ୍ତି ହେବନି କି ?

**ତତ୍ ପ୍ରୟାସୋ ନ କର୍ତ୍ତବ୍ୟୋ ଯତ ଆୟୁଃ ବ୍ୟୟଃ ପରମ୍ ।**
**ନ ତଥା ବିନ୍ଦତେ କ୍ଷେମଂ ମୁକୁନ୍ଦ ଚରଣ -ଅମ୍ବୁଜମ୍ ।।୪।।**

ଉ.ସେ ଭଳି ପୁରୁଷାର୍ଥରେ କେବଳ ଶ୍ରମ ଓ ସମୟର ଅପବ୍ୟୟ ହୁଏ । ଆଦୌ ପରମ ଲକ୍ଷ୍ୟ (କ୍ଷେମଂ)ପ୍ରାପ୍ତି ହୋଇ ପାରେ ନାହିଁ । ସଂସାର ଭୋଗରେ ବୈରାଗ୍ୟ ଆସିଲେ ସିନା ହୁଅନ୍ତା । ହୁଏ କେବଳ ହରିଭଜନରେ । ତାହାହିଁ ଜୀବର ଆୟୁଷର ଅସଲି ସଦୁପଯୋଗ ।

ପ୍ରଶ୍ନ-୫୯. ପିଲାଦିନରୁ ହରିଭଜନ ଆରମ୍ଭ କଲେ କେତେ ବେଳେ ତାକୁ ବନ୍ଦ କରିବାକୁ ପଡ଼ିବ ?

**ତତୋ ଯତେତ କୁଶଳଃ କ୍ଷେମାୟ ଭୟଂ ଆଶ୍ରିତଃ ।**
**ଶରୀରଂ ପୌରୁଷଂ ଯାବତ୍ ନ ବିପଦ୍ୟେତ ପୁଷ୍କଳମ୍ ।।୫।।**

ଉ. ବନ୍ଦ କରିବା ଆଦୌ ଦରକାର ପଡ଼ିବନି । ଏ ଦେହ ଆମକୁ ମିଳିଛି କେବଳ ସେଇ ଗୋଟିଏ କାମ କରିବାକୁ । ସେ କାମ ସହିତ ଅନ୍ୟକାମ କଲେ ଚଳିବ । ନ କଲେ ମଧ୍ୟ ଚଳିଯିବ । ଯେ ପର୍ଯ୍ୟନ୍ତ ଆମକୁ ସଂସାର ଭୟ ଦେଖାଉଛି, ମୃତ୍ୟୁ ଭୟ ଦେଖାଉଛି ଦେହ ସୁସ୍ଥ ସବଳ ପୁଷ୍ଟ (ପୁଷ୍କଳମ୍)ଅଛି, ଇନ୍ଦ୍ରିୟ ସବଳ ଅଛନ୍ତି ଆମେ ଜୀବନର ଚରମଲକ୍ଷ୍ୟ ପ୍ରାପ୍ତି ପର୍ଯ୍ୟନ୍ତ ଯତ୍ନ କରିଯିବା ଉଚିତ୍ ହେବ । ଏହା ତ ଜଣେ ବୁଦ୍ଧିମାନ ଜୀବର ସତ୍ କର୍ମ ।

ପ୍ରଶ୍ନ-୬୦. ଜଣେ ମଣିଷର ଆୟୁଷ ଶହେ ବର୍ଷ ଧରାଗଲେ ସେ କଅଣ ଶହେ ବର୍ଷ ହରିଭଜନ କରିପାରିବ ?

**ପୁଂସୋ ବର୍ଷ ଶତଂ ହି-ଆୟୁଃ ତତ୍ ଅର୍ଦ୍ଧଂ ଚ-ଅଜିତ-ଆତ୍ମନଃ ।**
**ନିଷ୍ଫଳଂ ଯତ୍ ଅସୌ ରାତ୍ର୍ୟାଂ ଶେତେଽନ୍ଧଂ ପ୍ରାପିତଃତମଃ ।।୬।।**

ଉ.କେମିତି କରିବ ? ଶୋଇଗଲେ ସେ ତ ତମୋଗୁଣରେ ଆଚ୍ଛନ୍ନ ହୋଇ ଅନ୍ଧଭଳି ଆୟୁଷ ସାରିଦେବ । ଭଜନ ସତ୍ତ୍ୱଗୁଣରେ ହୁଏ । ତମୋ ଗୁଣରେ ହୁଏନା । ଦିନକ ଚବିଶ ଘଣ୍ଟାରୁ ରାତି ବାରଘଣ୍ଟା ନିଷ୍ଫଳରେ କଟିଯାଏ ତାର ଅଜାଣତରେ । ତାର ଇନ୍ଦ୍ରିୟ-ମନ-ବୁଦ୍ଧି ଅସଂଯମୀ, ଅଣଆୟତ ଥିବାରୁ ଭଜନ କରିପାରେନି ବିଚରା ! ଶହେ ବର୍ଷ ହରି ଭଜନ କରିବ କୁଆଡୁ ?

ପ୍ରଶ୍ନ-୬୧. ଜଣେ ପିଲାଦିନରୁ ଚେଷ୍ଟା କଲେ କେତେ ବର୍ଷ ହରିଭଜନ କରିପାରିବ ?

**ମୁଗ୍‌ଧସ୍ୟ ବାଲ୍ୟେ କୈଶୋରେ କ୍ରୀଡ଼ତୋ ଯାତି ବିଂଶତି. ।**
**ଜରୟା ଗ୍ରସ୍ତ ଦେହସ୍ୟ ଯାତି-ଅକଲ୍‌ପସ୍ୟ ବିଂଶତିଃ ।।୭।।**

ଉ.ଆୟୁଶ ଶହେ ବର୍ଷ ମଧ୍ୟରୁ ଦଶ ବର୍ଷ ବାଲ୍ୟ, ଆଉ ଦଶ ବର୍ଷ କୈଶୋର ଅବସ୍ଥାରେ ଖେଳ କୁଦ ମସ୍ତିରେ କଟିଯାଏ । ଜରାବସ୍ଥାରେ ଶେଷ କୋଡ଼ିଏ ବର୍ଷ ଇନ୍ଦ୍ରିୟ ଶକ୍ତି ଶିଥିଳ ହୋଇଯାଆନ୍ତେ ହରି ଭଜନ ହୋଇପାରେନା । ବାକୀ ମଧ୍ୟାବସ୍ଥାରେ ଅତିବେଶିରେ ଷାଠିଏ ବର୍ଷ କରାଯାଇପାରେ ।

ପ୍ରଶ୍ନ-୬୨. ଶହେ ବର୍ଷ ଆୟୁଷରୁ ୬୦ ବର୍ଷ ହରିଭଜନ କଲେ କଅଣ ଯଥେଷ୍ଟ ହେବନି କି ?

**ଦୂରାପୂରେଣ କାମେନ ମୋହେନ ଚ ବଳୀୟସା ।**
**ଶେଷଂ ଗୃହେଷୁ ସକ୍ତସ୍ୟ ପ୍ରମତ୍ତସ୍ୟ-ଅପୟାତି ହି ।।୮।।**

ଉ. ଯୌବନ ଓ ପ୍ରୌଢ଼ ଅବସ୍ଥାର ଷାଠିଏ ବର୍ଷରେ କେବେ ବି ପୂରଣ ହୋଇ ପାରୁନଥିବା ଭୋଗ କାମନା ବାସନା ପୁରୁଷ ନାରୀଙ୍କୁ ଅତ୍ୟନ୍ତ ଅସ୍ତ ବ୍ୟସ୍ତ କରିପକାନ୍ତି । ଗୃହ-ଦାରା-ସୁତ ଆସକ୍ତିରେ ଛନ୍ଦିହୋଇ ଭୋଗ ସୁଖରେ ପାଗଳ-ପାଗଳୀ ପ୍ରାୟ ହୋଇଯାଏ । ବିଚରାର ବେହୋସ ଅବସ୍ଥା । ସୁତରାଂ ଏତକ ଆୟୁଷ ମଧ୍ୟ ହାତରୁ ଅଜାଣତରେ ଖସିଯାଏ । ହରି ଭଜନ କରିବ କେତେବେଳେ ?

ପ୍ରଶ୍ନ-୬୩. ଯଦି ଗୃହ ଓ ଗୃହସ୍ଥ ଆଶ୍ରମ ସଂସାର ବନ୍ଧନରୁ ମୁକୁଳିବାରେ

ସାଧକ ନ ହୋଇ ବାଧକ ହୁଅନ୍ତି ତେବେ ସଂସାରରେ ଲୋକେ ଗୃହ ତିଆରି କରନ୍ତି କାହିଁକି ବୈଦିକ ନୀତି ପାଳନ କରି ବିବାହ କରି ଗୃହସ୍ଥ ଆଶ୍ରମ କରନ୍ତି କାହିଁକି ?

**କୋ ଗୃହେଷୁ ପୁମାନ୍ ସକ୍ତଂ ଆତ୍ମାନଂ ଅଜିତ-ଇନ୍ଦ୍ରିୟଃ ।**
**ସ୍ନେହ ପାଶୈଃ ଦୃଢ଼ୈଃ ବଦ୍ଧଂ ଉତ୍ସହେତ ବିମୋଚିତୁମ୍ ॥୯॥**

ଉ. କଥାଟିର ରହସ୍ୟ ଅଲଗା ପ୍ରକାରର । ଗୃହ କିମ୍ବା ଗୃହସ୍ଥ ଆଶ୍ରମ ଜୀବକୁ ବାନ୍ଧନ୍ତି ନାହିଁ । ବାନ୍ଧନ୍ତି ସେମାନଙ୍କ ଆସକ୍ତି (ସକ୍ତଂ) 'ସେଥିରୁ ସୁଖ ମିଳିବ ବୋଲି ଆଶା କରିବା' ଆସକ୍ତି ନାମରେ ଖ୍ୟାତ । ଆସକ୍ତି ଥିବା ଲୋକଙ୍କୁ ଗୃହମେଧୀ ଓ ଆସକ୍ତି ନ ଥିବା ଲୋକଙ୍କୁ ଗୃହସ୍ଥ ବୋଲି ଭାଗବତ ଗ୍ରନ୍ଥ ଚିହ୍ନେଇ ଦିଅନ୍ତି । ସଂସାରରୁ ବନ୍ଧନ ମୁକ୍ତ ହେବାକୁ ତ ଗୃହସ୍ଥ ଆଶ୍ରମର ବ୍ୟବସ୍ଥା କରାଯାଇଛି । ଗୃହମେଧୀରୁ ଗୃହସ୍ଥ ହେବାର ଚାବି କାଠି ହେଲା ବୈରାଗ୍ୟ (ଅନାସକ୍ତି ) ।

ପ୍ରଶ୍ନ-୬୪. ଗୃହ-ଗୃହସ୍ଥାଶ୍ରମ ତ୍ୟାଗ ନ କରି ଧନ ଆସକ୍ତି ଧନ ତୃଷ୍ଣା ତ୍ୟାଗ କରିଦେଲେ ପାଇଟି ଛିଡ଼ିଜିବନି କି ?

**କୋ ନୁ-ଅର୍ଥତୃଷ୍ଣାଂ ବିସୃଜେତ୍ ପ୍ରାଣେଭ୍ୟୋଽପି ଯ ଇପ୍ସିତଃ ।**
**ଯଂ କ୍ରୀଣାତି-ଅସୁଭିଃ ପ୍ରେଷ୍ଠୈଃ ତସ୍କରଃ ସେବକୋ ବଣିକ୍ ॥୧୦॥**

ଉ.ଗୃହକୁ ମୋର ଭାବୁଥିବା ଲୋକଟିଏ ଧନ ସଂଗ୍ରହ ଲାଳସା ଛାଡ଼ିବା କେବଳ କୋରା କଳ୍ପନା । ଅସମ୍ଭବ । ଚୋର, ଚାକିରୀଆ (ସେବକୋ), ବ୍ୟବସାୟୀମାନେ ପରା ନିଜ ପୈତୃକ ପ୍ରାଣକୁ ବାଜି ଲଗାଇ ଅର୍ଥ ସଂଗ୍ରହରେ ମାତନ୍ତି । ରତ୍ନାକର ଦସ୍ୟୁ ମଣିଷ କ'ଣ ମୁନି ଋଷିଙ୍କୁ କୁରାଢ଼ିରେ ହାଣି କୁଟୁମ୍ବ ପୋଷି 'ପେଟ ପୋଷ ନାହିଁ ଦୋଷ କହି' ନିଜକୁ ନିର୍ଦ୍ଦୋଷ ମାନୁଥିଲେ କଳିଯୁଗରେ । ଧନ୍ୟ ଗୃହସ୍ଥ,ଧନ୍ୟ କୁଟୁମ୍ବ ପାଳନ ନିଶା !

ପ୍ରଶ୍ନ-୬୫. ଜଣେ ଗୃହମେଧୀ ଲୋକଙ୍କୁ ପତ୍ନୀ ଓ ସନ୍ତାନ କେଉଁ ରସିରେ ବାନ୍ଧିଥାନ୍ତି ?

**କଥଂ ପ୍ରିୟାୟା ଅନୁକମ୍ପିତାୟାଃ**
**ସଙ୍ଗଂ ରହସ୍ୟଂ ରୁଚିରାନ୍ ଚ ମନ୍ତ୍ରାନ୍ ।**
**ସୁହୃତ୍ସୁ ତତ୍ ସ୍ନେହ ସିତଃ ଶିଶୂନାଂ**
**କଳ-ଅକ୍ଷରାଣାଂ ଅନୁରକ୍ତ ଚିତ୍ତଃ ॥୧୧॥**

ଉ.ପତ୍ନୀଙ୍କ ସହିତ ଏକାନ୍ତ ସହବାସ ସୁଖ, ମଧୁର ବାଣୀ, ନୂଆନୂଆ ସୁଖ ପ୍ରାପ୍ତିର ଉପାୟର ଉପଦେଶ, ଭାଇ-ବନ୍ଧୁ-କୁଟୁମ୍ବର ସ୍ନେହ ସହାନୁଭୂତି, ନବଜାତ ପୁତ୍ରକନ୍ୟା-ନାତି-ନାତୁଣୀ ମାନଙ୍କ ଦରୋଟି କଥା (ତୋତଲୀ ବୋଲୀ) -ଏଇ ତ' ଗୃହ ମେଧୀ ଲୋକକୁ ବାନ୍ଧିବାର ଅଛିଣ୍ଡା ଦଉଡ଼ି । ରସନା ଇନ୍ଦ୍ରିୟ ଓ ଉପସ୍ଥ ଇନ୍ଦ୍ରିୟ ସୁଖ ଭୋଗ ଲାଳସା କିଏ ଅତୀତରେ ଛାଡ଼ିପାରିଛି ନା ଭବିଷ୍ୟତରେ କିଏ ଛାଡ଼ି ପାରିବ ? ପର୍ବତ ପରି ବୁଦ୍ଧି ବା ସମୁଦ୍ର ପରି ଜ୍ଞାନ କିଛି କାମ ଦିଅନ୍ତି ନାହିଁ ସେ ସୁଖ ଲାଳସା ଆସକ୍ତି ଦଉଡି ପାଖରେ ।

ପ୍ରଶ୍ନ-୬୬.ଅମାପ ଧନ ଅର୍ଜନ କରି ବିଷୟ ସୁଖ ନିଜେ ଭୋଗ କରି ବା ଅନ୍ୟକୁ ଭୋଗ କରାଇ ଯଦି ଜଣେ ନିଜେ ପ୍ରସନ୍ନ ହୁଏନା କି ସଂସାରକୁ ପ୍ରସନ୍ନ କରିପାରେ ନା ତେବେ କି ମାର୍ଗରେ ସେ ଆଉ କାହାକୁ ପ୍ରସନ୍ନ କରିପାରିବ ?

**ନ ହି-ଅଚ୍ୟୁତଂ ପ୍ରୀଣୟତୋ ବହୁ-ଆୟାସୋଽସୁର-ଆତ୍ମଜାଃ ।**
**ଆତ୍ମତ୍ୱାତ୍ ସର୍ବଭୂତାନାଂ ସିଦ୍ଧତ୍ୱାତ୍ ଇହ ସର୍ବତଃ ॥୧୯॥**

ଉ. ଭକ୍ତ ଚୂଡ଼ାମଣି ପ୍ରହ୍ଲାଦଜୀ କହିଲେ, 'ହେ' ଅସୁର ବାଳକମାନେ ପରମ ଈଶ୍ୱର ବିଷ୍ଣୁ ସର୍ବ ସ୍ଥାନରେ,ସର୍ବକାଳରେ ଓ ସର୍ବପ୍ରାଣୀ ମାନଙ୍କ ହୃଦୟରେ ସର୍ବଥା ବିଦ୍ୟମାନ ହୋଇଥିବାରୁ ତାଙ୍କୁ ପ୍ରସନ୍ନ କରିବାରେ ବେଶୀ କିଛି ଚେଷ୍ଟା (ଆୟାସୋ) ଲୋଡ଼ା ପଡ଼େନା । ତାଙ୍କୁ ସେବା କରି ପ୍ରସନ୍ନ କରିବା ଅତ୍ୟନ୍ତ ସହଜ ସରଳ ଓ ସର୍ବଜନସାଧ୍ୟ ମଧ୍ୟ ।'

ପ୍ରଶ୍ନ-୬୭.ଜଣେ ସାରା ଜୀବନ ସେବା କରିଚାଲିଲେ ସେ କିପରି ଜାଣି ପାରିବ ଯେ ପରମାତ୍ମା ତା ଉପରେ ପ୍ରସନ୍ନ ବୋଲି ?

**କେବଳ-ଅନୁଭବ-ଆନନ୍ଦ ସ୍ୱରୂପଃ ପରମେଶ୍ୱରଃ ।**
**ମାୟୟା-ଅନ୍ତର୍ହିତ-ଐଶ୍ୱର୍ଯ୍ୟ ଈୟତେ ଗୁଣ ସର୍ଗୟା ॥୨୩॥**

ଉ. ଏ କଥା ସେ ଅନ୍ୟ କାହାଠାରୁ ପଚାରି ବୁଝିବା ଦରକାର ହୁଏନା । ନିଜେ ତାଙ୍କୁ ଆନନ୍ଦରୂପରେ ଅନୁଭବ କରିହୁଏ । ଦେହକୁ ମୁଁ ମାନିବାରୁ ତାକୁ ମାୟାଙ୍କର ତିନିଗୁଣ ସଂସାର ଆସକ୍ତି ଡ଼ୋରରେ ବାନ୍ଧି ନଚାନ୍ତି । ହରିଶରଣାଗତ ହୋଇଗଲେ ମାୟା ଲୁଚି ପଳାନ୍ତି । ସାଧକ ହୃଦୟରେ ଈଶ୍ୱର ପ୍ରକଟ ହୋଇ ତା ମନକୁ ପ୍ରସନ୍ନତାରେ ଭରିଦିଅନ୍ତି ।

ଅତଏବ ହେ' ଅସୁର ବାଳକମାନେ, ଅସୁର ପ୍ରକୃତି ତ୍ୟାଗ କର । ଭୋଗ

ଆଶା ଦୂରେଇ ଦିଅ । ଘଟ ଘଟ ବାସୀ ଈଶ୍ୱରଙ୍କ ଶରଣାଗତ ହୁଅ । ଜୀବେ ଦୟା କର । ସକଳ ଜୀବଙ୍କର ହିତୈଷୀ ହୁଅ । ତୁମେ ମାୟା ହାତର ଖେଳନା ହୋଇଛ । ଈଶ୍ୱରଙ୍କୁ ପ୍ରସନ୍ନ କଲେ ସେ ତୁମ ହାତର ଖେଳନା ହେବାକୁ ପସନ୍ଦ କରିବେ ।

ପ୍ରଶ୍ନ-୬୮. ଧର୍ମ-ଅର୍ଥ-କାମ ତିନି ସାଧନକୁ ତ୍ରୈବିଦ୍ୟା ବା ତ୍ରିବର୍ଗ ସାଧନ କୁହାଯାଏ । ଆତ୍ମସାକ୍ଷାତ୍‌କାର (ଈକ୍ଷା) ଏ ତିନି ସାଧନ । ଏଥିରେ ନ୍ୟାୟ, ବିଧି ବ୍ୟବସ୍ଥା, ବିଦ୍ୟା (ଦମୌ) ଓ ଜୀବିକା ଅର୍ଜନ ଉପାୟ ବୃତ୍ତି (ବାର୍ତ୍ତା) ବର୍ଣ୍ଣିତ ହେବା କଅଣ ଜୀବର ଅଦରକାରୀ ଜ୍ଞାନ ?

**ଧର୍ମ-ଅର୍ଥ କାମ ଇତି ଯୋଽଭିହିତଃ ତ୍ରିବର୍ଗ**
**ଈକ୍ଷା ତ୍ରୟୀ ନୟ ଦମୌ ବିବିଧା ଚ ବାର୍ତ୍ତା ।**
**ମନ୍ୟେ ତତ୍ ଏତତ୍ ଅଖିଳଂ ନିଗମସ୍ୟ ସତ୍ୟଂ**
**ସ୍ୱ-ଆତ୍ମା-ଅର୍ପଣଂ ସ୍ୱସୁହୃଦଃ ପରମସ୍ୟ ପୁଂସଃ ||୨୬||**

ଉ.ନା,ନା ତାହା ମଧ ଠିକ୍ ନୁହେଁ । ସେ ସବୁ ଜୀବର ଦେହର ରକ୍ଷଣାବେକ୍ଷଣ ଲାଗି ଅତ୍ୟନ୍ତ ଦରକାରୀ । ବେଦ ମନ୍ତ୍ରମାନଙ୍କର ଆଧିଭୌତିକ ଓ ଆଧିଦୈବିକ ଅର୍ଥ ଜାଣିବା ଲାଗି କିନ୍ତୁ ଆଧ୍ୟାତ୍ମିକ ସତ୍ୟ ଜୀବ ଜାଣିପାରି ଜୀବନକୁ ସାର୍ଥକ ସଫଳ କରିପାରେ ପରମାତ୍ମାଙ୍କଠାରେ ସର୍ବସ୍ୱ ସମର୍ପଣ କରି । ସେ ଦୁର୍ଲ୍ଲଭ ଦ୍ରବ୍ୟ ମୋକ୍ଷ ପ୍ରାପ୍ତ ହୁଏ ।

ପ୍ରଶ୍ନ-୬୯. ଏ ଗୁପ୍ତ ବୈଦିକ ଜ୍ଞାନ ମୋକ୍ଷ କଥାକୁ କିଏ ପ୍ରଥମେ କାହାକୁ କହିଥିଲେ ?

**ଜ୍ଞାନଂ ତତ୍ ଏତତ୍ ଅଖିଳଂ ଦୁରବାପଂ ଆହ**
**ନାରାୟଣୋ ନରସଖଃ କିଳ ନାରଦାୟ ।**
**ଏକାନ୍ତିନାଂ ଭଗବତଃ ତତ୍ ଅକିଂଚନାନାଂ**
**ପାଦ-ଅରବିନ୍ଦ ରଜସାଽଽପ୍ଲୁତ ଦେହିନାଂ ସ୍ୟାତ୍ ||୨୭||**

ଉ.ଏ ଜ୍ଞାନ ନିଜେ ବୁଝିବା ପୁଣି ଅନ୍ୟକୁ ବୁଝାଇବା ଉଭୟ ଅତ୍ୟନ୍ତ କଷ୍ଟକର (ଦୁଃଅବାପଂ) । ଏହା ପ୍ରଥମେ ଜୀବର ପରମ ସୁହୃତ୍ (ନରସଖଃ) ନାରାୟଣ ତାଙ୍କ ଶ୍ରେଷ୍ଠ ଅନନ୍ୟ ଭକ୍ତ ନାରଦଜୀଙ୍କୁ ଖୋଲି କହିଥିଲେ । ତୁମେ ମାନେ ମଧ ଶ୍ରୀହରିଙ୍କର କୌଣସି ଅକିଂଚନ ଭକ୍ତର ଚରଣ କମଳ ସେବା (ବୈଷ୍ଣବ ସେବା) କରି ଅକ୍ଲେଶରେ ସ୍ୱୟଂ ଏହାକୁ ପ୍ରାପ୍ତ କରିପାରିବ ।

|| ଅପଣ୍ଡିତ ଦାମୋଦର ବଳୀୟାରସିଂହ ||

ପ୍ରଶ୍ନ-୭୦. ଏହି ପବିତ୍ର ଭକ୍ତି ବା ଭାଗବତ ଧର୍ମଙ୍କୁ ପ୍ରହ୍ଲାଦଜୀ କେଉଁ ସ୍ରୋତରୁ ପ୍ରାପ୍ତ ହେଲେ ?

**ଶ୍ରୁତଂ ଏତତ୍ ମୟା ପୂର୍ବଂ ଜ୍ଞାନଂ ବିଜ୍ଞାନ ସଂଯୁତମ୍ ।**
**ଧର୍ମଂ ଭାଗବତଂ ଶୁଦ୍ଧଂ ନାରଦାତ୍ ଦେବ ଦର୍ଶନାତ୍ ॥୨୮॥**

ଉ.ନାରଦଜୀ ସଦା ସର୍ବଦା ଈଶ୍ୱର (ଦେବ) ଦର୍ଶନ କରନ୍ତି ଓ କରାଇ ପାରନ୍ତି ବୋଲି ତାଙ୍କୁ ଦେବଦର୍ଶନ ନାରଦ୍ କୁହାଯାଏ । ତାଙ୍କଠାରୁ ପ୍ରହ୍ଲାଦଜୀ ଦିବ୍ୟ ଜ୍ଞାନ ବା ଭକ୍ତି ମାହାତ୍ମ୍ୟ ହରି କଥା ଶ୍ରବଣ ମାଧମରେ ପ୍ରାପ୍ତ ହୋଇଥିଲେ ।

ପ୍ରଶ୍ନ-୭୧.ପ୍ରହ୍ଲାଦଜୀଙ୍କ ପାଠଶାଳା ସାଥୀ ମାନେ ଏ କଥା ଶୁଣି କେଉଁ ଶଙ୍କା ପ୍ରକାଶ କଲେ ?

ଦୈତ୍ୟପୁତ୍ରାଃ ଉଚୁଃ

**ପ୍ରହ୍ଲାଦ ତ୍ୱଂ ବୟଂ ଚ-ଅପି ନ-ଋତେଽନ୍ୟଂ ବିଦ୍ମହେ ଗୁରୁମ୍ ।**
**ଏତାଭ୍ୟାଂ ଗୁରୁ ପୁତ୍ରାଭ୍ୟାଂ ବାଳାନାଂ ଅପି ହି-ଈଶ୍ୱରୌ ॥୨୯॥**

ଉ. ସେମାନେ ପଚାରିଲେ, 'ହେ' ପ୍ରହ୍ଲାଦ ! ତୁମର ଓ ଆମର ଏହି ଶୁକ୍ରାଚାର୍ଯ୍ୟଙ୍କର ଦୁଇ ପୁତ୍ର ଷଣ୍ଡ-ଅମର୍କଙ୍କ ବ୍ୟତୀତ ଆଉ କାହା ସହିତ ସଂପର୍କ ନାହିଁ । ସେମାନେ ଆମ ସମସ୍ତଙ୍କୁ ଗୋଡ଼େ ଗୋଡ଼େ ଜଗିଛନ୍ତି ଆମର ଶାସନ କର୍ତ୍ତା(ଈଶ୍ୱରୌ)ହୋଇ । ଅନ୍ୟ ଈଶ୍ୱର ବିଷୟରେ ଆମେ ସଂଶୟଯୁକ୍ତ ।'

ପ୍ରଶ୍ନ-୭୨. ପିଲାମାନେ ପୁଣି ତାଙ୍କର କେଉଁ ସଂଶୟ ଦୂର କରିବାକୁ ଅନୁରୋଧ କଲେ ?

**ବାଳସ୍ୟ -ଅନ୍ତଃ ପୁରସ୍ଥସ୍ୟ ମହତ୍ସଙ୍ଗୋ ଦୁରନ୍ୱୟଃ ।**
**ଛିନ୍ଧି ନଃ ସଂଶୟଂ ସୌମ୍ୟ ସ୍ୟାତ୍ ଚେତ୍ ବିଶ୍ରମ୍ଭ କାରଣମ୍ ॥୩୦॥**

ଉ. କହିଲେ,'ହେ, ଭଦ୍ର ପ୍ରହ୍ଲାଦ ! ତୁମ ପିତାଜୀ ବିଷ୍ଣୁ ଓ ବୈଷ୍ଣବ ଉଭୟଙ୍କ ବିରୋଧୀ ରାଜମହଲକୁ ନାରଦଜୀଙ୍କ ଭଳି ବୈଷ୍ଣବ (ମହତ୍ସଙ୍ଗୋ)ପହଞ୍ଚିବା ଏକାନ୍ତ ଅସମ୍ଭବ ବ୍ୟାପାର । ସୁତରାଂ ତୁମେ ନାରଦଜୀଙ୍କୁ କେଉଁଠି କିପରି ଭେଟିଲ ? ଏ ଭାଗବତ୍ ଜ୍ଞାନ ଶ୍ରବଣ କଲ-ଏ ସନ୍ଦେହ ଦୂର କର ।'

# ଅଥ ୭ମ ଅଧ୍ୟାୟଃ

## (ପ୍ରହ୍ଲାଦଜୀଙ୍କ ମାତୃ ଗର୍ଭରେ ଭାଗବତ ଜ୍ଞାନ ବା ପ୍ରେମ ପ୍ରାପ୍ତି)

### ନାରଦ ଉବାଚ

ପ୍ରଶ୍ନ-୭୩. ନାରଦଜୀ କହିଲେ, 'ହେ' ଯୁଧିଷ୍ଠିର ! ସହପାଠୀମାନଙ୍କ ସଂଶୟ ଦୂର କରିବାକୁ ପ୍ରହ୍ଲାଦ ମୋଠାରୁ ଭାଗବତ ଧର୍ମ ଶିକ୍ଷା କରିଥିବା କାହାଣୀ ସ୍ମରଣ କରି କହିଥିଲେ । ଏହା କେଉଁ ସମୟର କଥା ବୋଲି ପ୍ରହ୍ଲାଦଜୀ ସେମାନଙ୍କୁ କହିଲେ ?

### ପ୍ରହ୍ଲାଦ ଉବାଚ

**ପିତରି ପ୍ରସ୍ଥିତେଽସ୍ମାକଂ ତପସେ ମନ୍ଦର-ଅଚଳମ୍ ।**
**ଯୁଦ୍ଧ-ଉଦ୍ୟମଂ ପରଂ ଚକ୍ରୁଃ ବିବୁଧା ଦାନବାନ୍ ପ୍ରତି ॥୨॥**

ଉ.ପ୍ରହ୍ଲାଦଜୀ ପ୍ରକାଶ କଲେ, 'ହେ' ପିଲାଏ ଶୁଣ ! ପିତା ହିରଣ୍ୟ କଶିପୁ ଭ୍ରାତୃବଧର ପ୍ରତିଶୋଧ ନେବାକୁ ତପସ୍ୟା କରିବାକୁ ଇଚ୍ଛା କଲେ । ସେ ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କୁ ପ୍ରସନ୍ନ କରିବାକୁ ମନ୍ଦର ପର୍ବତକୁ ଗଲେ । ଏ ସୁଯୋଗରେ ଦେବତାମାନେ ଆମ ରାଜମହଲ ନନ୍ଦନ କାନନଉପରେ ଚଢ଼ଉ କଲେ । ଅସୁର ବଂଶୀମାନଙ୍କୁ ଆକ୍ରମଣ କରି ମାରି ପିଟି ପକାଇଲେ । । ଜଣକ ପରେ ଜଣେ ଅସୁର ମରି ପଡ଼ିଲେ । ଅନ୍ୟମାନେ ଦାରା-ସୁତ-ଧନ ଲୋଭ ଛାଡ଼ି ପ୍ରାଣ ଭୟରେ ପଳାଇଲେ ।

ଦେବରାଜ ଇନ୍ଦ୍ର ବନ୍ଦୀ କଲେ ମୋ ମାତା କୟାଧୂଙ୍କୁ । ଜୀବନରେ ମାରିଲେନି କାରଣ ସେ ଗର୍ଭବତୀ ଥିଲେ । ଇନ୍ଦ୍ର ନେଉଥିଲେ ସେ ଗର୍ଭସ୍ଥ ଶିଶୁକୁ ହତ୍ୟାକରି ନିଜେ ନିଷ୍କଣ୍ଟକ ସ୍ୱର୍ଗରାଜ୍ୟ ଭୋଗରେ ମାତିବେ । ସେତେବେଳେ ଗର୍ଭରେ ଥିଲି ମୁଁ ନିଜେ । ମୋର ସୌଭାଗ୍ୟକୁ ନାରଦମୁନି ବାଟ ଓଗାଳିଲେ ଇନ୍ଦ୍ରଙ୍କର । କହିଲେ, 'ଇନ୍ଦ୍ରଦେବତା ହୋଇ କିପରି ପରନାରୀ ସ୍ପର୍ଶ କରୁଛ ପୁଣି ନରହତ୍ୟା କରିବାକୁ ସାହସ କରୁଛ ? ଏ ଗର୍ଭରେ ଅସୁର ନାହାନ୍ତି । ଅଛି ଏକ ବିଷ୍ଣୁଭକ୍ତ ।' ଏକଥା ଶୁଣୁ ଶୁଣୁ ଇନ୍ଦ୍ର ମୋ ମାତାଙ୍କୁ ଛାଡ଼ି ଦେଲେ । ପରିକ୍ରମା କଲେ ତାଙ୍କୁ ସମ୍ମାନ ଜଣାଇ ଜଣେ ବିଷ୍ଣୁ ଭକ୍ତର ମା' ବୋଲି । ଫେରିଗଲେ ଇନ୍ଦ୍ରପୁରୀ ।

ନାରଦ ମୁନି ମୋ ମା'ଙ୍କୁ ଆଣି ପାଳିତା ଝିଅ ଭଳି ରଖିଲେ ନିଜ ଆଶ୍ରମରେ । ପିତାଜୀ ତପସ୍ୟାସାରି ଫେରିବା ପର୍ଯ୍ୟନ୍ତ ମୋ ମା' ମୁନିଶ୍ରେଷ୍ଠଙ୍କ ସେବା କରୁଥାନ୍ତି । ବଦଳରେ ପରମ କୃପାଳୁ ଦେବର୍ଷି ମୋ ମା'ଙ୍କୁ ନିତ୍ୟ ହରିକଥା ଶ୍ରବଣ କରାଉଥାନ୍ତି । ମାଙ୍କ ଗର୍ଭ ମଧ୍ୟରେ ମୁଁ ମଧ୍ୟ ଶୁଣାଥାଏ । କଥା ଶ୍ରବଣବେଳେ ମା' ପିତାଙ୍କ ଆଗମନ

କଥା ଆଦି ଭାବୁ ଥିବାରୁ ସେ ହରିକଥା ସବୁ ମନେ ରଖି ପାରିଲେନି । ମୁନିଙ୍କ କୃପାରୁ ମୋର ସବୁ ମନେ ରହିଗଲା ।'

ପ୍ରହ୍ଲାଦଜୀ ପୁଣି କହିଲେ,'ହେ, ପିଲେ! ତୁମେ ବାଳକ ହେଲେ କଅଣ ହେଲା ? ତୁମେ ଯଦି ମୋ କଥା ବିଶ୍ୱାସ କରିବ, ମୋତେ ଶ୍ରଦ୍ଧା କରିବ ତେବେ ତୁମ୍ଭେ ମାନେ ମଧ୍ୟ ଏ ଭାଗବତ ଧର୍ମ ବୁଝିପାରିବ ଅକ୍ଳେଶରେ ।'

ପ୍ରଶ-୭୪.ସହପାଠୀମାନେ ଆଗ୍ରହରେ ଭାଗବତ ଧର୍ମ ଶ୍ରବଣରେ ଉତ୍ସାହ ପ୍ରକାଶ କରନ୍ତେ ପ୍ରହ୍ଲାଦଜୀ ତାଙ୍କୁ ଏ ଧର୍ମର ମୂଳରୂପକ ଦେହ-ଆତ୍ମାର ପାର୍ଥକ୍ୟ କିପରି ବୁଝାଇଲେ ?

**ଜନ୍ମ-ଆଦ୍ୟାଃ ଷଟ୍ ଇମେ ଭାବା ଦୃଷ୍ଟା ଦେହସ୍ୟ ନ-ଆତ୍ମନଃ ।**
**ଫଳାନାଂ ଇବ ବୃକ୍ଷସ୍ୟ କାଳେନ-ଈଶ୍ୱର ମୂର୍ତ୍ତିନା ॥୧୮॥**

ଉ.ଜନ୍ମ,ଅସ୍ତିତ୍ୱ, ବୃଦ୍ଧି, ରୂପାନ୍ତର, ଅପକ୍ଷୟ ଓ ମୃତ୍ୟୁ-ଏ ଛଅ ପରିବର୍ତ୍ତନ ଜୀବ ଦେହର ହୁଏ । ଆତ୍ମାର ହୁଏନା । ସେ ନିତ୍ୟ ଅପରିବର୍ତ୍ତନୀୟ । କାଳ ରୂପୀ ଈଶ୍ୱର ଯେପରି ବୃକ୍ଷଟିଏ ଜନ୍ମଦେଇ ସେଥିରେ ପତ୍ର, ଶାଖା, ପୁଷ୍ପ ଓ ଫଳ ଫଳାନ୍ତି ଓ ଶେଷରେ ମାରନ୍ତି, ଠିକ୍ ସେହି ପ୍ରକାରେ ସେଇ ପରମାତ୍ମା ହିଁ ସକଳ ଜୀବ-ଦେହର ଅବସ୍ଥାନ୍ତର କରୁଥାନ୍ତି । ଆମ ପାଇଁ ସବୁ କରନ୍ତି ଏବଂ କରାନ୍ତି ।

ସୁନା ବିଶେଷଜ୍ଞ ସୁନା-ସୁନାଖଣି ବିଷୟରେ ଜାଣି ସୁନା ଖଣିରୁ ସୁନାକୁ ମାଟିରୁ ଅଲଗା କରିପାରନ୍ତି । ଠିକ୍ ସେହିଭଳି ଦେହ-ଆତ୍ମାଙ୍କ ପାର୍ଥକ୍ୟ ସଦ୍‌ଗୁରୁ ବୈଷ୍ଣବ ମାନଙ୍କୁ ଜଣା ।

ପ୍ରଶ୍ନ-୭୫. ତତ୍ ଶବ୍ଦ ପରମାତ୍ମା ବାଚକ । ଆତ୍ମା ତାଙ୍କର ଅଂଶ । ଗୁଣାତ୍ମକ ଭାବରେ ଆତ୍ମା -ପରମାତ୍ମା ଉଭୟେ ସତ୍-ଚିତ୍ -ଆନନ୍ଦ ମୟ ହୋଇଥିବାରୁ ଅଭିନ୍ନ । ମାତ୍ର ପରିମାଣ ଦୃଷ୍ଟିରୁ ସେମାନଙ୍କ ଜ୍ଞାନ, ଶକ୍ତି, ବ୍ୟାପକତା ଆଦି ଗୁଣରେ ଭିନ୍ନ ଅଟନ୍ତି । ତେଣୁ ଜୀବାତ୍ମା- ପରମାତ୍ମା ଏକାଧାରରେ ଭିନ୍ନ ଓ ଅଭିନ୍ନ ମଧ୍ୟ ।

ଜୀବ ଦେହ ମାୟା ନିର୍ମିତ । ମାୟା ମାୟାଧୀଶଙ୍କ ଶକ୍ତି । ମାୟାଙ୍କର ରୂପ ନିତ୍ୟ ପରିବର୍ତ୍ତନଶୀଳ ବୋଲି ତାଙ୍କୁ ପ୍ରକୃତି କୁହାଯାଏ । ସେଇ ପ୍ରକୃତିଙ୍କୁ ତତ୍ତ୍ୱ କୁହାଯାଏ । ସର୍ବମୋଟ କେତୋଟି ତତ୍ତ୍ୱରେ ଏ ଶରୀର ସଂସାର ନିର୍ମିତ ?

**ଅଷ୍ଟୌ ପ୍ରକୃତୟଃ ପ୍ରୋକ୍ତାଃ ତ୍ରୟ ଏବ ହି ତଦ୍ ଗୁଣାଃ ।**
**ବିକାରାଃ ଷୋଡ଼ଶ -ଆଚାର୍ଯ୍ୟୈଃ ପୁମାନ୍ ଏକଃ ସମନ୍ୱୟାତ୍ ॥୨୨॥**

ଉ. ମୂଳ ପ୍ରକୃତି, ପଞ୍ଚତନ୍ମାତ୍ର ବୁଦ୍ଧି ଓ ଅହଂକାରଙ୍କୁ ଅଷ୍ଟ ପ୍ରକୃତି କୁହାଯାଏ । ଏକାଦଶ ଇନ୍ଦ୍ରିୟ ସହିତ ପଞ୍ଚମହାଭୂତ ମିଶି ଷୋଳ ବିକୃତି ବୋଲାନ୍ତି । ପ୍ରକୃତି ବିକୃତି ମିଶି ଚବିଶିତତ୍ତ୍ୱ । ପଚିଶମ ତତ୍ତ୍ୱ କାଳ ବା ଈଶ୍ୱର ଏମାନଙ୍କ ସମନ୍ୱୟ କରିଥାନ୍ତି । ଦେହ(କ୍ଷେତ୍ର) ଓ ଆତ୍ମା (କ୍ଷେତ୍ରଜ୍ଞ)ଙ୍କର ପାର୍ଥକ୍ୟକୁ ଜାଣିବାକୁ ଶାସ୍ତ୍ରମାନେ ଜ୍ଞାନ ଆଖ୍ୟା ଦେଇଥାନ୍ତି ।

ପ୍ରଶ୍ନ-୭୬.ସ୍ଥାବର(ତସ୍ଥୁଃ) -ଜଙ୍ଗମ(ଜଗତ) ରୂପୀ ଜୀବର ସ୍ଥୁଳ ଓ ସୂକ୍ଷ୍ମ ଦୁଇଟି ଶରୀର (ଦ୍ୱିଧା) ଥିବା କଥା ତତ୍ତ୍ୱ ଜ୍ଞାନ ଦ୍ୱାରା ଜଣା ପଡ଼େ । କେଉଁ ଉପାୟରେ ଜ୍ଞାନ ଦ୍ୱାରା ଅନ୍ୱେଷଣ କଲେ (ମୃଗ୍ୟଃ) ଜଣେ ସାଧକ ଆତ୍ମାକୁ ସ୍ୱତନ୍ତ୍ର ବୋଲି ବୁଝିପାରିବ ?

**ଦେହଃ ତୁ ସର୍ବ ସଂଘାତୋ ଜଗତ୍ ତସ୍ଥୁଃ ଇତି ଦ୍ୱିଧା ।**
**ଅତ୍ର-ଏବ ମୃଗ୍ୟଃ ପୁରୁଷୋ ନ-ଇତି ନ-ଇତି-ଏତତ୍ ତ୍ୟଜନ୍ ॥୨୩॥**

ଉ. ହସ୍ତ-ପଦ-ଶିର-ବକ୍ଷ ଆଦି ସକଳ ଅଙ୍ଗର ସମାହାର (ସଂଘାତୋ)କୁ ଦେହ କୁହାଯାଏ । କଅଣ ପଦ ଆତ୍ମା ବୋଲି ପ୍ରଶ୍ନ କଲେ ଉତ୍ତର ମିଳିବ ନା । ସେହି ପରି ହସ୍ତ,ଶିର, ବକ୍ଷ, ଚକ୍ଷୁ, କର୍ଣ୍ଣ ଆଦି ପ୍ରଶ୍ନ କରୁ କରୁ ସବୁ ଆତ୍ମା ନୁହେ ବୋଲି ପ୍ରମାଣିତ ହେବ । ଶେଷରେ ଅବଶିଷ୍ଟ ଯାହା ରହିଯିବ ତାର ନାମ ଆତ୍ମା । ଏ ମାର୍ଗକୁ ନ-ଇତି, ନ-ଇତି ବା ନେତି ନେତି ବ୍ୟତିରେକ ମାର୍ଗ ବା ଜ୍ଞାନ ମାର୍ଗ କୁହାଯାଏ । ଏକଥାକୁ ବୁଝିବାରେ କାମନା ବାସନା ମଳଶୂନ୍ୟ ମନ ଓ ବୁଦ୍ଧି ମୁଖ୍ୟ ଭୂମିକା ନିଅନ୍ତି । ସୁସ୍ଥ ମସ୍ତିଷ୍କ ଦ୍ୱାରା ଏହା ଅନୁଭବ ହୁଏ । ପୁଣି ବୁଦ୍ଧିର ଜାଗ୍ରତ-ସ୍ୱପ୍ନ-ସୁଷୁପ୍ତି ତିନି ଅବସ୍ଥାରେ ଏହାକୁ ଅନୁଭବ କରିବାକୁ ପଡ଼େ । ବାୟୁ ଅଦୃଶ୍ୟ । କିନ୍ତୁ ଗନ୍ଧରୁ ଆମେ ବାୟୁକୁ ନ ଦେଖିଲେ ମଧ୍ୟ ଜାଣିପାରୁ । ଠିକ୍ ସେହିଭଳି ଏହି ଆତ୍ମା- ଅନାତ୍ମା ଜ୍ଞାନ ।

ପ୍ରଶ୍ନ-୭୭. ମନ ବୁଦ୍ଧି ଉଭୟଙ୍କ କାମ ହେଲା ଅଭୁକ୍ତ ଭୋଗ କାମନାକୁ ଚିନ୍ତନ ମନନ କରି ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ସେ ସବୁକୁ ଯୋଗାଡ଼ କରି ଜୀବକୁ ସତ୍ୱ-ରଜ-ତମୋ ଗୁଣରେ ପ୍ରେରିତ କରି ସୁଖ-ଦୁଃଖ ଭୋଗ କରାଇବା । ତେଣୁ ସିନା ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବ ନିରନ୍ତର କର୍ମ ପ୍ରବଣ ରହୁଛି ।

ସେପରି ସ୍ଥଳେ ମନ-ବୁଦ୍ଧିଙ୍କୁ କାମନା ବାସନା ମଳ ମୁକ୍ତ କରିବାର (ବୀଜ ନର୍ହିରଣଂ) କିଛି ସରଳ ଉପାୟ ଅଛିକି ?

**ତସ୍ମାତ୍ ଭବତ୍ଭିଃ କର୍ତ୍ତବ୍ୟଂ କର୍ମଣାଂ ତ୍ରିଗୁଣାତ୍ମନାମ୍ ।**
**ବୀଜ ନିର୍ହରଣଂ ଯୋଗଃ ପ୍ରବାହ-ଉପରମୋ ଧିୟଃ ॥୨୮॥**

ଉ. ହଁ, ନିଶ୍ଚୟ ଅଛି । ତାହାର ନାମ ଭକ୍ତି ଯୋଗ । ଈଶ୍ୱର ଶରଣାଗତି ମାର୍ଗ ଯାହା ଦ୍ୱାରା ମନ-ବୁଦ୍ଧି ଙ୍କର ସତ୍ୱ-ରଜ-ତମୋ ଗୁଣ ପ୍ରବାହକୁ ରୋକି ଦେଇ ହେବ । ହଁ ପୁଣି ଏଥିପାଇଁ ଅନ୍ୟ କୌଣସି ୨ୟ ଉପାୟ ମଧ ନାହିଁ ଯଥା-କର୍ମ-ଜ୍ଞାନ -ତପ-ତୀର୍ଥ-ବ୍ରତ ଆଦି ଆଦି ।

ପ୍ରଶ୍ନ-୭୮.ବୈଦିକ ଗ୍ରନ୍ଥ ଓ ଷଟ୍ ଦର୍ଶନ ଆଦି ପ୍ରାମାଣିକ ଶାସ୍ତ୍ରମାନଙ୍କରେ ଅବଶ୍ୟ ଅନେକ ମାର୍ଗର ଉଲ୍ଲେଖ ଅଛି । ତେବେ ଏହି ଭକ୍ତି ମାର୍ଗକୁ କାହିଁକି ଆମେ ଅନନ୍ୟ (ବିଲକ୍ଷଣ) ଏକମାତ୍ର ମାର୍ଗ ବୋଲି ଧରି ବସିବା ?

**ତତ୍ର-ଉପାୟ ସହସ୍ରାଣାଂ ଅୟଂ ଭଗବତା-ଉଦିତଃ ।**
**ଯତ୍ ଈଶ୍ୱରେ ଭଗବତି ଯଥା ଯୈଃ ଅଞ୍ଜସା ରତିଃ ।।୨୯।।**

ଉ.ହଁ,ସେ ସବୁ ନିଶ୍ଚୟ କଲ୍ୟାଣ କାରକ ମାର୍ଗ ଅଟନ୍ତି । ବିଭିନ୍ନ ସାଧୁ-ସନ୍ଥ-ଯୋଗୀ-ତପସ୍ୱୀ ସେ ମାର୍ଗରେ ଯାଇ ଶେଷରେ ସେଇ ଭକ୍ତି ମାର୍ଗରେ ପହଞ୍ଚି ଶରଣାଗତିକୁ ଆଶ୍ରୟ କରିଛନ୍ତି । କେତେ ଜନ୍ମ-ଜନ୍ମାନ୍ତର,ଲୋକ-ଲୋକାନ୍ତରରେ ପଡ଼ି ଉଠି ପହଞ୍ଚିଛନ୍ତି ।

କିନ୍ତୁ ଭଗବାନ ତାଙ୍କୁ ପାଇବାର ଯେଉଁ ମାର୍ଗ ଦର୍ଶନ କରାଇଥାନ୍ତି ; ଅନ୍ୟାନ୍ୟ ମୁନି ଋଷି ମାନଙ୍କ ଦର୍ଶିତ ମାର୍ଗଠାରୁ ତାହା ନିଶ୍ଚୟ ସହଜ,ସରଳ, ସୁବିଧା ଜନକ ହେବା ସ୍ୱାଭାବିକ । କର୍ମ-ଜ୍ଞାନ-ଅଷ୍ଟାଙ୍ଗଯୋଗ ଆଦି ମାର୍ଗମାନ ପୁରୁଷାର୍ଥ ପରାୟଣ । ସାଧକକୁ ବଳ,ବୁଦ୍ଧି,ବିବେକ ଖଟାଇ ସାଧନ କରିବାକୁ ହୁଏ । ଏମାର୍ଗ ମାନଙ୍କରେ ଭଗବାନଙ୍କ ସାହାଯ୍ୟ କମ୍ ଲୋଡ଼ାଯାଉଥିବାରୁ କମ୍ ମାତ୍ରାରେ ମିଳେ । ଭକ୍ତି ମାର୍ଗରେ ଭଗବାନ ସ୍ୱୟଂ ଭକ୍ତର ହାତଧରି ଚଳାଉ ଥିବାରୁ ପତନ ଆଦିର ଭୟ ନ ରହେ ନାହିଁ । (ଧାବନ୍ ନିମ୍ମିଲ୍ୟ ବା ନେତ୍ରେ ନ ସ୍ଖଲେତ୍ ନ ପତେତ୍ ଇହ ।)ଆଖି ବୁଜି ଭକ୍ତି କଲେ ମଧ ନିର୍ଭୟ, ନିରାପଦ ଏ ମାର୍ଗ ।

ପ୍ରଶ୍ନ-୭୯. ଏ ସରଳ ନିରାପଦ ଭକ୍ତି ମାର୍ଗରେ କି ଭଳି ସାଧନା କରିବାକୁ ପଡ଼େ ?

**ଗୁରୁ ଶୁଶ୍ରୂଷୟା ଭକ୍ତ୍ୟା ସର୍ବ ଲବ୍ଧ-ଅର୍ପଣେନ ଚ ।**
**ସଙ୍ଗେନ ସାଧୁ ଭକ୍ତାନାଂ ଈଶ୍ୱର-ଆରାଧନେନ ଚ ।।୩୦।।**

ଉ.ସଦ୍ ଗୁରୁ ବରଣ, ଗୁରୁସେବା, ଭିକ୍ଷା ଲବ୍ଧ ଦ୍ରବ୍ୟ ସକଳଙ୍କୁ ଗୁରୁଦେବଙ୍କୁ ଅର୍ପଣ, ସାଧୁସଙ୍ଗ, ଈଶ୍ୱର ପୂଜନ । ବାସ୍ ଏତିକି ।

ଶ୍ରଦ୍ଧା ସହିତ ହରିକଥା ଶ୍ରବଣ,କୀର୍ତ୍ତନ ଶ୍ରହରିଙ୍କ ବିଗ୍ରହ ଦର୍ଶନ,ଓ ମନରେ ଶ୍ରୀହରିଙ୍କ ଚରଣ କମଳ ଧ୍ୟାନ କରିବାକୁ ଭକ୍ତି କୁହାଯାଏ ।

ପ୍ରଶ୍ନ-୮୦. ସର୍ବଦା ହରିଭଜନ କରିବାକୁ ହେଲେ କ'ଣ ଜଣକୁ ଘର ଛାଡ଼ି ମନ୍ଦିରରେ ରହିବାକୁ ପଡ଼ିବ ?

**ହରିଃ ସର୍ବେଷୁ ଭୂତେଷୁ ଭଗବାନ୍ ଆସ୍ତ ଈଶ୍ୱରଃ ।**
**ଇତି ଭୂତାନି ମନସା କାମୈଃ ତୈଃ ସାଧୁ ମାନୟେତ୍ ॥୩୨॥**

ଉ.ନା,ନା ଘର ଛାଡ଼ିବା କି ଦରକାର ? ପ୍ରତ୍ୟେକ ଜୀବର ଶରୀର ପରମାତ୍ମାଙ୍କର ଗୋଟିଏ ଗୋଟିଏ ମନ୍ଦିର । ମନରୁ ଶତ୍ରୁ-ମିତ୍ର ଭାବ ଛାଡ଼ି ସେମାନଙ୍କଠାରୁ କିଛି ପାଇବା ଆଶା ତ୍ୟାଗ କରି ସମସ୍ତଙ୍କୁ ସେବା, ସତ୍କାର ଆଦର କଲେ ଭକ୍ତି ହେଲା ବୋଲି ।

ପ୍ରଶ୍ନ-୮୧. ମାନବ ସେବାକୁ ମାଧବ ସେବା, ଜୀବ କଲ୍ୟାଣକୁ ପରମ କଲ୍ୟାଣ ମାନି ଈଶ୍ୱର ଭକ୍ତି କଲେ କାମ-କ୍ରୋଧ ଆଦି ଷଡ଼ରିପୁ ସହଜରେ ଜୟ କରିହୁଏ । ସେମାନେ ଆଉ ଉତ୍ପାତ କରିପାରନ୍ତି ନାହିଁ । ଏ ସବୁ ସାଧନ ଭକ୍ତିରେ ଗଣାଯାଏ । ସାଧନ ଭକ୍ତିର ଫଳ/ସାଧ୍ୟ କ'ଣ ?

**ଏବଂ ନିର୍ଜିତ ଷଟ୍ ବର୍ଗୈଃ କ୍ରିୟତେ ଭକ୍ତିଃ ଈଶ୍ୱରେ ।**
**ବାସୁଦେବେ ଭଗବତି ଯୟା ସଂଲଭତେ ରତିଃ ॥୩୩॥**

ଉ. ସଂସାର ଭୋଗ ଆସକ୍ତି ଛାଡ଼ି ପଳାନ୍ତି । ଭଗବାନ ମଉକା ଦେଖି ଦିବ୍ୟ ପ୍ରେମା ଭକ୍ତି ପ୍ରଦାନ କରନ୍ତି ସଦ୍‌ଗୁରୁଙ୍କ କୃପା ମାଧମରେ । ଜୀବ ହୁଏ ମାଲାମାଲ ।

ପ୍ରଶ୍ନ-୮୨.ଏହି ଅମୁଲ୍ୟ ଦିବ୍ୟ ପ୍ରେମା ଭକ୍ତିର ଲକ୍ଷଣ ସବୁ କ'ଣ ?

**ନିଶମ୍ୟ କର୍ମାଣି ଗୁଣାନ୍ ଅତୁଲ୍ୟାନ୍**
**ବୀର୍ଯ୍ୟାଣି ଲୀଳା ତନୁଭିଃ କୃତାନି ।**
**ଯଦା-ଅତିହର୍ଷ-ଉତ୍ପୁଲକ-ଅଶ୍ରୁ ଗଦ୍ ଗଦଂ**
**ପ୍ରୋତ୍ କଣ୍ଠ ଉଦ୍‌ଗାୟତି ରୌତି ନୃତ୍ୟତି ॥୩୪॥**

ଉ. ଭକ୍ତ ସାଧୁ ବୈଷ୍ଣବ ମୁଖରୁ ଭଗବାନଙ୍କ ବିଭିନ୍ନ ଦିବ୍ୟ ନାମ ଲୀଳା ଚରିତ ଆଦି ଶ୍ରବଣ କରେ । ତାଙ୍କ ମାହାତ୍ମ୍ୟକୁ ନିଜେ ଅନୁଭବ କରି ପାଗଳ ପ୍ରାୟ ହୋଇଯାଏ । ସେ ଉଛୁଳା ପ୍ରେମକୁ ସେ ଆଉ ଲୁଚେଇ ଛପେଇ ରଖି ପାରେ ନାହିଁ ।

କେବେ ଅତ୍ୟନ୍ତ ଆନନ୍ଦିତ ହୋଇ ହସି ପକାଏ, କେବେ କାନ୍ଦି ପକାଏ । ତାର ବାଣୀ ଗଦ୍‌ଗଦ୍ ହୋଇଯାଏ । ଅଶ୍ରୁ ଗଳ ଗଳ ହୁଏ ନେତ୍ର ଦ୍ୱୟ । ଲୋକଙ୍କ ପସନ୍ଦ-ଅପସନ୍ଦକୁ ବେଖାତିର କରି ସେ ଉଚ୍ଚ କଣ୍ଠରେ ନାମ, ଲୀଳା ଆଦିକୁ ନାଚି,ଗାଇ,ହସି, କାନ୍ଦି ପ୍ରକଟ କରି ପକାଏ । ସତେ ଯେମିତି ସେ ଏକ ବଳଦ । ଲଗାମ ହୀନ ବୃଷଭ । ଉଦାହରଣ-ମୀରାବାଈ,ନରସିଂହ ମେହେନ୍ତା, ତୁକାରାମ ଓ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସହିତ ତାଙ୍କ ବୈଷ୍ଣବଭକ୍ତ ଗଣ ।

ପ୍ରଶ୍ନ-୮୩. ସତ୍ତ୍ୱଗୁଣୀ ଲୋକମାନେ ସ୍ୱଭାବତଃ ଈଶ୍ୱର ବିଶ୍ୱାସୀ ହୋଇଥାନ୍ତି । ସେମାନଙ୍କ ପକ୍ଷେ ହରିଭଜନ ସିନା ସମ୍ଭବ । ତମୋଗୁଣୀ ଅସୁରବାଳକ ମାନେ କ'ଣ ଏ କଠିନ ହରିଭଜନ କରି ପାରିବେ ?

**କୋଽତିପ୍ରୟାସୋଽସୁର ବାଳକା ହରେଃ**
**ଉପାସନେ ସ୍ୱେ ହୃଦି ଛିଦ୍ରବତ୍ ସତଃ ।**
**ସ୍ୱସ୍ୟ-ଆତ୍ମନଃ ସଖ୍ୟୁଃ ଅଶେଷ ଦେହିନାଂ**
**ସାମାନ୍ୟତଃ କିଂ ବିଷୟ -ଉପପାଦନୈଃ ॥୩୮॥**

ଉ.ପ୍ରହ୍ଲାଦ କହିଲେ, 'ହେ, ଅସୁର ବାଳକଗଣ ! ତୁମ ମାନଙ୍କ ପାଇଁ ଏ ହରିଭଜନ କେଉଁ ଅବା କଷ୍ଟକର । ପରିଶ୍ରମ ମୂଳକ କଥା ? ଏଥିପାଇଁ କେଉଁ ଯାଗାକୁ ଯିବା ଦରକାର ପଡ଼େନା । ସେ ଆମ ନିଜ ନିଜ ହୃଦୟରେ ଦର୍ଶନ ଦେବେ । ସେ ପୁଣି ଆମ ସମସ୍ତ ଜୀବଙ୍କର ମିତ୍ର, ସଖା, ଶୁଭ ଚିନ୍ତକ, ଅନ୍ତର୍ଯ୍ୟାମି ରୂପେ ନିତ୍ୟ ବିଦ୍ୟମାନ । ତାଙ୍କୁ ନ ଖୋଜି ବିଷୟ ସୁଖ ଖୋଜିବାରେ (ବିଷୟ-ଉପପାଦନୈଃ) କି ଲାଭ ? ଅର୍ଥାତ୍ ରାଜା ହେବା, ରାଜ୍ୟ ଜୟ କରିବା, ରାଣୀ ହଂସ ପୁରରେ ଭୋଗ ବିଳାସରେ ମାତିବା ନରକକୁ ଯିବାକୁ ଟିକଟ କାଟିବା ଭଳି ବ୍ୟର୍ଥଶ୍ରମ ।'

ପ୍ରଶ୍ନ-୮୪.ସଂପତ୍ତି,ପତ୍ନୀ,ହାତୀ ଘୋଡ଼ା, ପୁତ୍ର, କନ୍ୟା, ରାଜମହଲ ଇତ୍ୟାଦି ଭୋଗ ସାମଗ୍ରୀ କେବଳ ଇନ୍ଦ୍ରିୟଙ୍କୁ କ୍ଷଣିକ ସୁଖ ଦେଇ ସେମାନଙ୍କୁ ଦୁର୍ବଳ ଶକ୍ତିହୀନ କରିପକାନ୍ତି । ଏମାନେ ଚିଦାନନ୍ଦମୟ ଆତ୍ମାଙ୍କୁ କଣ ସୁଖ ଦେବା ଅସମ୍ଭବ ?

**ଯଦ୍ ଅର୍ଥଂ ଇହ କର୍ମାଣି ବିଦ୍ୱତ୍‌ମାନୀ ଅସକୃତ୍ ନରଃ ।**
**କରୋତିଽତୋ ବିପର୍ଯ୍ୟାସଂ ଅମୋଘଂ ବିନ୍ଦତେ ଫଳମ୍ ॥୪୧॥**

ଉ.ଦେହ,ଇନ୍ଦ୍ରିୟ ଆଦି ଜଡ଼ । ଜଡ଼ ପଦାର୍ଥରୁ ମିଳୁଥିବା ସୁଖ କିପରି ଚିନ୍ମୟ

ଆତ୍ମାକୁ ସ୍ଥାୟୀ ସୁଖ ଦେଇପାରିବ ? ସେ ଜନ୍ମ-ଜନ୍ମାନ୍ତର କର୍ମ-ଅକର୍ମ -ବିକର୍ମ କରି କରି ଅନନ୍ତ ସ୍ଥାୟୀ ସୁଖ ଆଶା କରୁଥାଏ । ହେଲେ ଆଶାର ବିପରୀତ ଫଳ ଦେଖି ମୁଣ୍ଡ ପିଟିବା ସାର ହୁଏ ।

ପ୍ରଶ୍ନ-୮୫. ଭୌତିକ ବାଦୀ ଲୋକ ସୁଖ ପ୍ରାପ୍ତି କିମ୍ବା ଦୁଃଖ ନିବୃତ୍ତି ଲାଗି ଜୀବନ ସାରା କର୍ମ କରି ମଧ୍ୟ ସ୍ଥାୟୀ ସୁଖରୁ ବଂଚିତ ହେବା, ଦୁଃଖରେ ଅଧୀର ହେବା ପଛରେ କାହାର ହାତ ଅଛି ?

**ସୁଖାୟ ଦୁଃଖ ମୋକ୍ଷାୟ ସଂକଳ୍ପ ଇହ କର୍ମଣଃ ।**
**ସଦା-ଆପ୍ନୋତି ଈହୟା ଦୁଃଖଂ ଅନୀହାୟା ସୁଖ-ଆବୃତଃ ॥୪୨॥**

ଉ.ଭଗବାନଙ୍କ ମହାମାୟା ଶକ୍ତିଙ୍କର ଏହା ହିଁ କମାଲ୍ । ପରମାତ୍ମାଙ୍କୁ ପାଶୋରି ଭୌତିକ ସୁଖ ପଛରେ ଦୌଡ଼ିବା ଲୋକକୁ ଦଣ୍ଡଦେଇ ଭଗବତ୍ ଉନ୍ମୁଖ କରାଇବା ତାଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ । ଭୌତିକ ସୁଖ ଆଶା ଛାଡ଼ି ସ୍ୱଧର୍ମ ପାଳନ କଲେ ଦୁଃଖ ପଳାଇବାକୁ ବାଟ ପାଇବ ନାହିଁ । କର୍ମ ଫଳ ସୁଖ ଆଶା କଲେ (ଈହୟା) ଦୁଃଖ ପାଉଛି ଏବଂ ସୁଖ ଆଶା ନ କଲେ (ଅନୀହାୟା) ମଧ୍ୟ ସୁଖ ମିଳୁଛି ।

ପ୍ରଶ୍ନ-୮୬. ଜୀବ ନିଜକୁ ଦେହ ଭାବି ଦେହ ସୁଖ ପାଇଁ ସକଳ ସକାମ କର୍ମରେ ବ୍ୟସ୍ତ ରହୁଛି । ସେ କଣ ନିଜ ଦେହର ମାଲିକ, ରକ୍ଷା କର୍ତ୍ତା ନୁହେଁ କି ?

**କାମାନ୍ କାମୟତେ କାମୈଃ ଯତ୍ ଅର୍ଥଂ ଇହ ପୁରୁଷ ଃ ।**
**ସ ବୈ ଦେହଃ ତୁ ପାରକ୍ୟୋ ଭଙ୍ଗୁରୋ ଯାତି -ଉପୈତି ଚ ॥୪୩॥**

ଉ.ଆଦୌ ନୁହେଁ । ଭଗବାନ (ପାରକ୍ୟୋ) ତା ପାଇଁ ଦେହ ଉତ୍ପନ୍ନ କରନ୍ତି,ପାଳନ ପୋଷଣ କରନ୍ତି ଓ ନଷ୍ଟ ମଧ୍ୟ କରନ୍ତି । ଜୀବ ତାର ଯୌବନରୁ ବାର୍ଦ୍ଧକ୍ୟ ଅବସ୍ଥାନ୍ତର ବେଳେ ହତାଶ ହୋଇ ମୁଣ୍ଡ ପିଟେ । ଭଗବାନଙ୍କ କାମରେ ଦେହ ଇନ୍ଦ୍ରିୟଙ୍କୁ ସଦୁପଯୋଗ କଲେ ଆଦୌ ଅକାଳ ମୃତ୍ୟୁ ହେବ ନାହିଁ ଜୀବର ।

ପ୍ରଶ୍ନ-୮୭. ଦେହ କ୍ଷଣ ଭଙ୍ଗୁର । ଧନ-ଦାରା-ସୁତ-ରାଜ୍ୟ ଆଦି ଦେହକୁ ନିତ୍ୟ ସୁଖ ଦେବାରେ ଅସମର୍ଥ । ଅତଏବ ଜୀବ କେଉଁଠୁ ପାଇ ପାରିବ ନିତ୍ୟ ଆନନ୍ଦ ?

**କିଂ ଏତୈଃ ଆତ୍ମନଃ ତୁଚ୍ଛୈଃ ସହ ଦେହେନ ନଶ୍ୱରୈଃ ।**
**ଅନର୍ଥୈଃ ଅର୍ଥସଂକାଶୈଃ ନିତ୍ୟ-ଆନନ୍ଦ ରସ-ଉଦଧେଃ ॥୪୫॥**

ଉ.ମାୟା ପ୍ରଭାବରୁ ଆମର ମନେ ହୁଏ ଏମାନେ ହରି ଭଜନବିନା ଦୁଃଖୀ ଆତ୍ମାକୁ ସୁଖ ଦେବେ ପରା !! ଅପର ପକ୍ଷରେ ସ୍ୱୟଂ ଆତ୍ମା ହେଉଛି ଆନନ୍ଦର

ମହାସମୁଦ୍ର । ତାପାଇଁ ବାହାର ଆନନ୍ଦ କି କାମରେ ଆସିବ ? ଜୀବ କେବଳ ନିଜ ମନକୁ ବିଷୟ ବାସନାରୁ ହଟାଇ ଦେଲେ ଅନ୍ତରରେ ସେ ସ୍ୱୟଂ ପ୍ରେମାନନ୍ଦରେ ଉବୁଟୁବୁ ହେବ । ଜୀବ ଏ ରହସ୍ୟ ଭେଦ କରି ନ ପାରି ଅନନ୍ତ ଦୁଃଖରେ ସଢୁଛି ।

ପ୍ରଶ୍ନ-୮୮. ବୈଦିକ ମାର୍ଗରେ ଯଜ୍ଞ କରି ମଣିଷକୁ ସ୍ୱର୍ଗ ସୁଖ ଭୋଗିବା ପ୍ରଲୋଭନ ଦେଖାଇବା କ'ଣ ବେଦଙ୍କର ବୃଥା ପ୍ରୟାସ ?

**ନିରୂପ୍ୟତାଂ ଇହ ସ୍ୱାର୍ଥଃ କିୟାନ୍ ଦେହଭୃତୋଽସୁରାଃ ।**
**ନିଷେକ-ଆଦିଷୁ-ଅବସ୍ଥାସୁ କ୍ଲିଶ୍ୟମାନସ୍ୟ କର୍ମଭିଃ ॥୪୬॥**

ଉ.ହେ' ଅସୁର ଦେହଧାରୀ ପିଲାମାନେ ତୁମେ ନିଜର ଲକ୍ଷ୍ୟ (ଅର୍ଥ) ସ୍ୱୟଂ ନିରୂପଣ କରି ଦେଖ ତ !! ମୃତ୍ୟୁ ପରୱାନାଧାରୀ ଜୀବକୁ ମୈଥୁନ ସୁଖ କି ଆନନ୍ଦ ଦେଇ ପାରିବ !! ପୁଣି ସକାମ କର୍ମ ବୈଦିକ ବିଧି ବିଧାନ ମାନି (ନିଷେକ) ସଂପନ୍ନ କଲାବେଳେ କେତେ କଷ୍ଟ ଉଠାଇବାକୁ (କ୍ଲିଶ୍ୟମାନସ୍ୟ) ନ ପଡ଼େ !!!

ସକାମ କର୍ମ କରି ଦେହ ନାଶ ପରେ ଫଳ ଭୋଗ ନିମିତ୍ତ ନୂଆ ଦେହ (ପଶୁ-ମନୁଷ୍ୟ-ଦେବତା-ବୃକ୍ଷ)ଆଦି ତିଆରି କରିବା କେଉଁ ବୁଦ୍ଧିମାନ, ବିବେକବାନ୍ ଲୋକର କାମ ? ବୈଦିକ କର୍ମ କରି ସୁଖୀ ହେବା ନିର୍ଦ୍ଦେଶ ପଛରେ ନିଶ୍ଚୟ କିଛି ଭିତିରି ଅର୍ଥ ଲୁଚି ରହିଛି ।

ପ୍ରଶ୍ନ-୮୯.ଶ୍ରଦ୍ଧା ସହିତ ହରିଭଜନ କଲେ କଅଣ ଧର୍ମ-ଅର୍ଥ-କାମ ଲକ୍ଷ୍ୟ ମଧ୍ୟ ହାସଲ କରିପାରିବ ଜୀବ ?

**ତସ୍ମାତ୍ ଅର୍ଥାଃଚ କାମାନ୍‌ଚ ଧର୍ମାଃ ଚ ଯଦ୍ ଅପାଶ୍ରୟାଃ ।**
**ଭଜତ-ଅନୀହୟା ଆତ୍ମାନଂ ଅନୀହଂ ହରିଂ ଈଶ୍ୱରମ୍ ॥୪୮॥**

ଉ.ନିଶ୍ଚୟ କରିପାରିବ । ନିଷ୍କାମ ଭାବରେ ଈଶ୍ୱର ସେବାରେ ମନ-ବୁଦ୍ଧି-ଅହଂକାର ଲଗାଇ ଦେଲେ ସେ ତିନି (ଧର୍ମ-ଅର୍ଥ-କାମ) ସହିତ ମୋକ୍ଷ ଲକ୍ଷ୍ୟ ମଧ୍ୟ ଶ୍ରୀହରି ସ୍ୱୟଂ ପୂରଣ କରିଦେବେ । ତାଙ୍କୁ ନ ମାଗିଲେ ମଧ୍ୟ (ଅନୀହୟା) । ସେ ପରମ ପିତା ଆମ ପିତାଙ୍କର ମଧ୍ୟ ପିତା । ଆମେ ତାଙ୍କର ସନ୍ତାନ । ତାଙ୍କୁ ଠିକ୍ ମାଲୁମ୍ ଆମର କଣ ଦରକାର । ବାସ୍ ।

ପ୍ରଶ୍ନ-୯୦.ହରିଭଜନ କରିବାନିମିତ୍ତ ମନୁ୍ୟଷ ପାଇଁ କେଉଁ କେଉଁ ଯୋଗ୍ୟତା ଦରକାର ପଡ଼େ ?

**ନ-ଅଲଂ ଦ୍ୱିଜତ୍ୱଂ ଦେବତ୍ୱଂ ଋଷିତ୍ୱଂ ବା-ଅସୁର -ଆତ୍ମଜାଃ ।**
**ପ୍ରୀଣନାୟ ମୁକୁନ୍ଦସ୍ୟ ନ ବୃତ୍ତଂ ନ ବହୁଜ୍ଞତା ॥୫୧॥**

ଉ. ପ୍ରହ୍ଲାଦଜୀ କହିଲେ,'ହେ' ପିଲାମାନେ! ଶ୍ରୀହରିଙ୍କୁ ଭକ୍ତି କରିବାକୁ ବ୍ରାହ୍ମଣ କୁଳରେ ଜନ୍ମହେବା, ଦେବତା ଜନ୍ମ ପ୍ରାପ୍ତି, ଋଷି ସମ୍ମାନ ପ୍ରାପ୍ତି, ଯଯନ,ଯାଜନ, ଓ ବେଦବିତ୍ ହେବା (ବହୁଜ୍ଞତା) ଇତ୍ୟାଦି କିଛି ଦରକାର ହୁଏନା । ମୁକ୍ତିଦାତା ପରମ କୃପାଳୁ ମୁକୁନ୍ଦ ଭଗବାନଙ୍କୁ ପ୍ରସନ୍ନ କରିବା ନିମିତ୍ତ (ପ୍ରୀଣନାୟ) ସକାମ ଭକ୍ତି ତ୍ୟାଗ ଓ ନିଷ୍କାମ ଭକ୍ତି ଆଚରଣ ଯଥେଷ୍ଟ ।

ପ୍ରଶ୍ନ-୯୧.ତେବେ ଦାନ, ପୁଣ୍ୟ, ଶୁଭ କର୍ମ ଅନୁଷ୍ଠାନ, ପୂଜା ପାଠ, ତୀର୍ଥ, ବ୍ରତ ଆଦି ଉଚ୍ଚସ୍ତରର ବ୍ରାହ୍ମଣମାନେ ମଧ କରନ୍ତି କାହିଁକି ?

**ନ ଦାନଂ ନ ତପୋ ନ-ଇଜ୍ୟା ନ ଶୌଚଂ ନ ବ୍ରତାନି ଚ ।**
**ପ୍ରୀୟତେଽମଳୟା ଭକ୍ତ୍ୟା ହରିଃ ଅନ୍ୟଦ୍ ବିଡ଼ମ୍ବନମ୍ ॥୫୨॥**

ଉ.ସେ ସବୁ କେବଳ ସୁଖ, ସୁବିଧା, ଭୋଗ ଲାଳସା ଚରିତାର୍ଥ କରିବାକୁ ବା ଲୋକ ଦେଖାଣିଆ କଥା । ସେ ସବୁ ସମୟ, ସାମର୍ଥ୍ୟ,ଶ୍ରମର ଅପବ୍ୟୟ ମାତ୍ର । ଅନ୍ୟ ଦେବୀ ଦେବତାଙ୍କୁ ଭକ୍ତି କରି ଏ ସବୁ ନ ମାଗି ଶ୍ରୀହରିଙ୍କୁ ଅନନ୍ୟ ନିଷ୍କାମ ଭକ୍ତି କଲେ ସକଳ ଶ୍ରେୟ,କଲ୍ୟାଣ ସାଧିତ ହୋଇପାରେ ।

ସୁତରାଂ ତୁମେ ସମସ୍ତେ ସବୁ ଭୁଲି ହରିଭଜନରେ ଲାଗି ପଡ଼ । ତାହା ପୁଣି ଏହି ପିଲା ବୟସରୁ । କିଏ ଜାଣେ କାହାର ଆୟୁଷ ଯୌବନ, ବାର୍ଦ୍ଧକ୍ୟକୁ ଅପେକ୍ଷା କରିବ କି ନାହିଁ ।!!!

ପ୍ରଶ୍ନ-୯୨. ହରିଭଜନ ସାଧନ ଲାଗି କେଉଁ ଶରୀର ଉପଯୁକ୍ତ ଅଟେ ?

**ଦୈତେୟା ଯକ୍ଷ ରକ୍ଷାଂସି ସ୍ତ୍ରିୟଃ ଶୂଦ୍ରା ବ୍ରଜୌକସଃ ।**
**ଖଗା ମୃଗାଃ ପାପଜୀବାଃ ସନ୍ତି ହି-ଅଚ୍ୟୁତତାଂ ଗତାଃ ॥୫୪॥**

ଉ. ପ୍ରହ୍ଲାଦଜୀ କହିଲେ,'ହେ ଦୈତ୍ୟବାଳକ ଗଣ, ଯକ୍ଷ, ରାକ୍ଷସ, ନାରୀ ଶୂଦ୍ର, ଗୋପୀ,ଗୋପାଳ, ବ୍ରଜବାସୀ (ବ୍ରଜୌକସଃ) ଏପରି କି ପଶୁ,ପକ୍ଷୀ, ଓ ମହାନ୍ ପାପୀମାନେ ମଧ ଅତୀତରେ ଭକ୍ତି କରି ଭଗବତ୍ ଗୁଣମୟ ହୋଇ ପାରିଛନ୍ତି । ହେଇ ଦେଖ ମୁଁ ମଧ ତୁମରି ଭଳି ଦୈତ୍ୟପୁତ୍ର ହୋଇ ଦୈତ୍ୟକୁଳରେ ଜନ୍ମ ହୋଇ କିପରି ନିର୍ଭୟରେ ହରିଭଜନ କରି ପାରୁଛି !! ନିଜ ଭିତରେ ସମସ୍ତଙ୍କୁ ଦେଖିବା ଓ ସମସ୍ତଙ୍କ ମଧରେ ନିଜକୁ ଦେଖିବା ହେଲ । ଭଗବତ ଧର୍ମର ସାରକଥା ।'

|| ଅପଣ୍ଡିତ ଦାମୋଦର ବଳୀୟାରସିଂହ ||

## ଅଥ ୮ମ ଅଧ୍ୟାୟଃ

### (ଭଗବାନ ନୃସିଂହଦେବଙ୍କ ଦ୍ୱାରା ହିରଣ୍ୟ କଶିପୁ ଉଦ୍ଧାର)

### ନାରଦ ଉବାଚ

ପ୍ରଶ୍ନ-୯୩. ପ୍ରହ୍ଲାଦଜୀଙ୍କ ଭାଗବତ ଧର୍ମର ପ୍ରବଚନର ପ୍ରଭାବ କଣ ଅସୁର ବାଳକ ମାନଙ୍କ ଉପରେ ପଡ଼ି ପାରିଲା ?

**ଅଥ ଦୈତ୍ୟସୁତାଃ ସର୍ବେ ଶ୍ରୁତ୍ୱା ତତ୍ ଅନୁବର୍ଣ୍ଣିତମ୍ ।**
**ଜଗୃହୁଃ ନିରବଦ୍ୟତ୍ୱାତ୍ ନ-ଏବ ଗୁରୁ-ଅନୁଶିକ୍ଷିତମ୍ ॥୧॥**

ଉ.ଅସୁର ବାଳକମାନେ ବୁଦ୍ଧିରେ ଅତ୍ୟନ୍ତ କୋମଳ ଓ ନିର୍ଦ୍ଦୋଷ ଥିଲେ । ବକ୍ତା ଥିଲେ ଜଣେ ଅତ୍ୟନ୍ତ ଶୁଦ୍ଧ ପ୍ରଭାବଶାଳୀ (ନିରବଦ୍ୟତ୍ୱାତ୍ )ଭକ୍ତ ପ୍ରହ୍ଲାଦ ମହାରାଜ । ସୁତରାଂ ସେମାନେ ସଙ୍ଗେ ସଙ୍ଗେ ହରିଭଜନ କରିବାରେ ଆନନ୍ଦିତ ହେଲେ । ଭୁଲିଗଲେ ଷଣ୍ଡ-ଅମର୍କ ଦୁଇ ଗୁରୁଙ୍କର ଭୌତିକ ବିଦ୍ୟା ଶୁଷ୍କ ରସ ।

ପ୍ରଶ୍ନ-୯୪. ଗୁରୁ ଦୁହେଁ ଜାଣି ପାରିଲେ ପାଠଶାଳାର ସ୍ଥିତି । ବୈଷ୍ଣବ ଧର୍ମ ପ୍ରତି ଆଗ୍ରହ ଭୌତିକ ଧର୍ମ ପ୍ରତି ନିସ୍ପୃହତା । ଷଣ୍ଡ ଅମର୍କ ଏହା ଲକ୍ଷ୍ୟ କରି କି ପଦକ୍ଷେପ ନେଲେ ?

**ଅଥ-ଆଚାର୍ଯ୍ୟ ସୁତଃ ତେଷାଂ ବୁଦ୍ଧିଂ ଏକାନ୍ତ ସଂସ୍ଥିତାମ୍ ।**
**ଆଲକ୍ଷ୍ୟ ଭୀତଃ ତ୍ୱରିତୋ ରାଜ୍ଞୋ ଆବେଦୟତ୍ ଯଥା ॥୨॥**

ଉ.ପ୍ରାଣ ଭୟରେ ସେମାନେ ଠିକ୍ ଠିକ୍ ପରିସ୍ଥିତି ଅସୁର ରାଜା ହିରଣ୍ୟ କଶିପୁଙ୍କୁ ଜଣାଇଦେଲେ । ହୁଏତ ରାଜା ପିଲାମାନଙ୍କୁ ବାଟକୁ ଆଣିବାର ଅନ୍ୟ କିଛି ପରାମର୍ଶ ଦେଇପାରନ୍ତି ଏହି ଆଶାରେ ।

ପ୍ରଶ୍ନ-୯୫. ପୁତ୍ର ବତ୍ସଳ ରାଜା ହିରଣ୍ୟ କଶିପୁ ପ୍ରହ୍ଲାଦ ଅନ୍ୟାନ୍ୟ ଅସୁରବାଳକଙ୍କୁ ହରିଭଜନ ଶିଖାଇବା ଜାଣିପାରି କି ପ୍ରତିକ୍ରିୟା ପ୍ରକାଶ କଲେ ?

**କୋପ-ଆବେଶ ଚଳତ୍ ଗାତ୍ରଃ ପୁତ୍ରଂ ହନ୍ତୁଂ ମନୋ ଦଧେ ।**
**କ୍ଷିପ୍ତ୍ୱା ପରୁଷୟା ବାଚା ପ୍ରହ୍ଲାଦଂ ଅତତ୍ ଅର୍ହଣମ୍ ॥୩॥**

ଉ.କ୍ରୋଧରେ ସେ ଅଗ୍ନିଶର୍ମା ହୋଇ ଉଠିଲେ । ଅତ୍ୟନ୍ତ ଅଭାଷ୍ୟ ଭାଷାରେ (ପରୁଷୟା ବାଚା) ଗାଳିମନ୍ଦ କଲେ । ଜଣେ ହରିଭକ୍ତ ହିସାବରେ ସେ ପିତାଙ୍କର ଏପରି ଗର୍ହିତ ଆଚରଣର ପାତ୍ର ଆଦୌ ନଥିଲେ । ସୁତରାଂ ରାଜା ଅଯଥାରେ ଅତ୍ୟନ୍ତ ନିନ୍ଦନୀୟ ବୈଷ୍ଣବ ଅପରାଧ କରିବସିଲେ । ପୁଣି ପୁତ୍ରକୁ ତୁରନ୍ତ ହତ୍ୟା କରିବାକୁ କମ୍ପମାନ ଶରୀରରେ ନିଷ୍ପତ୍ତି ନେଲେ ।

ପ୍ରଶ୍ନ-୯୬. ପିତାଙ୍କ ମୁଖରୁ ନିଜର ମୃତ୍ୟୁ ଦଣ୍ଡ ନିଷ୍ପତ୍ତି ଶୁଣି ମଧ୍ୟ ପ୍ରହ୍ଲାଦଜୀ ଅବିଚଳ ଓ ନିର୍ଭୀକ ରହିଲେ । ଅନ୍ୟ ପକ୍ଷରେ ପିତାଙ୍କ ଅଜ୍ଞାନତା, ଅବିମୃଶ୍ୟ କାରିତା ଦେଖି ହସି ହସି ତାଙ୍କୁ ଚାହିଁ ରହିଲେ । ରାଜାଙ୍କ ରୋଷ ଅଗ୍ନିରେ ଆହୂତି ଦେବା ଭଳି କାମ ଦେଲା ପ୍ରହ୍ଲାଦଜୀଙ୍କର ଏ ସରଳ ନିରପରାଧ ସ୍ମିତ ହାସ୍ୟ । ଦୈତ୍ୟେନ୍ଦ୍ର ହିରଣ୍ୟ କଶିପୁ ନିଜର ତେଜ, ବୀର୍ଯ୍ୟ, ସାର୍ବଭୌମ ଶାସନର କି ପ୍ରମାଣ ଦେବାକୁ ଚାହିଁଲେ ?

ହିରଣ୍ୟ କଶିପୁ ଉବାଚ

**କ୍ରୁଦ୍ଧସ୍ୟ ଯସ୍ୟ କମ୍ପନ୍ତେ ତ୍ରୟୋ ଲୋକାଃ ସହ-ଈଶ୍ୱରାଃ ।**
**ତସ୍ୟ ମେଽଭୀତ ବତ୍ ମୂଢ଼ ଶାସନ କିଂ ବଳୋଽତ୍ୟଗାଃ ॥୬॥**

ଉ. ରାଜା କହିଲେ, 'ହେ' ମୂର୍ଖ ଉଦ୍ଦଣ୍ଡ ପ୍ରହ୍ଲାଦ ! ଯାହାର କ୍ରୋଧରେ ଭୂଃ ଭୁବଃ ସ୍ୱଃ ଲୋକ-ବାସୀ ପ୍ରକମ୍ପିତ ହୁଅନ୍ତି, ସକଳ ଲୋକପାଳଆଦି, ସରସ୍ୱତୀ, ବୃହସ୍ପତି ବ୍ରହ୍ମା ଶଙ୍କର ଇନ୍ଦ୍ର ଚନ୍ଦ୍ର ସମସ୍ତେ ଭୟରେ ଥର ଥର ହୁଅନ୍ତି, ତୁ ତାକୁ ଡ଼ରୁ ନାହୁଁ କିପରି ? କାହା ଆଶ୍ରୟରେ ତୁ ନିଜକୁ ଏତେ ବଳୀୟାନ୍ ମନେ କରୁଛୁ ? ଏବେ ନିଜକୁ ମୃତ୍ୟୁ ଦଣ୍ଡ ପାଇଁ ପ୍ରସ୍ତୁତ କର ।'

ପ୍ରଶ୍ନ-୯୭. ପ୍ରହ୍ଲାଦଜୀ ଏ ଭଳି ଭୟାନକ ମୃତ୍ୟୁଦଣ୍ଡ ଶୁଣି ଡ଼ରିଗଲେ କି ?

ପ୍ରହ୍ଲାଦ ଉବାଚ

**ନ କେବଳଂ ମେ ଭବତଃ ଚ ରାଜନ୍**
**ସ ବୈ ବଳଂ ବଳିନାଂ ଚ ଅପରେଷାଂ ।**
**ପରେଽ ବରେଽମୀ ସ୍ଥିର ଜଙ୍ଗମା ଯେ**
**ବ୍ରହ୍ମା-ଆଦୟୋ ଯେନ ବଶଂ ପ୍ରଣୀତାଃ ॥୭॥**

ଉ.ଆଦୌ ଭୟ କଲେ ନାହିଁ । ନିର୍ଭୀକ ଅଥଚ ବିନମ୍ରତାର ସହିତ କହିଲେ, 'ହେ' ଅସୁର କୁଳର ମୁକଟମଣି ମହା ମହିମ ସମ୍ରାଟ ! ଯେଉଁ ଶ୍ରୀହରିଙ୍କ ଦୁର୍ଲ୍ଲଂଘ୍ୟ ଶାସନରେ ରହି ବ୍ରହ୍ମା, ଶଙ୍କର, ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଆଦି ଦେବୀ ଦେବତା ଆପଣଙ୍କ

ଭଳି ରାଜା ମାହାରାଜା ,ଅସୁର, ମନୁଷ୍ୟ, ପଶୁ, ପକ୍ଷୀ ବୃକ୍ଷ ଆଦି ନିଜକୁ ଲକ୍ଷ୍ୟ ବା ଅଲକ୍ଷ୍ୟ ଭାବରେ ନିଜକୁ ବଳବାନ ମନେ କରୁଛନ୍ତି ମୋର ବଳ ସେହି ଭଗବାନ । ଅନ୍ୟ କେହି ନୁହନ୍ତି ।

ସେହି ପରମେଶ୍ୱର ହିଁ ଆମର ସକଳ ଦୈହିକ, ମାନସିକ, ଓ ଆଧାତ୍ମିକ ବଳମାନଙ୍କର ମୂଳ ସ୍ରୋତ । ସୁତରାଂ ହେ ମହାରାଜ! ମୋର ନିବେଦନ ଶ୍ରବଣ କରନ୍ତୁ । ଶତ୍ରୁ-ମିତ୍ର ଭାବନା ବିଷୟ ଭୋଗ ବାସନା ତ୍ୟାଗ କରି ନିଜ ଏକାଦଶ ଇନ୍ଦ୍ରିୟକୁ ପ୍ରଥମେ ସଂଯମ କରନ୍ତୁ । ଭଗବାନ ଅତ୍ୟନ୍ତ କୃପାମୟ । କେବଳ ଶରଣ ଗଲି ବୋଲି କହିଦେଲେ ସେ କୋଳେଇ ନେବେ । କାରଣ ସ୍ୱୟଂ ଭୟ ମଧ୍ୟ ତାଙ୍କୁ ଭୟ କରନ୍ତି । କେବଳ ନିଜ ମନକୁ ଜିଣିଲେ ଜୀବ ଜଗତ ଜିଣିପାରେ ।'

**ହିରଣ୍ୟ କଶିପୁ ଉବାଚ**

ପ୍ରଶ୍ନ-୯୮. ଅସୁରରାଜ ହରିଶରଣାଗତି କଥା ଶୁଣୁ ଶୁଣୁ କ୍ରୋଧରେ ଚକ୍ଷୁ ଲାଲ୍ ଲାଲ୍ କରି ଭଗବାନଙ୍କ ବିଦ୍ୟମାନତା ବିଷୟରେ କି ପ୍ରମାଣ ଚାହିଁଲେ ?

**ଯଃ ତ୍ୱୟା ମନ୍ଦଭାଗ୍ୟ-ଉକ୍ତୋ ମତ୍ ଅନ୍ୟୋ ଜଗଦୀଶ୍ୱରଃ ।**
**କ୍ୱ-ଅସୌ ଯଦି ସ ସର୍ବତ୍ର କସ୍ମାତ୍ ସ୍ତମ୍ଭେ ନ ଦୃଶ୍ୟତେ ॥୧୨॥**

ଉ.ରାଜା କହିଲେ,'ରେ ହତଭାଗା ପ୍ରହ୍ଲାଦ! ସାରା ସୃଷ୍ଟିରେ ମୁଁ କେବଳ ଏକମାତ୍ର ସର୍ବେଶ୍ୱର ସମ୍ରାଟ । ମୋ ବ୍ୟତୀତ ଆଉ କେଉଁଠୁ ଅଲଗା ଈଶ୍ୱରଟେ ଆସିବ ? ତୁ କହୁଛୁ ସେ ସର୍ବତ୍ର ବିରାଜମାନ ବୋଲି । ସେ ମୋତେ ଭୟ କରୁଛି କାହିଁକି ? ମୋ ପାଖକୁ ଆସୁ ନାହିଁ କାହିଁକି ? ମୋ ଖଡ୍‌ଗକୁ ଡ଼ରିବା ଲୋକ କେବେ ମୋର ଈଶ୍ୱର ହୋଇପାରେ କି ? ହେଇ ଦେଖ, ଏହି ଖମ୍ବରେ କାହିଁ ସେ ଦୃଶ୍ୟମାନ ହେଉ ନାହିଁ ତ ?'

ପ୍ରଶ୍ନ-୯୯. ସ୍ୱଭାବରେ ହିରଣ୍ୟ କଶିପୁ ମହା ଅସୁର । ପ୍ରହ୍ଲାଦଜୀ ମହାଭାଗବତ । କେହି କାହା ଉପଦେଶ ମାନିବାକୁ ପ୍ରସ୍ତୁତ ନୁହନ୍ତି । ପିତା କିନ୍ତୁ ପୁତ୍ରକୁ ନିଜ ତେଜ, ବୀର୍ଯ୍ୟକୁ ନିଜ ଖଡ୍‌ଗ ମାଧମରେ ଦେଖାଇବାକୁ ଯାଇ କ'ଣ କଲେ ?

**ଏବଂ ଦୁରୁକ୍ତୈଃ ମୁହୁଃ ଅର୍ଦ୍ଦୟନ୍ ରୁଷା**
**ସୁତ ମହାଭାଗବତଂ ମହା-ଅସୁରଃ ।**
**ଖଡ୍‌ଗଂ ପ୍ରଗୃହ୍ୟ ଉତ୍‌ପତିତୋ ବର-ଆସନାତ୍**
**ସ୍ତମ୍ଭଂ ତତାଡ଼-ଅତିବଳଃ ସ୍ୱମୁଷ୍ଟିନା ॥୧୪॥**

ଉ.ବାରମ୍ବାର କଟୂବାଣୀ କହି ଧମକ ଚମକ ଦେଖାଇଲେ । କିଛି ପରିବର୍ତ୍ତନ ପୁତ୍ରଠାରେ ନ ଦେଖି ଖଣ୍ଡାଧରି ସିଂହାସନରୁ ଡ଼େଇଁ ପଡ଼ିଲେ । ନିକଟ ସ୍ଥିତ ଖମ୍ବଟିକୁ ଖଣ୍ଡା ଦ୍ୱାରା ସମସ୍ତ ବଳ ଲଗାଇ ଆଘାତ କଲେ ।

ସମସ୍ତ ରାଜସଭାସଦ୍ ଶ୍ରବଣ କଲେ ଏକ ଅତି ଭୟଙ୍କର ଗୁରୁଗୁରୁ ଗମ୍ଭୀର ଶବ୍ଦ ଖମ୍ବ ମଧ୍ୟରୁ ଆସୁଛି । ସେତେବେଳେ ମନେ ହେଲା ସତେ ଯେମିତି ବିଶ୍ୱବ୍ରହ୍ମାଣ୍ଡ କଟାହ ଫାଟିଗଲା କି ଆଉ !!! ସେ ଅପୂର୍ବ-ଅଦ୍ଭୁତ-ଅତି ଗମ୍ଭୀର ଶବ୍ଦର ସ୍ରୋତକୁ ଜାଣିବାକୁ ସମସ୍ତେ ଚାହିଁ ରହିଲେ । ସମସ୍ତଙ୍କ ମନରେ ଭୟ ଆତଙ୍କ ଓ ଉଦ୍‌ବେଗ ଖେଳିଗଲା ।

ପ୍ରଶ୍ନ-୧୦୦.ପିତା-ମାତାଙ୍କ ଗର୍ଭରୁ ଉତ୍ପନ୍ନ ନ ହୋଇ ଏକ ଜଡ଼ ଖମ୍ବମଧ୍ୟରୁ ନୃସିଂହ ଭଗବାନ ପ୍ରକଟ ହେବାର କାରଣ କଅଣ ?

**ସତ୍ୟଂ ବିଧାତୁଂ ନିଜ ଭୃତ୍ୟ ଭାଷିତଂ**
**ବ୍ୟାପ୍ତିଂଚ ଭୂତେଷୁ-ଅଖିଳେଷୁ ଚ-ଆତ୍ମନଃ ।**
**ଅଦୃଶ୍ୟତ୍ ଅତି-ଅଦ୍ଭୁତରୂପଂ ଉଦ୍‌ବହନ୍**
**ସ୍ତମ୍ଭେ ସଭାୟାଂ ନ ମୃଗଂ ନ ମାନୁଷମ୍ ॥୧୭॥**

ଉ. ୧ମ କାରଣ- ଚତୁଃ ସନକଙ୍କ କଥା(ଭାଷିତଂ) ଭଗବାନଙ୍କ ହାତରେ ତିନିଥର ମରି ଉଦ୍ଧାର ହୋଇପାରିବେ ।

୨ୟ କାରଣ-ବ୍ରହ୍ମାଜୀ ବର ବ୍ରହ୍ମାସୃଷ୍ଟ କୌଣସି ପ୍ରାଣୀ ଦ୍ୱାରା ସେ ମରିବେନି ।

୩ୟ କାରଣ-ନାରଦଜୀ ତାଙ୍କ ଶିଷ୍ୟଙ୍କୁ କହିଥିବା ପରମାତ୍ମା ସୃଷ୍ଟିର ଜଡ଼-ଚେତନରେ କଣ କଣ ଅଣୁ ପରମାଣୁରେ ବିଦ୍ୟମାନ ପ୍ରମାଣ କରିବାକୁ ।

୪ର୍ଥ କାରଣ- ପ୍ରହ୍ଲାଦ କହି ସାରିଲେଣି ଯେ- ଭଗବାନ ସର୍ବତ୍ର ବିଦ୍ୟମାନ । ଅତଏବ ସ୍ତମ୍ଭରେ ମଧ୍ୟ ବିଦ୍ୟମାନ । ସୁତରାଂ ପିତା-ମାତା ଖୋଜିବାକୁ ଆଉ ସମୟ ମିଳିଲାନି ନୃସିଂହ ଭଗବାନଙ୍କୁ । ରାଜା ହିରଣ୍ୟ କଶିପୁ ଶବ୍ଦ ସ୍ରୋତକୁ ନିରୀକ୍ଷଣ କରୁକରୁ ଭୟଙ୍କର ଶବ୍ଦକରି ଫାଟିଗଲା ସେ ସ୍ତମ୍ଭ । ପ୍ରକଟ ହେଲେ ନୃସିଂହ ଭଗବାନ ଦିବ୍ୟ ରୂପରେ । ରୂପରେ ତାଙ୍କୁ ନର କିମ୍ବା ସିଂହ କହି ହେବନି । ମସ୍ତକ ସିଂହର ଓ ବାକୀଅଂଶ ମନୁଷ୍ୟ ଶରୀରର । ଏକ ମିଳିତ ବିଚିତ୍ର ଅଲୌକିକ ବିଗ୍ରହ । ତପ୍ତ କାଞ୍ଚନ ବର୍ଣ୍ଣ । କ୍ଷୁର ଧାର ପରି ଜିହ୍ୱା, ଗିରି ଗୁହା ଭଳି ଉର୍ଦ୍ଧ୍ୱମୁଖ କର୍ଣ୍ଣ । ବିସ୍ତାରିତ ମୁଖ । ଆକାଶ

ସ୍ପର୍ଶୀ ଦିବ୍ୟ ବିଗ୍ରହ । ଭୟାନକ ତୀକ୍ଷ୍ଣ ଦନ୍ତ ଓ ନଖାବଳୀ ।

ରାଜା ଭାବିଲେ, ଏ ନିଶ୍ଚୟ ବିଷ୍ଣୁ । ମାୟାରେ ଏ ବିଚିତ୍ର ବେଶ ଧାରଣ କରିଛନ୍ତି । ସୁତରାଂ ଖଣ୍ଡାରେ ହାଣିବାକୁ ଚେଷ୍ଟା କଲେ କିନ୍ତୁ ଏ କ'ଣ ଭଗବାନଙ୍କ ରୂପ କେତେବେଳେ ଦୃଶ୍ୟମାନ ହେଉଥାଏ ତ ପୁଣି କେତେବେଳେ ଅଦୃଶ୍ୟ !! ଗଦାଟେ ଧରି ଧାଇଁଲେ ଭଗବାନଙ୍କୁ ପିଟିବାକୁ । ଖରୁଡ଼ ସର୍ପକୁ ଧରିନେବା ଭଳି ଭଗବାନ ତାଙ୍କୁ ହାତରେ ଚାପି ଧରିତୋଳିଲେ । ପୁଣି ଛାଡ଼ି ଦେଲେ । ଖେଳରେ ଖେଳରେ ଯୁଦ୍ଧ । କ୍ରମେ ଯୁଦ୍ଧ ଅଧିକ ଭୟଙ୍କର ହେବାକୁ ଲାଗିଲା । ସପ୍ତସ୍ଵର୍ଗ ଲୋକବାସୀ ଆସି ଶୂନ୍ୟରେ ରହି ଏ ଲୀଳା ଦର୍ଶନ କଲେ । ମୂଷିକ-ମାର୍ଜାର,ସର୍ପ-ଗରୁଡ଼, ହଂସ-ବାଜପକ୍ଷୀ ଭୂମିକାରେ ଉଭୟଙ୍କ ଘମାଘୋଟ ଲଢ଼େଇ ଦେଖି ଉପସ୍ଥିତ ଦର୍ଶକ ମଣ୍ଡଳୀର ସମସ୍ତେ ଭରପୂର ଆନନ୍ଦ ଉଠାଉଥାନ୍ତି ।

ଅନ୍ତିମ ପର୍ଯ୍ୟାୟରେ ଭଗବାନ ମହଲରୁ ତାଙ୍କୁ ଟାଣି ନେଇ ଓଲିତଳେ ନିଜ ଜଙ୍ଘ ଉପରେ ରଖି ନିଜ ତୀକ୍ଷ୍ଣ ନଖ ଦ୍ଵାରା ତାଙ୍କ ବକ୍ଷ ବିଦାରଣ କଲେ । ମନେ ହେଲା ସତେ ଯେମିତି ଦୁହିଁଙ୍କ ଯୁଦ୍ଧ ସତ ସତିକା ହେଉଛି । ଭକ୍ତର ଅନ୍ତନାଡ଼ୀକୁ ମାଳ କରି ଗଳାରେ ଧାରଣ କଲେ । ବକ୍ଷରୁ ନିର୍ଗତ ରକ୍ତକୁ ନିଜ ଜିହ୍ଵାରେ ଚାଟି ପକାଇଲେ । ବ୍ରହ୍ମା-ଶଙ୍କର -ଇନ୍ଦ୍ର-ଚନ୍ଦ୍ର -ମହାଲକ୍ଷ୍ମୀ ଆଦି ସମସ୍ତେ ଭାବିଲେ ଭଗବାନ କ୍ରୁଦ୍ଧ ହୋଇଛନ୍ତି ନିଶ୍ଚୟ । ସମସ୍ତେ ମନ କଲେ ଗୋଟିଏ ହିଂସ୍ର ସିଂହ ଏକ ମସ୍ତବଡ଼ ହସ୍ତୀକୁ ମାରି ପକାଇଛି କି ?

ଭଗବାନଙ୍କ ନାସିକା ପବନରେ ଆକାଶର ମେଘମାନେ ଏଣେ ତେଣେ ଉଡ଼ିଗଲେ । ତାଙ୍କ ଚାହାଣିରେ ଗ୍ରହ-ନକ୍ଷତ୍ର ମାନେ ମ୍ଳାନ ଦିଶିଲେ । ସମୁଦ୍ର ଜଳ ଅସ୍ଥିର ହୋଇ ଉଦ୍‌ବେଳିତ ହେଲେ । ତାଙ୍କ ପଦପାତରେ ପୃଥିବୀ କମ୍ପମାନ ହେଲା । ଦେବତାମାନଙ୍କ ଅକାଶସ୍ଥିତ ବିମାନ ଗୁଡ଼ିକ ଦୋହଲି ଉଠିଲା । ଭୂପୃଷ୍ଠସ୍ଥିତ ପାହାଡ଼ ପର୍ବତମାନଙ୍କ ମଧ୍ୟରୁ କେହି ଉପରକୁ ଉଠିଗଲେ ପୁଣି କେହି ତଳକୁ ଦବିଗଲେ । ସଂପୂର୍ଣ୍ଣ ବ୍ରହ୍ମାଣ୍ଡ ଓ ବିରାଟ ପ୍ରକୃତି ଇତସ୍ତତ ହେଲା ।

ପ୍ରଶ୍ନ-୧୦୧. ଦୈତ୍ୟ ଉଦ୍ଧାର ଲକ୍ଷ୍ୟ ପୂରଣ କରି ଭଗବାନ ହିରଣ୍ୟ କଶିପୁ ସିଂହାସନ ଉପରେ ବିରାଜମାନ ହେଲେ । ବ୍ରହ୍ମାଜୀଙ୍କ ସହିତ ଦେବତାମାନେ କଅଣ ତାଙ୍କ ପାଖକୁ ଯାଇ ସ୍ତବ ସ୍ତୁତି, ପ୍ରାର୍ଥନା ଆଦି କଲେ କି ?

**ତତଃ ସଭାୟାଂ ଉପବିଷ୍ଟଂ ଉତ୍ତମେ**
**ନୃପ-ଆସନେ ସଂଭୃତ ତେଜସଂ ବିଭୂମ୍ ।**
**ଅଲକ୍ଷିତ ଦ୍ୱୈରଥଂ ଅତି-ଅମର୍ଷଣଂ**
**ପ୍ରଚଣ୍ଡ ବକ୍ତ୍ରଂ ନ ବଭାଜ କଶ୍ଚନ୍ ।।୩୪।।**

ଉ. ଭଗବନ ଯେତେବେଳେ ଦେଖିଲେ ତାଙ୍କର ସମ୍ମୁଖୀନ ହେଲା ଭଳି କେହି ପ୍ରତିସ୍ପର୍ଦ୍ଧୀ ନାହାନ୍ତି (ଅଲକ୍ଷିତ ଦ୍ୱୈରଥଂ) ମନେ ମନେ ଅତ୍ୟନ୍ତ ବିରସ (ଅତି-ଅମର୍ଷଣଂ) ହୋଇ ଯାଇ ସର୍ବୋଚ୍ଚ ସିଂହାସନରେ ବିରାଜମାନ କଲେ । ତଥାପି ସେ ପର୍ଯ୍ୟନ୍ତ ତାଙ୍କ ମୁଖ ମଣ୍ଡଳ କ୍ରୋଧରେ କମ୍ପମାନ ହେଉଥାଏ । ସୁତରାଂ ବ୍ରହ୍ମା-ଶଙ୍କର-ଇନ୍ଦ୍ର-ମହାଲକ୍ଷ୍ମୀ ଆଦି ଦେବୀ ଦେବତା ମାନେ କେହି ସାହସ କରି ପାଖ ମାଡ଼ିଲେ ନି । ପୂଜା-ସ୍ତୁତିଆଦି କରିବା ତ ଦୂରରେ କଥା ।

ସ୍ୱର୍ଗରୁ ଦେବତା ମାନେ ଦିବ୍ୟ ସୁମନ ବର୍ଷଣ କଲେ । ଦେବ ଲୋକରେ ଦୁନ୍ଦୁଭି ଢ଼ୋଲ ବାଜିଲା । ଅପ୍‌ସରା ମାନେ ନୃତ୍ୟ କଲେ । ଗନ୍ଧର୍ବ, କିନ୍ନରମାନେ ଗାଉଣା ବାଜଣାରେ ଲାଗିଗଲେ । ସକଳ ଦେବତା ବିମାନରୁ ଓହ୍ଲାଇ ତାଙ୍କ ଚାରି ପଟେ ଘେରିଗଲେ । ଯେତେ ଯେପରି ସେଣ୍ଟ୍ରାଲ୍ ଗଭର୍ଣ୍ଣମେଣ୍ଟଙ୍କୁ ସମ୍ମାନ ଦେଖାଇବାକୁ ଅଧୀନସ୍ଥ ମନ୍ତ୍ରୀ-ମୁଖ୍ୟମନ୍ତ୍ରୀ ଗଣ ବେଢ଼ିଗଲେ ।

ପ୍ରଶ୍ନ-୧୦୨. ସତ୍ୟଲୋକ ବାସୀ ବ୍ରହ୍ମା-ଶଙ୍କରଙ୍କ ସହିତ ଏକତ୍ର ରୁଣ୍ଡ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଆଉ କିଏ କିଏ ସବୁ ଥିଲେ ?

**ତତ୍ର ଉପବ୍ରଜ୍ୟ ବିବୁଧା ବ୍ରହ୍ମା-ଇନ୍ଦ୍ର-ଗିରୀଶ-ଆଦୟଃ ।**
**ଋଷୟଃ ପିତରଃ ସିଦ୍ଧା ବିଦ୍ୟାଧର ମହା-ଉରଗାଃ ।।୩୭।।**

ଉ. ସ୍ୱର୍ଗଲୋକର ଦେବତା, ଋଷି,ପିତର, ସିଦ୍ଧଗଣ,ବିଦ୍ୟା ଧରଗଣ ଓ ପାତାଳ ଲୋକର ଦିବ୍ୟ ସର୍ପଗଣ ସମସ୍ତେ ବେଢ଼ିଗଲେ ଭଗବାନଙ୍କ ଚତୁର୍ଦ୍ଦିଗରେ ।

ପ୍ରଶ୍ନ-୧୦୩. ସ୍ୱାୟମ୍ଭୁବ ଆଦି ଚତୁର୍ଦ୍ଦଶ ମନୁ ଓ ଦକ୍ଷ ଆଦି ପ୍ରଜାପତିଙ୍କ ସହିତ ଆଉ ପୁଣି କିଏ କିଏ ଉପସ୍ଥିତ ଥିଲେ ?

**ମନବଃ ପ୍ରଜାନାଂ ପତୟୋ ଗନ୍ଧର୍ବ-ଅପ୍‌ସର ଚାରଣାଃ ।**
**ଯକ୍ଷାଃ କିଂପୁରୁଷାଃ ତାତ ବେତାଳାଃ ସିଦ୍ଧ କିନ୍ନରାଃ ।।୩୮।।**

ଉ.ଗନ୍ଧର୍ବ ଅପ୍‌ସରା, ଚାରଣ, ଯକ୍ଷ, କିଂପୁରୁଷ,ବେତାଳ ଓ କିନ୍ନରମାନେ ମଧ୍ୟ ଏକତ୍ର ହୋଇଥିଲେ ।

ପ୍ରଶ୍ନ-୧୦୪. ବୈକୁଣ୍ଠ ଲୋକରୁ କଅଣ କେହି ଆସିଥିଲେ କି ?

**ତେ ବିଷ୍ଣୁ ପାର୍ଷଦାଃ ସର୍ବେ ସୁନନ୍ଦ କୁମୁଦ-ଆଦୟଃ ।**
**ମୂର୍ଦ୍ଧି ବଦ୍ଧ-ଅଞ୍ଜଳ ପୁଟା ଆସୀନଂ ତୀବ୍ର ତେଜ ଯମ୍ ॥**
**ଈଡ଼ିରେ ନର ଶାର୍ଦ୍ଦୂଳଂ ନ-ଅତି ଦୂରଚରାଃ ପୃଥକ୍ ॥୩୯॥**

ଉ. ନନ୍ଦ ସୁନନ୍ଦ କୁମୁଦ ଆଦି ବିଷ୍ଣୁ ପାର୍ଷଦମାନେ ସେମାନଙ୍କ ଦିବ୍ୟ ତେଜ ଧାରଣ କରି ସେଠାରେ ପହଞ୍ଚିଗଲେ । ନିଜ ନିଜ ମସ୍ତକରେ ଯୋଡ଼ ହସ୍ତରେ ପ୍ରଣାମ କରି ନୃସିଂହ ଭଗବାନଙ୍କ ପାଖକୁ ଯାଇ ପ୍ରଥମେ ପୂଜନ କରିଥିଲେ (ଈଡ଼ିରେ) ।

ପ୍ରଶ୍ନ-୧୦୫. ତତ୍ତ୍ୱତଃ ହରି-ହର ପରସ୍ପର ଠାରୁ ଭିନ୍ନ ଓ ଅଭିନ୍ନ ମଧ ଅଟନ୍ତି । ସୁତରାଂ ରୁଦ୍ର ଭଗବାନ ମହାରୁଦ୍ର ନୃସିଂହ ଭଗବାନଙ୍କୁ କିଭଳି ସ୍ତୁତି କଲେ ?

ଶ୍ରୀରୁଦ୍ର ଉବାଚ

**କୋପ କାଲୋ ଯୁଗାନ୍ତଃ ତେ ହତୋଽୟଂ ଅସୁରୋଽଳ୍ପକଃ ।**
**ତତ୍ ସୁତଂ ପାହି-ଉପସୃତଂ ଭକ୍ତଂ ତେ ଭକ୍ତବତ୍ସଳ ॥୪୧॥**

ଉ.କହିଲେ, 'ହେ, ପ୍ରଭୋ ! ଆପଣ ଠିକଣା ସମୟରେ ଠିକ୍ ମାତ୍ରାରେ କୋପ କରିଛନ୍ତି । ତୁଚ୍ଛାତିତୁଚ୍ଛ ଦୈତ୍ୟ ହିରଣ୍ୟ କଶିପୁଙ୍କୁ ଉଦ୍ଧାର କରି ଅସୁର ଜାତିକୁ ମାର୍ଗଦର୍ଶନ କରାଇଛନ୍ତି । ଆପଣ ତ ଭକ୍ତ ବତ୍ସଳ । ହିରଣ୍ୟ କଶିପୁର ପୁତ୍ର ଆପଣଙ୍କର ଜଣେ ଆଦର୍ଶଭକ୍ତ । ସେ ଆପଣଙ୍କ କୃପାପ୍ରାର୍ଥୀ ହୋଇ ଆପଣଙ୍କ ନିକଟରେ ଉପସ୍ଥିତ ହୋଇଛି ।' ଇନ୍ଦ୍ରଦେବତା ସ୍ତୁତିରେ କହିଲେ, 'ଆପଣ ରାକ୍ଷସ ରାଜଙ୍କ ଉଦ୍ଧାର କରି ଆମ ଯଜ୍ଞଭାଗ ଆମକୁ ଫେରାଇ ଦେଇଛନ୍ତି । ଆମ ହୃଦୟ ଭୟରେ ଆଚ୍ଛନ୍ନ ଥିଲା । ଏବେ ନିର୍ମଳ ହେଲା । ଆମେ ଏଣିକି ଆପଣଙ୍କ ଚତୁର୍ଭୁଜ ଧାରୀ ନାରାୟଣ ରୂପ ଧ୍ୟାନ କରିପାରିବୁ ।'

ଋଷିମାନେ କହିଲେ, 'ତପ ଶକ୍ତିର ଦୁରପଯୋଗ ହେତୁ ତପସ୍ୟା ମାର୍ଗ ହୀନ ପ୍ରଭ ହୋଇଯାଇଥିଲା । ଦୈତ୍ୟ ଇନ୍ଦ୍ର ହିରଣ୍ୟ କଶିପୁଙ୍କ ଅବସ୍ଥା ଦେଖି ତପସ୍ୟା ମାର୍ଗ ତାର ଆଲୋକ ବା ମାହାତ୍ମ୍ୟ ଫେରିପାଇଲା ।'

ପିତର ମାନେ କହିଲେ, 'ଦୈତ୍ୟରାଜ ଆମକୁ ଅର୍ପିତ ତିଳ-ଅଞ୍ଜଳି ସବୁ ତାଙ୍କ ଯୋଗ ଶକ୍ତି ବଳରେ ପିଇଯାଉଥିଲେ । ଏଣିକି ଆମ ତିଳ ତର୍ପଣ ଭାଗ ଆମକୁ ମିଳିବ ।' ସିଦ୍ଧମାନେ କହିଲେ, 'ଅଷ୍ଟସିଦ୍ଧି ଆମର ସମ୍ପତ୍ତି । ଦୈତ୍ୟ ପତିଙ୍କ ଯୋଗୁଁ ସେ

ସବୁ ଆମର ହାତଛଡ଼ା ହୋଇଯାଇଥିଲା । ଆମେ ତାହା ଫେରି ପାଇଲୁ ।’

ବିଦ୍ୟାଧରମାନେ କହିଲେ, ‘ଆମେ ହରାଇଥିବା ପ୍ରକଟ-ଅପ୍ରକଟ ବିଦ୍ୟା ପୁନଃପ୍ରାପ୍ତ ହେଲୁଣି ।’

ପ୍ରଶ୍ନ-୧୦୬. ପାତାଳଲୋକର ନାଗ ମାନେ କଅଣ କହିଲେ ?

**ଯେନ ପାପେନ ରତ୍ନାନି ସ୍ତ୍ରୀ ରତ୍ନାନି ହୃତାନି ନଃ ।**
**ତଦ୍ ବକ୍ଷଃ ପାଟନେନ ଆସାଂ ଦ-ଆନନ୍ଦ ନମସ୍ତେଽସ୍ତୁତେ ॥୪୭॥**

ଉ. ସେମାନେ କହିଥିଲେ, ‘ଆମର ଧନରତ୍ନ ସୁନ୍ଦରୀ ସ୍ତ୍ରୀମାନଙ୍କୁ ହିରଣ୍ୟ କଶିପୁ ଛଡ଼ାଇ ନେଇ ନିଜେ ଉପଭୋଗ କରୁଥିଲା । ତାର ବକ୍ଷ ବିଦାରଣ (ପାଟନେନ) କରି ଆମର ଅଶେଷ ଉପକାର କରିଛନ୍ତି । ଆପଣଙ୍କୁ ବାରମ୍ବାର ନମସ୍କାର । ସ୍ୱାୟମ୍ଭୁବ ଆଦି ମନୁମାନେ କହିଲେ, ‘ହିରଣ୍ୟ କଶିପୁଙ୍କ ଯୋଗୁଁ ଆମ ସ୍ଥାପିତ ବର୍ଣ୍ଣଧର୍ମ-ଆଶ୍ରମ ଧର୍ମ ସବୁ ନଷ୍ଟ ଭ୍ରଷ୍ଟ ହୋଇ ଯାଇଥିଲେ । ଏଣିକି ଆପଣଙ୍କ ଆଦେଶରେ ଆମେ ସେ ସବୁର ପୁନଃ ସ୍ଥାପନ କରିପାରିବୁ ।’

ଦକ୍ଷଆଦି ପ୍ରଜାପତିମାନେ ସ୍ତୁତିରେ କହିଲେ, ‘ଦୈତ୍ୟରାଜଙ୍କ ଉତ୍ପାତ ହେତୁ ଜ୍ଞାନୀ ଭକ୍ତର ଜନ୍ମ ନିଷିଦ୍ଧ ହୋଇଥିଲା । ଏଣିକି ସେମାନେ ଜନ୍ମ ଲାଭ କରି ଆପଣଙ୍କ ମହିମା ଗାନ କରିପାରିବେ ।’

ଗନ୍ଧର୍ବ ଓ ଯକ୍ଷ ଗଣ ସ୍ତୁତିରେ ନିଜ ନିଜର କୃତଜ୍ଞତା ଜ୍ଞାପନ କରିବାରେ ଲାଗିଥାନ୍ତି । କାରଣ ସେମାନଙ୍କୁ ବଳାତ୍କାର କରି ନାଚ,ଗୀତ ଓ ପାଲିଙ୍କି ବୋହିବା କାର୍ଯ୍ୟରେ ଲଗାଯାଉଥିଲା । ସେଥିରୁ ସେ ମୁକ୍ତ ହୋଇଛନ୍ତି । ଏଣିକି ସେମାନେ ଦେବରାଜ ଇନ୍ଦ୍ରଙ୍କ ସେବା କରିପାରିବେ ।

ପ୍ରଶ୍ନ-୧୦୭.ଏହି ଅବସରରେ ଚାରଣଲୋକ ନିବାସୀ ମାନେ କଅଣ ସ୍ତୁତିକଲେ ?

**ଚାରଣା ଉଚୁଃ**

**ହରେ ତବ ଅଙ୍ଘ୍ରି ପଙ୍କଜଂ ଭବ-ଅପବର୍ଗଂ ଆଶ୍ରିତଃ ।**
**ଯତ୍ ଏଷ ସାଧୁ-ହୃତ୍ ଶୟଃ ତ୍ୱୟା -ଅସୁରଃ ସମାପିତଃ ॥୫୧॥**

ଉ. ସେମାନେ କହିଲେ, ‘ହେ’ ଶ୍ରୀହରି ଭଗବାନ୍ ! ଆପଣଙ୍କ ଚରଣ କମଳ ଧ୍ୟାନ ସହିତ ଜୀବର ଚାରି ଲକ୍ଷ୍ୟ ଧର୍ମ-ଅର୍ଥ-କାମ-ମୋକ୍ଷ ବାଞ୍ଛାମଧ୍ୟ ଅସୁର

ରାକ୍ଷାଙ୍କ ଭୟରେ ଭୟାଛନ୍ନ ହୋଇଥିଲା । ଆପଣ ଅସୁରେନ୍ଦ୍ରଙ୍କୁ ମାରି ଆମ ଲାଗି ଧ୍ୟାନର ଭୟ କଣ୍ଟକ ଦୂର କରିଥିବାରୁ (ସମାପିତଃ) ଆମେ ଆପଣଙ୍କୁ ବିନମ୍ର ପ୍ରଣତି ଜଣାଉ ଅଛୁ ।'

ପ୍ରଶ୍ନ-୧୦୮. କିଂପୁରୁଷମାନେ କଅଣ ଭଗବାନଙ୍କର ସ୍ତୁତି ନ କରି ନୀରବ ରହିପାରିଲେ ?

**କିଂପୁରୁଷା ଉଚୁଃ**

**ବୟଂ କିଂ ପୁରୁଷାଃ ତ୍ୱଂ ତୁ ମହାପୁରୁଷ ଈଶ୍ୱରଃ ।**
**ଅୟଂ କୁପୁରୁଷୋ ନଷ୍ଟୋ ଧିକ୍ କୃତଃ ସାଧୁଭିଃ ଯଦା ।।୪୩।।**

ଉ.ସେମାନେ କହିଲେ, 'ହେ' ପରମେଶ୍ୱର ! ଆପଣ ପରମ ପୁରୁଷ ଅଟନ୍ତି । ଭକ୍ତ-ସାଧୁ-ସନ୍ଥ ମାନଙ୍କର ସ୍ତୁତିକୁ ଶ୍ରବଣ କରି ପ୍ରସନ୍ନ ହୁଅନ୍ତି । ସେମାନଙ୍କୁ ଧିକ୍‌କାର କରୁଥିବାରୁ ଅସୁର ରାଜଙ୍କ ବିନାଶ କରି ବୈଷ୍ଣବ ଧର୍ମର କଣ୍ଟକ ଦୂର କରିଛନ୍ତି । ଆମେ କିଂପୁରୁଷ ଅଟୁ ଜାତିରେ । କେଉଁ ପୁରୁଷରେ ଅବା ଆମେ ଗଣା ? ତୁଚ୍ଛାତିତୁଚ୍ଛ କ୍ଷୁଦ୍ର ଜୀବ । ସ୍ତୁତି ବନ୍ଦନା ଆମକୁ ଆସେନା । ତଥାପି କୃପାବତ୍ସଳ ବା ଶରଣାଗତ ବତ୍ସଳ ଗୁଣରେ ଆମମାନଙ୍କ ଶରଣାଗତି ସ୍ୱୀକାର କରନ୍ତୁ ।'

ସର୍ବଶେଷରେ ବିଷ୍ଣୁପାର୍ଷଦମାନେ କହିଲେ, 'ଆପଣଙ୍କ ନିତ୍ୟ ପାର୍ଷଦ ଜୟ ହିଁ ବ୍ରାହ୍ମଣ ଶାପରେ ଅସୁର ହୋଇଥିଲେ । ତାଙ୍କୁ ଆପଣ ଉଦ୍ଧାର କରି ତାଙ୍କ ପ୍ରତି ଓ ଆମ ସମସ୍ତଙ୍କ ପ୍ରତି କୃପା ପ୍ରଦର୍ଶନ କରିଛନ୍ତି ।'

**ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ସପ୍ତମସ୍କନ୍ଧେ ଅଷ୍ଟମୋଽଧ୍ୟାୟଃ ।**

**।। ହରିଃ ଓଁ ତତ୍‌ସତ୍ ।।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

### ଷୋଡ଼ଶ ନକ୍ଷତ୍ର-ବିଶାଖା

## ଅଥ ୯ମ ଅଧ୍ୟାୟଃ

### (ଭଗବାନ ନୃସିଂହ ଦେବଙ୍କୁ ଭକ୍ତରାଜ ପ୍ରହ୍ଲାଦଜୀଙ୍କ ସ୍ତୁତି)

ପ୍ରଶ୍ନ-୧. ବ୍ରହ୍ମା,ଶଙ୍କର ଓ ଇନ୍ଦ୍ରାଦି ଦେବତାଙ୍କ ସ୍ତୁତିରେ ନୃସିଂହ ଦେବ ପ୍ରସନ୍ନ ହୋଇ କଅଣ କହିଲେ ?

ନାରଦ ଉବାଚ

**ଏବଂ ସୁର-ଆଦୟଃ ସର୍ବେ ବ୍ରହ୍ମ ରୁଦ୍ର ପୁରଃ ସରାଃ ।**
**ନ-ଉପୈତୁଂ ଅଶକନ୍ ମନ୍ୟୁ ସଂରମ୍ଭଂ ସୁ ଦୁରାସଦମ୍ ॥୧॥**

ଉ. ବ୍ରହ୍ମାଜୀ ଓ ଶଙ୍କର ଦେବଙ୍କୁ ସାମନାରେ ରଖି ସମସ୍ତେ ସ୍ତୁତି ସିନା କଲେ କିନ୍ତୁ ଅନେକ ଦୂରରେ ଥାଇ କଲେ । ସକଳ ସ୍ତୁତି ଶେଷ ହେଲା । ଭଗବାନଙ୍କ ଅପରିସୀମ କ୍ରୋଧ (ମନ୍ୟୁ) ଶାନ୍ତ ହେଲାନି (ସଂରମ୍ଭଂ) । ସେ ପ୍ରସନ୍ନ ହେବେ କେମିତି ?

ଇନ୍ଦ୍ରାଦି ଦେବତାମାନେ ମାଆ ମହାଲକ୍ଷ୍ମୀଙ୍କୁ ଅନୁରୋଧ କରନ୍ତେ ସେ କିଛି ବାଟ ଗଲେ କିନ୍ତୁ ଫେରିଆସିଲେ ଭୟରେ । ଏପର୍ଯ୍ୟନ୍ତ ଯେତେ ଅବତାର ସେ ଦେଖିଛନ୍ତି କୌଣସିଟିରେ ନାରାୟଣ ଏଭଳି ମହା ଭୟଙ୍କର ରୂପ ଧାରଣ କରି ନଥିଲେ । ସେ ଡ଼ରରେ ସ୍ତୁତି ମଧ୍ୟ କରିପାରିଲେନି ।

ପ୍ରଶ୍ନ-୨. ସୃଷ୍ଟି କର୍ତ୍ତା କଅଣ ଉପାୟ କଲେ ଭଗବାନଙ୍କୁ ଶାନ୍ତ କରିବାପାଇଁ ?

**ପ୍ରହ୍ଲାଦଂ ପ୍ରେଷୟାମାସ ବ୍ରହ୍ମା-ଅବସ୍ଥିତଂ ଅନ୍ତିକେ ।**
**ତାତ ପ୍ରଶମୟ-ଉପେହି ସ୍ୱପିତ୍ରେ କୁପିତଂ ପ୍ରଭୁମ୍ ॥୩॥**

ଉ. ବ୍ରହ୍ମଦେବ ପାଖରେ ଥିବା ପ୍ରହ୍ଲାଦଜୀଙ୍କୁ ପଠାଇଲେ । କହିଲେ, 'ବାପ, ତମେ ବାପ-ପୁଅ ମିଶି ଏ କାଣ୍ଡ ଘଟେଇଛ । ତୁମ ଯୋଗୁ ସେ କ୍ରୋଧ ପୀଡ଼ିତ । କ୍ଷିରୀ ଖୁଆଇଛ ଯେତେ ବେଳେ ବର୍ହିଗମନ ଲାଗି କିଛି ବ୍ୟବସ୍ଥା କର ।'

ସୁଯୋଗକୁ ଅପେକ୍ଷା କରିଥିଲା ଭଳି ବ୍ରହ୍ମାଜୀଙ୍କ ଆଦେଶରେ 'ହଉ ତେବେ

ମୁଁ ଯାଉଛି' କହି ନିର୍ଭୟରେ ସେ ଭଗବାନଙ୍କ ପାଖକୁ ଚାଲିଗଲେ ।

ପ୍ରଶ୍ନ-୩. ପାଞ୍ଚ ବର୍ଷର ବାଳକ ପ୍ରହ୍ଲାଦଙ୍କୁ ପାଖରେ ପାଇ ନୃସିଂହ ଭଗବାନ୍ କ'ଣ କ୍ରୋଧ ପରିହାର କରିପାରିଲେ ?

**ସ୍ୱପାଦ ମୂଳେ ପତିତଂ ତଂ ଅର୍ଭକଂ**
**ବିଲୋକ୍ୟ ଦେବଃ କୃପୟା ପରିପ୍ଲୁତଃ ।**
**ଉତ୍ଥାପ୍ୟ ତତ୍ ଶୀର୍ଷ୍ଣି ଅଦଧାତ୍ କର-ଅମ୍ବୁଜଂ**
**କାଳ-ଅହି ବିତ୍ରସ୍ତ ଧିୟାଂ କୃତ-ଅଭୟମ୍ ॥୫॥**

ଉ. ଭକ୍ତ ପ୍ରହ୍ଲାଦ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସେତିକିରେ ଭଗବାନଙ୍କର ପ୍ରଚଣ୍ଡ କୋପ କୁଆଡ଼େ ଉଭେଇଗଲା । ଅତ୍ୟନ୍ତ ପ୍ରେମାପ୍ଲୁତ ଭାବାବିଷ୍ଟ ହୋଇ ସେ ଭକ୍ତକୁ ଗୋଟିଏ କରକମଳରେ ଧରି ଅନ୍ୟ କରକମଳକୁ ପ୍ରହ୍ଲାଦଙ୍କ ମସ୍ତକ ଉପରେ ସ୍ଥାପନ କରିଦେଲେ । ତାଙ୍କ ପ୍ରିୟ ଭକ୍ତକୁ ସେ ତୁରନ୍ତ ଅଭୟ ଦାନ କଲେ । ସେତିକି କୃପାରେ ପ୍ରହ୍ଲାଦଜୀଙ୍କ ଅବଶିଷ୍ଟ ସାମାନ୍ୟ ଭୌତିକ ଭୋଗ ଇଚ୍ଛା ଇତ୍ୟାଦି ମନରୁ ସ୍ଥାନ ତ୍ୟାଗ କଲେ । ଭକ୍ତ ଭଗବାନ ଉଭୟ ପ୍ରେମ ସାଗରରେ ଉବୁଡ଼ି ଟୁବେଇ ହେଲେ । ପ୍ରହ୍ଲାଦଜୀ ଭକ୍ତି ଗଦ୍‌ଗଦ୍ କଣ୍ଠରେ ସ୍ତୁତି ଆରମ୍ଭ କରି ଦେଲେ ।

ପ୍ରଶ୍ନ-୪. ଅସୁର କୁଳରେ ଜନ୍ମହୋଇ ପ୍ରହ୍ଲାଦ ସ୍ତୁତିଦ୍ୱାରା ଭଗବାନଙ୍କୁ ପ୍ରସନ୍ନ କରିବା କିପରି ସମ୍ଭବ ହେଲା ?

ପ୍ରହ୍ଲାଦ ଉବାଚ

**ମନ୍ୟେ ଧନ-ଅଭିଜନ ରୂପ ତପଃ ଶ୍ରୁତ-ଓଜଃ**
**ତେଜଃ ପ୍ରଭାବ ବଳ ପୌରୁଷ ବୁଦ୍ଧି ଯୋଗାଃ ।**
**ନ-ଆରଧନାୟ ହି ଭବନ୍ତି ପରସ୍ୟ ପୁଂସୋ**
**ଭକ୍ତ୍ୟା ତୁ ତୋଷ ଭଗବାନ୍ ଗଜଯୂଥପାୟ ॥୯॥**

ଉ.ପ୍ରହ୍ଲାଦଜୀ ସର୍ବପ୍ରଥମେ କହିଲେ, 'ଭଗବାନଙ୍କ ନିତ୍ୟ ସତ୍ତ୍ୱ ଗୁଣୀଭକ୍ତ ବ୍ରହ୍ମା ଶଙ୍କର ଆଦି ଦେବତାମାନେ ସ୍ତୁତି କରି ଆପଣଙ୍କୁ ପ୍ରସନ୍ନ କରି ନ ପାରିବା ବେଳେ ମୁଁ କି ସ୍ତୁତି କରି ଆପଣଙ୍କ କ୍ରୋଧ ସମ୍ବରଣ କରିବାକୁ କହିପାରିବି ?

ମନେହୁଏ ଧନ, କୁଳୀନତା (ଅଭିଜନ), ରୂପ, ତପସ୍ୟା, ବେଦଜ୍ଞାନ, ଓଜ, ତେଜ, ପ୍ରଭାବ, ବଳ, ପୌରୁଷ, ବୁଦ୍ଧି ଓ ଯୋଗ ଏହି ୧୨ ଗୁଣ ଆପଣଙ୍କୁ

ପ୍ରସନ୍ନ କରିପାରନ୍ତି ନାହିଁ କିନ୍ତୁ ମୂର୍ଖ ପଶୁ ଗଜେନ୍ଦ୍ର ଆପଣଙ୍କୁ ସାମାନ୍ୟ ପଦ୍ମ ପୁଷ୍ପଟିଏ ସମର୍ପଣ କରି ପ୍ରସନ୍ନ କରିଥିବାର ନଜିର ଅଛି । ସୁତରାଂ ମୁଁ ମଧ ଏବେ ଅଣ୍ଟା ଭିଡ଼ିଛି । ଆପଣଙ୍କ କୃପା କେବଳ ମୋର ସମ୍ବଳ । ପୁରୁଷାର୍ଥ ନୁହେଁ ।

ପ୍ରଶ୍ନ-୫. ଭକ୍ତି ଶୂନ୍ୟ ବେଦଜ୍ଞ ବ୍ରାହ୍ମଣ ଓ ବେଦଜ୍ଞାନ ଶୂନ୍ୟ ମୂର୍ଖ ଚାଣ୍ଡାଳ ଭକ୍ତ ମଧ୍ୟରେ କିଏ ଭଗବାନ୍‌ଙ୍କୁ ସହଜରେ ପ୍ରସନ୍ନ କରିପାରେ ?

**ବିପ୍ରାତ୍ ଦ୍ୱିଷଟ୍‌ଗୁଣ ଯୁତାତ୍ ଅରବିନ୍ଦନାଭ**
**ପାଦ-ଅରବିନ୍ଦ ବିମୁଖାତ୍ ଶ୍ୱପଚଂ ବରିଷ୍ଠମ୍ ।**
**ମନ୍ୟେ ତଦ୍‌ଅର୍ପିତ ମନୋ ବଚନ -ଇହିତ-ଅର୍ଥ**
**ପ୍ରାଣଂ ପୁନାତି ସ କୁଳଂ ନ ତୁ ଭୂରିମାନଃ ||୧୦||**

ଉ.ବେଦଜ୍ଞ ବ୍ରାହ୍ମଣଙ୍କର ଶମଦମ, ଜ୍ଞାନ, ସତ୍ୟ, ଯଜ୍ଞ, ଦାନ,ଧୃତି, ଶ୍ରୁତି, ଅମତ୍ସରତା, ହ୍ରୀ, ତିତିକ୍ଷା ଓ ଅନସୂୟା ଏହି ବାର (ଦ୍ୱିଷଟ୍ ଗୁଣ) କିମ୍ବା ଉପର ଶ୍ଳୋକ ବର୍ଣ୍ଣିତ ୧୨ ଗୁଣ ଲକ୍ଷଣ ଦେଖାଯାଏ । ଏ ସବୁଥାଇ ମଧ ହରିଭକ୍ତି ବିମୁଖ ହେଲେ ସାଧକ ଆତ୍ମୋଦ୍ଧାର କରିପାରେ ନାହିଁ । ଅନ୍ୟ ପକ୍ଷରେ ଏ ସବୁ କିଛି ନଥାଇ ଜଣେ କୁକୁର ମାଂସ ଭୋଜୀ ଚାଣ୍ଡାଳ ଶୁଦ୍ଧ ମନ-ବୁଦ୍ଧିରେ ଅହଂକାର ଶୂନ୍ୟ ହରିଭଜନ ଦ୍ୱାରା ଆତ୍ମୋଦ୍ଧାର ସହିତ ନିଜ କୁଳର ଏକୋଇଶ ପୁରୁଷ ଉଦ୍ଧାର କରିପାରେ । ଭକ୍ତ କେବଳ ପ୍ରସନ୍ନ କରିଥାଏ ଶ୍ରୀହରି ବିଷ୍ଣୁଙ୍କୁ ଅନାୟାସ ଓ ଅକ୍ଳେଶରେ ।

ପ୍ରହ୍ଲାଦଜୀ ପୁଣି ସ୍ତୁତି କରି କହିଲେ, 'ହେ' ପ୍ରଭୋ ! ଆପଣ ଆତ୍ମାରାମ ଓ ଆପ୍ତକାମ ମଧ । କାହାଠାରୁ କିଛି ପାଇବାର ଆଶାନଥାଏ ଆପଣଙ୍କର । କେବଳ ଭକ୍ତକୁ କୃପା କରିବାକୁ ବାହାନା ଖୋଜୁଥାନ୍ତି । ସେଥିପାଇଁ ଭକ୍ତର ସ୍ତବ, ସ୍ତୁତି, ପ୍ରାର୍ଥନା, ପୂଜନ, ଅର୍ପଣ ସ୍ୱୀକାର କରନ୍ତି ସିନା । ଜୀବ ଆପଣଙ୍କୁ କିଛି ଅର୍ପଣ କରେ ନିଜର କାମନା ପୂର୍ତ୍ତି ଲାଗି, ଆପଣଙ୍କ ଅଭାବ ପୂରଣ ଲାଗି ନୁହେଁ । ଆପଣଙ୍କର ଏ ଅବତାର ଭୀମ (ଭୟଙ୍କର) ହେଲେ ମଧ କାନ୍ତ (ସୁନ୍ଦର) ଭବିଷ୍ୟତରେ ଭୟରୁ ଉଦ୍ଧାର ପାଇବାକୁ ଭକ୍ତମାନେ ଆପଣଙ୍କ ଏହି ଦିବ୍ୟରୂପକୁ ଧ୍ୟାନ କରିବେ । ସୃଷ୍ଟିକୁ ଭୟ ଦେଖାଉଥିବା ଦୈତ୍ୟରାଜ ଏବେ ଆଉ ନାହାନ୍ତି । ଆପଣ ଏଣିକି କ୍ରୋଧ ତ୍ୟାଗ କରିଦିଅନ୍ତୁ । ମୋ ପିତାଜୀଙ୍କ ମୃତ୍ୟୁରେ ସାରା ସୃଷ୍ଟି ସହିତ ସୃଷ୍ଟିକର୍ତ୍ତା ମଧ ଆନନ୍ଦିତ ।

ମୁଁ ଆପଣଙ୍କର ଏ ଭୟଙ୍କର ରୂପକୁ ଆଦୌ ଭୟ କରୁନାହିଁ । ଆପଣଙ୍କ ଏ ମୁନିଆଁ ଦାନ୍ତ ଓ ନଖକୁ ମଧ ନୁହେଁ । ପଶୁରାଜ ସିଂହକୁ ବାଘ -ଭାଲୁ-ହସ୍ତୀ ସିନା

ଡ଼ରନ୍ତି । ସିଂହ ଛୁଆ କ'ଣ ଡ଼ରେ କି ? ନଦୀର ପ୍ରବଳ ବନ୍ୟାସ୍ରୋତରେ ହାତୀ, ସିଂହ, ଭାସି ଯାଆନ୍ତି । ମୀନ ମାଛ ଟିଏ ସ୍ରୋତର ବିପରୀତ ଦିଗରେ ମହା ଆନନ୍ଦରେ ପହଁରିପାରେ । ସେ ନଦୀଜଳର ଶରଣାଗତ ବୋଲି ସିନା । ମୋର ଜନ୍ମ ଅସୁର କୁଳରେ । ମୁଁ ସଂସାର ମାୟାକୁ ଡ଼ରୁଛି । ମୋର ଶରଣାଗତି ଆପଣ କେବେ ସ୍ୱୀକାର କରିବେ ଭଗବନ୍ ?

ଆପଣଙ୍କ ଶରଣାଗତି ବିନା ସଂସାରରେ ପିତା ପୁତ୍ରକୁ, ସ୍ୱାମୀ ପତ୍ନୀକୁ, ବୈଦ୍ୟ ରୋଗୀକୁ ନାବିକ ନାବକୁ ରକ୍ଷା କରିପାରୁ ନାହିଁ । ମାୟାଙ୍କ ତିନି ଗୁଣ ପ୍ରଭାବରେ ପ୍ରକୃତିର ସକଳ କ୍ରିୟା ସାଧିତ ହେଉଛି । ମାୟାକୁ ନଚାଇବାରେ ଆପଣଙ୍କ ଅଦୃଶ୍ୟ ହସ୍ତ ବିଦ୍ୟମାନ । ଶରଣାଗତି ଅଭାବରେ ତ୍ରିଭୁବନ ବିଜୟୀ ଅଭକ୍ତ ଦୈତ୍ୟରାଜ ମହାମହିମ ହିରଣ୍ୟ କଶିପୁଙ୍କ ଦୟନୀୟ ଅବସ୍ଥା ମୁଁ ମୋ ସମ୍ମୁଖରେ ଦେଖୁଛି । ବ୍ରହ୍ମଦେବଙ୍କ ଠାରୁ ପିମ୍ପୁଡ଼ି ପର୍ଯ୍ୟନ୍ତ ସମସ୍ତଙ୍କ ଆୟୁଷ ବଳ, ଧନ, ବୁଦ୍ଧି, ଶକ୍ତି, ସବୁ ଆପଣଙ୍କର ଆଶୀର୍ବାଦ ମାତ୍ର ।

ବେଦବର୍ଣ୍ଣିତ ସକାମ କର୍ମ ଫଳ ମଧ୍ୟ ଜୀବର କାମନା ଅନଳକୁ ଶାନ୍ତ କରିବାରେ ଅସମର୍ଥ । ଏ ଦେହ ଏକ ବ୍ୟାଧି ମନ୍ଦିର । ସଂସାର ସୁଖ କାମନା କେବଳ ମଧୁ ବୁନ୍ଦା ସଦୃଶ । ଆପଣ କୃପାମୟ । କେବଳ ଆପଣଙ୍କ ଶରଣାଗତ ହେଲେ କୃପା ମିଳେ ଜୀବକୁ । ଆପଣ ବାଞ୍ଛାକଳ୍ପତରୁ । କଳ୍ପବୃକ୍ଷର ପର-ଆପଣା ନ ଥାଏ । ଯେ ମାଗେ ସେ ପାଏ । ସେ କିନ୍ତୁ ଯାଚି କାହାକୁ କିଛି ଦିଏନା । ଆପଣଙ୍କ ବିଚିତ୍ର ସୃଷ୍ଟିକୁ ଦୂରରୁ କୋଟି କୋଟି ଦଣ୍ଡବତ ।'

ପ୍ରଶ୍ନ-୬. ପ୍ରହ୍ଲାଦଜୀ ସ୍ୱଭାବରେ ବିଷ୍ଣୁଭକ୍ତ ଥାଇ ମଧ୍ୟ ସଂସାରକୁ କାହିଁକି ଏତେ ଭୟ କରୁଥିଲେ ?

**ଏବଂ ଜନଂ ନିପତିତଂ ପ୍ରଭବ-ଅହିକୂପେ**
**କାମ-ଅଭିକାମଂ ଅନୁ ଯଃ ପ୍ରପତନ୍ ପ୍ରସଙ୍ଗାତ୍ ।**
**କୃତ୍ୱା-ଆତ୍ମସାତ୍ ସୁରର୍ଷିଣା ଭଗବନ୍ ଗୃହୀତଃ**
**ସୋଽହଂ କଥଂ ନୁ ବିସୃଜେ ତବ ଭୃତ୍ୟ ସେବାମ୍ ॥୨୮॥**

ଉ.ପ୍ରହ୍ଲାଦଜୀ କହିଲେ,'ହେ, ଶରଣବତ୍ସଳ ପ୍ରଭୋ ! ଏ ଭୌତିକ ସଂସାର ଏକ ଅନ୍ଧାର କୂପ ସଦୃଶ । ଏହା ଭିତରେ ଅସଂଖ୍ୟ ଭୋଗ କାମନା ରୂପକ ସର୍ପ ଜଗି ରହିଛନ୍ତି ଦଂଶନ କରିବାକୁ । ମୁଁ ମଧ୍ୟ ମାତୃଗର୍ଭରେ ପଡ଼ି ତ୍ରାହି ମାଂ ମଧୁସୂଦନ ଡ଼ାକ

ଛାଡୁଥିଲି । ଆପଣଙ୍କ କୃପାରୁ ଆପଣଙ୍କ ଭକ୍ତ ନାରଦଜୀଙ୍କ ଉପଦେଶରେ ବିଷ୍ଣୁ ବୈଷ୍ଣବ ସେବାକୁ ସମ୍ବଳ କରି ଆଜି ଯାଏଁ ବଂଚି ରହି ପାରିଛି । ଆପଣ ମୋ ସେବା, ଶରଣାଗତି ସ୍ୱୀକାର କଲେ ସିନା ଏ ଅନ୍ଧକୂପରୁ ଉଦ୍ଧାର ପାଇବି !'

ବାସ୍ତବରେ ପ୍ରହ୍ଲାଦଜୀ ଚାହୁଁ ଥିଲେ ଭଗବାନଙ୍କଠାରୁ ଶରଣାଗତି ସ୍ୱୀକାର ପ୍ରମାଣ ପତ୍ର ଯାହା ବିହୁନେ ଜୀବ ସଂସାରକୁ ଡ଼ରିବାକୁ ବାଧ୍ୟ । ହେଉ ପଛେ ସେ ବ୍ରହ୍ମା-ଶଙ୍କର-ଇନ୍ଦ୍ର-ଚନ୍ଦ୍ର ବା ଆଉ କିଛି ।

ପ୍ରହ୍ଲାଦଜୀ ପୁଣି କହିଲେ, 'ହେ, ଭଗବନ୍! ମୋର ଜୀବନ ରକ୍ଷା ଓ ମୋ ପିତାଙ୍କ ଦେହ ନାଶ ଉଭୟରେ ଆପଣଙ୍କ କୃପା ନିହିତ ଅଛି । ଆପଣ ହୟଗ୍ରୀବ ଅବତାରରେ ମଧୁ-କୈଟଭ ରାକ୍ଷସଙ୍କୁ ଉଦ୍ଧାର କରିଥିଲେ । ତାଙ୍କଠାରୁ ବେଦ ଆଣି ବ୍ରହ୍ମାଜୀଙ୍କୁ ପ୍ରଦାନ କଲେ । ନିତି ନିତି ଆପଣଙ୍କର ନୂଆ ନୂଆ ଅବତାର ହୁଏ ।'

ପ୍ରଶ୍ନ-୭. ହୟଗ୍ରୀବ ଅବତାର ବେଳେ ମନୁଷ୍ୟ ଦେହରେ ଅଶ୍ୱ ମସ୍ତକ ଧାରଣ କରିବାକୁ ଭଗବାନଙ୍କୁ କଅଣ ଅଡୁଆ ହେଲାନି କି ?

**ଇତ୍ଥଂ ନୃ ତିର୍ଯ୍ୟକ୍ ଋଷି ଦେବ ଝସ-ଅବତାରୈଃ**
**ଲୋକାନ୍ ବିଭାବୟସି ହଂସି ଜଗତ୍ ପ୍ରତୀପାନ୍ ।**
**ଧର୍ମଂ ମହାପୁରୁଷ ପାସି ଯୁଗ-ଅନୁବୃତ୍ତଂ**
**ଛନ୍ନଃ କଲୌ ଯତ୍ ଅଭବଃ ତ୍ରିଯୁଗୋଽଥ ସ ତ୍ୱମ୍ ॥୩୮॥**

ଉ.ସୃଷ୍ଟିରକ୍ଷା, ଧର୍ମରକ୍ଷଣ, ସନ୍ଥପାଳନ ଓ ଦୁଷ୍ଟ ଦଳନ(ହଂସି ଜଗତ୍ ପ୍ରତୀପାନ୍) ନିମିତ୍ତ ଭଗବାନ୍ ନାରାୟଣ ଏହି ଭଳି ରାମ-କୃଷ୍ଣ, ବରାହ-ହଂସ, ବ୍ୟାସ-ନାରଦ, କଚ୍ଛପ-ମତ୍ସ୍ୟ ଆଦି ଅନେକ ଅବତାର ନେଇ ଲୀଳା କରନ୍ତି । ତାଙ୍କର ଶରୀର ଯାହାହେଉ ନା କାହିଁକି ସ୍ୱରୂପ ଓ ସ୍ୱଭାବ ସର୍ବଦା ଦିବ୍ୟ ଓ କୃପାମୟ ।

ଚାରି ଯୁଗରେ ଭଗବାନଙ୍କର ଚାରି ଯୁଗାବତାର ହୁଏ ସେହି ସେହି ଯୁଗଧର୍ମର ପ୍ରଚାର ପ୍ରସାର ଓ ଦିଗ୍ ଦର୍ଶନ ଲାଗି । କଳିଯୁଗରେ ଗୁପ୍ତ ଭକ୍ତି ଧର୍ମ ପ୍ରଚାର ଲାଗି ସେ ଜଣେ ଆଦର୍ଶ ଭକ୍ତ (ଚୈତନ୍ୟ) ଭୂମିକା ଗ୍ରହଣ କରନ୍ତି । ଅବତାର ହୋଇ ମଧ ଛନ୍ନ ରହୁଥିବାରୁ ତାଙ୍କ ନାମ ତ୍ରିଯୁଗୀ ବୋଲି ରହିଛି ।

ପ୍ରଶ୍ନ-୮. ବଦ୍ଧଜୀବର ବିଷୟୀମନ କାମ,ହର୍ଷ,ଶୋକ ଭୟରେ ବୁଡ଼ି ରହି ଭଗବାନଙ୍କ ଲୀଳା ଚିନ୍ତନ ପ୍ରତି ସହଜରେ ଆକର୍ଷିତ ହୁଏ ନାହିଁ । ସୁଖ-ଦୁଃଖ ଦ୍ୱନ୍ଦ୍ୱରେ ପଡ଼ି ବିଚରା ଗୃହସ୍ଥର କି ଦୁରବସ୍ଥା ହୁଏ ?

**ଜିହ୍ୱା-ଏକତୋଽଚ୍ୟୁତ ବିକର୍ଷତି ମା-ଅବିତୃପ୍ତା**
**ଶିଶ୍ନୋଽନ୍ୟତଃ ତ୍ୱକ୍ ଉଦରଂ ଶ୍ରବଣଂ କୁତଃ ଚିତ୍ ।**
**ଘ୍ରାଣୋଽନ୍ୟତଃ ଚପଳ ଦୃକ୍ କ୍ୱ ଚ କର୍ମ ଶକ୍ତିଃ**
**ବହ୍ୱ୍ୟଃ ସପତ୍ନ୍ୟ ଇବ ଗେହପତିଂ ଲୁନନ୍ତି ॥୪୦॥**

ଉ.ଜଣେ ବହୁପତ୍ନୀକ ଗୃହମେଧୀ ଲୋକକୁ ରାତ୍ରୀ କାଳରେ ଭିନ୍ନ ଭିନ୍ନ ପତ୍ନୀମାନେ ଭିନ୍ନ ଭିନ୍ନ ଶୟନ କକ୍ଷକୁ ଟଣା ଓଟରା କଲେ ସେ ହଇରାଣ ହରକତରେ ପଡ଼େ । ସେହି ଭଳି ମନୁଷ୍ୟର ମନ ମଧ ଦଶ ଇନ୍ଦ୍ରିୟଙ୍କ ଦୌରାତ୍ମ୍ୟରେ ଅତିଷ୍ଠ ହୋଇପଡ଼େ ।

ସଂସାର ଆସକ୍ତି ବୈତରଣୀ ନଦୀ ପାରହେଲେ ସିନା ଜୀବ ଅଧ୍ୟାତ୍ମ ସାଧନା ଆରମ୍ଭ କରିପାରନ୍ତା ! ଆପଣଙ୍କ କୃପା ବିନା ଏ ଦୁଇକଥା ଅସମ୍ଭବ ପ୍ରଭୋ । ଏତେ ବଡ଼ ସୃଷ୍ଟିର, ସୃଜନ, ପାଳନ ଓ ସଂହାର ଆପଣ କରିପାରନ୍ତି । ଆମ ଭଳି କେଇ ଜଣ ଅସୁର ବାଳକଙ୍କୁ ଉଦ୍ଧାର କରିବା ଆପଣଙ୍କ ପକ୍ଷେ ଅବା କେଉଁ ବଡ଼ କଥା ! ! ! ମୁଁ ନିଜର ସଂସାର ଦୁଃଖ ପାଇଁ ଆଦୌ ଉଦ୍‌ବିଗ୍ନ ନୁହେଁ କିନ୍ତୁ ଏଇ ଅନ୍ୟ ଅସୁର ଭାଇମାନେ ହରିଭଜନ ନ କରି ଭୌତିକ ଭୋଗ ସୁଖରେ ମାତିବା ମୋର ଶୋକର କାରଣ ।

ମୁନି,ଋଷି,ସାଧୁ ସନ୍ଥଗଣ ନିଜ ମୁକ୍ତି ପାଇଁ ସଂସାର ତ୍ୟାଗ କରି ଗିରି ଗୁମ୍ଫାରେ ଲୁଚି ନିଜ ମୁକ୍ତି ଲାଗି ତପସ୍ୟାରେ ବ୍ୟସ୍ତ । ଏ ଗୃହମେଧୀ ତମୋଗୁଣୀ, ରଜୋଗୁଣୀ ଦାନବଙ୍କ କଥା କିଏ ଭାବିବ ? କାହିଁକି ବା ଭାବିବ ?

ପ୍ରଶ୍ନ-୯ . ଯଦି ସଂସାରୀ କାମନା ବାସନା ଓ ବିଷୟ ଭୋଗ ଜୀବର ଦୁଃଖର କାରଣ ତେବେ ଅସୁର ମାନେ ସେ ସବୁରୁ ଦୂରରେ ନ ରହିବାର କାରଣ କ'ଣ ?

**ଯତ୍ ମୈଥୁନାଦି ଗୃହମେଧୀ ସୁଖଂ ହି ତୁଚ୍ଛଂ**
**କଣ୍ଡୂୟନେନ କରୟୋଃ ଇବ ଦୁଃଖ ଦୁଃଖମ୍ ।**
**ତୃପ୍ୟନ୍ତି ନ-ଇହ କୃପଣା ବହୁ ଦୁଃଖ ଭାଜଃ**
**କଣ୍ଡୂତି ବତ୍ ମନସିଜଂ ବିସହେତ ଧୀରଃ ॥୪୫॥**

ଉ.କାଛୁ,କୁଣ୍ଡିଆ, ଯାଦୁ ହେଲେ ବା ଦେହ କୁଣ୍ଡେଇହେଲେ ପ୍ରଥମେ ଭାରି ସୁଖ ଲାଗିଲା ଭଳି ଲାଗେ । ପରେ ପରେ ରକ୍ତ ବାହାରି ଅସହ୍ୟ ଜ୍ୱାଳା ହୁଏ । ମନୁଷ୍ୟ ଭାବେ ନ କୁଣ୍ଡେଇଥିଲେ ବରଂ ଭଲ ହୋଇଥାନ୍ତା । ତଥାପି କିଛି ସମୟ ପରେ ପୁଣି ବାରମ୍ବାର ଯାଦୁ କୁଣ୍ଡେଇ ପଶ୍ଚାତ୍ ତାପ କରିବା ସାରହୁଏ ।

ଗୃହମେଧୀ ଲୋକ ବୁଝିପାରେନା ବିଷୟ ଭୋଗ ସୁଖ ଲାଳସା ପଛରେ କେଉଁ ବିଷମୟ ଜ୍ୱାଳା ଛପି ରହିଛି । ସ୍ଥିତପ୍ରଜ୍ଞ ଲୋକଙ୍କୁ କେବଳ ଏ କଥା ବୁଝାପଡ଼େ । ସୁତରାଂ କର୍ମଯୋଗୀ, ଜ୍ଞାନ ଯୋଗୀ ଭକ୍ତି ଯୋଗୀ ଧୀରଃ ଏ ବିପଦ ପ୍ରତି ସାବଧାନ ହୋଇ ସାଧନା କରିଥାନ୍ତି ।

ହେ’ ଭଗବାନ! ଆପଣ ସ୍ଥୁଳ, ସୂକ୍ଷ୍ମ, କାରଣ ଆକାରରେ ସୃଷ୍ଟି ରୂପରେ ବ୍ରହ୍ମ ଓ ସୃଷ୍ଟି ସଂଚାଳକ ରୂପରେ ପରମାତ୍ମା । କାଠ ମଧ୍ୟରେ ଅଗ୍ନି ଲୁଚିରହିଥାଏ । ଆପଣ ଯଦି ଉଭୟଙ୍କ ପାଖରେ ନ ଥାନ୍ତେ ସେ ଦୁହେଁ ଏକତ୍ର ରହନ୍ତେ କିପରି ? ସୁତରାଂ ଆପଣ ସର୍ବବ୍ୟାପକ ଏକଥା ଆପଣଙ୍କର ଏସ୍ତମ୍ଭରୁ ପ୍ରକଟ ହେବାଦ୍ୱାରା ପ୍ରମାଣ କରିଛନ୍ତି ।

ପ୍ରଶ୍ନ-୧୦.ଦୀର୍ଘ ତେଆଳିଶି ଶ୍ଳୋକ(୮-୫୦)ରେ ପ୍ରହ୍ଲାଦଜୀଙ୍କ ସ୍ତୁତି ଶ୍ରବଣ କରି କଅଣ ମହାକ୍ରୋଧ ଶାନ୍ତ ହୋଇପାରିଲା ?

ନାରଦ ଉବାଚ

**ଏତାବତ୍ ବର୍ଣ୍ଣିତ ଗୁଣୋ ଭକ୍ତ୍ୟା ଭକ୍ତେନ ନିର୍ଗୁଣଃ ।**
**ପ୍ରହ୍ଲାଦଂ ପ୍ରଣତଂ ପ୍ରୀତୋ ଯତ ମନ୍ୟୁଃ ଅଭାଷତ ॥୫୧॥**

ଉ.ଭଗବାନଙ୍କ ଦିବ୍ୟ (ନିର୍ଗୁଣ) ବିଗ୍ରହ ଦୟା, କରୁଣା, ପ୍ରେମ ଗୁଣରେ ରୂପାନ୍ତରିତ ହୋଇଗଲେ ଭକ୍ତରାଜ ପ୍ରହ୍ଲାଦଜୀଙ୍କ ସ୍ତୁତିଗାନରେ । ସେ ସଂପୂର୍ଣ୍ଣ କ୍ରୋଧଶୂନ୍ୟ (ଯତ-ମନ୍ୟୁଃ) ହୋଇଗଲେ । ଏଇତ ଭକ୍ତିର କମାଲ୍ ।

ପ୍ରଶ୍ନ-୧୧. ନୃସିଂହ ଭଗବାନ ନିଜ ଭକ୍ତ ଉପରେ ପ୍ରସନ୍ନ ହୋଇ କଅଣ କହିଲେ ?

**ପ୍ରହ୍ଲାଦ ଭଦ୍ର ଭଦଂ ତେ ପ୍ରୀତୋଽହଂ ତେଽସୁର-ଉତ୍ତମ ।**
**ବରଂ ବୃଣିଷ୍ୱ-ଅଭିମତଂ କାମ ପୁରୋଽସ୍ମି-ଅହଂ ନୃଣାମ୍ ॥୫୨॥**

ଉ. କହିଲେ, ‘ହେ’ ସୌମ୍ୟ ଅସୁର ଶ୍ରେଷ୍ଠ ପ୍ରହ୍ଲାଦ (ଭଦ୍ର)! ତୁମର କଲ୍ୟାଣ ହେଉ । ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ । ତୁମେ ବାଞ୍ଛିତ ବର ମାଗ । ମୁଁ ସକଳ ଜୀବଙ୍କ ବାଞ୍ଛା ପୂରଣ କରିବାରେ ସମର୍ଥ ।’ ଏଣେ ଭକ୍ତ ଶିରୋମଣି ପ୍ରହ୍ଲାଦ ଭଗବାନଙ୍କ ପ୍ରଲୋଭନରେ ପଡ଼ି ନ ଥିଲେ ତାଙ୍କ ପବିତ୍ର ଭକ୍ତିର ପ୍ରଭାବ ହେତୁ ।

# ଅଥ ୧୦ମ ଅଧ୍ୟାୟଃ

## (ପ୍ରହ୍ଲାଦଜୀଙ୍କ ରାଜ୍ୟାଭିଷେକ ଓ ତ୍ରିପୁର ଦହନ କଥା)

### ନାରଦ ଉବାଚ

ପ୍ରଶ୍ନ-୧୨. ଭଗବାନ୍ ନିଜ ପକ୍ଷରୁ ବର ଯାଚୁଥିଲେ । ପ୍ରହ୍ଲାଦ କଅଣ ଚିନ୍ତା କରି ଏ ସୁଯୋଗ ହାତଛଡ଼ା କରିବାକୁ ପସନ୍ଦ କଲେ ?

**ଭକ୍ତିଯୋଗସ୍ୟ ତତ୍ ସର୍ବଂ ଅନ୍ତରାୟତୟା-ଅର୍ଭକଃ ।**
**ମନ୍ୟମାନୋ ହୃଷୀକେଶଂ ସ୍ମୟମାନ ଉବାଚ ହ ॥୧॥**

ଉ. କ'ଣ ମାଗିଥାନ୍ତେ ସେ ଭଗବାନଙ୍କୁ ? ଧନ, ସଂପତ୍ତି, ପଦ, ପଦବୀ, ଭୋଗ, ସୁଖ ସାମଗ୍ରୀ ! ପ୍ରହ୍ଲାଦଜୀ ବାଳକ ହେଲେ କ'ଣ ହେଲା ? ସେ ଠିକ୍ ବୁଝିଥିଲେ ଏ ସବୁ ଭୋଗ ଆକାଙ୍‌କ୍ଷା ଭକ୍ତି ମାର୍ଗର ସାଧକ ନୁହନ୍ତି ବାଧକ (ଅନ୍ତରାୟତୟା) । ଭଗବାନଙ୍କ ବର ଯାଚିବା ପ୍ରସଙ୍ଗ ଚିନ୍ତନ କରି ସେ ସ୍ମିତ ହସି ଉତ୍ତର ଦେବାକୁ ଉପକ୍ରମ କଲେ ।

### ପ୍ରହ୍ଲାଦ ଉବାଚ

ପ୍ରଶ୍ନ-୧୩. ହରି ଭକ୍ତିରେ ବୁଡ୍ଡୁ ବୁଡ୍ଡୁ ହୋଇ ପ୍ରହ୍ଲାଦଜୀ ଭଗବାନଙ୍କୁ ବରର ପ୍ରଲୋଭନରୁ କାହିଁକି ମୁକ୍ତ ରଖିବାକୁ ନିବେଦନ କଲେ ?

**ମା ମାଂ ପ୍ରଲୋଭୟ ଉତ୍ପତ୍ୟା ଽଽସକ୍ତଂ କାମେଷୁ ତୈଃ ବରୈଃ ।**
**ତତ୍ସଙ୍ଗ ଭୀତୋ ନିର୍ବିର୍ଣ୍ଣୋ ମୁମୁକ୍ଷୁଃ ତ୍ୱାଂ ଉପାଶ୍ରିତଃ ॥୨॥**

ଉ.ପ୍ରହ୍ଲାଦଜୀ କହିଲେ, 'ହେ' ପ୍ରାଣାଧାର ! ମୋତେ ବିଷୟ ଭୋଗ ଲାଳସା ବର ପ୍ରଲୋଭନ ଦୟାକରି ଦେଖାନ୍ତୁ ନାହିଁ । ମୁଁ ଅସୁର ରାଜ କୁଳରେ ଜାତ । ସୁଖ ଭୋଗ ଉପାୟ ମୋ ଆଙ୍ଗୁଠି ଅଗରେ । ମୋ ପିତା ସେ ଦିଗରେ ମୋତେ ପଥ ପ୍ରଦର୍ଶନ କରି ସାରିଛନ୍ତି । ତାଙ୍କ ଅବସ୍ଥା ମୁଁ ଏବେ ଚଟାଣ ଉପରେ ଦେଖୁଛି । ମୁଁ ଜଣେ ମୁମୁକ୍ଷୁ ସାଧକ । ମୋ ପାଇଁ ବୈରାଗ୍ୟ ଔଷଧ ବ୍ୟବସ୍ଥା କରନ୍ତୁ । ମୁଁ ଆପଣଙ୍କର ଜଣେ ସେବକ । ଏବେ ଜଣେ ଶୁଦ୍ଧ ଭକ୍ତ ରୂପେ ଅଭିନୟ କରିବାକୁ ହେବ ।'

ପ୍ରଶ୍ନ-୧୪. ଜଣେ ଭକ୍ତ ଭଗବାନଙ୍କଠାରୁ ଭୌତିକ ଦ୍ରବ୍ୟ ଗ୍ରହଣ କରି ଭକ୍ତି କରିପାରିଲେ କି ଅଡୁଆ ପରିସ୍ଥିତ ହେବ ?

**ନ-ଅନ୍ୟଥା ତେଽଖିଳଗୁରୋ ଘଟେତ କରୁଣା-ଆତ୍ମନଃ ।**
**ଯଃ ତେ ଆଶିଷ ଆଶାସ୍ତେ ନ ସ ଭୃତ୍ୟଃ ସ ବୈ ବଣିକ୍ ॥୪॥**

ଉ.ସେ କହିଲେ, 'ହେ' ପରମାରାଧ ! ଆପଣଙ୍କ କୃପା କଣିକା ମୋର ସମ୍ବଳ । ମୁଁ ଭୌତିକ ଦ୍ରବ୍ୟ ମାଗିବି କିପରି ? ଭକ୍ତି ଦେଇ ଯେ ଭୌତିକ ସୁଖ ମାଗେ ସେ ତ ବ୍ୟାପାରୀ (ବଣିକ୍) ନିଶ୍ଚୟ । ସେ ସେବକ ପଦବାଚ୍ୟ ନୁହେଁ ଠିକ୍ ଯେଉଁ ସ୍ୱାମୀ ଭକ୍ତି ଦାବୀ କରି ଭୌତିକ ସୁଖ ଦେବା ପ୍ରଲୋଭନ ଯାଚନ୍ତି ସେ କୃପାମୟ ପ୍ରଭୁ ନୁହନ୍ତି । ହୁଏତ ସେମାନେ କୌଣସି ଅତ୍ୟନ୍ତ ପ୍ରଭାବିଶାଳୀ ଦେବୀ ଦେବତା ହୋଇଥାଇ ପାରନ୍ତି । ମୁଁ ମୋର ଗୁରୁଦେବ ଭକ୍ତିମାର୍ଗର ଆଚାର୍ଯ୍ୟ ନାରଦଜୀଙ୍କ ଠାରୁ ଏତିକି ବୁଝିଛି ଯେ-ଆପଣ ମୋର ନିତ୍ୟ ସ୍ୱାମୀ, ମୁଁ ଆପଣଙ୍କର ନିତ୍ୟ ଦାସ । ଆମେ ରାଜା କିମ୍ବା ଦରମା ଭୋଗୀ ରାଜକର୍ମଚାରୀ ନୋହୁ ।'

ପ୍ରଶ୍ନ-୧୫. ଭକ୍ତ ଶ୍ରେଷ୍ଠ ପ୍ରହ୍ଲାଦଜୀ ଲକ୍ଷ୍ୟ କଲେ ଭଗବାନ ବର ଯାଚି ସ୍ୱୟଂ ଅଡୁଆରେ ଛନ୍ଦି ହୋଇଗଲେଣି । ଦେବତାମାନେ ତାଙ୍କୁ କାଳେ ଅପଦସ୍ତ ହେବା ମନେ କରିବେ ସେଥିପାଇଁ ସେ କିପରି ଭଗବାନଙ୍କ କଥା ରଖିଲେ ?

**ଯଦି ଦାସ୍ୟସି ମେ କାମାନ୍ ବରାନ୍ ତ୍ୱଂ ବରଦ-ଋଷଭ ।**
**କାମାନାଂ ହୃଦି-ଅସଂରୋହଂ ଭବତଃ ତୁ ବୃଣେ ବରମ୍ ॥୭॥**

ଉ.କହିଲେ, 'ହେ' ଶ୍ରେଷ୍ଠ (ଋଷଭ) ବରଦାତା ! ଯଦି ଆପଣ ବରଦେବାକୁ କୃତ ସଂକଳ୍ପ । ତେବେ ମୋତେ ଏହି ବରଦିଅନ୍ତୁ -ମୋ ହୃଦୟରୁ ଭୌତିକ ଭୋଗ କାମନା, ବର ମାଗିବାର ଇଚ୍ଛା ସମାପ୍ତ (ଅସଂରୋହଂ ) ହୋଇ ଯାଉ । କଦାପି ବର୍ଦ୍ଧିତ ନହେଉ ।'

ଜୀବର ଭୌତିକ ଭୋଗ ଲାଳସା ରହିଲେ ଜନ୍ମ ହେଉ ହେଉ ତାର ଇନ୍ଦ୍ରିୟଶକ୍ତି, ମନ, ପ୍ରାଣ, ଦେହ, ଧର୍ମ, ଧୈର୍ଯ୍ୟ,ବୁଦ୍ଧି, ହ୍ରୀ (ଲଜ୍ଜା), ଶ୍ରୀ (ଶୋଭା) ତେଜ, ସ୍ମୃତି,ସତ୍ୟ ଆଦି ମଳିନ ପଡ଼ିଯାଆନ୍ତି । ଅନ୍ୟ ପକ୍ଷରେ ଏଇ ସବୁ ଭୌତିକ କାମନା ଶୂନ୍ୟ ହେଲେ ଭଗବାନଙ୍କ ଭଳି ଅନେକ ଐଶ୍ୱର୍ଯ୍ୟ ଶକ୍ତି ପ୍ରାପ୍ତିର ପାତ୍ର ହୁଏ ସାଧକ ।

ପ୍ରଶ୍ନ-୧୬.ପ୍ରହ୍ଲାଦଜୀଙ୍କ ନିବେଦନ ଶୁଣିବା ପରେ କ'ଣ ନୃସିଂହଦେବ ବର ପ୍ରଦାନ କରିବାରେ ଆଗ୍ରହୀ ହେଲେ ?

ଶ୍ରୀ ଭଗବାନ ଉବାଚ

**ନ-ଏକାନ୍ତିନୋ ମେ ମୟି ଜାତ୍ୱ-ଇହ-ଆଶିଷ**
**ଆଶାସତେଽମୁତ୍ର ଚ ଯେ ଭବତ୍ ବିଧାଃ ।**
**ତଥାପି ମନ୍ୱନ୍ତରଂ ଏତତ୍ ଅତ୍ର**
**ଦୈତ୍ୟ-ଇଶ୍ୱରାଣାଂ ଅନୁଭୁଙ୍କ୍ଷ ଭୋଗାନ୍ ॥୧୧॥**

ଉ.ଅତ୍ୟନ୍ତ ଗମ୍ଭୀରକଣ୍ଠରେ ଭଗବାନ ବର ସହିତ ଆଦେଶ ପ୍ରଦାନ କଲେ, 'ହେ' ପ୍ରହ୍ଲାଦ ! ତୁମ ଭଳି ଭକ୍ତ ଏ ଜୀବନ (ଇହ) ବା ପରବର୍ତ୍ତୀ ଜୀବନମାନଙ୍କରେ (ଅମୁତ୍ର) କେବେ ବି ଐଶ୍ୱର୍ଯ୍ୟ ଭୋଗ ଲାଳସା ରଖିବ ନାହିଁ । ଅତଏବ ତୁମେ ଏଣିକି ମୋ ବେଦବାଣୀ ଅନୁସାରେ ତ୍ୟାଗପୂର୍ବକ ଭୋଗ କରି ଏକ ମନ୍ୱନ୍ତର ପର୍ଯ୍ୟନ୍ତ ଅସୁରମାନଙ୍କ ସମ୍ରାଟ ପଦରେ ଅଧିଷ୍ଠିତ ହୋଇ ରହ ।

ହଁ, ତୁମେ ଅନ୍ୟମାନଙ୍କ ସହିତ ନିତ୍ୟ ହରିକଥା ଶ୍ରବଣ କୀର୍ତ୍ତନ କର । ମନକୁ ମୋ ରୂପ ଧ୍ୟାନରେ ସଂଲଗ୍ନ କର । ସକଳ ଜୀବ ଅନ୍ତଃକରଣରେ ମୋତେ ହିଁ ଦର୍ଶନ କର । ଭକ୍ତି ଯୁକ୍ତ ଆଦର୍ଶ ଯଜ୍ଞ କର ଏବଂ କରାଅ । ମୋ ପ୍ରସନ୍ନତା ନିମିତ୍ତ ଭକ୍ତି ଯୁକ୍ତ କର୍ମ କରି କର୍ମଫଳ ଜନିତ ପୁଣ୍ୟ -ପାପ ଉଭୟରୁ ତୁମେ ମୁକ୍ତ ରହିପାରିବ । ତୁମେ ଅସୁର କୁଳରେ କୀର୍ତ୍ତି ସ୍ଥାପନ କର । ତୁମର ଅମ୍ଳାନ କୀର୍ତ୍ତୀ ଦେବତାମାନଙ୍କର ମଧ୍ୟ ଆଦର୍ଶ ସ୍ଥାନୀୟ, ଅନୁକରଣୀୟ, ଓ ପ୍ରସଂଶନୀୟ ହେବ ।'

ପ୍ରଶ୍ନ- ୧୭. ପ୍ରହ୍ଲାଦଜୀଙ୍କ ହେତୁ ତାଙ୍କ କୁଳ ପବିତ୍ର ହେବା କଥା ଭଗବାନ ଆଶୀର୍ବାଦ ରୂପେ ଆଶ୍ୱାସନା ଦେଲେ, କିନ୍ତୁ ପିତା ଯେ ମରି ପଡ଼ିଛନ୍ତି ଭଗବାନଙ୍କ ସମ୍ମୁଖରେ । ଏକଥା ସ୍ମରଣ କରାଇ ପ୍ରହ୍ଲାଦଜୀ ତାଙ୍କ ପିତାଙ୍କ ଉଦ୍ଧାର କରିବାକୁ ନିବେଦନ କରନ୍ତେ ଶ୍ରୀହରି ବିଷ୍ଣୁ କି ଉତ୍ତର ଦେଲେ ?

ଶ୍ରୀ ଭଗବାନ ଉବାଚ

**ତ୍ରିଃ ସପ୍ତଭିଃ ପିତା ପୂତଃ ପିତୃଭିଃ ସହ ତେଽନଘ ।**
**ଯତ୍ ସାଧୋଽସ୍ୟ କୁଳେ ଜାତୋ ଭବାନ୍ ବୈ କୁଳ ପାବନଃ ॥୧୮॥**

ଉ.କହିଲେ, 'ହେ' ଭକ୍ତରାଜ ପ୍ରହ୍ଲାଦ ! ଖାଲି ତୁମ ପିତାଙ୍କ ଉଦ୍ଧାର କଥା କ'ଣ କହୁଚ ? ତୁମ ପିତୃକୁଳର ସପ୍ତ ପୁରୁଷ, ମାତୃକୁଳର ସପ୍ତପୁରୁଷ ସହିତ ତୁମ ପତ୍ନୀଙ୍କର ସପ୍ତ ପୁରୁଷ ଏହିପରି ଏକୋଇଶ ପୁରୁଷ ଜନ୍ମ-ମରଣ ଚକ୍ରରୁ ଉଦ୍ଧାର ହେବେ ।

ତୁମ ସ୍ପର୍ଶ ସଂସର୍ଗରେ ଅପବିତ୍ର ଭୂମି ମଧ୍ୟ ପବିତ୍ର ହେବ । ସମସ୍ତ ଅସୁରକୁଳ

ତୁମ ଯୋଗୁ ଭୋଗ ଉନ୍ମୁଖ ନ ହୋଇ ବୈଷ୍ଣବ ହୋଇଯିବେ । ତୁମେ ଏବେ ତୁମ ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା କର । ଆଉ ଦୁଇ ଜନ୍ମ ପରେ ତୁମ ପିତା ମୁକ୍ତ ହୋଇ ମୋ ବୈକୁଣ୍ଠ ପୁରକୁ ଫେରି ଆସିବେ । ନିଜ ପଦବୀରେ ଅଧିଷ୍ଠିତ ହେବେ । ତୁମେ ପିତାଙ୍କ ସିଂହାସନରେ ଅଭିଷିକ୍ତ ହେବାର ବନ୍ଦୋବସ୍ତ କର ।'

ଭଗବାନଙ୍କ ବିଦାୟ ବେଳା ଉପସ୍ଥିତ ହେଲା । ବ୍ରହ୍ମାଜୀ ଅନ୍ୟାନ୍ୟ ଦେବଗଣ ସହିତ ସ୍ତୁତି କରିବାରେ ଲାଗିଲେ ।

ପ୍ରଶ୍ନ-୧୮. ଭଗବାନ ବିଦାୟ ନେବା ପୂର୍ବରୁ ବ୍ରହ୍ମାଜୀଙ୍କୁ କିଭଳି ଚେତାବନୀ, ଖବର ଦାର ବାଣୀ ଶୁଣାଇଲେ ?

ଶ୍ରୀ ଭଗବାନ ଉବାଚ

**ମା-ଏବଂ ବରୋଽସୁରାଣାଂତେ ପ୍ରଦେୟଃ ପଦ୍ମସମ୍ଭବ ।**
**ବରଃ କ୍ରୂର ନିସର୍ଗାଣାଂ ଅହୀନାଂ ଅମୃତଂ ଯଥା ।।୩୦।।**

ଉ.ଭଗବାନ କହିଲେ, 'ହେ' ବ୍ରହ୍ମଦେବ (ପଦ୍ମସମ୍ଭବ) ! ଏଣିକି ଅସୁରମାନଙ୍କୁ ବର ଦେଲା ବେଳକୁ ଟିକେ ଦେଖି ଚାହିଁ ବର ଦେବ । ସର୍ପକୁ ଦୁଧ ପିଆଇ ପୋଷିଲେ ସେଇ ଦୁଧରୁ ମଧ୍ୟ ସେ ବିଷ ତିଆରି କରୁଥିବ ।' ତତ୍ ପରେ ନୃସିଂହ ଭଗବାନ ଅପ୍ରକଟ ହୋଇଗଲେ । ବ୍ରହ୍ମା-ଶଙ୍କର ଆଦି ଦେବଗଣଙ୍କୁ ପ୍ରହ୍ଲାଦଜୀ ପୂଜନ, ସତ୍କାର ଇତ୍ୟାଦି କଲେ । ସ୍ୱୟଂ ବ୍ରହ୍ମାଜୀ ପ୍ରହ୍ଲଦଜୀଙ୍କୁ ସିଂହାସନରେ ଅଭିଷିକ୍ତ କଲେ । ଦେବତାମାନେ ମିଶି ଆଶୀବାର୍ଦ କଲେ ।

ନାରଦ ଉବାଚ

ପରବର୍ତ୍ତୀ ଜନ୍ମରେ ଜୟ-ବିଜୟ ପୁଣି ରାବଣ-କୁମ୍ଭକର୍ମ ରୂପରେ ଜନ୍ମ ହୋଇ ଶ୍ରୀରାମଙ୍କ ଦ୍ୱାରା ମଲେ । ତୃତୀୟ ଜନ୍ମରେ ଶିଶୁପାଳ-ଦନ୍ତାବକ୍ର ରୂପରେ ଜନ୍ମ ହୋଇ ଏବେ ଶ୍ରୀକୃଷ୍ଣଙ୍କ ଦିବ୍ୟ ଜ୍ୟୋତିରେ ଲୀନ ହୋଇ ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୋଇଛନ୍ତି । ଖାଲି ଏ ଦୁଇଜଣ କାହିଁକି ଏଭଳି ଅନେକ ଭକ୍ତ ଭଗବାନଙ୍କ ଲୀଳାରେ ଅଭିନୟ କରିବାକୁ ଆସନ୍ତି ।

କହିଲେ,'ହେ, ଯୁଦ୍ଧିଷ୍ଠିର ! ତୁମେ ପାଣ୍ଡବମାନେ ଅତ୍ୟନ୍ତ ସୌଭାଗ୍ୟଶାଳୀ ଅଟ । ନରାକାର ରୂପରେ ନାରାୟଣ ତୁମ ସହିତ ଲୀଳା କରୁଛନ୍ତି । ତୁମେ ତାଙ୍କୁ ସେବକ ସାରଥୀ ପଣରେ ଓ ଦୂତ ପଣରେ ନିଯୁକ୍ତ କରୁଛ । ସେ ମଧ୍ୟ ଦିବ୍ୟ ପ୍ରେମରେ

ଆବିଷ୍ଟ ହୋଇ ତୁମ ଆଦେଶସବୁ ମହା ଆନନ୍ଦରେ ପାଳନ କରିଚାଲିଛନ୍ତି । ଧନ୍ୟ ଆନନ୍ଦମୟ ଭଗବାନ । ଧନ୍ୟ ତାଙ୍କ ଭକ୍ତ । ଧନ୍ୟାତିଧନ୍ୟ ତାଙ୍କ ଅଚିନ୍ତ୍ୟ ଅଲୌକିକ ନର ଲୀଳ । ।'

ପ୍ରଶ୍ନ-୧୯. ଦେବର୍ଷି ନାରଦ କହିଲେ, 'ହେ, ଧର୍ମରାଜ ! ଦରକାର ପଡ଼ିଲେ ସେ ବ୍ରହ୍ମା-ଶଙ୍କର ଆଦିଙ୍କର ମଧ୍ୟ ସହାୟତା କରିଥାନ୍ତି ।' ସଙ୍ଗେ ସଙ୍ଗେ ମହାରାଜ ଯୁଧିଷ୍ଠିର ଦୃଷ୍ଟାନ୍ତ ମାଧ୍ୟମରେ କଥାଟିକୁ ଆହୁରି ପ୍ରାଞ୍ଜଳ କରିବା ପାଇଁ ଅନୁରୋଧ କଲେ । ସୁତରାଂ ନାରଦଜୀ କେଉଁ ଉଦାହରଣକୁ ରଖିଲେ ଜ୍ୟେଷ୍ଠ ପାଣ୍ଡବଙ୍କ ସମ୍ମୁଖରେ ?

ନାରଦ ଉବାଚ

**ନିର୍ଜିତା ଅସୁରା ଦେବୈଃ ଯୁଦ୍ଧି-ଅନେନ ଉପବୃଂହିତୈଃ ।**
**ମାୟିନାଂ ପରମ-ଆଚାର୍ଯ୍ୟଂ ମୟଂ ଶରଣଂ ଆଯଯୁଃ ॥୫୩॥**

ଉ.ଏକଦା ଦେବ-ଅସୁର ଯୁଦ୍ଧରେ ଅସୁର ମାନେ ଯୁଦ୍ଧରେ ହାରି ମାୟାଶକ୍ତି ବିଶେଷଜ୍ଞ ମୟ ଦାନବଙ୍କ ପାଖରେ ଶରଣ ପଶିଲେ । ମୟ ତାଙ୍କ ମାୟା ଶକ୍ତି ବଳରେ ଲୌହ, ରୌପ୍ୟ ଓ ସ୍ୱର୍ଣ୍ଣର ତିନୋଟି ଅଭେଦ୍ୟ, ଅଦୃଶ୍ୟ, ଉଡ଼ନ୍ତା ନଗର (ପୁର) ନିର୍ମାଣ କରିଦେଲେ । ପ୍ରତିଶୋଧ ନେବା ଲକ୍ଷ୍ୟରେ ଅସୁରମାନେ ସେଥିରେ ରହି ସ୍ୱର୍ଗ ପୁରୀ ଆକ୍ରମଣ କରିଦେଲେ । ଦେବତାମାନେ ତାଙ୍କୁ ଆଦୌ ମାରିପାରୁ ନ ଥାନ୍ତି । ଯାହାକୁ ବା ମାରିପକାନ୍ତି ସେ ଶବକୁ ନେଇ ଅସୁର ମାନେ ଏକ ଅମୃତ କୂପରେ ବୁଡ଼ାଇ ଜୀବନ୍ତ କରିଦେଉଥାନ୍ତି ।

ଦେବତାମାନେ ଅନ୍ୟକୌଣସି ଉପାୟ ନଦେଖି ଦେବ ଦେବ ମହାଦେବଙ୍କ ପାଖରେ ଶରଣାପନ୍ନ ହେଲେ । ସଙ୍ଗେ ସଙ୍ଗେ ଶଙ୍କର ଭଗବାନ ସ୍ୱୟଂ ଧନୁଶର ଧରି ମାୟା ତ୍ରିପୁର ଆକ୍ରମଣ କଲେ କିନ୍ତୁ ସବୁ ଅସ୍ତ୍ରପ୍ରୟୋଗ ବୃଥା ହୋଇଗଲା । ଅପଦସ୍ତ ହୋଇ ଶଙ୍କରଜୀ ବିଷ୍ଣୁ ଭଗବାନଙ୍କୁ ସହାୟତା ପାଇଁ ପ୍ରାର୍ଥନା କଲେ ।

ପ୍ରଶ୍ନ-୨୦. ଅବିଳମ୍ୱେ ଶ୍ରୀହରି ବିଷ୍ଣୁ ବ୍ରହ୍ମାଜୀଙ୍କୁ ସାଙ୍ଗରେ ଧରି ଯୁଦ୍ଧ ସ୍ଥଳକୁ ଯାଇ କଅଣ ଉପାୟ କଲେ ?

**ବତ୍ସ ଆସୀତ୍ ତଦା ବ୍ରହ୍ମା ସ୍ୱୟଂ ବିଷ୍ଣୁଃ ଅୟଂ ହି ଗୌଃ ।**
**ପ୍ରବିଶ୍ୟ ତ୍ରିପୁରଂ କାଳେ ରସକୂପ-ଅମୃତଂ ପପୌ ॥୬୨॥**

ଉ. ଶ୍ରୀହରି ସ୍ୱୟଂ ମାୟାରେ ଏକ ଗାଈ (ଗୌଃ) ହୋଇ ବ୍ରହ୍ମାଜୀଙ୍କୁ ଗୋଟିଏ ବାଛୁରୀ (ବତ୍ସ) କରିଦେଲେ । ଦୁହେଁ ଖୁବ୍ ସନ୍ତର୍ପଣରେ ଅମୃତ କୂପ ନିକଟରେ ପହଞ୍ଚି ସବୁତକ ଅମୃତ ଚାଟି ଚୁଟି ସଫା କରିଦେଲେ । ଅସୁରମାନେ ଏଣିକି ଭୟଙ୍କର ବିପଦରେ ପଡ଼ିଗଲେ । ମୃତ ଅସୁରମାନେ ଆଉ ପୁନର୍ଜୀବନ ନ ପାଇ ଯୁଦ୍ଧରେ ପରାଜୟ ମୁଖରେ ପଡ଼ିଲେ । ଶଙ୍କର ଭଗବାନଙ୍କୁ ଶ୍ରୀହରି ବିଷ୍ଣୁ, ଧନୁ, ଶର, ରଥ, ସାରଥୀ ଧ୍ୱଜା ଆଦି ଯୋଗାଇ ଦେଲେ । ସେ ତ୍ରିପୁରକୁ ଦିବ୍ୟ ଅସ୍ତ୍ରରେ ଧ୍ୱଂସ କରି ତ୍ରିପୁରାରୀ ନାମରେ ଖ୍ୟାତ ହେଲେ ।

ଭଗବାନ ନାରାୟଣଙ୍କ ଲୀଳା ମୁନୀନ୍ଦ୍ର ଯୋଗୀନ୍ଦ୍ରମାନେ ବୁଝିବା ଅସମ୍ଭବ ।

## ୧୯.ସଦ୍ ବାସନା ପ୍ରକରଣ ସାର (ପ୍ରହ୍ଲାଦ ଚରିତ)

### ଅଧ୍ୟାୟ ୬୫-୧୦ମ

ହିରଣ୍ୟ କଶିପୁଙ୍କ ପତ୍ନୀଙ୍କ ନାମ କୟାଧୂ । ଦୈତ୍ୟରାଜ ତପସ୍ୟା କରିବାକୁ ମନ୍ଦରାଚଳକୁ ଗଲେ । ଏଣେ ଇନ୍ଦ୍ର ଚଢ଼ଉ କଲେ ଦୈତ୍ୟରାଜାଙ୍କ ରାଜଧାନୀ ଉପରେ । ରାଣୀ ମହଲରୁ କୟାଧୂଙ୍କୁ ଧରିନେଲେ ବଳତ୍କାରରେ । ସେତେବେଳେକୁ ରାଣୀ ଅନ୍ତଃସତ୍ତ୍ୱା । ଇନ୍ଦ୍ର ଭାବିଲେ, ଏ ଛୁଆ ଜନ୍ମ ହେଲେ ଅସୁର ହେବ । ଅତଏବ ଏ କୟାଧୂଙ୍କୁ ହତ୍ୟା କଲେ ପାଇଟି ଛିଣ୍ଡିବ । ଭାଗ୍ୟକୁ ପାଖରେ ପହଞ୍ଚିଗଲେ ନାରଦଜୀ । କହିଲେ, 'ଦେବରାଜ ଇନ୍ଦ୍ର, ଏହାଙ୍କ ଗର୍ଭରେ ଜଣେ ମହାନ୍ ହରିଭକ୍ତ ବିଦ୍ୟାମାନ । ଏ ସ୍ତ୍ରୀକୁ ମୁଁ ନିଜ ଆଶ୍ରମକୁ ନେଇ ଯାଉଛି । ତୁମେ ଏ ନାରୀ ହତ୍ୟା, ଭ୍ରୂଣ ହତ୍ୟା ପାପରୁ ନିବୃତ୍ତ ହୁଅ ।' ନାରଦଜୀଙ୍କ ଆଶ୍ରମରେ ମା'ଙ୍କୁ ସତ୍‌ସଙ୍ଗ ମିଳିଲା । ଗର୍ଭସ୍ଥ ସନ୍ତାନର ଶୁଭ ସଂସ୍କାର ସଂଚିତ ହେଲା । ଜନ୍ମ ପରେ ନାମ ରଖାଗଲା ପ୍ରହ୍ଲାଦ ।

ହିରଣ୍ୟ କଶିପୁ ବ୍ରହ୍ମାଙ୍କଠୁଁ ବର ଲାଭ କରି ରାଜ୍ୟକୁ ଫେରି ଆସିଲେ । ପ୍ରହ୍ଲାଦଙ୍କର ପାଞ୍ଚ ବର୍ଷ ବୟସରେ ବିଦ୍ୟାରମ୍ଭ ହେଲା । ଗୁରୁ ଗୃହରେ ରଖାଗଲା ତାଙ୍କୁ । ଶୁକ୍ରାଚାର୍ଯ୍ୟଙ୍କ ଦୁଇ ପୁତ୍ର ଷଣ୍ଡ ଓ ଅମର୍କ ପିଲାମାନଙ୍କୁ ଧର୍ମ-ଅର୍ଥ- କାମ ଶିକ୍ଷା ଦେଲେ । ବାଳକ ପ୍ରହ୍ଲାଦ କିନ୍ତୁ ଏଥିରେ ଅସନ୍ତୁଷ୍ଟ । କହିଲେ, 'ମୋକ୍ଷ ବିଦ୍ୟା ବିନା ଏ ସକଳ ବିଦ୍ୟା ନିରର୍ଥକ । ପଦେ ପଦେ ବିପଦ ।' ଦିନେ ପରୀକ୍ଷା କରି ବସିଲେ ପିତା ହିରଣ୍ୟ କଶିପୁ ପୁଅକୁ । କହିଲେ,'ପୁଅ କ'ଣ ସବୁ ପଢୁଚ' ?' ନିର୍ଭୟରେ ଉତ୍ତର ଦେଲେ ପ୍ରହ୍ଲାଦ, ପିତାଜୀ, ଏ ଗୃହସ୍ଥ ଧର୍ମ ବିଦ୍ୟା ପଠନ ବନ୍ଧନ କାରକ । ଅତଏବ ବନ୍ଦନୀୟ ନୁହେଁ, ନିନ୍ଦନୀୟ । ମନୁଷ୍ୟ ବିଷ୍ଣୁ ବା ହରିଭଜନ କଲେ ମୁକ୍ତିର ଅଧିକାରୀ ହେବ । ପିତାଜୀ କ୍ରୋଧରେ ଗର୍ଜନ କରି ଉଠିଲେ । ଅସୁର କୁଳର ଶତ୍ରୁ ବିଷ୍ଣୁ ବୋଲି ଗୁରୁ ଷଣ୍ଡ-ଅମର୍କଙ୍କୁ ତାଗିଦ୍ କଲେ । ହରି ଭଜନ,ଜପ କୀର୍ତ୍ତନ, ପଠନ ଆଦି ନିଷିଦ୍ଧ ହେଲା ଗୁରୁଦ୍ୱୟଙ୍କୁ । କିଛଦିନ ଯାଏ ପାଠ ପଢା ପରେ ପୁଣି ଦ୍ୱିତୀୟବାର ପରୀକ୍ଷା କଲେ ରାଜା । ଏଥର ପ୍ରହ୍ଲାଦଜୀ ନିର୍ଭୟରେ ନବଧା ଭକ୍ତିର ଜୟଗାନ କଲେ । ଅସୁର ରାଜ କ୍ରୋଧରେ ଆଗ୍ନିଶର୍ମା ହେଲେ । ପୁତ୍ରକୁ ମୃତ୍ୟୁଦଣ୍ଡ ଆଦେଶ

ଦେଲେ । ହେଲେ ବିଷ ପିଆଇ, ହାତୀ ଚଢ଼ାଇ, ଖଣ୍ଡାରେ ହାଣି, ଜଳରେ ଫିଙ୍ଗି, ଅଗ୍ନିରେ ଜଳାଇ ମାରିବାର ସକଳ ମୃତ୍ୟୁ ଉପାୟ ବିଫଳ ହେଲା । ତଥାପି ଭକ୍ତ ପ୍ରହ୍ଲାଦ ନିର୍ଭୀକ । ଭୟ କରୁଥିବା ସାଧକକୁ ଭଗବାନ ମଧ୍ୟ ପସନ୍ଦ କରନ୍ତି ନାହିଁ । କାରଣ ସାଧକର ବିଶ୍ୱାସର ଦୁର୍ବଳତା ହିଁ ତାର ମୃତ୍ୟୁ ଭୟ ଅଟେ । ପ୍ରହ୍ଲାଦ ଜଣେ ଆଜନ୍ମ ବିଷ୍ଣୁ ଭକ୍ତ ।

ବନ୍ଦୀ ଘରେ ରଖାଗଲା ପ୍ରହ୍ଲାଦଙ୍କୁ । ଦେଖାଗଲା ନିବୁଜ କୋଠରୀରେ ପ୍ରହ୍ଲାଦଜୀ ସୁସ୍ୱାଦୁ ଭୋଜନ କରୁଛନ୍ତି । ପିତା ପଚାରିଲେ, 'ପୁତ୍ର ! ଏ ଭୋଜନ ତତେ କିଏ ଦେଲା ? ସତ କୁହ ।' ଉତ୍ତର ଦେଲେ ପ୍ରହ୍ଲାଦ, 'ପିତାଜୀ, ଯେ ମୋତେ ମାତା ଗର୍ଭରେ ଖାଇବାକୁ ଦେଇ ନଅ ମାସ ରଖି ପାଳନ ପୋଷଣ କରୁଥିଲେ ସେଇ ଶ୍ରୀହରି ବିଷ୍ଣୁ ।' ହିରଣ୍ୟ କଶିପୁ ଏବେ ନିରୁପାୟ ।

ଏଣିକି ବିଦ୍ୟାଳୟରେ ଅସୁର ବାଳକମାନଙ୍କୁ ପ୍ରହ୍ଲାଦଜୀ ଖୋଲାଖୋଲି ହରି ଭଜନ ଶିଖାଇଲେ । ଅସୁରବାଳକମାନେ ପ୍ରଶ୍ନ କଲେ, 'ପ୍ରହ୍ଲାଦ, ଈଶ୍ୱର ତ ଦିଶୁ ନାହାନ୍ତି । କାହା ଧ୍ୟାନ, ଭଜନ କରିବୁ ?' ପ୍ରହ୍ଲାଦ ଉତ୍ତର ଦେଲେ,'ନ ଦିଶନ୍ତୁ । ଆଖି ବୁଜି ବସ । ଜଗତ ଦେଖା ବନ୍ଦ ହେଲେ ଜଗଦୀଶ୍ୱର ଦିଶିବେ ।' ଦୃଷ୍ଟାନ୍ତ ମଧ୍ୟ ରଖିଲେ । 'କାଠରେ ଥାଇ ଅଗ୍ନି କ'ଣ ଦିଶନ୍ତି କି ? ସୁନା ମୁଣ୍ଡା ମଧ୍ୟରେ ଅଳଙ୍କାର କ'ଣ ଦିଶେ କି ? ଦୁଧ ମଧ୍ୟରେ ଘିଅ କ'ଣ ଦିଶେ କି ? ଚିନ୍ମୟ ହରି ନାମ ଶ୍ରବଣ, କୀର୍ତ୍ତନରେ ଚିତ୍ତଶୁଦ୍ଧ ହୁଏ । ପାପ କ୍ଷୟ ହୁଏ । ପରମେଶ୍ୱରଙ୍କ କୃପା କବାଟ ଫିଟେ । ସାଧକ ହୃଦୟରେ ହରିପ୍ରେମ ଲହରି ଖେଳେ ।'

ପାଠ ଶାଳାରେ କୀର୍ତ୍ତନ ଜୋର ଧରିଲା । ପ୍ରଭାବିତ ହେଲେ ଗୁରୁ ଦୁଇଜଣ । ସେମାନେ ମଧ୍ୟ ପିଲାଙ୍କ ସହ କୀର୍ତ୍ତନରେ ମାତିଲେ । ରାଜାଙ୍କ ସେବକମାନେ ସେଠାକୁ ଦେଖିବାକୁ ଯାଇ କୀର୍ତ୍ତନ କଲେ । ଯେ ଡାକିବାକୁ ଗଲେ କେହି ଫେରିଲେନି । କୀର୍ତ୍ତନରେ ମାତିଲେ । ଶେଷରେ ରାଜା ନିଜେ ପହଞ୍ଚିଲେ ପାଠ ଶାଳାରେ କିନ୍ତୁ କୀର୍ତ୍ତନ ଦ୍ୱାରା ସେ ଆଦୌ ପ୍ରଭାବିତ ହେଲେ ନି । ସେ ଯେ ଗୋଟିଏ ଫିଉଜ୍ ବଲ୍‌ବ !! ଆଦେଶ ଦେଲେ ପୁତ୍ରକୁ ଶ୍ରୀହରିଙ୍କୁ ଦେଖାଇବାକୁ । ଭରା ରାଜ ସଭାରେ ଆହ୍ୱାନ କଲେ ଯଦି ଈଶ୍ୱର ଅତ୍ର ତତ୍ର ସର୍ବତ୍ର ବିଦ୍ୟମାନ ତେବେ ଖମ୍ବ ମଧ୍ୟରେ ନ ଦିଶିବାର କାରଣ କିସ ? ହରିଭକ୍ତ ପୁତ୍ର ପ୍ରହ୍ଲାଦଜୀ କହିଲେ, 'ପିତାଜୀ, ମୋତେ କିନ୍ତୁ ଖମ୍ବରେ ଦିଶୁଛନ୍ତି । ଆପଣଙ୍କୁ ନ ଦିଶିବାର କାରଣ ଆପଣଙ୍କ ନିଜର ଦୃଷ୍ଟିଦୋଷ ।

ଶ୍ରଦ୍ଧା, ବିଶ୍ୱାସ, ଗୁରୁସେବା କଲେ ନିଶ୍ଚୟ ଦିଶିବେ ।' ରାଜା କ୍ରୋଧରେ ଖଣ୍ଡା ଉଠାଇ ଆଘାତ କଲେ ଖମ୍ବକୁ । ଭକ୍ତ କଥା ରଖିବାକୁ ଅତି ଭୟଙ୍କର ନୃସିଂହ ଅବତାର ହେଲା ଭଗବାନଙ୍କର ।

ଆଜି ମଧ୍ୟ ପଶ୍ଚିମ ପଞ୍ଜାବ ରାଜ୍ୟର ମୁଲତାନ ନାମକ ସ୍ଥାନରେ ବିଶାଳ ନୃସିଂହ ମନ୍ଦିର ବିଦ୍ୟାମାନ । ପଞ୍ଜାବୀମାନେ ପ୍ରାୟ ସମସ୍ତେ ନିଜ ନାମରେ 'ସିଂହ' ଶବ୍ଦକୁ ଯୋଡି ଆନନ୍ଦିତ ହୁଅନ୍ତି ହରି ଭକ୍ତିର ସଙ୍କେତ ରୂପେ । ଅଭକ୍ତ ପାଇଁ ନୃସିଂହ ମହାପ୍ରଭୁ ଭୟ ସ୍ୱରୂପ ଓ ଭୟକାରକ ମଧ୍ୟ । ଭକ୍ତ ପାଇଁ ସେଇ ଠାକୁର ଭୟନାଶକ । ପ୍ରେମ ପ୍ରଦାୟକ । ଏହା କ'ଣ ସଦ୍‌ବାସନା ବା ହରିଭକ୍ତିର କମ୍ ବାହାଦୂରୀ !! ପ୍ରହ୍ଲାଦଜୀ ପ୍ରମାଣ କରିଗଲେ ଯେ ଈଶ୍ୱର ପ୍ରେମ ପ୍ରାପ୍ତି ପାଇଁ ଦରକାର ହୁଏନା ଉଚ୍ଚ କୁଳ, ବହୁତ ଜ୍ଞାନ, ବହୁତ ଧନ ବା ଅନ୍ୟ କିଛି । ସେ ତ ବରଂ ଅଜ୍ଞାନୀକୁ, ନୀଚକୁଳ ଜାତ ଚାଣ୍ଡାଳ ବା ଧନଶୂନ୍ୟ ଦରିଦ୍ରକୁ ସହଜରେ ପ୍ରାପ୍ତ ହୁଅନ୍ତି । ଈଶ୍ୱର ସେବାରେ ଜ୍ଞାନ ବା ଧନର ଆବଶ୍ୟକତା ଗୌଣ । ମୁଖ୍ୟ ହେଲା ଶ୍ରଦ୍ଧା, ବିଶ୍ୱାସ, ନିର୍ମଳ ମନ ଓ ନିଷ୍କପଟ ଭାବ । ଏହି ଭଜନ ବା ସେବାରେ ସ୍ୱୟଂ ଭଗବାନ ମଧ୍ୟ ଭକ୍ତର ଅଧୀନସ୍ଥ ହୋଇଯାଆନ୍ତି । ଯେଉଁଠି ଭାବର ପ୍ରାଧାନ୍ୟ ରହେ ସେଇ ତ' ସେବା । ଯେଉଁଠି ଗୁରୁ, ଦେବତା ଓ ମନ୍ତ୍ରର ପ୍ରାଧାନ୍ୟ ରହେ ସେ ପୂଜା ।

ଜ୍ଞାନ ମାର୍ଗରେ ମୂଳ ଧନ ତ୍ୟାଗ ଓ ବୈରାଗ୍ୟ । ଭକ୍ତି ମାର୍ଗରେ ମୂଳ ଧନ କିନ୍ତୁ ବିଶ୍ୱାସ, ଭାବନା, ବ୍ୟାକୁଳତା ପ୍ରେମର ଗଭୀରତା ଓ ଅନନ୍ୟତା । ଏ ସବୁ ସମ୍ଭବ ହୁଏ ସଦ୍‌ବାସନା, ସତ୍‌ସଙ୍ଗ ଦ୍ୱାରା । ପ୍ରବଚନ ଶ୍ରବଣ ପରେ ଯଦି ଶ୍ରୋତା କିଛି ଶୁଭ ସଂକଳ୍ପ କରେ ନାହିଁ ତେବେ ବୁଝିବା ପ୍ରବଚନ ଶ୍ରବଣ କୀର୍ତ୍ତନ ବୃଥା ହୋଇଗଲା । ନଚେତ୍ ଅସଦ୍‌ବାସନାର କ୍ଷୟ ଓ ସଦ୍‌ବାସନାର ସଂଗ୍ରହ ପୁଞ୍ଜି ବଢ଼ିବ କେମିତି ? ହରିପ୍ରେମର ବଳ ଏତେ ବେଶୀ ଯେ ସେ ନିରାକାର ବ୍ରହ୍ମଙ୍କୁ ସାକାର କରାଇପାରେ । ନିର୍ଗୁଣକୁ ସଗୁଣ କରାଇଦେଇପାରେ । ସେବା ପୂଜା କରୁ କରୁ ଯଦି ଅଶ୍ରୁ ଟୋପାଏ ଝରିପଡେ ତେବେ ଜାଣିବା ଆମ ପୂଜା ସଫଳ ହେଲା ।

ଈଶ୍ୱରଙ୍କ ସ୍ମରଣରେ ଆମ ଇନ୍ଦ୍ରିୟମାନଙ୍କର ଶକ୍ତି ବଢେ । ବିଷୟ ସ୍ମରଣ ହେଲେ ସେଇ ଇନ୍ଦ୍ରିୟ ମାନଙ୍କ ଶକ୍ତି କ୍ଷୟ ହୁଏ । ଅତଏବ ସଦ୍‌ବାସନା ତ ସେଇ ସଂସାରକୁ ଭୋଗ ଦୃଷ୍ଟିରେ ନ ଦେଖି ଭଗବତ୍ ଦୃଷ୍ଟିରେ ଦେଖିବା । ଭକ୍ତି ଧର୍ମର ଜୟ ହେଉ ।

–୦–

॥ ଅପଣ୍ଡିତ ଦାମୋଦର ବଢ଼ାୟାରସିଂହ ॥

# ପ୍ରକରଣ-୨୦

## ମିଶ୍ର ବାସନା- ଜ୍ଞାନ (ଅଧ୍ୟାୟ ୧୧ଶ- ୧୫ଶ)

## ଅଥ ୧୧ଶ ଅଧ୍ୟାୟଃ

### (ମାନବ ଧର୍ମ, ବର୍ଣ୍ଣଧର୍ମ, ଆଶ୍ରମଧର୍ମ ଓ ନାରୀ ଧର୍ମ)

### ଯୁଧିଷ୍ଠିର ଉବାଚ

ପ୍ରଶ୍ନ-୨୧. ରାଜା ଯୁଧିଷ୍ଠିର ପ୍ରହ୍ଲାଦଜୀଙ୍କ ଭାଗବତ ଧର୍ମ ଆଚରଣ ଚରିତ ଶ୍ରବଣକରି ଅତ୍ୟନ୍ତ ପ୍ରଭାବିତ ହେଲେ । ତାଙ୍କ ସୌଭାଗ୍ୟ ବଳରୁ ମାତୃଗର୍ଭରୁ ସେ ଏହା ପ୍ରାପ୍ତ ହୋଇଥିଲେ । ସମସ୍ତଙ୍କ ପକ୍ଷରେ ଏହା ନିଶ୍ଚୟ ଅସମ୍ଭବ ବ୍ୟାପାର । ବର୍ଣ୍ଣ-ଆଶ୍ରମ ଧର୍ମ ବିଷୟରେ ବିସ୍ତୃତ ଭାବରେ ଜାଣିବାକୁ ସେ କାହିଁକି ଆଗ୍ରହୀ ହେଲେ ?

**ଭଗବନ୍ ଶ୍ରୋତୃଂ ଇଚ୍ଛାମି ନୃଣାଂ ଧର୍ମଂ ସନାତନମ୍ ।**
**ବର୍ଣ୍ଣ-ଆଶ୍ରମ-ଆଚାର ଯୁତଂ ଯତ୍ ପୁମାନ୍ ବିନ୍ଦତେ ପରମ୍ ॥୨॥**

ଉ.ସ୍ଥାନ-କାଳ-ପାତ୍ର ଭେଦରେ ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ, ରାଜ ଧର୍ମ, ପ୍ରଜାଧର୍ମ, ନାରୀ ଧର୍ମ, ଇତ୍ୟାଦି ଅନେକ ଧର୍ମ ଅଛନ୍ତି ସତ । ସେ ସମସ୍ତେ କେବଳ ସନାତନ ଭାଗବତ ଧର୍ମ ପାଖରେ ପହଞ୍ଚାଇବା ନିମିତ୍ତ ସିଡ଼ି, ପାହାଚ ବା ମାର୍ଗ ସମୂହ । ବର୍ଣ୍ଣ-ଆଶ୍ରମ ଧର୍ମ ବ୍ୟବସ୍ଥା ବୈଦିକ ମାର୍ଗ । ଆଦୌ ଲୌକିକ ନୁହେଁ । ଭାଗବତ ଧର୍ମ ଆତ୍ମସାକ୍ଷାତକାର (ବିନ୍ଦତେ ପରଂ) କରାଇ ପାରୁଥିବାରୁ ଭୌତିକ ଧର୍ମ ନୁହେଁ । ଅଲୌକିକ ଧର୍ମ ।

ପ୍ରଶ୍ନ-୨୨. କର୍ମ ମାର୍ଗ,ଜ୍ଞାନ ମାର୍ଗ ଦୁହେଁ ଯଥାକ୍ରମେ ଗୁହ୍ୟ ଓ ଗୁହ୍ୟତର ମାର୍ଗ । ଭକ୍ତି/ଭାଗବତ ମାର୍ଗ ଗୁପ୍ତତମ ମାର୍ଗ । ବ୍ରହ୍ମାଜୀଙ୍କ ପୁତ୍ର ଦେବର୍ଷି ନାରଦ କେଉଁ ପ୍ରାମାଣିକ ସୂତ୍ରରୁ ସନାତନ ଭକ୍ତି ମାର୍ଗ ରହସ୍ୟ ପ୍ରାପ୍ତହେଲେ ?

### ନାରଦ ଉବାଚ

**ନତ୍ୱା ଭଗବତେଽଜାୟ ଲୋକାନାଂ ଧର୍ମ ହେତବେ ।**
**ବକ୍ଷ୍ୟେ ସନାତନଂ ଧର୍ମଂ ନାରାୟଣ ମୁଖାତ୍ ଶ୍ରୁତମ୍ ॥୫॥**

ଉ.ନାରଦଜୀ ପ୍ରଥମେ ଅଜନ୍ମା ଭଗବାନ ନାରାୟଣଙ୍କୁ ପ୍ରଣାମ କଲେ । ନାରାୟଣ ଏ ସଂସାରର ଧର୍ମ ରକ୍ଷକ । ସେ ହିଁ ସନାତନ । ତାଙ୍କ ମୁଖରୁ ଶ୍ରବଣ କରିଥିବା ଏହି ରହସ୍ୟ କହିବେ ବୋଲି ସେ ସୂଚନା ଦେଲେ ।

ଭାଗବତ ଧର୍ମର ମୂଳ ସ୍ୱୟଂ ଭଗବାନ । ସକଳ ବେଦ କେବଳ ତାଙ୍କରି ମହାତ୍ମ୍ୟ ବୀର୍ତ୍ତନ କରିବାକୁ ଉଦ୍ଦିଷ୍ଟ । ଚାରି ବର୍ଣ୍ଣ ଓ ଚାରି ଆଶ୍ରମ ଲାଗି କିଛି କିଛି ବିଶେଷ ଧର୍ମ ଲକ୍ଷଣର ବ୍ୟବସ୍ଥା କରାଯାଇଛି । ତଥାପି ସମସ୍ତଙ୍କ ଲାଗି ତିରିଶି ପ୍ରକାର ଧର୍ମ ଲକ୍ଷଣ ସିଡ଼ି ବା ପାହାଚ ମଧ ସେହି ଶ୍ରୁତି-ସ୍ମୃତିରେ ବ୍ୟବସ୍ଥିତ ।

ସତ୍ୟ, ଦୟା, ତପ, ଶୌଚ, ତିତିକ୍ଷା, ବିବେକ, ଶମ, ଦମ, ଅହିଂସା, ବ୍ରହ୍ମଚର୍ଯ୍ୟ, ତ୍ୟାଗ, ସ୍ୱାଧ୍ୟାୟ, ସରଳତା, ସନ୍ତୋଷ, ସନ୍ଥ ସେବା, ସଂସାର ବିଷୟ ଭୋଗ ବିମୁଖତା, ମୌନ, ଅନାବଶ୍ୟକ କାର୍ଯ୍ୟରୁ ନିବୃତ୍ତି, ବାଦ-ବିବାଦରୁ ଉର୍ଦ୍ଧ୍ୱରେ ଅବସ୍ଥାନ, ଅନ୍ନ ଔଷଧାଦି ବାଣ୍ଟିକରି ସେବନ କରିବା, ସକଳ ଜୀବରେ ଆତ୍ମବୁଦ୍ଧି, ଭଗବାନଙ୍କ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପୂଜନ, ପ୍ରଣାମ, ଦାସ୍ୟ ସଖ୍ୟ ସମସ୍ତଙ୍କୁ ଅଭୟଦାନ ଓ ଆତ୍ମ (ସର୍ବସ୍ୱ) ସମର୍ପଣକୁ ଧର୍ମଙ୍କର ତିରିଶ ଲକ୍ଷଣ କୁହାଯାଏ ।

ପ୍ରଶ୍ନ-୨୩. ଏହି ତିରିଶି ଲକ୍ଷଣ ବର୍ଣ୍ଣିତ ଧର୍ମ ଆଚରଣରେ ସାଧକର ଧର୍ମ-ଅର୍ଥ-କାମ-ମୋକ୍ଷ ମଧ୍ୟରୁ କେଉଁ ଲକ୍ଷ୍ୟ ପ୍ରାପ୍ତି ହେବ ?

**ନୃଣାଂ ଅୟଂ ପରୋ ଧର୍ମଃ ସର୍ବେଷାଂ ସମୁଦାହୃତ ।**
**ତ୍ରିଂଶତ୍ ଲକ୍ଷଣବାନ୍ ରାଜନ୍ ସର୍ବ-ଆତ୍ମା ଯେନ ତୁଷ୍ୟତି ॥୧୨॥**

ଉ.ଦେବର୍ଷି କହିଲେ,'ହେ, ରାଜା ଯୁଦ୍ଧିଷ୍ଠିର! ଏହା ଆଚରଣ କଲେ ପରମାତ୍ମାଙ୍କୁ ପ୍ରସନ୍ନ କରାଯାଇ ପାରେ । ତାଙ୍କ ପ୍ରସନ୍ନତାରେ ଧର୍ମ ଆଦି କେଉଁ ଲକ୍ଷ୍ୟ ଅପୂରଣୀୟ ରହିପାରେ କି ? ଅର୍ଥାତ୍ ମୋକ୍ଷ ଲକ୍ଷ୍ୟ ମଧ ପ୍ରାପ୍ତି ହୋଇ ପାରେ ।'

ପ୍ରଶ୍ନ-୨୪.ବର୍ଣ୍ଣରେ କେଉଁ କେଉଁ ଲକ୍ଷଣ ଦେଖି ବ୍ରାହ୍ମଣକୁ ଚିହ୍ନିହୁଏ ?

**ଶମୋ ଦମଃ ତପଃ ଶୌଚଂ ସନ୍ତୋଷ କ୍ଷାନ୍ତିଃ ଆର୍ଜବମ୍ ।**
**ଜ୍ଞାନଂ ଦୟା-ଅଚ୍ୟୁତ-ଆତ୍ମତ୍ୱଂ ସତ୍ୟଂ ଚ ବ୍ରହ୍ମଲକ୍ଷଣମ୍ ॥୨୧॥**

ଉ.ମନ ସଂଯମ, ଇନ୍ଦ୍ରିୟ ସଂଯମ, ତପ, ମୌନ, ସନ୍ତୋଷ, ଅକ୍ରୋଧ, ସରଳତା, ଜ୍ଞାନ, ଦୟା, ହରିଭଜନ ଓ ସତ୍ୟ ଏହି ଏଗାର ଲକ୍ଷଣ ।

ପ୍ରଶ୍ନ-୨୫. ଜଣକୁ କେଉଁ ଲକ୍ଷଣ ଦେଖି ବର୍ଣ୍ଣରେ କ୍ଷତ୍ରିୟ ବୋଲି ଚିହ୍ନି ହେବ ?

**ଶୌର୍ଯ୍ୟଂ ବୀର୍ଯ୍ୟଂ ଧୃତିଃ ତେଜଃ ତ୍ୟାଗ ଆତ୍ମଜୟଃ କ୍ଷମା ।**
**ବ୍ରହ୍ମଣ୍ୟତା ପ୍ରସାଦଃଚ ରକ୍ଷା ଚ କ୍ଷତ୍ର ଲକ୍ଷଣମ୍ ॥୨୨॥**

ଉ.ଯୁଦ୍ଧରେ ଉତ୍ସାହ, ବୀରତା, ଧୀରତା, ତେଜସ୍ୱିତା, ତ୍ୟାଗ, ମନୋଜୟ, କ୍ଷମା, ବ୍ରାହ୍ମଣ ପ୍ରତି ଭକ୍ତି, ପ୍ରଜାପାଳନ-ପୋଷଣରେ ପ୍ରସନ୍ନତା ଓ ସତ୍ୟବାଦିତା- ଏହି ଦଶ ଲକ୍ଷଣ ।

ପ୍ରଶ୍ନ-୨୬.ବୈଶ୍ୟବର୍ଣ୍ଣର କେଉଁ କେଉଁ ଲକ୍ଷଣ ଦେଖାଯାଏ ?

**ଦେବଗୁରୁ-ଅଚ୍ୟୁତେ ଭକ୍ତିଃ ତ୍ରିବର୍ଗ ପରିତୋଷଣମ୍ ।**
**ଆସ୍ତିକ୍ୟଂ ଉଦ୍ୟମୋ ନିତ୍ୟଂ ନୈପୁଣ୍ୟଂ ବୈଶ୍ୟ ଲକ୍ଷଣମ୍ ।।୨୩।।**

ଉ.ଦେବତା ଭକ୍ତି, ଗୁରୁଭକ୍ତି, ନାରାୟଣ ଭକ୍ତି,ଧର୍ମ -ଅର୍ଥ-କାମ ଲାଗି ପୁରୁଷାର୍ଥ କରିବା, ଈଶ୍ୱର ବିଶ୍ୱାସ, ଉଦ୍ୟୋଗ ଶୀଳତା ଓ ବ୍ୟାବହାରିକ ନିପୁଣତା-ଏହି ସାତ ଲକ୍ଷଣ ।'

ପ୍ରଶ୍ନ-୨୭. ଶୂଦ୍ରଙ୍କ ବର୍ଣ୍ଣ ଲକ୍ଷଣ କାହାକୁ କୁହାଯାଏ ?

**ଶୂଦ୍ରସ୍ୟ ସଂନତିଃ ଶୌଚଂ ସେବା ସ୍ୱାମିନି-ଅମାୟୟା ।**
**ଅମନ୍ତ୍ର ଯଜ୍ଞୋ ହି-ଅସ୍ତେୟଂ ସତ୍ୟଂ ଗୋ ବିପ୍ରରକ୍ଷଣମ୍ ।।୨୪।।**

ଉ.ଅନ୍ୟ ତିନିବର୍ଣ୍ଣ ସାଧକଙ୍କର ଆଜ୍ଞାକାରିତା (ସଂନତିଃ), ପବିତ୍ରତା, ମାଲିକଙ୍କ ନିଷ୍କପଟ ସେବା, ବୈଦିକ ମନ୍ତ୍ର ବିନା ଦାନ, ତପ, ସକଳ କ୍ରିୟା କଲାବେଳେ ଓଁ ତତ୍ ସତ୍ ଉଚାରଣ କରିବା, ଚୋରି ନକରିବା, ସତ୍ୟଭାଷଣ, ଗୋରକ୍ଷଣ ଓ ବିପ୍ରରକ୍ଷଣ-ଏହି ସାତ ଲକ୍ଷଣ ।

ପ୍ରଶ୍ନ-୨୮. ପତିଙ୍କ ଇଚ୍ଛା-ଅନୁକୂଳ ସେବା, ପତିଙ୍କ ସମ୍ବନ୍ଧୀ ମିତ୍ରଙ୍କ ସେବା, ପତିବ୍ରତା ହେବା, ଗୃହ ସଫେଇ, ଅଗଣା ଆଦି ଲିପା ପୋଛା, ଗୃହ ସଜାସଜି, ସ୍ୱୟଂ ପତିକୁ ପ୍ରିୟ ଲାଗୁଥିବା ବସ୍ତ୍ର ଅଳଙ୍କାର ଧାରଣ କରିବା, ବିନୟ, ଇନ୍ଦ୍ରିୟ ସଂଯମ, ସତ୍ୟ ଭାଷଣ, ପ୍ରିୟ ଭାଷଣ, ପତିଦେବଙ୍କ ସାନ ବଡ଼ ଇଚ୍ଛା ପୂରଣ କରିବା, ସାବିତ୍ରୀ ବ୍ରତ ଆଦି ପର୍ବ ଦିନ ମାନଙ୍କରେ ତାଙ୍କ ପୂଜନ କରିବା ପତି ଯୋଗ୍ୟ ଅଯୋଗ୍ୟ ନିର୍ବିଶେଷରେ ପାଳନ କରିବା କ'ଣ ନାରୀର ଧର୍ମ ?

**ସନ୍ତୁଷ୍ଟ-ଅଲୋଲୁପା ଦକ୍ଷା ଧର୍ମଜ୍ଞା ପ୍ରିୟ ସତ୍ୟବାକ୍ ।**
**ଅପ୍ରମତ୍ତା ଶୁଚିଃ ସ୍ନିଗ୍ଧ ପତିଂ ତ୍ୱ-ଅପତିତଂ ଭଜେତ୍ ।।୨୮।।**

ଉ.ନା,ନା କେବଳ ଯୋଗ୍ୟ ପତିଙ୍କର ସେ ସେବା କରିବା ଉଚିତ ଅଯୋଗ୍ୟ/ ପତିତ ପତିଙ୍କର ନୁହେଁ । ପତିତ ପତି ତାଙ୍କୁ କୁହାଯାଏ ଯେ ଧର୍ମ-ଅର୍ଥ-କାମ-ମୋକ୍ଷ

କୌଣସିଟିର ଆଦର କରନ୍ତି ନାହିଁ । ବୈଦିକ ଓ ଲୌକିକ ଉଭୟ ପରମ୍ପରାକୁ ବିରୋଧ କରି ଯଥେଚ୍ଛା ଜୀବନ ନିର୍ବାହ କରନ୍ତି । କର୍ମ-ଜ୍ଞାନ-ଭକ୍ତି ଯୋଗ ମାର୍ଗର ବିରୋଧ କରନ୍ତି ।

ଅତଏବ ଅପାତକୀ ପତିଦେବଙ୍କୁ ସେବା କରିବାବେଳେ ପତ୍ନୀ ଯଦୃଚ୍ଛା ଲାଭ ସନ୍ତୁଷ୍ଟ ରହିଲେ କୌଣସି ବସ୍ତୁ, ବ୍ୟକ୍ତି, ପରିସ୍ଥିତି ପ୍ରତି ଅତ୍ୟନ୍ତ ଲୋଭୀ ନ ହେଲେ, ଗୃହ କର୍ମରେ କୁଶଳ, ଧର୍ମଜ୍ଞ, ସତ୍ୟବାଦିନୀ, ପ୍ରିୟବାଦିନୀ, କାୟ-ମନୋ-ବାକ୍ୟରେ ପବିତ୍ର ରହିପାରିଲେ, କର୍ତ୍ତବ୍ୟ କରିବା ବେଳେ ବୁଦ୍ଧିବିବେକ ଦୃଷ୍ଟି ରଖି ସାବଧାନ ରହିବାକୁ ଶ୍ରେଷ୍ଠ ନାରୀ ଧର୍ମ କୁହାଯାଏ ।

ପ୍ରଶ୍ନ- ୨୯. ଏଭଳି ନାରୀଧର୍ମ ପାଳନରେ କି ଲକ୍ଷ୍ୟ ପ୍ରାପ୍ତି ହୁଏ ନାରୀର ?

**ଯା ପତିଂ ହରି ଭାବେନ ଭଜେତ୍ ଶ୍ରୀଃ ଇବ ତତ୍ ପରା ।**
**ହରି-ଆତ୍ମନା ହରେଃ ଲୋକେ ପତ୍ୟା ଶ୍ରୀଃ ଇବ ମୋଦତେ॥୨୯॥**

ଉ.ପତିଙ୍କୁ ଦେବ (ନାରାୟଣ ) ଭାବରେ ସେବା କରି ପ୍ରସନ୍ନ କରିପାରିଲେ ଭକ୍ତିରେ ସେ ଆପ୍ଲାବିତ ହୋଇ ବୈକୁଣ୍ଠ ଲୋକରେ ପାଞ୍ଚ ପ୍ରକାର ମୁକ୍ତିର (ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ, ସାର୍ଷ୍ଟି ଓ ସାଯୁଜ୍ୟ) ଅଧିକାରୀ ହୁଅନ୍ତି । ମୁକ୍ତିର ସ୍ୱାଦୁ ଅନୁଭବ କରନ୍ତି ।

ପ୍ରଶ୍ନ-୩୦. ବେଦ ବର୍ଣ୍ଣିତ ଚାରି ବର୍ଣ୍ଣ ଅତ୍ୟନ୍ତ ପବିତ୍ର ଓ କଲ୍ୟାଣ କାରୀ । ଏ ଚାରି ବର୍ଣ୍ଣରେ ଆସୁ ନଥିବା ଅନେକ ପ୍ରକାର ଲୋକ ମଧ୍ୟ ସଂସାରରେ ରହନ୍ତି । ଯେଉଁ ମାନେ ଅନ୍ୟ ଧନ ଚୋରୀ କରନ୍ତି ଏବଂ ନିଜ ଶରୀର ପୋଷଣ ଲାଗି ଅନ୍ୟ ମାଂସ ଖାଉ ଥିବା ଲୋକଙ୍କୁ ଅନ୍ତ୍ୟଜ କୁହାଯାଏ । ପୁଣି ଏ ଦୁଇଟି ଯାକ କଥା କରୁଥିବା ସବୁଠାରୁ ନୀଚ ଲୋକଙ୍କୁ ଅନ୍ତେ୍ୟବସାୟୀ ଶ୍ୱପଚ (ଚାଣ୍ଡାଳ) କୁହାଯାଏ ।

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ଅନ୍ତ୍ୟଜ, ଅନ୍ତେ୍ୟବସାୟୀ ସମସ୍ତଙ୍କୁ ଭକ୍ତି କରିବାର ଧର୍ମ ଶାସ୍ତ୍ରମାନଙ୍କରେ ସୁବିଧା ସୁଯୋଗ ବ୍ୟବସ୍ଥା କରାଯାଇଛି । ପ୍ରଥମେ ତାମସ ଭକ୍ତିରୁ ଆରମ୍ଭ କରି ବୃତ୍ତି ପରକ କର୍ମ କରୁ କରୁ ଧୀରେ ଧୀରେ ଜନ୍ମ-ଜନ୍ମାନ୍ତରରେ ତାର ସ୍ୱଭାବର-ପରିବର୍ତ୍ତନ ହୋଇ ଯାଏ । ତାମସ ଭକ୍ତି କ୍ରମେ ରାଜସ୍ ସାତ୍ତ୍ୱିକ ଓ ନିର୍ଗୁଣ ଭକ୍ତିରେ ପହଞ୍ଚେ । ତେବେ କର୍ମ କରିବାର ଆବେଶ ଓ ଜ୍ଞାନ ପ୍ରାପ୍ତ କରି ଜ୍ଞାନୀ ହେବାର ଆଗ୍ରହ କାହିଁକି ନିର୍ଗୁଣୀ ଭକ୍ତିରେ ଦୃଶ୍ୟ ହୁଏ ନାହିଁ ?

**ଉପ୍ୟମାନଂ ମୁହୁଃ କ୍ଷେତ୍ରଂ ସ୍ୱୟଂ ନିର୍ବୀର୍ଯ୍ୟତାଂ ଇୟାତ୍ ।**
**ନ କଳ୍ପତେ ପୁନଃ ସୂତ୍ୟୈ ଉପ୍ତଂ ବୀଜଂ ଚ ନଶ୍ୟତି ॥୩୩॥**

ଉ. ଏଇତ ସୃଷ୍ଟି କର୍ତ୍ତାଙ୍କର ସୃଜନ କ୍ରିୟାର ବାହାଦୂରୀ । ଜମିରେ ଜଳ ସାର ଦେଇ ବିହନ ବୁଣିଲେ ଫସଲ ହୁଏ । ବାରମ୍ବାର ଫସଲ ଉତ୍ପାଦନ କରୁ କରୁ ହଠାତ୍ ଏପରି ଏକ ଅବସ୍ଥା ଆସି ପହଞ୍ଚି ଯାଏ ଯେ ପୁଣି ଜମି ଅନୁର୍ବରତା ପ୍ରାପ୍ତ ହୁଏ । ସାର,ଜଳ, ବିହନ, ଦେଇ ଯେତେ ଯତ୍ନ କଲେ ମଧ ମହାନ ଶକ୍ତିଶାଳୀ ବିହନ ମଧ ନଷ୍ଟ ହୋଇଥାଏ । ମନୁଷ୍ୟର ଦେହ ମଧ ଏକ କୃଷି କ୍ଷେତ୍ର । କାମନା, ବାସନାର ବୀଜ ବୁଣି ସୁଖ-ଦୁଃଖ ରୂପକ ଫସଲ କରିବା ପରମେଶ୍ୱର ବ୍ୟବସ୍ଥା କରିଛନ୍ତି । ସୁଖ-ଦୁଃଖରୁ ଉପରକୁ ଉଠି ପ୍ରେମାନନ୍ଦ, ବ୍ରହ୍ମାନନ୍ଦ ସାଗରରେ ବୁଡ଼ବନ୍ ମାରିବା ବ୍ୟବସ୍ଥା ମଧ ସେ କରିଛନ୍ତି । ନିର୍ଗୁଣୀ ଭକ୍ତି ସେଇ ପ୍ରେମାନନ୍ଦ ଫସଲ ।

ପ୍ରଶ୍ନ-୩୧.ଦେହ ଧାରଣ କରି କାମନା ବାସନା ଭୋଗ କରି ଚାଲିଲେ କାମନା ବାସନାର ବୃଦ୍ଧିହୁଏ ବୋଲି ଶାସ୍ତ୍ର ବର୍ଣ୍ଣନା କରିଛନ୍ତି ତେବେ କାହିଁକି ?

**ଏବଂ କାମ-ଆଶୟଂ ଚିତ୍ତଂ କାମାନଂ ଅତିସେବୟା ।**
**ବିରଜ୍ୟେତ ଯଥା ରାଜନ୍ ଅଗ୍ନିବତ୍ କାମ ବିନ୍ଦୁଭିଃ ।।୩୪।।**

ଉ.ଶାସ୍ତ୍ରଙ୍କର ଏ ଭଳି ବର୍ଣ୍ଣନାରେ ଏକ ରହସ୍ୟ ଗୁପ୍ତ ରଖାଯାଇଛି । ଅଗ୍ନିରେ ଘୃତ ଢ଼ାଳିରେ ଅଗ୍ନିର ଶିଖା ନ କମି ବୃଦ୍ଧି ପାଇବା ଲେଖାଯାଇଛି । ଏହା ତ ବିଲକୁଲ୍ ଠିକ୍ କଥା କିନ୍ତୁ ବିନ୍ଦୁ ବିନ୍ଦୁ ଘୃତ ଢ଼ାଳିରେ ଅଗ୍ନିର ଶିଖା ସିନା ବୃଦ୍ଧି ହୁଏ ଏକାବେଳେ ଘୃତ ପାତ୍ରରୁ ସବୁତକ ଘୃତ ଢ଼ାଳିଦେଲେ ଅଗ୍ନି ଶିଖା ସମାପ୍ତ ହୋଇଯାଏ । ସେଥିପାଇଁ କୁହାଯାଏ ଦୀପ ଶିଖା ଲିଭିବା ପୂର୍ବରୁ ଜୋର୍‌ରେ ଜଳେ ।

ପ୍ରଶ୍ନ-୩୨. ପୂର୍ବ ବର୍ଣ୍ଣିତ ଚାରି ବର୍ଣ୍ଣ ଓ ଦୁଇ ଜାତି(ଅନ୍ତ୍ୟଜ ଓ ଅନ୍ତେ୍ୟବସାୟୀ) ଏଇ ଛଅ ପ୍ରକାର ଲୋକଙ୍କୁ ସମାଜରେ କିପରି ଚିହ୍ନି ହେବ ବର୍ଣ୍ଣ ଲକ୍ଷଣରୁ ନା ଜାତି (କୁଳ) ଜନ୍ମକୁ କେନ୍ଦ୍ର କରି ?

**ଯସ୍ୟ ଯତ୍ ଲକ୍ଷଣଂ ପ୍ରୋକ୍ତଂ ପୁଂସୋ ବର୍ଣ୍ଣ-ଅଭିବ୍ୟଞ୍ଜକମ୍ ।**
**ଯତ୍ ଅନ୍ୟତ୍ର ଅପି ଦୃଶ୍ୟେତ ତତ୍ ତେନ-ଏବ ବିନିର୍ଦ୍ଦିଶେତ୍ ।।୩୫।।**

ଉ. ହଠାତ୍ ଲୋକର ବାହ୍ୟ ପରିଚୟ ଜାଣିବା ପାଇଁ ନାମରେ ସଂଜ୍ଞା ଯୋଡ଼ାଯିବାର ବ୍ୟବସ୍ଥା ହୋଇଛି । ମିଶ୍ର, ଦ୍ୱିବେଦୀ, ସିଂହ, ଶ୍ରେଷ୍ଠୀ, ଦାସ ଇତ୍ୟାଦିରୁ କୁଳ, ବଂଶ, ଜାତିର ପରିଚୟ ଜଣାଯାଏ ଅବଶ୍ୟ କିନ୍ତୁ ଅସଲି ପରିଚୟ ଜଣା ପଡ଼େ ତାର ସ୍ୱଭାବଗତ ଲକ୍ଷଣରୁ । ତାର ଖାଦ୍ୟ ଗ୍ରହଣ , ଆଚରଣ ଓ ବ୍ୟବହାରରୁ ।

# ଅଥ ୧୨ଶ ଅଧ୍ୟାୟଃ

## (ବ୍ରହ୍ମଚର୍ଯ୍ୟ ଓ ବାନପ୍ରସ୍ଥ ଆଶ୍ରମ ଜୀବନ)

### ନାରଦ ଉବାଚ

ପ୍ରଶ୍ନ-୩୩.ଗୁରୁକୁଳ ଆଶ୍ରମରେ ରହି ଗୁରୁଙ୍କ ପ୍ରସନତା ପାଇଁ ବ୍ରହ୍ମଚାରୀ କର୍ମ କରିବ । ଗୁରୁଙ୍କ ଆଦେଶରେ ସାୟଂ ପ୍ରାତଃ ଉଭୟ ସଂଧ୍ୟାରେ ଗୁରୁ-ଅଗ୍ନି-ସୂର୍ଯ୍ୟ-ବିଷ୍ଣୁଙ୍କୁ ପୂଜନ କରିବ । ତାଙ୍କୁ ପ୍ରତିଦିନ ନମସ୍କାର କରି ତାଙ୍କ ଆଦେଶରେ ବେଦ ମନ୍ତ୍ର ଉଚାରଣ କରିବ ଓ ଶେଷରେ ମଧ ଗୁରୁ ଦେବଙ୍କୁ ନମସ୍କାର କରିବ ।

କେଉଁ କେଉଁ ବାହ୍ୟ ଲକ୍ଷଣ ଦେଖି ଜଣକୁ ବ୍ରହ୍ମଚାରୀ ବୋଲି ଚିହ୍ନିହେବ ?

**ମେଖଳା-ଅଜିନ ବାସାଂସି ଜଟା ଦଣ୍ଡ କମଣ୍ଡଳୂନ୍ ।**
**ବିଭୃୟାତ୍ ଉପବୀତଂଚ ଦର୍ଭପାଣି ଯଥା-ଉଦିତମ୍ ।।୪।।**

ଉ.ପିନ୍ଧିଥିବା ମୁଞ୍ଜ ମେଖଳା, ମୃଗ ଚର୍ମ, ବସ୍ତ୍ରରୁ ଓ ଧାରଣ କରିଥିବା ଶିଖାଯୁକ୍ତ ଲଣ୍ଡିତ ମୁଣ୍ଡ, ଦଣ୍ଡ, କମଣ୍ଡଳୁ, ଉପବୀତ (ସୂତ୍ର) ଓ ହସ୍ତ ସ୍ଥିତ କୁଶ ବିଡ଼ା ଦେଖି ଜାଣି ହେବ । ଏକଥା ଶାସ୍ତ୍ରରେ ବର୍ଣ୍ଣିତ ଅଛି (ଯଥା-ଉଦିତମ୍) ।

ପ୍ରଶ୍ନ-୩୪. ବ୍ରହ୍ମଚାରୀ ପାଇଁ ସ୍ତ୍ରୀସଙ୍ଗ ଓ ସ୍ତ୍ରୀସଙ୍ଗୀ ସଙ୍ଗ ଉଭୟ ସର୍ବାଦୌ ବର୍ଜନୀୟ । ଅନ୍ୟ କେଉଁ କେଉଁ କଥା କରିବନି ବ୍ରହ୍ମଚାରୀ ?

**ଅଞ୍ଜନ-ଅଭ୍ୟଞ୍ଜନ-ଉନ୍ମର୍ଦ୍ଦ ସ୍ତ୍ରୀ ଅବଲେଖ-ଆମିଷଂ ମଧୁ ।**
**ସ୍ରକ୍ ଗନ୍ଧ ଲେପ-ଅଲଂକାରାନ୍ ତ୍ୟଜେୟୁଃ ଯେ ବୃହତ୍ ବ୍ରତାଃ ।।୧୨।।**

ଉ. ବ୍ରହ୍ମଚାରୀ ଦୁଇ ପ୍ରକାର । କର୍ଦ୍ଦମ-ମନୁ ବଶିଷ୍ଠ ଆଦିଙ୍କ ଭଳି ସାଧକ ମାନେ ବ୍ରହ୍ମଚାରୀ ଆଶ୍ରମ ପରେ ଗୃହସ୍ଥାଶ୍ରମରେ ପ୍ରବେଶ କରିବାର ଆଦର୍ଶ ସ୍ଥାପନ କରିଛନ୍ତି । ଏମାନଙ୍କୁ ଶାସ୍ତ୍ର ଉପକୁର୍ବାଣ ବ୍ରହ୍ମଚାରୀ କହନ୍ତି ।

ଅନ୍ୟ ପକ୍ଷରେ ଆଦି ଶଙ୍କର ଆଚାର୍ଯ୍ୟ ଓ ଶୃଙ୍ଗେରୀ ମଠର ମଠାଧୀଶଙ୍କ ଭଳି ବ୍ରହ୍ମଚାରୀ ମାନେ ଗୃହସ୍ଥାଶ୍ରମରେ ନ ପଶି ସିଧା ସଳଖ ବାନପ୍ରସ୍ଥ ଓ ସନ୍ନ୍ୟାସରେ ପ୍ରବେଶ କରିବା ଆଦର୍ଶ ସ୍ଥାପନ କରନ୍ତି ଏମାନଙ୍କୁ ବୃହତ୍ ବ୍ରତ ବ୍ରହ୍ମଚାରୀ କୁହାଯାଏ ।

ଏମାନେ ଚକ୍ଷୁରେ ଅଞ୍ଜନ ଲଗାଇବା, ଶିର ମାଲିସ୍ (ଅଭ୍ୟଞ୍ଜନ) ହାତ ଗୋଡ଼ ମାଲିସ୍ କରାଇବା (ଉନ୍ମର୍ଦ୍ଦ) ସ୍ତ୍ରୀମୁଖ ଦର୍ଶନ କରିବା (ସ୍ତ୍ରୀ-ଅବଲେଖ) ମାଂସାହାର, ମଦ୍ୟପାନ, ଫୁଲମାଳ ପିନ୍ଧିବା (ସ୍ରକ୍) ଗନ୍ଧ (ସ୍ନୋ-ପାଉଡ଼ର) ଲଗାଇବା ଅଳଂକାର ପିନ୍ଧିବା ନିଶ୍ଚିତ ତ୍ୟାଗ କରିଦେବା ଉଚିତ୍ ।

ବ୍ରହ୍ମଚର୍ଯ୍ୟ ଆଶ୍ରମ ଶେଷରେ (ବ୍ରହ୍ମାନୁଭୂତି/ଆତ୍ମାନୁଭୂତି) ପରେ ଗୁରୁଦେବଙ୍କୁ ଯଥା ଶକ୍ତି ଦକ୍ଷିଣା ପ୍ରଦାନ କରି ତାଙ୍କ ଉପଦେଶ ମାନି ଗୃହସ୍ଥାଶ୍ରମ କିମ୍ବା ବାନପ୍ରସ୍ଥାଶ୍ରମରେ ପ୍ରବେଶ କରିବାକୁ ହୁଏ ସାଧକଙ୍କୁ ।

ପ୍ରଶ୍ନ-୩୫. ବାନପ୍ରସ୍ଥୀ ଲୋକ ଅଗ୍ନିଙ୍କୁ ସାଇତିବାକୁ କୁଟୀରଟିଏ ନିର୍ମାଣ କରିବ ନଚେତ ପର୍ବତ ଗୁମ୍ଫାରେ ରହିବ । ଶୀତ, ବର୍ଷା ଗ୍ରୀଷ୍ମ ତାପ ସହର୍ଷ ସହିବାକୁ ଅଭ୍ୟାସ କରିବ । ଆଠ ମାସ ବନ-ଜଙ୍ଗଲରେ ରହି ଶ୍ରାବଣ-ଭାଦ୍ର-ଆଶ୍ୱିନ-କାର୍ତ୍ତିକ ଚତୁର୍ମାସରେ ଗାଁ ଗଣ୍ଡାରେ ଆସି ଲୋକଙ୍କୁ ହରି କଥା ଶୁଣାଇ ସେମାନଙ୍କ ଠାରୁ ଅନ୍ନ ବସ୍ତ୍ର ଗ୍ରହଣ କରି ଗ୍ରାମ ବାହାରେ ମଠ ମନ୍ଦିରରେ ଜୀବନ କାଟିବ ।

ବାନପ୍ରସ୍ଥୀ ଲୋକର କି ଲକ୍ଷଣ ଦେଖି ତାକୁ ସମାଜ ଚିହ୍ନିପାରିବ ?

**କେଶ ରୋମ ନଖ ଶ୍ମଶ୍ରୁ ମଳାନି ଜଟିଳୋ ଦଧତ୍ ।**
**କମଣ୍ଡଳୁ-ଅଜିନେ ଦଣ୍ଡ ବଲ୍‌କଳ-ଅଗ୍ନି ପରିଚ୍ଛଦାନ୍ ॥୨୧॥**

ଉ.କେଶ ନ କାଟିବା, ଦାଢ଼ି ନିଶ ନ କାଟିବା, ନଖ ନ କାଟିବା, ଦେହର ଧୂଳି ମଳିକୁ ସାବୁନ ଇତ୍ୟାଦି ସୌଖୀନ ଦ୍ରବ୍ୟରେ ସଫା' ନ କରିବା, ଜଟା ବଢ଼ାଇବା କମଣ୍ଡଳୁ, ମୃଗଚର୍ମ, ଦଣ୍ଡ, ବୃକ୍ଷର ଛାଲ କିମ୍ବା ଅଗ୍ନି ସଦୃଶ ଲାଲ କିମ୍ବା ଗେରୁଆ ବସ୍ତ୍ର ଧାରଣ ଲକ୍ଷଣରୁ ବାନପ୍ରସ୍ଥୀକୁ ଚିହ୍ନିହେବ ।

ପ୍ରଶ୍ନ-୩୬. ଏକ ବର୍ଷ ଠାରୁ ବାର ବର୍ଷ ପର୍ଯ୍ୟନ୍ତ ଏହି ଆଶ୍ରମରେ କଟାଇବାକୁ ହୁଏ । ଏହି ବାନପ୍ରସ୍ଥ ଆଶ୍ରମରେ କି ଭଳି ସାଧନା କରିବାକୁ ହୁଏ ?

**ମନୋ ମନୋରଥୈଃ ଚନ୍ଦ୍ରେ ବୁଦ୍ଧିଂ ବୋଧ୍ୟୈଃ କବୌ ପରେ ।**
**କର୍ମାଣି-ଅଧ୍ୟାତ୍ମନା ରୁଦ୍ରେ ଯତ୍ ଅହଂ ମମତା କ୍ରିୟା ॥୨୯॥**

ଉ.ସାଧକ ମାନସିକ ଏକାଗ୍ରତା ଦ୍ୱାରା ଓଁକାର ଜପ କରି କରି ତାର ଅର୍ଥ ଚିନ୍ତନ କରି କରି ମନକୁ ଚନ୍ଦ୍ର ଦେବଙ୍କ ଠାରେ, ବୁଦ୍ଧିକୁ ବ୍ରହ୍ମାଜୀଙ୍କ ଠାରେ, ଅହଂକାରକୁ ରୁଦ୍ରଦେବଙ୍କ ଠାରେ ଓ ଚେତନ (ଚିତ୍ତ) କୁ ପରବ୍ରହ୍ମଙ୍କ ଠାରେ ଲୀନ କରିଦେବ ।

ପ୍ରଶ୍ନ-୩୭. ଏହି ବାନପ୍ରସ୍ଥାଶ୍ରମ ଶେଷରେ କେଉଁ ଲକ୍ଷ୍ୟ ପ୍ରାପ୍ତି ହେବ ?

**ଇତି ଅକ୍ଷରତୟା-ଆତ୍ମାନଂ ଚିନ୍ମାତ୍ରଂ ଅବଶେଷିତମ୍ ।**
**ଜ୍ଞାତ୍ୱା-ଅଦ୍ୱୟୋଽଥ ବିରମେତ୍ ଦଗ୍ଧ ଯୋନିଃଇବ-ଅନଳଃ ॥୩୧॥**

ଉ.ଶୁଦ୍ଧ ଚେତନା ଦ୍ୱାରା ଶରୀର ସ୍ଥିତ ପଞ୍ଚଭୂତ ସଂସାର ସ୍ଥିତ ପଞ୍ଚମହାଭୂତକୁ ଫେରିଯିବେ । ସାଧକର ଆତ୍ମା ନିଜ ଶରୀର-ସଂସାର ସଂପୂର୍ଣ୍ଣ ଆତ୍ମବିସ୍ମୃତ ହୋଇଯିବ । ଅତଏବ ନିଜ ଅନ୍ତର ମଧ୍ୟସ୍ଥ ଆତ୍ମା ବାହାରେ ଥିବା ପରମାତ୍ମାଙ୍କ ସହିତ ଏକ ବୋଲି ଅନୁଭବ ହୋଇଯିବ । ଯାହାକୁ ଜ୍ଞାନ ମାର୍ଗରେ ବ୍ରହ୍ମାନୁଭବ ବା ତତ୍ତ୍ୱଦର୍ଶନ ବା ଅଦ୍ୱୟଜ୍ଞାନ ବା ପରମହଂସତ୍ୱ ପ୍ରାପ୍ତି ଆଦି କୁହାଯାଏ ।

# ଅଥ ୧୩ଶ ଅଧ୍ୟାୟଃ

## (ସନ୍ନ୍ୟାସ ଆଶ୍ରମ ଧର୍ମ ପାଳନର ଏକ ସୁନ୍ଦର ଉଦାହରଣ)

ପ୍ରଶ୍ନ-୩୮. ପରହଂସ ଅବସ୍ଥାରେ ପହଞ୍ଚିଲେ ବାନପ୍ରସ୍ଥୀ ଲୋକ ସନ୍ନ୍ୟାସ ଆଶ୍ରମକୁ ଉନ୍ନୀତ ହୁଏ । ସନ୍ନ୍ୟାସୀ ପାଇଁ ତାର ପୂର୍ବାଶ୍ରମର କୁଟୀର କିମ୍ବା ଗୁମ୍ଫାରେ ରହିବା ବିଧେୟ ନୁହେଁ କି ?

ନାରଦ ଉବାଚ

**କଳ୍ପଃ ତୁ-ଏବଂ ପରିବ୍ରଜ୍ୟ ଦେହ ମାତ୍ର-ଅବଶେଷିତଃ ।**
**ଗ୍ରାମ-ଏକ ରାତ୍ର ବିଧିନା ନିରପେକ୍ଷଃ ଚରେତ୍ ମହୀମ୍ ॥୧॥**

ଉ. ସନ୍ୟାସୀର କୌଣସି ନିର୍ଦ୍ଧିଷ୍ଟ ଗୃହ ରହିବା ଅନୁଚିତ୍ । ସାରା ପୃଥିବୀ ତା ପାଇଁ ନିଜ ଗୃହ । ପରମାର୍ଥ, ଅନ୍ୟର କଲ୍ୟାଣ ଚିନ୍ତନ ପାଇଁ ତାର ଦେହ ରକ୍ଷଣ ଆବଶ୍ୟକ । ଗୋଟିଏ ଗ୍ରାମରେ ଗୋଟିଏ ରାତ୍ରି ସେ ରହିପାରବେ । ଚଳତା ସାଧୁ, ବହତା ପାନି ଭଲା । ସେ କୌଣସି ବସ୍ତୁ, ବ୍ୟକ୍ତି, ସ୍ଥାନରୁ କିଛି ଚାହିଁବା ଅନୁଚିତ୍ (ନିରପେକ୍ଷ) ।

ପ୍ରଶ୍ନ- ୩୯ ଜଣେ ପରମହଂସ ସନ୍ୟାସୀ ଦଣ୍ଡ, କମଣ୍ଡଳୁ ଓ ବସ୍ତ୍ରକୁ କଅଣ କରିବ ?

**ବିଭୃୟାତ୍ ଯତ୍ ଅସୌ ବାସଃ କୌପୀନ- ଆଚ୍ଛାଦନଂ ପରମ୍ ।**
**ତ୍ୟକ୍ତଂ ନ ଲିଙ୍ଗାତ୍ ଦଣ୍ଡ- ଆଦେଃ ଅନ୍ୟତ୍ କିଂଚିତ୍ ଅନାପଦି ॥୨॥**

ଉ- ସେ ଜଙ୍ଗଲରେ ବୁଲିବା ବେଳେ ନିର୍ବସ୍ତ୍ର ରହିବ । ସଂସାରରେ ବୁଲିବା ବେଳେ କୌପୀନ, ବଲ୍‌କଳ ବଳ ଆଦି ଧାରଣ କରି ଉପସ୍ଥ ଅଙ୍ଗକୁ ଆଚ୍ଛାଦନ କରିବ । ଦେହକୁ ନୁହେଁ । ଖରାରେ ବର୍ଷାରେ, ଶୀତରେ ମଧ ନୁହେଁ । କିଛିଦିନ ପାଇଁ ଦଣ୍ଡ କମଣ୍ଡଳୁ ଧାରଣ କରାଯାଇ ପାରେ । ଏହା ଛଡ଼ା ଅନ୍ୟ କିଛି ପାଖରେ ରଖିବା ଉଚିତ୍ ନୁହେଁ ।

ପ୍ରଶ୍ନ-୪୦.ସନ୍ନ୍ୟାସୀ ସାଙ୍ଗରେ ଚେଲା କି ଶିଷ୍ୟ ଧରି ବୁଲି ପାରିବ କି ?

**ଏକ ଏବ ଚରେତ୍ ଭିକ୍ଷୁଃ ଆତ୍ମାରାମୋଽନପାଶ୍ରୟଃ ।**
**ସର୍ବଭୂତ୍ ସୁହୃତ୍ ଶାନ୍ତୋ ନାରାୟଣ ପରାୟଣଃ ॥୩॥**

ଉ.ନା, ନା ସେ ସକଳ ପ୍ରାଣୀ ହିତୈଷୀ, ଶାନ୍ତ, ଭଗବତ୍ ପରାୟଣ ହୋଇ ଏକାକୀ ବୁଲିବ । ଚେଲା ଶିଷ୍ୟ, ସେବକଙ୍କ ଆଶ୍ରୟ ଆଦୌ ଗ୍ରହଣ କରିବ ନାହିଁ । ଭିକ୍ଷାନ୍ନ ମାଗି ଚଳିବ । ଚାଉଳ ମାଗି ରୋଷେଇ କରି ଖାଇବା ମଧ ମନା । ଫଳ, ମୂଳ, ଦୁଧ ଆଦି ସିଧା ସଳଖ ଖିଆଯାଇ ପାରୁଥିବା ଖାଦ୍ୟରେ କ୍ଷୁଧାତୃଷ୍ଣା ମେଣ୍ଟାଇବାରେ ଶାସ୍ତ୍ର ଆପତ୍ତି କରନ୍ତି ନାହିଁ ।

ପ୍ରଶ୍ନ-୪୧. ପରିବ୍ରାଜକ ସନ୍ନ୍ୟାସୀ କି ଦୃଷ୍ଟିରେ ସଂସାରକୁ ଦର୍ଶନ କରିବେ ?

**ପଶ୍ୟେତ-ଆତ୍ମନି-ଅନ୍ୟଦୋ ବିଶ୍ୱଂ ପରେ ସତ୍‌ଅସତୋଽବ୍ୟୟେ ।**
**ଆତ୍ମାନଂ ଚ ପରଂ ବ୍ରହ୍ମ ସର୍ବତ୍ର ସତ୍-ଅସତ୍ ମୟେ ॥୪॥**

ଉ.ଦୃଶ୍ୟ-ଅଦୃଶ୍ୟ କାର୍ଯ୍ୟ-କାରଣରୁ ଅତୀତ (ପରେ) ପରମାତ୍ମାଙ୍କୁ ସକଳ ବସ୍ତୁ-ବ୍ୟକ୍ତି-ପରିସ୍ଥିତିରେ ଭାବନା କରିବେ । ଅନ୍ୟ ଶବ୍ଦରେ ସ୍ୱ ଅନ୍ତରରେ ସମସ୍ତଙ୍କୁ ଓ ସମସ୍ତଙ୍କ ଅନ୍ତର ମଧରେ ନିଜ ଆତ୍ମାକୁ ଦର୍ଶନ କରିବେ । ସେତେବେଳେ ଆଉ ନାମ-ରୂପ ମୟ ଜଗତ ଦର୍ଶନ ହେବନି । କେବଳ ଜଗନ୍ନାଥ ଦର୍ଶନ ହେବେ ।

ପ୍ରଶ୍ନ-୪୨. ଆତ୍ମାରାମ ପରମହଂସ ସନ୍ନ୍ୟାସୀ ସଂସାର ବନ୍ଧନ ଓ ସଂସାରରୁ ମୁକ୍ତିକୁ କି ଦୃଷ୍ଟିରେ ଦେଖିଥାନ୍ତି ?

**ସୁପ୍ତ ପ୍ରବୋଧୟୋଃ ସନ୍ଧୌ ଆତ୍ମନୋ ଗତିଂ ଆତ୍ମଦୃକ୍ ।**
**ପଶ୍ୟନ୍ ବନ୍ଧଂ ଚ ମୋକ୍ଷଂ ଚ ମାୟା ମାତ୍ରଂ ନ ବସ୍ତୁତଃ ॥୫॥**

ଉ.ଶୟନ-ଜାଗରଣ ଓ ଉଭୟର ସନ୍ଧି ସ୍ୱପ୍ନ ଚେତନା ତାଙ୍କପାଇଁ ଏକାକାର ହେଉଥିବାରୁ ତାଙ୍କ ପାଇଁ ବନ୍ଧନ ଓ ମୁକ୍ତି ଉଭୟ ମିଥ୍ୟା ପ୍ରମାଣିତ ହୋଇଥାଏ ।

ସଂସାରରୁ ସେ ସୁଖ ଆଶା କରୁଥିବାରୁ ସଂସାର ଆସକ୍ତିରେ ସେ ବାନ୍ଧି ହେଉଥିଲେ । ସନ୍ନ୍ୟାସୀ ଭାବରେ ସେ ଆଶା ସଂପୂର୍ଣ୍ଣ ତ୍ୟାଗ କରି ସାରିଥିବାରୁ ବନ୍ଧନ କେଉଁଠି ଅଛି ଯେ' ସେ ସେଥିରୁ ମୁକ୍ତ ହେବାକୁ ଚେଷ୍ଟା କରିବେ ?

ପ୍ରଶ୍ନ-୪୩. ଏଭଳି ଦୁଃଖ କଷ୍ଟମୟ ଜୀବନ ବଦଳରେ ସନ୍ନ୍ୟାସୀ ମୃତ୍ୟୁକୁ ଶ୍ରେୟ ମନେ କରନ୍ତି କି ?

**ନ-ଅଭିନନ୍ଦେତ୍ ଧ୍ରୁବଂ ମୃତ୍ୟୁଂ ଅଧ୍ରୁବଂ ବା-ଅସ୍ୟ ଜୀବିତମ୍ ।**
**କାଳଂ ପରଂ ପ୍ରତୀକ୍ଷେତ ଭୂତାନାଂ ପ୍ରଭବ-ଅପ୍ୟୟମ୍ ।।୬।।**

ଉ. ନା, ମୃତ୍ୟୁଙ୍କୁ ନିମନ୍ତ୍ରଣ କରିବା କି ଦରକାର ? ମନୁଷ୍ୟ ମଲେ ଜନ୍ମ ହେବ କି ନ ହେବ ଅନିଶ୍ଚିତ କିନ୍ତୁ ଏ ଦେହ ତ ନିଶ୍ଚୟ ଦିନେ ନା ଦିନେ ମରିବ । (ଅଦ୍ୟ ବା ଅଦ୍ଧ ଶତାନ୍ତେ ବା) । ଆଜି ହେଉ କି ଶହେ ବର୍ଷ ପରେ ହେଉ ।

ପରମହଂସ ସନ୍ନ୍ୟାସୀ ମୃତ୍ୟୁ କିମ୍ବା ଜୀବନ କୌଣସିଟିକୁ ହେଲେ ଚାହିଁବା ଅନୁଚିତ୍ । ପ୍ରାରବ୍ଧର ସୁଖ-ଦୁଃଖ ସେ ସହର୍ଷ ଭୋଗ କରି ଚାଲିବ । ଯେଉଁ ମହାକାଳ ଜୀବଙ୍କୁ ଜନ୍ମ-ମରଣ (ପ୍ରଭବ-ଅପ୍ୟୟ) ପ୍ରଦାନ କରନ୍ତି ତାଙ୍କର ପ୍ରତୀକ୍ଷା ମାତ୍ର କରୁଥିବ । ସ୍ୱାଗତ କିମ୍ବା ଅନାଦର ନୁହେଁ । ଉଭୟରେ ବିପଦ । ପ୍ରାରବ୍ଧ ସୁଖ-ଦୁଃଖ ବୋଧରେ ହୁଏତ ବାଧା ଆସିପାରେ ।

ପ୍ରଶ୍ନ-୪୪. ସନ୍ନ୍ୟାସୀ ଆଧ୍ୟାତ୍ମ ଶାସ୍ତ୍ର ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥ ପଢ଼ିବ ନାହିଁ । କୌଣସି ପ୍ରକାର ଜୀବିକା ଉପାର୍ଜନ ମୂଳକ ବୃତ୍ତି-ଚାକିରୀ ଆଦି ନ କରି ଭିକ୍ଷାନ୍ନରେ ଚଳିବ । ତର୍କ-ବିତର୍କ-ବିବାଦଠାରୁ ସର୍ବଦା ଦୂରରେ ରହିବ । ବେଶୀ ଗୁଡ଼ାଏ ଗ୍ରନ୍ଥ ପଠନ ପାଠନ କରିବ ନାହିଁ । ଶିଷ୍ୟଙ୍କ ଚକ୍କରରେ ପଡ଼ିବନି । ମଠ, ମନ୍ଦିର, ସ୍କୁଲ, କଲେଜ, ଧର୍ମଶାଳା ବା ହାସ୍ପାତାଳ ଆଦି ତିଆରିରେ ମାତିବ ନାହିଁ । ସମଦର୍ଶୀ ଆତ୍ମାରାମ ସନ୍ନ୍ୟାସୀ ସନ୍ନ୍ୟାସର ଚିହ୍ନ ଦଣ୍ଡ-କମଣ୍ଡଲୁ-ଶିଖା-ସୂତ୍ର ଆଦି ଧାରଣ କରିବ କି ନାହିଁ ?

**ନ ଯତେଃ ଆଶ୍ରମଃ ପ୍ରାୟୋ ଧର୍ମ ହେତୁଃ ମହାତ୍ମନଃ ।**
**ଶାନ୍ତସ୍ୟ ସମଚିତ୍ତସ୍ୟ ବିଭୃୟାତ୍ ଉତ ବା ତ୍ୟଜେତ୍ ।।୯।।**

ଉ. ସେ ସବୁ ଧାରଣ କରିବା ତାର ଇଚ୍ଛାଧୀନ । କେତେବେଳେ ସେ ଧାରଣ କରିପାରେ (ବିଭୃୟାତ୍ )ପୁଣି କେତେବେଳେ ନ କରିପାରେ ।

ପ୍ରଶ୍ନ-୪୫. ପରମ ହଂସ ଅବଧୂତ ସନ୍ୟାସୀଙ୍କର ସଂସାର ବ୍ୟବହାର କେମିତି ହୁଏ ?

**ଅବ୍ୟକ୍ତୋ ଲିଙ୍ଗୋ ବ୍ୟକ୍ତ-ଅର୍ଥୋ ମନୀଷୀ-ଉନ୍ମତ୍ତ-ବାଳବତ୍ ।**
**କବିଃ ମୂକବତ୍ ଆତ୍ମାନଂ ଦୃଷ୍ଟ୍ୟା ଦର୍ଶୟେତ୍ ନୃଣାମ୍ ।।୧୦।।**

ଉ. ସେ ସନ୍ନ୍ୟାସ ଚିହ୍ନକୁ ଗୋପନ ରଖିବ । ନିଜର ପ୍ରୟୋଜନ ବା ଲକ୍ଷ୍ୟ ଗୁଡ଼ିକ କେବଳ ପ୍ରକଟ କରୁଥିବ । ମହାଜ୍ଞାନୀ ହୋଇ ମଧ ଅଜ୍ଞାନୀ, ମୂର୍ଖ, ବାଳକ ଭଳି ଚଳିବ । ବ୍ରହ୍ମତତ୍ତ୍ୱବିତ୍ ହୋଇ ମଧ ମୂକ ରହୁଥିବ ଠିକ ଜଡ଼ଭରତଙ୍କ ଭଳି ।

ପ୍ରଶ୍ନ-୪୬. ନାରଦଜୀ କହିଲେ, 'ହେ' ଯୁଧିଷ୍ଠିର ! ଏଭଳି ଜଣେ ଅବଧୂତ ସନ୍ନ୍ୟାସୀଙ୍କ ସହିତ ଥରେ ମହାଭାଗବତ ପ୍ରହ୍ଲାଜୀଙ୍କ ନିଘୋଡ଼ ଜଙ୍ଗଲରେ ଭେଟ ହୋଇଥିବାର ଦୃଷ୍ଟାନ୍ତ ଅଛି ।' ସେ ସନ୍ନ୍ୟାସୀ ଜଣକ କିଏ ଓ ସେ କାହିଁକି ଜଙ୍ଗଲ ମଧରେ ଅଜଗର ଭଳି ଭୂଇଁରେ ଲୋଟୁଥିଲେ ?

**ତଂ ଶୟାନଂ ଧରା-ଉପସ୍ଥେ କାବେର୍ଯ୍ୟାଂ ସହ୍ୟ ସାନୁନି ।**
**ରଜସ୍ୱଲୈଃ ତନୂ-ଦେଶୈଃ ନିଗୁଢ଼-ଅମଳ ତେଜସମ୍ ।।୧୨।।**

ଉ.ସେ ଜଣକ ଆଉ କେହି ନୁହନ୍ତି । ମହାମୁନି ଅତ୍ରି ମହାସତୀ ଅନସୂୟାଙ୍କ ବିଷ୍ଣୁ ଅଂଶରେ ଜାତ ପୁତ୍ର ଦତ୍ତାତ୍ରେୟ । ଭଗବାନଙ୍କର ଏ ଅଦ୍ଭୁତ ଲୀଳା ବିଗ୍ରହ । ସଂସାରକୁ ସନ୍ନ୍ୟାସର ଆଦର୍ଶ ଶିକ୍ଷା ଦେବା ଲାଗି ସେ ଏ ଅବତାର ସ୍ୱୀକାର କରିଥିଲେ । ସହ୍ୟ ପର୍ବତରେ (ସାନୁନି)ପୁଣ୍ୟତୋୟା କାବେରୀ ନଦୀ କୂଳେ ଧୂଳି ଧୂସରିତ ଦେହରେ ଭୂଇଁରେ ଗଡୁଥିଲେ ଠିକ୍ ଅଜଗର ସାପଟିଏ ଭଳି । ତଥାପି ପ୍ରହ୍ଲାଦଜୀ ଦର୍ଶନ କଲେ ତାଙ୍କ ଅଧ୍ୟାତ୍ମ ଦୃଷ୍ଟିରେ ତାଙ୍କର ଆଚ୍ଛାଦିତ ଅଦ୍ୱିତୀୟ ବ୍ରହ୍ମତେଜକୁ ।

ପ୍ରଶ୍ନ-୪୭. କେଉଁ ଚିହ୍ନମାନ ଅନୁଧ୍ୟାନ କରି ପ୍ରହ୍ଲାଦଜୀ ତାଙ୍କୁ ସନ୍ନ୍ୟାସୀ ବୋଲି ଠଉରେଇ ପାରିଲେ ?

**କର୍ମଣାଽଽକୃତିଭିଃ ବାଚା ଲିଙ୍ଗୈଃ ବର୍ଣ୍ଣ-ଆଶ୍ରମ-ଆଦିଭିଃ ।**
**ନ ବିଦନ୍ତି ଜନା ଯଂ ବୈ ସୋଽସୌ ଇତି ନ ବେତି ଚ ।।୧୪।।**

ଉ.ତାଙ୍କ କର୍ମରୁ ଦେହର କୃଶତା ବା ପୁଷ୍ଟତାରୁ, ତାଙ୍କ ବାଣୀ ଶ୍ରବଣ କରି ସନ୍ନ୍ୟାସୀର ଦଣ୍ଡ-କମଣ୍ଡଳୁ-ଶିଖ୍ୟା-ସୂତ୍ର ନଥିବା ଲକ୍ଷଣରୁ ସାଧାରଣ ଲୋକେ ଭ୍ରମରେ

ପଡୁଥିଲେ । ଅଥଚ କେହି କେହି କହୁଥିଲେ-ହଁ ଏ ସେହି ଦତ୍ତ ଭଗବାନ ନିଶ୍ଚୟ । ପୁଣି କେହି କେହି କହୁଥାନ୍ତି-ଏ କଥା ସଂପୂର୍ଣ୍ଣ ଅସମ୍ଭବ । ଗୁଣ ଚିହ୍ନେ ଗୁଣିଆ । ପ୍ରହ୍ଲାଦଜୀ ସ୍ୱୟଂ ବ୍ରହ୍ମତେଜରେ ତେଜୀୟାନ ଥିବାରୁ ତାଙ୍କ ପକ୍ଷରେ ଦତ୍ତାତ୍ରେୟଙ୍କୁ ଚିହ୍ନିବାରେ ଆଦୌ କଷ୍ଟକର ହେଲାନି ।

ପ୍ରଶ୍ନ-୪୮.ପରମ ପ୍ରେମୀ ଭକ୍ତ ପ୍ରହ୍ଲାଦଜୀ ତାଙ୍କୁ ଚିହ୍ନିପାରି ତାଙ୍କ ପାଖକୁ ଗଲେ । ତାଙ୍କ ଚରଣ ସ୍ପର୍ଶ କରି ବିନମ୍ର ପ୍ରଣାମ ନିବେଦନ କଲେ । ସେ ଅବଧୂତଜୀଙ୍କ ଠାରେ କେଉଁ କେଉଁ ବିପରୀତ ଲକ୍ଷଣ ବିଦ୍ୟମାନତାରୁ କୌତୁହଳୀ ହୋଇ ତାଙ୍କୁ ପ୍ରଶ୍ନ କଲେ ?

**ବିତ୍ତଂ ଚ ଉଦ୍ୟମବତାଂ ଭୋଗୋ ବିତ୍ତବତାଂ ଇହ ।**
**ଭୋଗିନାଂ ଖଲୁ ଦେହୋଽୟଂ ପୀବା ଭବତି ନ-ଅନ୍ୟଥା ।।୧୭।।**

ଉ.ପ୍ରହ୍ଲାଦଜୀ ପ୍ରଶ୍ନ କଲେ, 'ହେ' ବ୍ରହ୍ମନ୍! ଉଦ୍‌ଯୋଗୀକୁ ଧନ ମିଳେ । ଧନକୁ ଭୋଗ କଲେ ହୃଷ୍ଟ-ପୁଷ୍ଟ (ପୀବା) ଦେହ ପ୍ରାପ୍ତି ହୁଏ । ଅଣ ଉଦ୍‌ଯୋଗୀ ଓ ଭୋଗ ବିମୁଖ ଲୋକକୁ ଆପଣଙ୍କ ଦେହ ଭଳି ଦେହ ମିଳିବା ଏକାନ୍ତ ଅସମ୍ଭବ । ଆପଣଙ୍କ ଠାରେ ଉଦ୍‌ଯୋଗ ଓ ଭୋଗର ଲକ୍ଷଣ କିଛି ଦୃଷ୍ଟ ହେଉ ନାହିଁ କିପରି ?

ମୁଁ ସ୍ପଷ୍ଟ ଜାଣିପାରୁଛି ସଂସାରୀ ଲୋକେ ବିଷୟଭୋଗ ଓ ଧନ ସଂଗ୍ରହରେ ବ୍ୟସ୍ତ । ଆପଣ କିନ୍ତୁ ଅନ୍ୟ ପ୍ରକାର ବିଚାର ଭାବନାଯୁକ୍ତ । ଅତ୍ୟନ୍ତ ବିଦ୍ୱାନ୍ ତୀକ୍ଷ୍ଣ ବୁଦ୍ଧିମାନ, ମଧୁର ବାଣୀ ସମ୍ପନ୍ନ ଓ ଦୁର୍ଲ୍ଲଭ ବ୍ରହ୍ମତେଜରେ ତେଜୀୟାନ । ମୁଁ ଯଦି ପ୍ରଶ୍ନର ଉତ୍ତର ଜାଣିବାରେ ଅଧିକାରୀ ତେବେ ଦୟାକରି ଉତ୍ତର ଦିଅନ୍ତୁ । ଯଦି ଅନଧିକାରୀ ତେବେ କ୍ଷମା କରିଦିଅନ୍ତୁ ।'

ପ୍ରଶ୍ନ-୪୯. ଦତ୍ତ ଭଗବାନ କ'ଣ ପ୍ରହ୍ଲାଦଜୀଙ୍କୁ ମୁହଁ ଖୋଲି ତାଙ୍କ ପ୍ରଶ୍ନର ଉତ୍ତର ଦେଲେ ?

ବ୍ରାହ୍ମଣ ଉବାଚ

**ବେଦ-ଇଦଂ ଅସୁର ଶ୍ରେଷ୍ଠ ଭବାନ୍ ନନୁ-ଆର୍ଯ୍ୟ ସମ୍ମତଃ ।**
**ଇହ-ଉପରମୟୋଃ ନୃଣାଂ ପଦାନି-ଅଧ୍ୟାତ୍ମ ଚକ୍ଷୁଷା ।।୨୧।।**

ଉ. ପ୍ରହ୍ଲାଦଜୀଙ୍କ ଭକ୍ତିର ପରିପକ୍ୱତା ତାଙ୍କୁ ଆଦୌ ଅଛପା ରହିପାରିଲାନି । ସେ ଉତ୍ତର ନଦେଇ ରହିପାରିବେ କେମିତି ? ସଙ୍ଗେ ସଙ୍ଗେ ସେ ପ୍ରହ୍ଲାଦଜୀଙ୍କୁ

ସେଭଳି ପ୍ରଶ୍ନ ପାଇଁ ଅସୁର ଶ୍ରେଷ୍ଠ ଓ ଆର୍ଯ୍ୟ ସମାଜ ସମ୍ମାନିତ ମହାପୁରୁଷ ବୋଲି ପ୍ରଶଂସା କଲେ । ପ୍ରଶ୍ନର ଉତ୍ତର କ୍ରମରେ ପ୍ରବୃତ୍ତି-ନିବୃତ୍ତି କାହିଁକି ହୁଏ ବୋଲି ପ୍ରହ୍ଲାଦ ବେଶ୍ ଭାବରେ ଜାଣନ୍ତି ବୋଲି କହିଲେ । କାରଣ ଦତ୍ତାତ୍ରେୟଜୀ ପ୍ରହ୍ଲାଦଜୀଙ୍କର ଅଧ୍ୟାତ୍ମ ଚକ୍ଷୁ/ତୃତୀୟ/ବିବେକ ଚକ୍ଷୁ ଉନ୍ମୀଳନ ହୋଇସାରିଥିବା ଜାଣି ସାରିଥାନ୍ତି ।

ପ୍ରଶ୍ନ-୫୦.ପ୍ରହ୍ଲାଦଜୀଙ୍କ ପ୍ରଶ୍ନ ସଂପୂର୍ଣ୍ଣ ଅଧ୍ୟାତ୍ମ ସମ୍ବନ୍ଧୀୟ ଥିଲା । ଦତ୍ତ ଭଗବାନ କ'ଣ ସେଇ ପ୍ରଶ୍ନର ଉତ୍ତର ନ ଦେଇ ମୌନ ରହିଗଲେ ?

**ଅଥ-ଅପି ବୂମହେ ପ୍ରଶ୍ନାନ୍ ତବ ରାଜନ୍ ଯଥାଶ୍ରୁତମ୍ ।**
**ସମ୍ଭାଷଣୀୟୋ ହି ଭବାନ୍ ଆତ୍ମନଃ ଶୁଦ୍ଧିଂ ଇଚ୍ଛତା ॥୨୩॥**

ଉ. ନା, ନା ଉତ୍ତର ନ ଦେଲେ ଅପରାଧ ହେବ ଯେ । ବରଂ ବିନମ୍ର ଭାବରେ କହିଲେ, 'ହେ' ଭକ୍ତରାଜ ପ୍ରଶ୍ନ-ଉତ୍ତରରେ ଆମ ଦୁହିଁଙ୍କର ଆତ୍ମଶୁଦ୍ଧି ହେବ । ଏ ବିଷୟରେ ମୁଁ ସନ୍ଥମାନଙ୍କ ମୁଖରୁ ଯେତିକି ଜାଣିଛି ବୁଝିଛି କହୁଛି ଶ୍ରବଣ କର ।'

ପ୍ରଶ୍ନ-୫୧. ଦତ୍ତାତ୍ରେୟଜୀ ଭଗବାନଙ୍କ ଅବତାର ଥିଲେ । ତଥାପି ଜଣେ ଜୀବ ହିସାବରେ ଅସରନ୍ତି କାମନା ପୂର୍ତ୍ତି ଲାଗି ଜୀବ କ'ଣ କରେ ବୋଲି କହିଲେ ?

**ତୃଷ୍ଣୟା ଭବବାହିନ୍ୟା ଯୋଗ୍ୟୈଃ କାମୈଃ ଅପୂର୍ଯ୍ୟୟା ।**
**କର୍ମାଣି କାର୍ଯ୍ୟମାଣୋଽହଂ ନାନା ଯୋନିଷୁ ଯୋଜିତଃ ॥୨୪॥**

ଉ. ଭଗବାନ କହିଲେ, 'ହେ, ପ୍ରହ୍ଲାଦଜୀ ! ବିଷୟ ତୃଷ୍ଣା ଏପରି ଏକ ବସ୍ତୁ ଯାହା ବିଷୟଭୋଗରେ ଶାନ୍ତ ହୁଏନା ବରଂ ଅଧିକରୁ ଅଧିକ ବୃଦ୍ଧିପାଏ । ସୁତରାଂ ମାୟା/ପ୍ରକୃତିର ତିନିଗୁଣରେ ମୋହିତ ହୋଇ ମୁଁ ଲୋକ-ଲୋକାନ୍ତର ଭ୍ରମଣ କରିସାରିଛି ଚଉରାଶି ଲକ୍ଷ ଯୋନି ଭ୍ରମଣ କରି କରି ।'

ପ୍ରଶ୍ନ-୫୨. ବର୍ତ୍ତମାନ ପ୍ରାପ୍ତ ମନୁଷ୍ୟ ଜନ୍ମ ଦତ୍ତାତ୍ରେୟଙ୍କର କେଉଁ ଉପକାରରେ ଲାଗିପାରେ ବୋଲି ପ୍ରକାଶ କଲେ ?

**ଯଦୃଚ୍ଛୟା ଲୋକଂଇମଂ ପ୍ରାପିତଃ କର୍ମଭିଃ ଭ୍ରମନ୍ ।**
**ସ୍ୱର୍ଗ-ଅପବର୍ଗୟୋଃ ଦ୍ୱାରଂ ତିରଶ୍ଚାନ୍ ପୁନଃ ଅସ୍ୟ ଚ ॥୨୫॥**

ଉ.ଏ ମନୁଷ୍ୟ ଦେହରେ ପୁଣି ପୁଣ୍ୟ କର୍ମ କରି ସ୍ୱର୍ଗଲୋକ, ପାପ କରି ନୀଚ ଯୋନିରେ ମର୍ତ୍ତ୍ୟ ଲୋକରେ ପଶୁ-ପକ୍ଷୀ (ତିରଶ୍ଚାନ୍) ଜନ୍ମ, ପାଞ୍ଚ ପ୍ରକାର ମୁକ୍ତି

ସହିତ ଭଗବତ ପ୍ରେମ ପ୍ରାପ୍ତି ଏଇ ମାନବ ଦେହରେ ଜଣେ ଲାଭ କରିପାରିବ ।

ପ୍ରଶ୍ନ-୫୩. ବେଦାନୁମୋଦିତ ସକାମ କର୍ମ ତ୍ୟାଗ କରି ନିବୃତ୍ତି ମାର୍ଗକୁ କାହିଁକି ପସନ୍ଦ କଲେ ଦତ୍ତାତ୍ରେୟଜୀ ?

**ତତ୍ରାପି ଦମ୍ପତୀନାଂ ଚ ସୁଖାୟ-ଅନ୍ୟ-ଅପନୁତ୍ତୟେ ।**
**କର୍ମାନ୍ କୁର୍ବତାଂ ଦୃଷ୍ଟ୍ୱା ନିବୃତ୍ତୋଽସ୍ମି ବିପର୍ଯ୍ୟୟମ୍ ॥୨୬॥**

ଉ.ସଂସାରରେ ଦେଖାଯାଉଛି ଯେ-ସ୍ତ୍ରୀ-ପୁରୁଷ ବୈଦିକ ମାର୍ଗରେ ବିବାହ କରି ଦାମ୍ପତ୍ୟ ଜୀବନ ନିର୍ବାହ କରି ସୁଖ ପ୍ରାପ୍ତି ଓ ଦୁଃଖ (ଅନ୍ୟ) ନିବୃତ୍ତି ନିମିତ୍ତ (ଅପନୁତ୍ତୟେ ) ସାରା ଜୀବନ ସକାମ କର୍ମ କରନ୍ତି । ଦେବୀ ଦେବତା ଭକ୍ତି କରି ଗଳଦ୍‌ଘର୍ମ ହୁଅନ୍ତି । ହେଲେ ଫଳ ମିଳେ ଓଲଟ । ଚାହିଁଲେ ମଧ୍ୟ ନିରନ୍ତର ସୁଖ ମିଳେନା କିମ୍ବା ଆଦୌ ନଚାହିଁଲେ ମଧ୍ୟ ଦୁଃଖରେ ଦୁହେଁ ଯାକ ଛଟ ପଟ ହୁଅନ୍ତି । ସୁତରାଂ ଆଧି-ଭୌତିକ ଓ ଆଧିଦୈବିକ ଉଭୟ କର୍ମଦ୍ୱାର ତାଙ୍କ ପାଇଁ ରୁଦ୍ଧ ହୋଇଗଲା (ବିପର୍ଯ୍ୟୟମ୍ )।

ପ୍ରଶ୍ନ-୫୪. ଆଧି ଭୌତିକ କର୍ମ ବନ୍ଦ କରନ୍ତେ ରାଗ-ଦ୍ୱେଷରୁ ମୁକ୍ତ ହୋଇ ବୁଦ୍ଧି ସ୍ଥିର ହେଲା । ଆଧି ଦୈବିକ କର୍ମ ବନ୍ଦ କରନ୍ତେ ଚଞ୍ଚଳ ମନ ମଧ୍ୟ ସ୍ଥିର ହୋଇଗଲା । ଆଉ ନୂଆ କର୍ମ ହେଉ ନଥିବାରୁ ସମସ୍ତ କ୍ରିୟମାଣ କର୍ମରୁ ଛୁଟୀ ମିଳିଲା । ତେବେ ଅଜଗର ଭଳି ମାଟି କାମୁଡ଼ି ଦୁଃଖ କଷ୍ଟରେ ଜୀବନ କଟାଇଲେ କି ଲାଭ ମିଳିବ ତାଙ୍କୁ ?

**ସୁଖଂ ଅସ୍ୟ-ଆତ୍ମନୋ ରୂପଂ ସର୍ବ-ଇହ-ଉପରତିଃ ତନୁଃ ।**
**ମନଃ ସଂସ୍ପର୍ଶଜାନ୍ ଦୃଷ୍ଟ୍ୱା ଭୋଗାନ୍ ସ୍ୱପ୍‌ସ୍ୟାମି ସଂବିଶନ୍ ॥୨୭॥**

ଉ.ପ୍ରାରବ୍ଧ ଭୋଗ ମଧ୍ୟ କଟିଯାଇ ପାପ-ପୁଣ୍ୟ ଉଭୟରୁ ମୁକ୍ତି ମିଳିପାରିବ । ଆତ୍ମ ସ୍ୱରୂପରେ ସାଧକ ଅବସ୍ଥାନ କରିବ । ଆତ୍ମା ସ୍ୱରୂପରେ ସତ୍-ଚିତ୍-ଆନନ୍ଦମୟ ହୋଇଥିବାରୁ ବାହାରରୁ ସଂଗ୍ରହ କରି ଆତ୍ମାଙ୍କୁ ଆନନ୍ଦ ଦେବାର କୌଣସି ପ୍ରୟୋଜନ ନଥାଏ । ସ୍ୱତଃ ମନ-ବୁଦ୍ଧି-ଅହଂଙ୍କାର ତିନି ତତ୍ତ୍ୱଙ୍କର ଶରଣାଗତି ସମ୍ଭବ ହେବ । ସେଥିପାଇଁ ସେ ଅଜଗର ସଦୃଶ ନିର୍ଜ୍ଜନ ସ୍ଥାନରେ ଶୋଇଛନ୍ତି (ସ୍ୱପସ୍ୟାମି ସଂବିଶନ୍) ।

ଜୀବ ନିଜେ ଆତ୍ମା ଅଟେ । ମାୟା କବଳରେ ପଡ଼ି ନିଜକୁ ଦେହ ଭାବନା

କରି ଦେହ ସୁଖ ଖୋଜୁଛି । ଅତଏବ ଭୟାବହ ଜନ୍ମ-ମରଣ ଚକ୍ରରେ ଘୂରିବୁଲୁଛି । ସେ ଅସଲ କଲ୍ୟାଣ ଆତ୍ମ ସୁଖ-ଏକଥା ଭୁଲି ଯାଇଛି । ଆଧ୍ୟାତ୍ମିକ କର୍ମ ନ କରି ଭୌତିକ କର୍ମ କରିଚାଲୁଛି । ସେଇତ ଅସରନ୍ତି ଦୁଃଖର କାରଣ ।

ପ୍ରଶ୍ନ-୫୫. ଆତ୍ମା ତ ଦେହ ତିଆରି କରିଛି । ପୂର୍ବ ଜନ୍ମର ଅଭୁକ୍ତ, ଅପ୍ରାପ୍ତ ଭୋଗ ତୃଷ୍ଣା ଦେହ ଦ୍ୱାରା ପୂରଣ ହେବ ବୋଲି ସେ ଆଶା ରଖିଛି । ସେଥିପାଇଁ ତାକୁ ବଂଚିବାକୁ ହେବ । ଦେହକୁ ବଂଚାଇବାକୁ ଯାଇ ଦେହ ସୁଖ ଖୋଜିବାରେ ଜୀବ ଭୁଲ କଲା କିପରି ?

**ଜଲଂ ତଦ୍ ଉଦ୍‌ଭବୈଃ ଛନ୍ନଂ ହିତ୍ୱା-ଅଜ୍ଞୋ ଜଲ କାମ୍ୟୟା ।**
**ମୃଗ ତୃଷ୍ଣାଂ ଉପାଧାବେତ୍ ତଥା-ଅନ୍ୟତ୍ର ଅର୍ଥଦୃକ୍ ସ୍ୱତଃ ॥୨୯॥**

ଉ. ସଂସାରରେ ଦେଖାଯାଏ ପୁଷ୍କରିଣୀରେ ଜଳ ମଧ୍ୟରେ ଜଳରୁ ଦଳ ଘାସ ଆଦି ଜନ୍ମିଥାଏ । ମୃଗ କ'ଣ ସେ ଦଳ ଘାସ ଖାଇ ତାର କ୍ଷୁଧା ନିବାରଣ କରିପାରିବ ? ମରୁଭୂମିରେ ଅନେକ ସ୍ଥାନରେ ଦିନବେଳେ ପ୍ରଚଣ୍ଡ ସୂର୍ଯ୍ୟ ତାପରେ ବାୟୁ ପ୍ରବାହ ଉତ୍ତପ୍ତ ହୋଇ ଜଳ ନ ଥାଇ ମଧ୍ୟ ଜଳ ଥିବା ଭଳି ଭ୍ରମ ସୃଷ୍ଟି କରେ । ସେ ଜଳ ପାନ କରି ମୃଗ କ'ଣ ତା'ର ତୃଷ୍ଣା ଶାନ୍ତ କରିପାରିବ ? ଆଦୌ ପାରିବନି ।

ଠିକ୍ ସେହିଭଳି ଆମ ଦେହରେ ଆତ୍ମା ଥାଇ ମଧ୍ୟ ନ ଥିବାର ଭ୍ରମ ସୃଷ୍ଟି ହୁଏ । ଇନ୍ଦ୍ରିୟ-ମନ-ବୁଦ୍ଧି-ଅହଂକାର ଏକା ଏକା କିମ୍ବା ମିଳିତ ପ୍ରଚେଷ୍ଟାରେ ଆତ୍ମାଙ୍କ ଖୋଜ ଖବର ନ ନେଇ ଅସତ୍ ଶରୀର-ସଂସାରରୁ ସ୍ଥାୟୀ ସୁଖ ଖୋଜିବା ଘୋର ମୂର୍ଖତା ମାତ୍ର ।

ସଂସାର ମାୟା ନିର୍ମିତ । ମନୁଷ୍ୟ ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ସଂସାରର ଅଂଶ ହୋଇଥିବାରୁ ମାୟା ନିର୍ମିତ ଅଟନ୍ତି, ଅତଏବ ମାୟାଙ୍କ ଦ୍ୱାରା ନିୟନ୍ତ୍ରିତ । ସୁତରାଂ ଜନ୍ମ-ଜନ୍ମାନ୍ତର ଜୀବ ଭୌତିକ ସୁଖ ପ୍ରାପ୍ତି ଓ ଭୌତିକ ଦୁଃଖ ନିବୃତ୍ତି ଲାଗି ଯେତେ କର୍ମ କରୁଛି ଯେତେ ଜ୍ଞାନ ହାସଲ କରୁଛି, ସବୁ ବ୍ୟର୍ଥ ହୋଇ ଯାଉଛି ।'

ପ୍ରଶ୍ନ-୫୬. ମାନସିକ ପୀଡ଼ା, ଜ୍ୱର ଆଦିକୁ ଆଧ୍ୟାତ୍ମିକ ତାପ, ଭୂମିକମ୍ପ,-ମରୁଡ଼ି-ବନ୍ୟା, ସୁନାମୀ ଆଦିକୁ ଆଧିଦୈବିକ ତାପ ଓ ବାଘ,ଭାଲୁ, ସାପ, ଚୋର, ଡକାୟତଙ୍କ ଆକ୍ରମଣକୁ ଆଧିଭୌତିକ ତାପ କୁହାଯାଏ । ଜଣେ ସାଧକ ଯଦି ଶ୍ରମ ଓ କଷ୍ଟ ସ୍ୱୀକାର କରି ଧନ ଓ ଭୋଗ ସଂଗ୍ରହ କରି ଏଥିରୁ ଉଦ୍ଧାର ହୁଅନ୍ତି ସେଥିରେ କ୍ଷତି କିସ ? (କ୍ରିୟତେ କିଂ)

**ଆଧ୍ୟାତ୍ମିକ-ଆଦିଭି ଦୁଃଖୈଃ ଅବିମୁକ୍ତସ୍ୟ କର୍ହିଚିତ୍ ।**
**ମର୍ତ୍ତ୍ୟସ୍ୟ କୃଚ୍ଛ୍ର-ଉପନତୈଃ ଅର୍ଥୈଃ କାମୈଃ କ୍ରିୟତେ କିମ୍ ॥୩୧॥**

ଉ.ହଁ, ଅର୍ଥ ଅର୍ଜନ ଓ କାମ ଭୋଗ ଆଦୌ ନିନ୍ଦନୀୟ ନୁହଁନ୍ତି । ଏମାନେ ବନ୍ଦନୀୟ ବୋଲି ତ ଅର୍ଥ ଶାସ୍ତ୍ର ଓ କାମ ଶାସ୍ତ୍ରର ବିଧାନ ହୋଇଛି କିନ୍ତୁ ଧର୍ମକୁ ଭୁଲି ଅଧର୍ମ ମାର୍ଗରେ ଅର୍ଥ ଉପାର୍ଜନ ଓ ମୋକ୍ଷକୁ ଭୁଲି କାମ ଭୋଗ କରିବାକୁ ବୈଦିକ ଶାସ୍ତ୍ରରେ ନିନ୍ଦା କରାଯାଇଛି । କାରଣ ମନୁଷ୍ୟ ଦେହ ମରଣଶୀଳ(ମର୍ତ୍ତ୍ୟ) । ମୁକ୍ତିର ସ୍ୱାଦ କେବଳ ମଣିଷ ଶରୀରରେ ଅନୁଭବ କରାଯାଇପାରେ । ସେଥିପାଇଁ ବେଦମାନଙ୍କର ଆହ୍ୱାନ-ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ ।

ପ୍ରଶ୍ନ-୫୭.ଧର୍ମ ବର୍ଜିତ ଅର୍ଥ ଉପାର୍ଜନରେ କି କି ଦୁଃଖ କଷ୍ଟର ସମ୍ମୁଖୀନ ହୁଏ ସାଧକ ?

**ପଶ୍ୟାମି ଧନିନାଂ କ୍ଲେଶଂ ଲୁବ୍ଧାନାଂ ଅଜିତ-ଆତ୍ମନାମ୍ ।**
**ଭୟାତ୍ ଅଲବ୍ଧ ନିଦ୍ରାଣାଂ ସର୍ବତୋଽଭିଶଙ୍କିତାନାମ୍ ॥୩୨॥**

ଉ.ଦତ୍ତାତ୍ରେୟ କହିଲେ, 'ହେ' ପ୍ରିୟ ପ୍ରହ୍ଲାଦଜୀ ! ମୁଁ ଦେଖିପାରୁଛି ଧନ ଲୋଭୀ ଲୋକ ଧନ ସଂଗ୍ରହ କରୁଛି ସତ୍ୟ । ହେଲେ ଧନ ସଂଗ୍ରହ ତୃଷ୍ଣାରୁ ମୁକ୍ତ ହୋଇ ପାରୁନାହିଁ । ବରଂ ତାର ତୃଷ୍ଣା କ୍ରମ ବର୍ଦ୍ଧମାନ ରୀତିରେ ବଢ଼ିଚାଲୁଚି । ଚୋରୀ,ଡ଼କାୟତି, ଲୁଣ୍ଠନ ଆଦି ଆଶଙ୍କା ଓ ଭୟରେ ସେ ଶୋଇ ପାରୁନି । ଶାନ୍ତି ତା ପାଇଁ ସ୍ୱପ୍ନ । ସୁତରାଂ ଧନ ବୃଦ୍ଧିରେ ତାର ଚିର ବାଞ୍ଛିତ ଆନନ୍ଦ ମିଳିବ କିପରି ?'

ପ୍ରଶ୍ନ-୫୮. ଧନ ଅର୍ଜନ କରିବା ଆଦୌ ପାପ ନୁହେଁ । ଧନ ସଂଗ୍ରହ କରିବା ମଧ ବିପଦ ଆଶଙ୍କା ଭୟର କାରଣ ନୁହେଁ । ଧନକୁ 'ମୋର' ବୋଲି କାଉ କୋଇଲିକୁ ଘଉଡ଼େଇବା, ଧନାସକ୍ତି ହିଁ ସଂସାରୀ ଦୁଃଖର କ୍ଲେଶର କାରଣ । ଏଭଳି ଲୋଭୀ ଲୋକ ଆଉ କାହାକୁ କାହାକୁ ଡ଼ରୁଥାଏ ?

**ରାଜତଃ ଚୌରତଃ ଶତ୍ରୋଃ ସ୍ୱଜନାତ୍ ପଶୁ ପକ୍ଷୀତଃ ।**
**ଅର୍ଥୀଭ୍ୟଃ କାଳତଃ ସ୍ୱସ୍ମାତ୍ ନିତ୍ୟଂ ପ୍ରାଣ-ଅର୍ଥବତ୍ ଭୟମ୍ ॥୩୩॥**

ଉ.ରାଜା ବା ସରକାରଙ୍କର ଆୟକର ଚଢ଼ଉକୁ, ଚୋରିଯିବା ଭୟରେ ଚୋରକୁ, ଶତ୍ରୁ ଧରି ପଳାଇବାକୁ, ନିଜ ଅଯୋଗ୍ୟ ପୁଅ ବୋହୂ ଝିଅ ଜୋଇଁଙ୍କୁ, ଧାନ ଚାଉଳ ଖାଇ ଯାଉଥିବା ପଶୁ ପକ୍ଷୀଙ୍କୁ, ମାଗିବାକୁ ଆସୁଥିବା ଭିକାରୀଙ୍କୁ,ଚାନ୍ଦା ମାଗିବାଙ୍କୁ

ଆସୁଥିବା ରସିଦ୍ ବହି ବାଲାଙ୍କୁ (ଅର୍ଥୀଭ୍ୟଃ) ମରିଗଲେ ଏ ଧନ ଭୋଗିବା ସୁଯୋଗରୁ କାଳେ ବଂଚିତ ହୋଇଯିବି ଏ ଭୟରେ ଯମରାଜଙ୍କୁ ଓ ପ୍ରାଣ ପଳାଇବା ଭୟରେ ନିଜ ଦେହ-ଇନ୍ଦ୍ରିୟ-ମନ-ବୁଦ୍ଧି-ଅହଂକାରକୁ ଭୟକରେ ଧନ ଲୋଭୀ ଲୋକ ।

ପ୍ରଶ୍ନ-୫୯. ଧନ ତୃଷ୍ଣା ହିଁ ଜୀବର ଶୋକ, ମୋହ, ଭୟ, କ୍ରୋଧ, ଆସକ୍ତି (ରାଗ), ମାନସିକ ଦରିଦ୍ରତା (କ୍ଲୈବ୍ୟ) ଓ ବୃଥାଶ୍ରମ ଇତ୍ୟାଦିଙ୍କର ମୂଳ ଅଟେ । ଜଣେ ବାସ୍ତବରେ ବିବେକୀ ବୁଦ୍ଧିମାନ (ବୁଧଃ) ଲୋକ ଏ ସବୁ ଜଞ୍ଜାଳରୁ କ'ଣ ମୁକ୍ତି ପାଇପାରିବନି ?

**ଶୋକ ମୋହ ଭୟ କ୍ରୋଧ ରାଗ କ୍ଲୈବ୍ୟ ଶ୍ରମ-ଆଦୟଃ ।**
**ଯତ୍ ମୂଳା ସ୍ୟୁଃ ନୃଣାଂ ଜହ୍ୟାତ୍ ସ୍ପୃହାଂ ପ୍ରାଣ-ଅର୍ଥୟୋଃ ବୁଧଃ ॥୩୪॥**

ଉ. ନିଶ୍ଚୟ ପାରିବ । ଉପାୟ ମଧ୍ୟ ଏତେ କଷ୍ଟକର ନୁହେଁ ବୁଦ୍ଧିମାନ ଲୋକ ନିମିତ୍ତ । ସେ ଧନ ତୃଷ୍ଣା ଓ ନିଜ ପ୍ରାଣ ଦୁହିଁଙ୍କୁ ତୁଳନା କରି ଦେଖିବା ଉଚିତ କେଉଁ ଗୋଟିକ ତା'ର ବରଣୀୟ ଆଉ କେଉଁ ଗୋଟିକ ତ୍ୟାଜ୍ୟ ।

ପ୍ରଶ୍ନ-୬୦. ହେ' ପ୍ରହ୍ଲାଦଜୀ ! ମୁଁ ବିଶ୍ୱକୁ ବିଦ୍ୟାଳୟ ମାନିଥାଏ । ମହୁମାଛି ମହୁ ସଂଗ୍ରହ କରେ । ନିଜେ ଖାଇବାରେ ଅନାସକ୍ତ ରହେ । ଅନ୍ୟପାଇଁ ସଂଗ୍ରହ କରିଯାଏ ସାରା ଜୀବନ । ଅଜଗରକୁ କ୍ଷୁଧା ତ ହୁଏ ସମସ୍ତଙ୍କ ଭଳି । ସେ କିନ୍ତୁ ପ୍ରାରବ୍ଧ ଉପରେ ସଂପୂର୍ଣ୍ଣ ନିର୍ଭର ଶୀଳ ରହି ନିଶ୍ଚେଷ୍ଟ ରହିବାକୁ ପସନ୍ଦ କରେ ।

ସୁତରାଂ ମୁଁ ଅନାସକ୍ତି ବା ବୈରାଗ୍ୟ ଦୃଷ୍ଟିରୁ ମହୁମାଛିକୁ ଓ ଯଦୃଚ୍ଛା ଲାଭ ସନ୍ତୁଷ୍ଟ ଦୃଷ୍ଟିରୁ ଅଜଗରକୁ ଗୁରୁ ମାନିଛି । ଖାଦ୍ୟ ଖାଇବାକୁ ମୁଁ ବଂଚିନାହିଁ । ବଂଚିବାକୁ କେବଳ ଖାଉଛି । ସ୍ୱାଦୁ-ଅସ୍ୱାଦୁ ବାରିବାକୁ ମୋତେ ସୁଯୋଗ କି ବେଳ ମିଳେ କିଛି ନାହିଁ । କେତେବେଳେ ଅତ୍ୟନ୍ତ ଶ୍ରଦ୍ଧାରେ ଖାଏ । ପୁଣି କେତେବେଳେ ଅତ୍ୟନ୍ତ ହେୟ ଭାବରେ ଖାଇ ପକାଏ । କେତେବେଳେ ନ ଖାଇ କ୍ଷୁଧାର୍ତ୍ତ ଥାଇ ମଧ୍ୟ ଖାଏନା । ପୁଣି କେତେବେଳେ ଖାଇ ସାରିଥିଲେ ମଧ୍ୟ ଆହୁରି ଖାଇ ପକାଏ ।

ଖାଲି ମୁଁ ଖାଦ୍ୟରେ ଯେ ଉଦାସୀନ ଏ କଥା ନୁହେଁ । ବସନ, ସ୍ନାନ, ଶୟନ, ଗମନ, ଭୂଷଣ ସବୁ ବ୍ୟବହାରରେ ମଧ୍ୟ ଉଦାସୀନ । ସୁତରାଂ ଏ ସବୁରେ ଭଲ-ମନ୍ଦ ଭାବନାକୁ ଚିତ୍ତରେ, ଚିତ୍ତକୁ ମନରେ, ମନକୁ ଅହଂକାରରେ, ଅହଂକାରକୁ ମହତତ୍ତ୍ୱ(ମାୟା)ରେ ଓ ମହତତ୍ତ୍ୱକୁ ଶ୍ରୀକୃଷ୍ଣଙ୍କ ଚରଣ କମଳରେ ଆହୂତି ଦେବାରେ ବ୍ୟସ୍ତ ଅଛି ଶୟନେ, ସ୍ୱପନେ ଓ ଜାଗରଣେ ତିନି ଅବସ୍ଥାରେ ।

ଅବଧୂତ ସ୍ଥିତିରେ କିଭଳି ଲୋକଙ୍କୁ ସେ ପସନ୍ଦ କରନ୍ତି ଓ କି ଭଳି ଲୋକଙ୍କର ସ୍ୱଭାବକୁ ନିନ୍ଦା କରନ୍ତି ?

**ନ-ଅହଂ ନିନ୍ଦେ ନ ଚ ସ୍ତୌମି ସ୍ୱଭାବ ବିଷମଂ ଜଗତ୍ ।**

**ଏତେଷାଂ ଶ୍ରେୟ ଆଶାସେ ଉତ-ଏକାତ୍ମ୍ୟଂ ମହାତ୍ମନି ॥୪୨॥**

ଉ. ନା,ନା ସେ କାହାରି ନିନ୍ଦା କରନ୍ତି ନାହିଁ କିମ୍ବା କାହାରି ପ୍ରଶଂସା ମଧ୍ୟ କରନ୍ତି ନାହିଁ । ଲୋକ ଗୋଟିକେ ସ୍ୱଭାବ ଗୋଟିଏ ସିନା । ଆତ୍ମା ଦୃଷ୍ଟିରେ ସମସ୍ତଙ୍କ ଦେହରେ ସେଇ ଏକ ସତ୍-ଚିତ୍-ଆନନ୍ଦମୟ ଆତ୍ମା ବିଦ୍ୟମାନ ।

ହଁ ସେ ଅବଶ୍ୟ ଗୋଟିଏ ଭାବନା ସମସ୍ତଙ୍କଠାରେ କରନ୍ତି । ହେ' ପ୍ରଭୋ ଏମାନଙ୍କୁ ଆପଣ କୃପା କରନ୍ତୁ । ସେମାନଙ୍କର କଲ୍ୟାଣ ହେଉ । ସେମାନେ ଏ ଅଦ୍ୱୟ ଜ୍ଞାନ-ଏକାନ୍ତ ଭକ୍ତିର ସନ୍ଧାନ କରନ୍ତୁ ।

ପ୍ରଶ୍ନ-୬୧. ଦତ୍ତ ଭଗବାନ ଜ୍ଞାନୀ ପରମହଂସ ଥିଲେ । ସେ କି'ଣ ମହାଭକ୍ତ ପ୍ରହ୍ଲାଦଜୀଙ୍କୁ ମୂର୍ଖ, ଅବିଦ୍ୟାଗ୍ରସ୍ତ ବୋଲି ମନେକରି ସଂସାର ବୈରାଗ୍ୟ ଶିକ୍ଷା ଦେଲେ ?

**ସ୍ୱ-ଆତ୍ମବୃତ୍ତଂ ମୟା-ଇତ୍ଥଂ ତେ ସୁଗୁପ୍ତଂ ଅପି ବର୍ଣ୍ଣିତମ୍ ।**

**ବ୍ୟପେତଂ ଲୋକ ଶାସ୍ତ୍ରାଭ୍ୟାଂ ଭବାନ୍ ହି ଭଗବତ୍ ପରଃ ॥୪୫॥**

ଉ. ନା,ନା ଆଦୌ ନୁହେଁ । ସେ କହିଲେ, 'ହେ' ଭଗବାନଙ୍କ ଭକ୍ତ ଅବତାର ପ୍ରହ୍ଲାଦଜୀ, ମୁଁ ଯାହା କହିଲି ସେ ସବୁ ଅନ୍ୟ ସଂସାର ଆସକ୍ତ ପୁରୁଷଙ୍କ ଲାଗି ଲୌକିକ ବିଦ୍ୟା ଓ ଅଧ୍ୟାତ୍ମ ବିଦ୍ୟାରେ ଗୁପ୍ତ ରଖାଯାଇଛି । ଆପଣ କିନ୍ତୁ ସେ ଉଭୟର ଉର୍ଦ୍ଧ୍ୱରେ ଅବସ୍ଥାନ କରୁଛନ୍ତି । ଆପଣ ଯେମିତି ଜାଣିକରି ନ ଜାଣିଲା ଭଳି ପ୍ରଶ୍ନ କଲେ, ଠିକ୍ ମୁଁ ସେମିତି ପ୍ରଶ୍ନର ଉତ୍ତର ନ ଦେବା ଭଳି ଉତ୍ତର ଦେଇଛି । କାରଣ ଭଗବାନଙ୍କ ଗୁଣାନୁବାଦ ତ ଆମ ଦୁହିଁଙ୍କ ମଧ୍ୟରେ ହେଲା । ଦୁହେଁ ମାଲାମାଲ୍ ହେଲେ ।'

ଅତ୍ୟନ୍ତ ପ୍ରସନ୍ନ ହୋଇ ପ୍ରହ୍ଲାଦ ମହାରାଜ ଭକ୍ତ ପରମହଂସ ହୋଇ ମଧ୍ୟ ଶ୍ରୀମନ୍ ଦତ୍ତ ଭଗବାନଙ୍କୁ ଜ୍ଞାନୀ ପରମହଂସ ଭାବରେ ଚରଣ ପୂଜନ କରି ଭକ୍ତି ଧର୍ମର ଜୟପତାକା ଉଡ଼ାଇଲେ ।

# ଅଥ ୧୪ଶ ଅଧ୍ୟାୟଃ

## (ଆଦର୍ଶ ଗୃହସ୍ଥ ଆଶ୍ରମ ବିଧି ବିଧାନ)

ପ୍ରଶ୍ନ-୬୨. ସନ୍ନ୍ୟାସ ଆଶ୍ରମ ଅତ୍ୟନ୍ତ କଷ୍ଟକର ହେତୁ ଏହା କେବଳ ବ୍ରାହ୍ମଣ ଓ କ୍ଷତ୍ରିୟ ମାନଙ୍କ ଲାଗି ଉଦ୍ଦିଷ୍ଟ । ଅପେକ୍ଷାକୃତ ଅଧିକ ସୁବିଧା ଜନକ ବୋଲି ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଓ ଶୂଦ୍ର ସକଳ ବର୍ଣ୍ଣର ଲୋକ ଗୃହସ୍ଥ ଆଶ୍ରମର ଅଧିକାରୀ । ପୁଣି ବୈଶ୍ୟମାନେ ବ୍ରହ୍ମଚର୍ଯ୍ୟ ଆଶ୍ରମ ସହିତ ଗୃହସ୍ଥ ଆଶ୍ରମର ଅଧିକାରୀ ଥିବାବେଳେ ଶୂଦ୍ରମାନେ କେବଳ ଗୃହସ୍ଥ ଆଶ୍ରମର ଅଧିକାରୀ । ବ୍ରହ୍ମଚର୍ଯ୍ୟ ସେମାନଙ୍କ ଲାଗି ଅଦରକାରୀ । କାରଣ ଷୋଡ଼ଶ ସଂସ୍କାର ଓ ବେଦ ପଠନର ଅଧିକାର କେବଳ ଶୂଦ୍ର ଭିନ୍ନ ଅନ୍ୟ ତିନି ବର୍ଣ୍ଣର ଲୋକଙ୍କର ବୋଲି ଶାସ୍ତ୍ରରେ ବିଧାନ ହୋଇଛି ।

ଯୁଧିଷ୍ଠିର ମହାରାଜାଙ୍କ ପ୍ରଶ୍ନର ଅସଲି ଉତ୍ତର ଏହି ଅଧ୍ୟାୟରେ ବର୍ଣ୍ଣିତ । ଏହି ସରଳ ଗୃହସ୍ଥ ଆଶ୍ରମର ସାରତତ୍ତ୍ୱଟି କିସ ବୋଲି ନାରଦଜୀ କେବଳ ଗୋଟିଏ ଶ୍ଳୋକରେ କହି ବାକୀ କଥାକୁ ବିସ୍ତାରିତ ଭାବରେ ଅଧ୍ୟାୟ ସାରା ବର୍ଣ୍ଣନ କରିଛନ୍ତି ?

ନାରଦ ଉବାଚ

**ଗୃହେଷୁ-ଅବସ୍ଥିତୋ ରାଜନ୍ କ୍ରିୟାଃ କୁର୍ବନ୍ ଯଥା-ଉଚିତାଃ ।**
**ବାସୁଦେବ-ଅର୍ପଣଂ ସାକ୍ଷାତ୍ ଉପାସୀତ ମହାମୁନିମ୍ ||୨||**

ଉ. ବେଦୋପଦିଷ୍ଟ ମାର୍ଗରେ (ଯଥା-ଉଚିତାଃ), ସ୍ୱଧର୍ମ ପାଳନ କରି ଗୃହରେ ଥାଇ କର୍ମର ଫଳକୁ ବାସୁଦେବ ଅର୍ପଣ ପୂର୍ବକ ସାଧୁ-ସନ୍ଥ-ବୈଷ୍ଣବ (ମହାମୁନିମ୍) ସେବାରେ ପରମ ଆନନ୍ଦ ପାପ୍ତି ହିଁ ସଫଳ ଗୃହସ୍ଥଧର୍ମର ମୂଳମନ୍ତ୍ର ଅଟେ ।

ପ୍ରଶ୍ନ-୬୩. ଗୃହସ୍ଥ ଆଶ୍ରମର ଅନ୍ୟ ଏକ ଅତ୍ୟାବଶ୍ୟକୀୟ ଅଙ୍ଗ ହେଲା ସତ୍ ସଙ୍ଗରେ ବସି ଶ୍ରଦ୍ଧା ବିଶ୍ୱାସ ସହିତ ବୈଷ୍ଣବ ମୁଖରୁ ଶ୍ରୀହରିଙ୍କ ଲୀଳା ଅବତାର କଥା ଶ୍ରବଣ । ସଶ୍ରଦ୍ଧ ହରିକଥା ଶ୍ରବଣ ଦ୍ୱାରା ଗୃହସ୍ଥାଶ୍ରମୀ ପତି ପତ୍ନୀଙ୍କର କି ଫଳ ପ୍ରାପ୍ତି ହୁଏ ?

**ସତ୍ ସଙ୍ଗାତ୍ ଶନକୈଃ ସଙ୍ଗ ଆତ୍ମ ଜାୟା-ଆତ୍ମଜ-ଆଦିଷୁ ।**
**ବିମୁଚ୍ୟେତ୍ ମୁଚ୍ୟ ମାନେଷୁ ସ୍ୱୟଂ ସ୍ୱପ୍ନବତ୍ ଉତ୍ଥିତଃ ||୪||**

ଉ.ସତ୍ ସଙ୍ଗର ପ୍ରଭାବ ଧୀରେ ଧୀରେ ପତି-ପତ୍ନୀଙ୍କର ଗୃହାସକ୍ତି, ଧନାସକ୍ତି ,ପୁତ୍ର-ଦାରା ଆସକ୍ତି ଏପରିକି ନିଜର ଦେହ,ଅହଂକାର ଆସକ୍ତି ବୃକ୍ଷର ଚେର କାଟିବାରେ

ଲାଗେ । ଏତେ ନିଗଡ଼ ବନ୍ଧନ ଯାହା ହଜାର ହଜାର ବର୍ଷ ତପସ୍ୟାକରି ବିଶ୍ୱାମିତ୍ର, ପରାଶର, ରାଜା ଭରତ ଆଦି କାଟି ପାରନ୍ତି ନାହିଁ ଗୃହସ୍ଥାଶ୍ରମରେ ରହି କର୍ଦ୍ଦମ, ଅମ୍ବରୀଷ ଆଦି ବିଷୟ ଭୋଗ ଅନାସକ୍ତ ରହି (ବିମୁଚ୍ୟେତ୍) ପାରିବା କ'ଣ ସାମାନ୍ୟ କଥା !!

ଜଣେ ଭକ୍ତର ବୈରାଗ୍ୟ ଉତ୍ପନ୍ନ ହେଲେ ତାକୁ କିଛି ତ୍ୟାଗ କରିବାକୁ ପଡ଼େନା ଆସକ୍ତି ବ୍ୟତୀତ । ଏହି ଆସକ୍ତିକୁ ଦିନେ ନା ଦିନେ ତ ପୁଣି ତ୍ୟାଗ କରିବାକୁ ପଡ଼ିଥାନ୍ତା । ଯେମିତି ଜୀବର ମୃତ୍ୟୁକାଳରେ ବାଧ୍ୟ ବାଧକତାରେ ଜୀବକୁ ସକଳ ଆସକ୍ତି ତ୍ୟାଗ କରିବାକୁ ପଡ଼ିଥାଏ । ଧନ-ଦାରା-ସୁତ ଇତ୍ୟାଦି ସାଙ୍ଗରେ ଥାଇ ସେ ସେମାନଙ୍କୁ ଭଗବାନଙ୍କର କିମ୍ବା ସ୍ୱୟଂ ଭଗବାନ ବୋଲି ମନେ କରେ । ପୁଣି ସେମାନଙ୍କ ସହିତ ଠିକ୍ ସେହି ଜ୍ଞାନରେ ବ୍ୟବହାର ମଧ୍ୟ କରିଥାଏ । ସେ ଭାବନା କରେ ସତେ ଯେମିତି ସେ ଏକ ଦୀର୍ଘ ସ୍ୱପ୍ନରୁ ଉଠିଛି । ଏତେଦିନ ଯାଏ ସେ କରିଥିବା ଗୃହସଂସାର ଅସତ୍, କ୍ଷଣସ୍ଥାୟୀ, ଦୁଃଖଦାୟୀ, ଦୁଃସ୍ୱପ୍ନ ମାତ୍ର ।

ପ୍ରଶ୍ନ-୬୪.ସତ୍‌ସଙ୍ଗ ସୂତ୍ରରୁ ସେ ବୁଝିପାରେ ଏ ମନୁଷ୍ୟ ଦେହ ତାକୁ ଭଗବାନଙ୍କୁ ଖୋଜିବାକୁ ମିଳିଛି । ମିଳିନି ଗାଈ-ଘୁଷୁରୀଙ୍କ ସଦୃଶ ଦିନସାରା ଭୋଜନ ସାମଗ୍ରୀ ସଂଗ୍ରହ କରିବାକୁ । ବିରକ୍ତ ବୈଷ୍ଣବ (ପଣ୍ଡିତଃ) କ'ଣ ଦେହ-ଗୃହ-ଦାରା ଆଦି ବନ୍ଧନର କାରଣ ବୋଲି ମନେ କରି ସେମାନଙ୍କୁ ତ୍ୟାଗ କରି ବଣକୁ ପଳାୟନ କରିବ ?

**ଯାବତ୍ ଅର୍ଥ ଉପାସୀନୋ ଦେହେ ଗେହେ ଚ ପଣ୍ଡିତଃ ।**
**ବିରକ୍ତୋ ରକ୍ତବତ୍ ତତ୍ର ନୃଲୋକେ ନରତାଂ ନ୍ୟସେତ୍ ।।୫।।**

ଉ.ନା, ନା ଗୃହ ତ୍ୟାଗ କଲେ ଗୃହସ୍ଥାଶ୍ରମ ଧର୍ମ ନିର୍ବାହ ହେବ କେମିତି ? ସେ ଧନ ଉପାର୍ଜନ ତ କରିବ କିନ୍ତୁ ଧର୍ମ ମାର୍ଗରେ ଚାଲି । ପରିବାର ଓ ନିଜ ପେଟ ପୋଷଣ ଲାଗି ଯେତିକି ଅର୍ଥ ଦରକାର ସେତିକି ଧନ ଅର୍ଜନ କରିବ । ସେ ବିଳାସରେ ଚଳିବନି କି ଅଭାବରେ ଚଳିବନି । ପ୍ରାରବ୍ଧ ଲବ୍ଧ ଧନରେ ସନ୍ତୁଷ୍ଟ ରହିବ ।

ମାନବ ମାତ୍ରକେ ମାଧବ ବୋଲି ଭାବନା କରି ସମସ୍ତଙ୍କ ସେବା କରିବ । ବୈରାଗୀ ହୋଇ ମଧ୍ୟ ଆସକ୍ତ ଥିବା ଭଳି କେବଳ ଦେଖାଣିଆ ବ୍ୟବହାର କରି ଚାଲିବ । ସେ ନିଜ ଘରେ ଅନାସକ୍ତ ଅତିଥି ଭଳି ଚଳିବାକୁ ଚେଷ୍ଟା କରିବ ।

ପରିବାର ଲୋକଙ୍କ କଥାକୁ ଉପରେ ଉପରେ ଅନୁମୋଦନ କରୁଥିବ । ଏ ସବୁ ଭଗବତ୍ ଇଚ୍ଛା ବୋଲି ମନେ କରି । ଭିତରେ କିନ୍ତୁ ହରିଭଜନ,ହରି ସ୍ମରଣ କରି

ସେ ସବୁରେ, ହାନୀ-ଲାଭରେ ହର୍ଷ କିମ୍ବା ଦୁଃଖିତ ହେବ ନାହିଁ ।

ପ୍ରଶ୍ନ-୬୫.ଗୃହସ୍ଥ ଦାରା-ସୁତାଦିରେ ଅତିଥିଭଳି ଅନାସକ୍ତ ରହିପାରୁଥିଲେ ମଧ୍ୟ ଧନରେ ଅନାସକ୍ତ ରହିବ କିପରି ?

**ଦିବ୍ୟଂ ଭୌମଂ ଚ-ଅନ୍ତରୀକ୍ଷଂ ବିତ୍ତଂ ଅଚ୍ୟୁତ ନିର୍ମିତମ୍ ।**
**ତତ୍ ସର୍ବଂ ଉପଯୁଞ୍ଜାନ ଏତତ୍ କୁର୍ଯ୍ୟାତ୍ ସ୍ୱତୋ ବୁଧଃ ॥୭॥**

ଉ.ଆକାଶରୁ ପତିତ ଜଳ ଦ୍ୱାରା ଉତ୍ପନ୍ନ ଓ ପ୍ରାପ୍ତ ଅନ୍ନ, ଔଷଧ, ଆଦି ଦ୍ରବ୍ୟକୁ ଦିବ୍ୟ କୁହାଯାଏ । ଖଣି ଖାଦାନରୁ ମିଳୁଥିବା ଦ୍ରବ୍ୟକୁ ଭୌମ ଓ ଅକସ୍ମାତ୍ ଦୈବାତ୍ ଲବ୍ଧ ଧନ ଦ୍ରବ୍ୟକୁ ଅନ୍ତରୀକ୍ଷ ଦ୍ରବ୍ୟ କୁହାଯାଏ । ଏସବୁର ପ୍ରାପ୍ତିକୁ ପୁରୁଷାର୍ଥ ଜନ୍ୟ ନ ଭାବି ପ୍ରାରବ୍ଧ ଜନ୍ୟ ବା ଈଶ୍ୱର ପ୍ରଦତ୍ତ ବୋଲି ଭାବିବ । ସେ ସବୁ ଦେହ ଗୃହ ସଜାଇବାରେ ବିନିର୍ବ୍ୟୟ ନ କରି ପରଉପକାର ସେବାରେ ସହର୍ଷ ସଦୁପଯୋଗ କରି (ଉପଯୁଞ୍ଜାନ) ଆନନ୍ଦରେ କାଳ କାଟିବ ।

ପ୍ରଶ୍ନ-୬୬.ଶ୍ରମ, ସାଧନା ତାରତମ୍ୟରେ ଧନ ପ୍ରାପ୍ତିରେ ତାରତମ୍ୟ ହୁଏ । ଅତଏବ କେତେ ମାତ୍ରାରେ ଧନ ପ୍ରାପ୍ତ ହେଲେ ଗୃହାସ୍ଥାଶ୍ରମୀ ସନ୍ତୁଷ୍ଟ ରହିବ ?

**ଯାବତ୍ ଭ୍ରିୟେତ୍ ଜଠରଂ ତାବତ୍ ସ୍ୱତ୍ୱଂ ହି ଦେହିନାମ୍ ।**
**ଅଧିକଂ ଯୋଽଭିମନ୍ୟେତ ସ ସ୍ତେନୋ ଦଣ୍ଡଂ ଅର୍ହତି ॥୮॥**

ଉ.ନିଜ ପେଟ, ପରିବାର ପେଟ, ଅତିଥି, ସନ୍ଥଙ୍କ ପେଟ ପୂରଣ ଓ କପଡ଼ା, ମକାନର ଆବଶ୍ୟକତା ଲାଗି ଯେତିକି ଧନ ଦରକାର ସେତିକି ଭୋଗ କରିବା ଧର୍ମ ସମ୍ମତ । ଅଧିକ ଭୋଗ କରିବା ଦ୍ୱାରା ଅନ୍ୟମାନଙ୍କ ସର୍ବନିମ୍ନ ଆବଶ୍ୟକତା ପୂରଣରେ ବାଧା ଉପୁଜୁଥିବାରୁ ଶାସ୍ତ୍ର ଏହା ଚୋରୀ ଧନ ଭୋଗ ବୋଲି କହିଛନ୍ତି । ସେଭଳି ଲୋକ ଆଇନତଃ ଦଣ୍ଡନୀୟ ମଧ୍ୟ ।

ପ୍ରଶ୍ନ-୬୭.ଭାଗବତ ଧର୍ମ ପାଳନ କରୁଥିବା ଗୃହସ୍ଥକୁ ଆଧ୍ୟାତ୍ମିକ ସାମ୍ୟବାଦୀ କାହିଁକି କୁହାଯାଏ ?

**ମୃଗ-ଉଷ୍ଟ୍ର ଖର ମର୍କ-ଆଖୁ ସରୀସୃପ୍ ଖଗ ମକ୍ଷିକାଃ ।**
**ଆତ୍ମନଃ ପୁତ୍ରବତ୍ ପଶ୍ୟେତ୍ ତୈଃ ଏଷାମ୍ ଅନ୍ତରଂ କିୟତ୍ ॥୯॥**

ଉ.ହରିଣ, ଓଟ, ଗଧ, ମର୍କଟ, ମୂଷା (ଆଖୁ), ଝିଟିପିଟି, ଘର ଚଟିଆ ପକ୍ଷୀ ଓ ମକ୍ଷି (ମାଛି) ଆଦି ପ୍ରାଣୀମାନଙ୍କୁ ନିଜ ପୁତ୍ରବତ୍ ନିର୍ଦ୍ଦୋଷ ଭାବି ପାଳନ

ପୋଷଣ କରିବ । ଏମାନଙ୍କ ସହିତ ଆମମାନଙ୍କ ପୂର୍ବ ଜନ୍ମର କର୍ମ ସମ୍ବନ୍ଧିତ ବୋଲି ସ୍ୱୟଂ ଭଗବାନ ଏମାନଙ୍କୁ ଆମ ଗୃହରେ ରହିବାକୁ ପ୍ରେରଣ କରିଛନ୍ତି, ଆମମାନଙ୍କୁ ଋଣ ମୁକ୍ତ ହେବାକୁ । ଗୃହସ୍ଥର ପଞ୍ଚଋଣ ମଧ୍ୟରୁ ଏହାକୁ ଏକ ଋଣ (ବଳିବୈଶ୍ୱଦେବ) କୁହାଯାଏ । ସ୍ୱୟଂ ପରମାତ୍ମା ଯେତେବେଳେ ସକଳ ଜୀବ ଅନ୍ତରରେ ବିଦ୍ୟମାନ, ଜନ୍ମିତ ପୁତ୍ର କନ୍ୟା ଓ ଏମାନଙ୍କ ମଧ୍ୟରେ ଅନ୍ତର କେଉଁଠି ? ଅର୍ଥାତ୍ କୌଣସି ପାର୍ଥକ୍ୟ ନାହିଁ । ବ୍ୟବହାରରେ ପାର୍ଥକ୍ୟ ରଖନ୍ତୁ କିନ୍ତୁ ଭାବନାରେ ନୁହେଁ । ଯତ୍ନ ନେବାରେ ନୁହେଁ ।

ପ୍ରଶ୍ନ-୬୮. ଭାଗବତ ଧର୍ମରେ ମୋକ୍ଷ ହିଁ ଅନ୍ତିମ ଲକ୍ଷ୍ୟ । ତେବେ ଧର୍ମ-ଅର୍ଥ-କାମ- ଏ ତିନି ଲକ୍ଷ୍ୟକୁ (ତ୍ରିବର୍ଗ) ଉପେକ୍ଷା କଲେ ଅପରାଧ ହେବ କି ?

**ତ୍ରିବର୍ଗଂ ନ-ଅତିକୃଚ୍ଛ୍ରେଣ ଭଜେତ ଗୃହମେଧୀ-ଅପି ।**
**ଯଥା-ଆଦେଶଂ ଯଥା କାଳଂ ଯାବତ୍ ଦୈବ-ଉପପାଦିତମ୍ ॥୧୦॥**

ଉ. ଏହା ଆଦୌ ଉପେକ୍ଷଣୀୟ ନୁହେଁ । ବରଂ ଦେଶ-କାଳ-ପ୍ରାରବ୍ଧ ଅନୁସାରେ (ଦୈବ-ଉପପାଦିତମ୍ ) ଏ ତିନି ଚିଜର ସେବନ କରୁଥିବ କିନ୍ତୁ ମୋକ୍ଷକୁ ଆଗରେ ରଖି । ମୋକ୍ଷର ଏମାନେ ବାଧକ ହେଲେ ଉପେକ୍ଷଣୀୟ ମଧ୍ୟ । ଏ ସବୁକୁ ଜୀବନର ବିଳାସରେ ନ ଲଗାଇ ବରଂ ବିକାଶରେ ଲଗାଇବା ବୁଦ୍ଧିମାନର କାମ ।

ପ୍ରଶ୍ନ-୬୯. ପ୍ରାରବ୍ଧରୁ ପ୍ରାପ୍ତ ଧର୍ମ ସମ୍ମତ ଅର୍ଜିତ ଧନର ସଦୁପଯୋଗ କାହାକୁ କୁହାଯାଏ ଗୃହସ୍ଥ ଧର୍ମରେ ?

**ଆ-ଅଶ୍ୱ-ଅଘ-ଅନ୍ତେଽବସାୟିଭ୍ୟଃ କାମାନ୍ ସଂବିଭଜେତ୍ ଯଥା ।**
**ଅପି-ଏକାଂ ଆତ୍ମନୋ ଦାରାଂ ନୃଣାଂ ସ୍ୱତ୍ୱଗ୍ରହୋ ଯତଃ ॥୧୧॥**

ଉ.ନିଜ ଅର୍ଜିତ ଭୋଗ ସାମଗ୍ରୀକୁ କୁକୁର, ପାପୀ, ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତ ପ୍ରାଣୀ ମଧ୍ୟରେ ତ୍ୟାଗ ପୂର୍ବକ ଭୋଗ କରିବ । ଏପରିକି ନିଜ ପତ୍ନୀକୁ ମଧ୍ୟ ନିର୍ଦ୍ଦୋଷ ଅତିଥି ସତ୍କାର କର୍ମରେ ଲଗାଇ ଆନନ୍ଦ ପ୍ରାପ୍ତ ହେବ । ତେବେ ସିନା ପତ୍ନୀ ଆସକ୍ତିରୁ ଗୃହସ୍ଥକୁ ମୁକ୍ତି ମିଳିବ ।

ପ୍ରଶ୍ନ-୭୦. ଏଭଳି କଠିନ କର୍ମ କରି ଜଣେ ଆଦର୍ଶ ଗୃହସ୍ଥ କେଉଁ ଉଚ୍ଚତର ଲକ୍ଷ୍ୟ ହାସଲ କରିପାରିବ ?

**ଜହ୍ୟାତ୍ ଯତ୍ ଅର୍ଥେ ସ୍ୱାନ୍ ପ୍ରାଣାନ୍ ହନ୍ୟାତ୍ ବା ପିତରଂ ଗୁରୁମ୍ ।**
**ତସ୍ୟାଂ ସ୍ୱତ୍ୱଂ ସ୍ତ୍ରିୟାଂ ଜହ୍ୟାତ୍ ଯଃତେନ ହି-ଅଜିତୋ ଜିତଃ ॥୧୨॥**

ଉ.ସଂସାରରେ ଲୋକେ ଏତେ ପତ୍ନୀ ଆସକ୍ତ ଯେ ସେମାନେ ପତ୍ନୀ ରକ୍ଷଣ

ଲାଗି ନିଜ ପ୍ରାଣକୁ ବାଜି ଲଗାଇ ଲଢ଼ନ୍ତି । ଭଗବାନ ରାମ ମଧ୍ୟ ପତ୍ନୀକୁ ସୁଖୀ କରିବାକୁ ମାୟା ମୃଗ ପଛରେ ଦୌଡ଼ିବାକୁ ବାଧ୍ୟ ହେଲେ । ଫଳ ତ ସୀତା-ରାମ ଦୁହିଁଙ୍କୁ ଭୋଗିବାକୁ ପଡ଼ିଲା କେବଳ ଆମ ଭଳି ଲୋକଙ୍କୁ ଉଚିତ୍ ଶିକ୍ଷା ଦେବାକୁ । ଅତ୍ୟଧିକ ପତ୍ନୀ ଆସକ୍ତିରେ କି ଦୁର୍ଦ୍ଦଶା ଭୋଗିବାକୁ ପଡ଼େ ଏକଥା ସେ ଦଣ୍ଡକାରଣ୍ୟ ମୁନି ଋଷି ମାନଙ୍କୁ ସଙ୍କେତ ଦେଇଥିଲେ ।

ସଂସାରରେ ଅନେକ ଦୃଷ୍ଟାନ୍ତ ମିଳେ-ପତ୍ନୀ ସୁଖ ଲାଗି ପତି ନିଜ ପିତା-ମାତା-ଗୁରୁଙ୍କୁ ମଧ୍ୟ ହତ୍ୟା କରିପାରେ । ତ୍ୟାଗ କରିବା ସାଧାରଣ କଥା । ପତ୍ନୀ ଆସକ୍ତିକୁ ଜିଣିବା ଅର୍ଥ ସ୍ୱୟଂ ଅଜିତ ଭଗବାନଙ୍କୁ ଜିଣିଗଲ ବୋଲ । ସୁତରାଂ ଗୃହସ୍ଥାଶ୍ରମର ଅସଲି ଲକ୍ଷ୍ୟ ପତ୍ନୀ ଆସକ୍ତିରେ ବିରକ୍ତି ଓ ଭଗବତ୍ ବିରକ୍ତିରେ ଆସକ୍ତି ।

ପ୍ରଶ୍ନ-୭୧.ଗୃହସ୍ଥ ସାଧକ କି ଭଳି ଭାବନା କଲେ ସୁନ୍ଦରୀ,ଗୁଣବତୀ, ସହଧର୍ମିଣୀ, ସହକର୍ମିଣୀ ପତ୍ନୀଙ୍କ ଆକର୍ଷଣୀୟ ଦେହରେ ଅନାସକ୍ତ ରହିପାରିବ ?

**କୃମି ବିଟ୍ ଭସ୍ମ ନିଷ୍ଠାନ୍ତଂ　　କ୍ୱ-ଇଦଂ ତୁଚ୍ଛଂ କଳେବରମ୍ ।**
**କ୍ୱ ତଦୀୟରତିଃ ଭାର୍ଯ୍ୟା　　କ୍ୱ-ଅୟଂ ଆତ୍ମା ନଭଃଛଦିଃ ॥୧୩॥**

ଉ.ଭାବନା କରିବ-କାହିଁ ପତ୍ନୀଙ୍କର ଅନିତ୍ୟ-ନଶ୍ୱର ପଞ୍ଚ ଭୌତିକ ମାଟି ପିଣ୍ଡୁଳା ଶରୀର ଯାହା ପ୍ରାଣ ଗଲେ ଫିଙ୍ଗି ଦେଲେ ବିଲୁଆ, ଗୃଧ୍ର, କାଉ, କୀଟଙ୍କ ଖାଦ୍ୟ ହେବ, ପୋଡ଼ିଦେଲେ ଗଣ୍ଡାଏ ପାଉଁଶରେ ପରିଣତ ହେବ, ପୁଣି କାହିଁ ଭଗବାନ ପରମାତ୍ମାଙ୍କ ଚିନ୍ମୟ ଦେହ ଯାହା ଏତେ ବିଶାଳ ଯେ ମହାକାଶକୁ ମହାଶୂନ୍ୟାକାଶକୁ ଆବୃତ କରି ରଖିବାରେ ସକ୍ଷମ । ତେବେ ଯାଇ ପତ୍ନୀ ଦେହ ଆସକ୍ତି କଟିଯିବ ।

ପ୍ରଶ୍ନ-୭୨. ପ୍ରହ୍ଲାଦ,ଜନକ, ଅଶ୍ୱପତି ଆଦି ସଫଳ ଗୃହସ୍ଥ ଭକ୍ତଙ୍କର (ପଦବୀଂ ମହତାଂ) ଜୀବନ ଚର୍ଯ୍ୟାର ଅନ୍ତରଙ୍ଗ ରହସ୍ୟ କ'ଣ ?

**ସିଦ୍ଧୈଃ ଯଜ୍ଞ-ଅବଶିଷ୍ଟ-ଅର୍ଥୈଃ　　କଳ୍ପୟେତ୍ ବୃତ୍ତିଂ ଆତ୍ମନଃ ।**
**ଶେଷେ ସ୍ୱତ୍ୱଂ ତ୍ୟଜନ୍ ପ୍ରାଜ୍ଞଃ　　ପଦବୀଂ ମହତାଂ ଇୟାତ୍ ॥୧୪॥**

ଉ.ସେ ଯଦୃଚ୍ଛା ଲାଭ ସନ୍ତୁଷ୍ଟ ସ୍ଥିତିରେ ରହି ପ୍ରାରବ୍ଧ ସମ୍ବଳକୁ ପଞ୍ଚ ମହାଯଜ୍ଞରେ ସଦୁପଯୋଗ କରିବ । ଅନ୍ୟ କୌଣସି ବଡ଼ ବଡ଼ ଉଦ୍ୟୋଗ କରି ଅଧିକ ଧନ ଅର୍ଜ୍ଜନର ଉପାୟ କରିବନି । ସେହିଭଳି ପତ୍ନୀ-ପରିବାରରେ ନିଜର ସ୍ୱାମୀ (ସ୍ୱତ୍ୱଂ) ଆସକ୍ତି ତ୍ୟାଗ କରି ଜୀବନ ନିର୍ବାହ କରିବା ଉଚିତ୍ ।

ପ୍ରଶ୍ନ-୭୩. ଗୃହସ୍ଥର ପଞ୍ଚମହାଯଜ୍ଞ କହିଲେ କ'ଣ ବୁଝାଏ ?

**ଦେବାନ୍ ଋଷୀନ୍ ନୃ ଭୂତାନି ପିତୃନ୍ ଆତ୍ମାନଂ ଅନୁ-ଅହମ୍ ।**
**ସ୍ୱ ବୃତ୍ତ୍ୟା-ଆଗତ ବିତ୍ତେନ ଯଜେତ ପୁରୁଷଂ ପୃଥକ୍ ॥୧୫॥**

ଉ.ମନୁଷ୍ୟ ହୋଇ ସଂସାରରେ ବଂଚିଲେ ପାଞ୍ଚ ଜଣଙ୍କ ଠାରେ ସେ ଋଣୀ ହେବାକୁ ବାଧ ହୁଏ । ସେମାନଙ୍କ ଋଣରୁ ମୁକ୍ତ ହେବାକୁ ସେମାନଙ୍କୁ କିଛି ଦେଇ ତୃପ୍ତ କରାଯାଇଥାଏ । ଅନ୍ନ, ଜଳ, ଔଷଧ, ବାୟୁ, ଭୂମି, ଅଗ୍ନି ଆଦି ଆମ ଜୀବନ ରକ୍ଷା କରନ୍ତି ବୋଲି ତାଙ୍କୁ ଯଜ୍ଞରେ ଆହୂତି ଦିଆଯାଏ । ବ୍ୟାସ, ଯାଜ୍ଞବଲ୍କ୍ୟ, ଶୁକ, ଗୌତମ, ପତଞ୍ଜଳି, କପିଳ ଆଦି ମୁନି ଋଷିଗଣ ନିଜ ସଂପୂର୍ଣ୍ଣ ଜୀବନ ସାଧନା କରି ଯେଉଁ ଆଧ୍ୟାତ୍ମ ଶାସ୍ତ୍ର ସଂପଦ ଆମ ପାଇଁ ଛାଡ଼ି ଯାଇଛନ୍ତି ସେସବୁ ଅଧ୍ୟୟନ କଲେ ତାଙ୍କୁ ପ୍ରସନ୍ନ କରିହୁଏ । ମଣିଷ ସମାଜରେ ଚଳିଲେ ଅନେକ ମଣିଷଙ୍କଠାରୁ ଆମେ କହିବା, ଚାଲିବା, ବୁଲିବା,ପଢ଼ିବା, ପଢ଼ାଇବା ଆଦି ଶିକ୍ଷା କରୁଥିବାରୁ ଅତିଥି ଅଭ୍ୟାଗତଙ୍କୁ ସତ୍କାର କରି ଆମେ ଋଣ ମୁକ୍ତ ହେଉ । ଗୋ,ମହିଷ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଆମ ବଂଚିବାରେ ଅନେକ ସାହାଯ୍ୟ କରୁଥିବାରୁ ତାଙ୍କ ପାଇଁ କିଛି ଅନ୍ନ ତୃଣ, ଜଳ ଆଦି ଉତ୍ସର୍ଗ କରି ସେମାନଙ୍କୁ ପ୍ରସନ୍ନ କରି ନପାରିଲେ ଆମେ ଋଣୀ ରହିଯିବା ତାଙ୍କ ପାଖରେ । ପିତୃପୁରୁଷଙ୍କ ଅବଦାନ ଫଳରେ ଆମ ବଂଶ ରକ୍ଷା ହୋଇଥିବାରୁ ଆମେ ଜନ୍ମ ହୋଇ ପାରିଛେ । ସେ ଋଣ ଆମେ ଶୁଝିପାରିବା ଯଦି ବିବାହ କରି ପିତା-ମାତା ହୋଇ ସନ୍ତାନ ପାଳନ ପୋଷଣ କରିପାରିବା । ଏ ପାଞ୍ଚ ପ୍ରକାର ପୂଜନ ସେଇ ଏକ ଓ ଅଭିନ୍ନ ପରମାତ୍ମାଙ୍କର ଭିନ୍ନ ଭିନ୍ନ ସ୍ୱରୂପ ମାତ୍ର ।

ସମୃଦ୍ଧ ଗୃହସ୍ଥ ହୋଇଥିଲେ ବଡ଼ ବଡ଼ ଯଜ୍ଞ ଅଗ୍ନିହୋତ୍ର କରି ପରମାତ୍ମାଙ୍କୁ ପ୍ରସନ୍ନ କରିବା ଉଚିତ୍ । କାରଣ ତାହା ଦ୍ୱାରା ଧନର ସଦୁପଯୋଗ ଓ ସମବଣ୍ଟନ ହୋଇଥାଏ । ଅନେକଙ୍କର ଅନ୍ନ, ଜଳ, ବସ୍ତ୍ର, ଭୂମି ଆଦିର ଅଭାବ କଷ୍ଟ ଦୂର ହୋଇଥାଏ ।

ପ୍ରଶ୍ନ-୭୪.କ୍ଷୁଧାର୍ତ୍ତ, ବ୍ରାହ୍ମଣ ବୈଷ୍ଣବଙ୍କୁ ଖୁଆଇବା ଓ ଯଜ୍ଞ କରି ଅଗ୍ନିରେ ଆହୂତି ଦେବା ମଧ୍ୟରେ କେଉଁଟି ଅଧିକ ଶ୍ରେୟସ୍କର ଜଣେ ଗୃହସ୍ଥ ଲାଗି ?

**ନ ହି-ଅଗ୍ନିମୁଖତୋଽୟଂ ବୈ ଭଗବାନ ସର୍ବଯଜ୍ଞଭୁକ୍ ।**
**ଇଜ୍ୟେତ ହବିଷା ରାଜନ୍ ଯଥା ବିପ୍ରମୁଖେ ହୁତୈଃ ॥୧୬॥**

ଉ.ଉଭୟ କର୍ମରେ ଅବଶ୍ୟ ସେଇ ଏକ ପରମାତ୍ମା ଯଜ୍ଞ ଭୋକ୍ତା ଓ ଯଜ୍ଞ

ଫଳ ଦାତା ମଧ୍ୟ । ତଥାପି ନିରାଶ୍ରୟ ଭିକାରୀ, କ୍ଷୁଧାର୍ତ୍ତ, ବ୍ରାହ୍ମଣ, ବୈଷ୍ଣବ ଆଦିଙ୍କ ମୁଖରେ ପ୍ରଦତ୍ତ ଅନ୍ନ ରୂପୀ ଆହୂତିରେ ଭଗବାନ ଅଧିକ ପ୍ରସନ୍ନ ହୁଅନ୍ତି । କାରଣ ବଡ଼ ବଡ଼ ଯଜ୍ଞରେ ଛୋଟ ବଡ଼ ଅପରାଧ ଦୋଷ, ତ୍ରୁଟି ରହିବାର ସମ୍ଭାବନା ଥାଏ । ଉଦାହରଣ,'ହେ, ରାଜା ଯୁଦ୍ଧିଷ୍ଠିର ! ତୁମ ବହୁଆଡ଼ମ୍ବର ପୂର୍ଣ୍ଣ ରାଜସୂୟ ଯଜ୍ଞ ମଧ୍ୟ ସଂପୂର୍ଣ୍ଣ ଦୋଷ ମୁକ୍ତ ହୋଇ ପାରିନଥିଲା ଯଦିଚ ସ୍ୱୟଂ ଗୋବିନ୍ଦଙ୍କୁ ତୁମେ ଅଗ୍ରପୂଜ୍ୟ ରୂପେ ବରଣ  ଯଜ୍ଞପ୍ରକିୟାର ଅଧକ୍ଷ ପଦରେ ସ୍ଥାପନ କରିଥିଲ । ନେଉଳ ଶରୀରର ଅର୍ଦ୍ଧେକ ସୁବର୍ଣ୍ଣ ରଙ୍ଗ ନ ହେବାର କାରଣ ରୂପେ ସ୍ୱୟଂ ଗୋବିନ୍ଦ ଆମ ସମସ୍ତଙ୍କୁ ବୁଝାଇଥିଲେ । ତୁମେ ପାଶୋରି ନଥିବ ସେ କଥା ।'

ପ୍ରଶ୍ନ-୭୫. କେଉଁ ସମୟ ଶ୍ରାଦ୍ଧ, ମାଙ୍ଗଳିକ କର୍ମ ଓ ଦାନ ଯଜ୍ଞାଦି ପାଇଁ ଅନୁକୂଳ ?

**ସଂସ୍କାର କାଲୋ ଜାୟାୟା      ଅପତ୍ୟସ୍ୟ-ଆତ୍ମନଃ ତଥା ।**
**ପ୍ରେତ ସଂସ୍ଥା ମୃତ-ଅହଃ ଚ      କର୍ମାଣି-ଅଭ୍ୟୁଦୟେ ନୃପ ||୨୬||**

ଉ.ପତ୍ନୀଙ୍କର ପୁଂସବନ, ଗର୍ଭାଧାନାଦି, ପୁତ୍ରର କିମ୍ବା ନିଜର ଜନ୍ମଦିନ ଯଜ୍ଞ ଦୀକ୍ଷା, ବଂଶ-କୁଳ -ଗୋତ୍ରର ଶବଦାହ ଦିନ ଓ ବାର୍ଷିକ ଶ୍ରାଦ୍ଧ ଆଦି ଶୁଭ କର୍ମ ଉତ୍ସବ ପାଳନ କରିବ ଗୃହସ୍ଥ । ଏସବୁ ପୁଣ୍ୟକର୍ମ ଅନୁଷ୍ଠାନ କାଳ ।

ପ୍ରଶ୍ନ-୭୬. କେଉଁ ସ୍ଥାନ ଗୃହସ୍ଥର ଧର୍ମ ଓ ଶ୍ରେୟ କର୍ମ ନିମିତ୍ତ ଅନୁକୂଳ ?

**ଯତ୍ର ଯତ୍ର ହରେଃ ଅର୍ଚ୍ଚା      ସ ଦେଶଃ ଶ୍ରେୟସାଂ ପଦମ୍ ।**
**ଯତ୍ର ଗଙ୍ଗା-ଆଦୟୋ ନଦ୍ୟଃ      ପୁରାଣେଷୁ ଚ ବିଶ୍ରୁତାଃ ||୨୯||**

ଉ.ମୁନି ଋଷିମାନଙ୍କ ତପସ୍ୟା ପବିତ୍ର ସ୍ଥାନ ବଦ୍ରିନାଥ ମଧୁବନ, ବିଦ୍ୟାଅଧୟନ ସ୍ଥାନ ଉଜ୍ଜୟିନୀ-କାଶୀ, ଭଗବତ୍ କୃପା ବର୍ଷଣ ସ୍ଥାନ ବୃନ୍ଦାବନ -ଅଯୋଧ୍ୟା-ମାୟା ପୁରୀ ସହିତ ଚାରି ଧାମ(ବଦ୍ରିନାଥ-ଜଗନ୍ନାଥ-ରାମ ନାଥ-ଦ୍ୱାରିକାନାଥ) ଓ ପୁରାଣ ବର୍ଣ୍ଣିତ ଗଙ୍ଗାଆଦି ନଦୀ ତଟ ଅତ୍ୟନ୍ତ ଅନୁକୂଳସ୍ଥାନ । ପୁଣି ମାନସରୋବର, ପୁଷ୍କର, କୁରୁକ୍ଷେତ୍ର, ଗୟା, ପ୍ରୟାଗ, ବନାରସ, ମଧୁପୁରୀ, ନାରୟଣ ଆଶ୍ରମ, ମହେନ୍ଦ୍ର ପର୍ବତ ଆଦି ଅତ୍ୟନ୍ତ ପବିତ୍ରସ୍ଥାନ ।

ପ୍ରଶ୍ନ-୭୭. କେଉଁ ପାତ୍ର ଗୃହସ୍ଥର ଦାନ ପାଇଁ ସତ୍-ପାତ୍ର ଅଟେ ?

**ପାତ୍ରଂ ତୁ-ଅତ୍ର ନିରୁକ୍ତଂ ବୈ      କବିଭିଃ ପାତ୍ରବିତ୍ ତମୈଃ ।**
**ହରିଃ ଏବ-ଏକଂ ଉର୍ବୀଶଂ      ଯତ୍ମୟଂ ବୈ ଚର-ଅଚରମ୍ ||୩୪||**

ଉ.ମହାପୁରୁଷଙ୍କ ମତରେ ସତ୍‌ପାତ୍ର ତ କେବଳ ସେଇ ଜଣେ ସ୍ୱୟଂ ଭଗବାନ୍ ନାରାୟଣ । ସେହି ପୁଣି ତାଙ୍କ ଅଂଶ ନେଇ ସାଧୁ-ସନ୍ଥ-ଦେବତା-ଜଡ଼-ଚେତନ ରୂପରେ ପୂଜିତ ହେବାର ଯୋଗ୍ୟ ।

ସେଥିପାଇଁ ସିନା ସକଳ ସାଧୁ-ସନ୍ଥ-ମୁନି-ଋଷି ଗଣ ଥାଉ ଥାଉ ତୁମେ ରାଜ ସୂୟ-ଯଜ୍ଞ -କାଳରେ ତାଙ୍କୁ କେବଳ ଅଗ୍ରପୂଜ୍ୟ ରୂପେ ଅର୍ଘ୍ୟ ପ୍ରଦାନ କରିଥିଲ ।

ପ୍ରଶ୍ନ-୭୮. କେବଳ ଶ୍ରୀକୃଷ୍ଣ ବା ନାରାୟଣ ପୂଜନରେ କେଉଁ ବିଶେଷ ଲାଭ ହୁଏ ଗୃହସ୍ଥର ?

**ଜୀବ ରାଶିଭିଃ ଆକୀର୍ଣ୍ଣ ଅଣ୍ଡକୋଶ -ଅଙ୍‌ଘ୍ରିପୋ ମହାନ୍ ।**
**ତତ୍ ମୂଳତ୍ୱାତ୍ ଅଚ୍ୟୁତ-ଇଜ୍ୟା ସର୍ବଜୀବ ଆତ୍ମ ତର୍ପଣମ୍ ॥୩୬॥**

ଉ. ଅନନ୍ତକୋଟି ଜୀବମାନଙ୍କରେ ପୂର୍ଣ୍ଣ ହୋଇଥିବା ବିଶ୍ୱବ୍ରହ୍ମାଣ୍ଡ (ଅଣ୍ଡକୋଶ) ବୃକ୍ଷଟିଏ (ଅଙ୍‌ଘ୍ରିପଃ) ଭଳି । ଯେଉଁ ବୃକ୍ଷର ମୂଳ ସ୍ୱୟଂ ପରମାତ୍ମା ଅଚ୍ୟୁତ-ଶ୍ରୀକୃଷ୍ଣ । ପୂଜନରେ କେବଳ ତାଙ୍କୁ ପ୍ରସନ୍ନ କଲେ ସମସ୍ତ ଦେବୀ-ଦେବତା-ଜୀବଗଣ ତୃପ୍ତ ହୋଇଥାନ୍ତି ।

ପ୍ରଶ୍ନ-୭୯. ଅଧ୍ୟାତ୍ମ ଶାସ୍ତ୍ରରେ ଭଗବାନଙ୍କୁ କାହିଁକି ପୁରୁଷ ବୋଲି କୁହାଯାଏ ?

**ପୁରାଣି-ଅନେନ ସୃଷ୍ଟାନି ନୃ ତୀର୍ଯ୍ୟକ୍ ଋଷି ଦେବତାଃ ।**
**ଶେତେ ଜୀବେନ ରୂପେଣ ପୂରେଷୁ ପୁରୁଷୋ ହି-ଅସୌ ॥୩୭॥**

ଉ.ପରମାତ୍ମା ମନୁଷ୍ୟ,ଦେବତା, ପଶୁ-ପକ୍ଷୀ, ବୃକ୍ଷ ଲତା ଆଦି ଅନେକ ପୁର ନିର୍ମାଣ କରି ସେଥିରେ ଜୀବାତ୍ମା ସହିତ ବାସ କରୁଛନ୍ତି । ସୁତରାଂ ପୁର(ଦେହ)ରେ ଶୟନ କରୁଥିବାରୁ ତାଙ୍କୁ ପୁରୁଷ କୁହାଯାଏ ।

ତଥାପି ଚେତନାର ନ୍ୟୂନାଧିକ୍ୟରେ ମନୁଷ୍ୟ ଚେତନାର ଆଧିକ୍ୟହେତୁ ମନୁଷ୍ୟ ଶରୀରକୁ ଶ୍ରେଷ୍ଠ ପାତ୍ର କୁହାଯାଏ । ପୁଣି ଆଧ୍ୟାତ୍ମିକତା ଦୃଷ୍ଟିରୁ ବ୍ରାହ୍ମଣ, ବୈଷ୍ଣବ ଅଧିକ ଶ୍ରେଷ୍ଠ ପାତ୍ର ଅଟନ୍ତି । ପାତ୍ରତା ବା ଯୋଗ୍ୟତାକୁ ବିଚାର କରି ପରମାତ୍ମା ଭିନ୍ନ ଭିନ୍ନ ଜୀବଙ୍କୁ ଅଳ୍ପବେଶୀ ବୁଦ୍ଧି,ଚେତନା, ଶକ୍ତି ଓ ସାମର୍ଥ୍ୟ ପ୍ରଦାନ କରିଥାନ୍ତି ।

ପ୍ରଶ୍ନ-୮୦. ସତ୍ୟଯୁଗ ଶେଷରେ ତ୍ରେତାଯୁଗ ପ୍ରାରମ୍ଭରେ ଋଷି-ମୁନିମାନେ ବ୍ରହ୍ମବେତ୍ତା ହେଲେ ମଧ୍ୟ ଭଗବାନଙ୍କର ପ୍ରତିମା ପୂଜା ବିଧି ପ୍ରଚଳନ କଲେ କାହିଁକି ଏତେ ସାଧୁ-ସନ୍ଥ ଥାଉ ଥାଉ ?

**ଦୃଷ୍ଟ୍ୱା ତେଷାଂ ମିଥୋ ନୃଣାଂ ଅବଜ୍ଞାନ-ଅତ୍ମତାଂ ନୃପ ।**
**ତ୍ରେତାଦିଷୁ ହରେଃ ଅର୍ଚ୍ଚା କ୍ରିୟାୟୈ କବିଭିଃ କୃତା ॥୩୯॥**

ଉ.ସେମାନେ ଦେଖିଲେ ଯେ ସାଧୁ-ସନ୍ଥମାନେ ପରସ୍ପର ମଧ୍ୟରେ ସାନ-ବଡ଼ ଭାବନା କରି ଅନାଦର ବ୍ୟବହାରରେ ମାତିଲେ । କ୍ରମେ ସାଧୁ-ସନ୍ଥ-ମାନଙ୍କର ବାହ୍ୟ ଆଡ଼ମ୍ବର ପୂର୍ଣ୍ଣ ପ୍ରଦର୍ଶନରେ ଅନ୍ତରର ଦିବ୍ୟତା ମଧ୍ୟ ମଳିନ ହୋଇ ଆସିଲା ।

ଅତଏବ ଅର୍ଚ୍ଚା ବିଗ୍ରହ ପୂଜନର ପ୍ରଚଳନ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା ।

ପ୍ରଶ୍ନ-୮୧. ବେଳେ ବେଳେ ସଂପୂର୍ଣ୍ଣ ଶ୍ରଦ୍ଧା ଯୁକ୍ତ ହୋଇ ଠିକ୍ ଠିକ୍ ବିଧି ମାନି ଶ୍ରୀହରିଙ୍କ ପୂଜନ କଲେ ମଧ୍ୟ ଭଗବାନ ପ୍ରସନ୍ନ ହୋଇ ନଥାନ୍ତି (ନ-ଅର୍ଥଦା) କାହିଁକି ?

**ତତୋଽର୍ଚ୍ଚାୟାଂ ହରିଂ କିଂଚିତ୍ ସଂଶ୍ରଦ୍ଧାୟ ସପର୍ଯ୍ୟୟା ।**
**ଉପାସତ ଉପାସ୍ତା-ଅପି ନ-ଅର୍ଥଦା ପୁରୁଷ ଦ୍ୱିଷାମ୍ ॥୪୦॥**

ଉ. ତାର ଏକମାତ୍ର କାରଣ ହେଲା ବୈଷ୍ଣବ ଅପରାଧ (ପୁରୁଷ-ଦ୍ୱିଷାଂ) ବୈଷ୍ଣବ ଅବମାନନା କରି (ଶିବଦ୍ୱେଷୀ/ସାଧୁଦ୍ୱେଷୀ) ହୋଇ ବିଷ୍ଣୁଙ୍କୁ କିପରି ପ୍ରସନ୍ନ କରାଯାଇ ପାରିବ ? ବୈଷ୍ଣବମାନେ ବିଷ୍ଣୁଙ୍କର ହୃଦୟ ସ୍ୱରୂପ ଅଟନ୍ତି । ସୁତରାଂ ଏହି କଥା ଶେଷରେ ନିଷ୍ପନ୍ନ ହେଲା ଯେ ସଂସାରରେ କେବଳ ବ୍ରାହ୍ମଣ-ବୈଷ୍ଣବ ସତ୍‌ପାତ୍ର ଅଟନ୍ତି । ସେଥିପାଇଁ ଭଗବାନଙ୍କୁ ମଧ୍ୟ ବ୍ରହ୍ମଣ୍ୟ ଦେବ ବ୍ରାହ୍ମଣ ସେବକ ବୋଲି କୁହାଯାଏ । ଦୃଷ୍ଟାନ୍ତ ଅଛି-ଦେବର୍ଷି ନାରଦଜୀଙ୍କୁ ଦ୍ୱାରକାରେ ସମସ୍ତଙ୍କ ସମ୍ମୁଖରେ ଜଗଦାତ୍ମା ଶ୍ରୀକୃଷ୍ଣ ସ୍ୱୟଂ ଦଣ୍ଡବତ ପ୍ରଣାମ କରୁଥିଲେ ।

# ଅଥ ୧୫ଶ ଅଧ୍ୟାୟଃ

## (ଗୃହସ୍ଥମାନଙ୍କର ଜୀବନ୍ମୁକ୍ତି ବା ବିମୁକ୍ତି ମାର୍ଗ ବର୍ଣ୍ଣନ)

### ନାରଦ ଉବାଚ

ପ୍ରଶ୍ନ-୮୨. ନାରଦ ମହର୍ଷି କହିଲେ, 'ହେ' ଯୁଦ୍ଧିଷ୍ଠିର ! ମନୁଷ୍ୟ ଗୋଟିକେ ସ୍ୱଭାବ ଗୋଟିଏ । ବ୍ରାହ୍ମଣ ବର୍ଣ୍ଣରେ ମଧ କେହି କେହି କର୍ମକାଣ୍ଡୀ ତ ପୁଣି କେହି କେହି ଜ୍ଞାନ କାଣ୍ଡୀ ଓ ଉପାସନା କାଣ୍ଡୀ ।

ଜୀବନ୍ମୁକ୍ତି ଚାହୁଁ ଥିବା ଗୃହସ୍ଥ ଆତ୍ମ କଲ୍ୟାଣ ଓ ପିତୃପୁରୁଷ କଲ୍ୟାଣ କରିପାରେ । ସୁତରାଂ ସେ ଦେବୀ ଦେବତା ପୂଜନ ଛାଡ଼ି କେବଳ ନାରାୟଣ ପୂଜନ କରିବ ଓ ଅକିଂଚନ ବୈଷ୍ଣବଙ୍କୁ ଯଥାଯୋଗ୍ୟ ଅନ୍ନ-ବସ୍ତ୍ର-ହବ୍ୟ-କବ୍ୟାଦି ପ୍ରଦାନ କରିବ । ଅକିଂଚନ ବୈଷ୍ଣବ ଅଭାବରେ ସାଧାରଣ ବୈଷ୍ଣବଙ୍କୁ ଦାନ-ଆଦର -ସତ୍କାର କରି କାମ ଚଳାଯାଇପାରେ ।'

ଦେବକାର୍ଯ୍ୟ ଓ ପିତୃକାର୍ଯ୍ୟରେ ସମର୍ଥବାନ ଗୃହସ୍ଥ ପାଞ୍ଚଶ ହଜାରେ ଲୋକଙ୍କୁ ଅନ୍ନ ବସ୍ତ୍ରାଦି ଦାନ କଲେ ଅନେକ ଧର୍ମ ସଂଗ୍ରହ କରିହେବ କି ?

**ଦ୍ୱୌ ଦୈବେ ପିତୃକାର୍ଯ୍ୟେ ତ୍ରୀନ୍ ଏକ-ଏକଂ ଉଭୟତ୍ର ବା ।**
**ଭୋଜୟେତ୍ ସୁସମୃଦ୍ଧୋଽପି ଶ୍ରାଦ୍ଧେ କୁର୍ଯ୍ୟାତ୍ ନ ବିସ୍ତରମ୍ ।।୩।।**

ଉ.ଦେବକାର୍ଯ୍ୟରେ ଦୁଇ ଶ୍ରାଦ୍ଧ ଆଦି ପିତୃ କାର୍ଯ୍ୟରେ ମାତ୍ର ତିନି ଜଣ ବୈଷ୍ଣବଙ୍କୁ ବରଣ କରିବ । ଅଭାବ ହେଲେ ଉଭୟ କାର୍ଯ୍ୟରେ ମାତ୍ର ଜଣେ ଜଣେ ବୈଷ୍ଣବରେ କାମ ଚଳାଇବାକୁ ହେବ ।

ପ୍ରଶ୍ନ-୮୩. ଅନେକ ବ୍ରାହ୍ମଣ ବୈଷ୍ଣବ ବରଣ କଲେ ଗୃହସ୍ଥ ପାଇଁ କି ବିପଦର ସମ୍ଭାବନା ରହେ ?

**ଦେଶ କାଳ-ଉଚିତ ଶ୍ରଦ୍ଧା ଦ୍ରବ୍ୟ ପାତ୍ର-ଅର୍ହଣାଦି ଚ ।**
**ସମ୍ୟକ୍ ଭବନ୍ତି ନ-ଏତାନି ବିସ୍ତରାତ୍ ସ୍ୱଜନ-ଅର୍ପଣାତ୍ ।।୪।।**

ଉ.ଦେଶ, କାଳ, ପାତ୍ର, ଶ୍ରଦ୍ଧା;ଦ୍ରବ୍ୟ ଓ ପୂଜନ ବିଧିରେ କିଛି କିଛି ଦୋଷ ତ୍ରୁଟି ଅପରାଧ ରହିଯାଏ । ଗହଳି ଲୋକରେ କିଏ ଖାଇଲା, ନ ଖାଇଲା କେତେ ଖାଇଲା, କେମିତି ଖାଇଲା, କ'ଣ ଖାଇଲା ଇତ୍ୟାଦିର ସମୁଚିତ ବ୍ୟବସ୍ଥା ଗୃହସ୍ଥ ବିଚରା ଠିକ୍ ଠିକ୍ କରିପାରି ନଥାଏ । ଅଯଥା ଦଣ୍ଡ ମୂଳାଇବା ବୁଦ୍ଧିମାନର କାମ ନୁହେଁ ।

ପ୍ରଶ୍ନ-୮୪. ଶୁଭକର୍ମରେ ଗୃହସ୍ଥ ଭୋଜନ ବ୍ୟବସ୍ଥା କରିବା ବେଳେ କେଉଁ ଭାବ ପୋଷଣ କରିବା ଉଚିତ୍ ?

**ଦେବ ଋଷି ପିତୃ ଭୂତେଭ୍ୟ ଆତ୍ମନେ ସ୍ୱଜନାୟ ଚ ।**
**ଅନ୍ନଂ ସଂବିଭଜନ୍ ପଶ୍ୟେତ୍ ସର୍ବଂ ତତ୍ ପୁରୁଷ-ଆତ୍ମକମ୍ ॥୬॥**

ଉ. ପୂଜନ କରାଯାଉଥିବା ଭଗବାନ ସାଧୁ -ସନ୍ଥ,ପିତୃପୁରୁଷ, ଅତିଥି-ଅଭ୍ୟାଗତ, ପରିବାର, ସ୍ୱଜନ ବନ୍ଧୁ ସମସ୍ତଙ୍କୁ ଅଭିନ୍ନ, ବିନା ଭେଦ ଭାବରେ ଭୋଜନ ପରିବେଷଣ କରିବ । ପାତର-ଅନ୍ତର କଲେ ଅପରାଧ ହେବ ।

ପ୍ରଶ୍ନ-୮୫. ଜଣେ ଧର୍ମଜ୍ଞ କ୍ଷତ୍ରିୟ ଗୃହସ୍ଥ ଶ୍ରାଦ୍ଧରେ ଆମିଷ ପରିବେଷଣ କଲେ ଅପରାଧ ହେବ କି ?

**ନ ଦଦ୍ୟାତ୍ ଆମିଷଂ ଶ୍ରାଦ୍ଧେ ନ ଚ-ଅଦ୍ୟାତ୍ ଧର୍ମ ତତ୍ତ୍ୱବିତ୍ ।**
**ମୁନି-ଅନ୍ନୈଃ ସ୍ୟାତ୍ ପରାପ୍ରୀତିଃ ଯଥା ନ ପଶୁ ହିଂସୟା ॥୭॥**

ଉ. ନିଶ୍ଚୟ ହେବ । ସେଦିନ ମତ୍ସ୍ୟ କିମ୍ବା ପଶୁମାରି ବା ମରାଇ ନିଜେ ମାଛ ମାଂସ ଆଦି ଆମିଷ ଦ୍ରବ୍ୟ ଖାଇବ ନାହିଁ କି କାହାକୁ ଖୁଆଇବ ନାହିଁ । ଜୀବର ଶୁଦ୍ଧ ସାତ୍ତ୍ୱିକ ଆହାର (ମୁନି-ଅନ୍ନୈଃ)ଗ୍ରହଣରେ ପରମାତ୍ମାଙ୍କୁ ଅତ୍ୟନ୍ତ ପ୍ରସନ୍ନ କରାଯାଇପାରେ । ନିଜ ଶରୀର ପୋଷଣ ଲାଗି ମନୁଷ୍ୟ ପକ୍ଷେ ଅନ୍ୟ ପଶୁ ବଧ ହିଂସାର ଗଣ୍ୟ ଓ ଦଣ୍ଡନୀୟ ମଧ୍ୟ ।

ପ୍ରଶ୍ନ-୮୬. କେବଳ ଜୀବ ହତ୍ୟା କରୁନଥିବା ଅହିଂସ ଲୋକକୁ କଅଣ ଧାର୍ମିକ ସ୍ୱୀକୃତି ମିଳିଯିବ ?

**ନ-ଏତାଦୃଶଃ ପରୋ ଧର୍ମୋ ନୃଣାଂ ସତ୍ ଧର୍ମଂ ଇଚ୍ଛତାମ୍ ।**
**ନ୍ୟାସୋ ଦଣ୍ଡସ୍ୟ ଭୂତେଷୁ ମନୋ ବାକ୍ କାୟଜସ୍ୟ ଯଃ ॥୮॥**

ଉ.ନା , ନା ତା ମଧ୍ୟ ଠିକ୍ ନୁହେଁ । ମନ, ବାଣୀ; ଇନ୍ଦ୍ରିୟ, ଜାତ ଅହିଂସା କେବଳ ଅହିଂସା ରୂପେ ସ୍ୱୀକୃତ । ଏଭଳି ଧର୍ମକୁ ସର୍ବଶ୍ରେଷ୍ଠ ଧର୍ମ କୁହାଯାଏ । ଏଥିପାଇଁ ସିନା ଜୈନଧର୍ମ ଅଢ଼େଇ ହଜାର ବର୍ଷ ଧରି ତିଷ୍ଠି ରହିପାରିଛି ।

ଯଜ୍ଞରେ ପଶୁବଳି ବ୍ୟବସ୍ଥା କରାଯାଇଛି ମନୁଷ୍ୟ ଜିହ୍ୱାକୁ ସ୍ୱାଦୁ ଯୋଗାଇବା ଲକ୍ଷ୍ୟରେ ନୁହେଁ । ବରଂ ଯଥେଚ୍ଛା ପଶୁବଧ ରୋକିବା ଉଦ୍ଦେଶ୍ୟରେ । ପଶୁଟିଏ ମାରିବାକୁ ହେଲେ ଏତେ କଷ୍ଟକର ଯଜ୍ଞ ବ୍ୟବସ୍ଥା କରିବାକୁ ବିଧି ବିଧାନ ଖଞ୍ଜାଯାଇଛି ।

ଯଜ୍ଞ କରି କରି ତାର ଅନ୍ତଃକରଣ ଇନ୍ଦ୍ରିୟ, ମନ, ବୁଦ୍ଧି, ବାଣୀ ଆଦି ଶୁଦ୍ଧ ହୋଇଗଲେ ସେ ସ୍ୱୟଂ ଧର୍ମଙ୍କରୁ ଧର୍ମାତ୍ମା ହୋଇଯାଏ ।

ପ୍ରଶ୍ନ- ୮୭. ଶୁଦ୍ଧ ଅନ୍ତଃକରଣ ବିଶିଷ୍ଟ ଧର୍ମାତ୍ମା ଗୃହସ୍ଥ କେଉଁ କେଉଁ ଅଧର୍ମରୁ ନିଜକୁ ଦୂରେଇ ରଖିବ ?

**ବିଧର୍ମଃ ପରଧର୍ମଃଚ ଆଭାସ ଉପମା ଛଳଃ ।**
**ଅଧର୍ମ ଶାଖାଃ ପଞ୍ଚ-ଇମା ଧର୍ମଜ୍ଞୋଽଧର୍ମବତ୍ ତ୍ୟଜେତ୍ ।।୧୨।।**

ଉ. ବିଧର୍ମ, ପରଧର୍ମ, ଆଭାସ, ଉପମା ଓ ଛଳ ଏହି ପଞ୍ଚ ଶାଖା ବିଶିଷ୍ଟ ଅଧର୍ମ ଗୃହସ୍ଥ ପାଇଁ ଉପେକ୍ଷଣୀୟ ।

ପ୍ରଶ୍ନ-୮୮.ବିଧର୍ମ-ପରଧର୍ମ ଆଦିକୁ ଗୃହସ୍ଥ ଜାଣିବ କିପରି ?

**ଧର୍ମବାଦୋ ବିଧର୍ମଃ ସ୍ୟାତ୍ ପରଧର୍ମୋଽନ୍ୟ ଚୋଦିତଃ ।**
**ଉପଧର୍ମଃତୁ ପାଖଣ୍ଡୋ ଦମ୍ଭୋ ବା ଶବ୍ଦବିତ୍ ଛଳଃ ।।୧୩।।**

ଉ. ଭଗବତ ଶରଣାଗତ ବିରୋଧୀ ଧର୍ମ ହିଁ ବିଧର୍ମ ଅଟେ । ବେଦ ବିରୋଧୀ ଧର୍ମ ବା ଦେହ ସୁଖ ସୁବିଧା ବ୍ୟବସ୍ଥା ମୂଳକ ଧର୍ମ ହିଁ ପରଧର୍ମ । ଅହଂ ପ୍ରଚୋଦକ କପଟୀ ଧର୍ମ ଯାହା ଆତ୍ମଧର୍ମ ବିରୋଧୀ ତାହା ଉପଧର୍ମ ନାମରେ ଜଣାଶୁଣା । ଶାସ୍ତ୍ର ଜାଲରେ ପଡ଼ି ଓଲଟ, ଟଣା-ଓଟରା-ଅର୍ଥ ଅନ୍ୟାର୍ଥ କରି ବୈଦିକ ବିଧି ବ୍ୟବସ୍ଥା ଉଲଂଘନ ଉପଦେଶ ମୂଳକ ଧର୍ମ ଛଳ ଧର୍ମ ଅଟେ । ଯଥା ବେଦରେ ପଶୁମାରଣ ମନା କରାଯାଇଛି । ସୁତରାଂ ଯଜ୍ଞ କଲେ ପଶୁ ମାରିବା ବାଧତା ମୂଳକ ବୋଲି ପ୍ରଚାର କରିବା ଛଳର ଏକ ସୁନ୍ଦର ଉଦାହରଣ । କାରଣ ସେମାନେ ଆମିଷ ଭକ୍ଷଣ ଲାଳସା ଛାଡ଼ିବାରେ ଅସମର୍ଥ ।

ପ୍ରଶ୍ନ-୮୯. ପାଞ୍ଚ ପ୍ରକାର ଅଧର୍ମ ମଧ୍ୟରୁ ଆଭାସ ଅଧର୍ମ କାହାକୁ କୁହାଯାଏ ?

**ଯଃ ତୁ-ଇଚ୍ଛୟା କୃତଃ ପୁଂଭିଃ ଆଭାସୋ ହି-ଆଶ୍ରମାତ୍ ପୃଥକ୍ ।**
**ସ୍ୱଭାବ ବିହିତୋ ଧର୍ମଃ କସ୍ୟ ନ-ଇଷ୍ଟଃ ପ୍ରଶାନ୍ତୟେ ।।୧୪।।**

ଉ.ବର୍ଣ୍ଣଧର୍ମ-ଆଶ୍ରମଧର୍ମ କଷ୍ଟକର ଭାବନାରେ ଇନ୍ଦ୍ରିୟ ତୃପ୍ତି ଓ ମନ ଖୁସିକରିବା ପାଇଁ ମନ-ମାନା ଧର୍ମ ବ୍ୟବସ୍ଥାକୁ ଆଭାସ ହୁଏ । ଏଥିରେ ଗୃହସ୍ଥ ନା ନିଜର କଲ୍ୟାଣ କରେ ନା ପରିବାର, ସମାଜ, ଦେଶ, ସୃଷ୍ଟି ବ୍ୟବସ୍ଥାର କଲ୍ୟାଣ କରେ । ଯାହାର ଫଳ ଏବେ ସମଗ୍ର ବିଶ୍ୱ ସନ୍ତ୍ରାସବାଦ ରାକ୍ଷସ କବଳରେ ପଡ଼ି ଭୋଗୁଛି । ଏହାତ ମଣିଷକୁ

ପାଗଳ କରିବାକୁ ପ୍ରଚୋଦିତ କରେ । ନିଜେ ବଂଚି ଅନ୍ୟକୁ ବଂଚାଇବାକୁ ଚାହୁଁ ଥିବା ଲୋକକୁ ସୁସ୍ଥ ମଣିଷ, ବରଂ ନିଜେ ମରି ଅନ୍ୟକୁ ନ ମାରିବାକୁ ଚାହୁଁ ଥିବା ଲୋକକୁ ଅସୁସ୍ଥ ମଣିଷ କୁହାଯାଏ । ନିଜେ ମରି ବା ନ ମରି ଅନ୍ୟକୁ ମାରିବାକୁ ଉପାୟ କରୁଥିବା ଲୋକକୁ ପାଗଳ ଓ ସଂନ୍ତ୍ରାସବାଦୀ କୁହାଯାଏ । ଯାହାର ଅନ୍ୟ ନାମ ଆଭାସ ଅଧର୍ମ ।

ବର୍ଣ୍ଣ-ଆଶ୍ରମ ବ୍ୟବସ୍ଥାରେ ସମାଜର କେଉଁ ବର୍ଗର ଲୋକଙ୍କୁ ଅବା ସୁଖ-ଶାନ୍ତି-ଆନନ୍ଦ ଦେବାର ବ୍ୟବସ୍ଥା କରା ନ ଯାଇ ଉପେକ୍ଷା କରାଯାଇଛି ? ଏହା ସ୍ୱୟଂ ଭଗବାନଙ୍କ ଦ୍ୱାରା ପ୍ରତିଷ୍ଠିତ । ସୁତରାଂ ଭଗବାନଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ପ୍ରଣୀତ ଏହି ଚାରି ବର୍ଣ୍ଣ ଓ ଚାରି ଆଶ୍ରମର ବ୍ୟବସ୍ଥା ଭାଗବତ ଧର୍ମର ମୂଳମନ୍ତ୍ର ।

ପ୍ରଶ୍ନ-୯୦. ଧାର୍ମିକ ଗୃହସ୍ଥ ଲୋକ ନିର୍ଦ୍ଧନ ହୋଇଥିଲେ ଧନ ଖର୍ଚ୍ଚ କରି ଧର୍ମ କାର୍ଯ୍ୟ କରିବ କିପରି ?

**ଧର୍ମ-ଅର୍ଥଂ ଅପି ନ-ଇହେତ ଯାତ୍ରା -ଅର୍ଥଂ ବା-ଅଧନୋ ଧନମ୍ ।**
**ଅନୀହା-ଅନୀହମାନସ୍ୟ ମହା-ଅହେଃ ଇବ ବୃତ୍ତିଦା ॥୧୫॥**

ଉ. ଧର୍ମ ଧ୍ୱଜୀ ହୋଇ ଧର୍ମାତ୍ମାର ସମ୍ମାନ ପାଇବା ଲାଗି ସାଧକ ନ୍ୟାୟ-ଅନ୍ୟାୟ ଉପାୟ ବିଚାର ନ କରି ଅର୍ଥ ଅର୍ଜନ କରିବା ଧର୍ମ ନୁହେଁ ବରଂ ଅଧର୍ମ । ସେହିଭଳି ଅଧନବାନ ସାଧକ ଜୀବିକା ନିର୍ବାହ ଲାଗି ଧର୍ମ-ଅର୍ଧମ ବିଚାର ନ କରି ଯେନ ତେନ ପ୍ରକାରେଣ ଅର୍ଥ ଉପାର୍ଜନ କରି ଧନୀ ହେବାକୁ ଇଚ୍ଛା କରିବା ମଧ ସର୍ବନାଶର କାରଣ ହୁଏ ।

ସୁତରାଂ ଉଭୟ ପ୍ରକାର ଲୋକଙ୍କ ପାଇଁ ପ୍ରାରବ୍ଧ ଉପରେ ନିର୍ଭରଶୀଳ ହୋଇ ବରଂ ଅଜଗରବୃତ୍ତି ଗ୍ରହଣ କରି ଜୀବନ ନିର୍ବାହ କରିବା ଶ୍ରେୟସ୍କର । ଉଦାହରଣ-ମାଧବେନ୍ଦ୍ର ପୁରୀ, ଶୁକଦେବ ଗୋସ୍ୱାମୀ, ଜଡ଼ ଭରତ, ଋଷଭ ଦେବ ଓ ଦତ୍ତାତ୍ରେୟ ଅବଧୂତ ଇତ୍ୟାଦି ଗୃହତ୍ୟାଗୀ ସନ୍ନ୍ୟାସୀ ବର୍ଗ ।

ପ୍ରଶ୍ନ-୯୧. ଆତ୍ମାରାମ(ଜ୍ଞାନୀ ପରମହଂସ) ଓ ଆପ୍ତକାମ (ଭକ୍ତ ପରମହଂସ) ଯେଉଁ ଅଖଣ୍ଡ ଆନନ୍ଦ ସମୁଦ୍ରରେ ବିହାର କରନ୍ତି ଭୌତିକ ବାଦୀକୁ ସେ ସୁଖ ମିଳେନା । ସଂସାର ଯଦି ସୁଖ-ଦୁଃଖ ଭରା ତେବେ ଜଣେ ପ୍ରାରବ୍ଧ ଉପରେ ନିର୍ଭର କରି ସଦା ସନ୍ତୁଷ୍ଟ, ମଙ୍ଗଳମୟ ରହିପାରିବ କିପରି ?

**ସଦା ସନ୍ତୁଷ୍ଟ ମନସଃ ସର୍ବାଃ ଶିବମୟ ଦିଶଃ ।**
**ଶର୍କରା କଣ୍ଟକ-ଆଦିଭ୍ୟୋ ଯଥା-ଉପାନତ୍ ପଦଃ ଶିବମ୍ ॥୧୭॥**

ଉ.ପାଦରେ ଯୋତା ପିନ୍ଧିଲେ ବାଟରେ କୋମଳ ଗଦି ବା କଠୋର କଙ୍କଡ଼ ପଥର କଣ୍ଟା ଜାଣି ହୁଏନା । ସବୁ ସମାନ ତା ପାଇଁ । ଭକ୍ତ ସଦା ସନ୍ତୁଷ୍ଟ ସ୍ଥିତିରେ ରହି ସୁଖ -ଦୁଃଖ ବାରିବ କିପରି ? ତା ପାଇଁ ସକଳ ବସ୍ତୁ-ବ୍ୟକ୍ତି-ପରିସ୍ଥିତି ଅନୁକୂଳ - ପ୍ରତିକୂଳ ହେଲେ ମଧ ଆନନ୍ଦ ମୟ ।

ନାରଦଜୀ କହିଲେ-ହେ ଯୁଧିଷ୍ଠିର ବୁଝିହୁଏନା ପ୍ରାରବ୍ଧରେ ସନ୍ତୁଷ୍ଟ ନ ହୋଇ, ମୃଗ ତୃଷ୍ଣାଭଳି ସଂସାରୀ ସୁଖ (ଜିହ୍ୱା-ଉପସ୍ଥ ଇନ୍ଦ୍ରିୟ ଜନିତ) ପଛରେ ଦୌଡ଼ି ପାଳିତ କୁକୁର ଭଳି ଧନ-ସଂପଦ-ସଂସାରର ଚୌକିଦାରୀ କରେ କାହିଁକି ? ଇନ୍ଦ୍ରିୟ ଲାଳସୀ ବ୍ୟକ୍ତିର ବ୍ରହ୍ମତେଜ, ବିଦ୍ୟାଶକ୍ତି, ତପ ଶକ୍ତି, ଯଶ,ଜ୍ଞାନ, ସବୁକିଛି କ୍ରମେ କ୍ଷୟ ହୋଇଥାଏ । ଜାଣି ପାରେନା ବିଚରା କାମସୁଖ ପଛରେ ଦୌଡ଼ିବା ମୁର୍ଖତା ବୋଲି ।

ପ୍ରଶ୍ନ-୯୨. କାମ ଏକ ଦୁଇ ମୁହାଁ । ନଈ । କାମନା ପୂରଣ ହେଲେ ଲୋଭ ଜାଲରେ ମଣିଷ ପଡ଼େ, ପୂରଣ ନ ହେଲେ କ୍ରୋଧ ଅଗ୍ନି କଡ଼େଇରେ ପଡ଼ି ଛଟ ପଟ ହୁଏ । ମରି ପାରେ ନା କି ବଂଚି ପାରେନା । ସୁତରାଂ ଗୀତାରେ ଭଗବାନ କାମ-କ୍ରୋଧ-ଲୋଭକୁ ନରକର ତିନୋଟି ଦ୍ୱାର ବୋଲି କହି ଅର୍ଜୁନଙ୍କୁ ଖବର ଦାର କରାଇ ଦେଇଛନ୍ତି । ଜଣେ ଗୃହସ୍ଥ ସାଧକ କି ଉପାୟ କରିଥାଏ ଏମାନଙ୍କ ଦୌରାତ୍ମ୍ୟ କବଳରୁ ରକ୍ଷା ପାଇବାକୁ ?

**କାମସ୍ୟ ଅନ୍ତଂ ହି କ୍ଷୁତ୍ ତୃଡ୍‌ଭ୍ୟାଂ କ୍ରୋଧସ୍ୟ ଏତତ୍ ଫଳ ଉଦୟାତ୍ ।**
**ଜନୋ ଯାତି ନ ଲୋଭସ୍ୟ ଜିତ୍ୱା ଭୁକ୍ତ୍ୱା ଦିଶୋ ଭୁବଃ ॥୨୦॥**

ଉ. ଖାଇଲେ ପିଇଲେ କ୍ଷୁଧା-ତୃଷା ଶାନ୍ତ ହୋଇଯାନ୍ତି । କ୍ରୋଧ ମଧ ମନୁଷ୍ୟକୁ ପୀଡ଼ା ଦେଇ କିଛି ସମୟ ପରେ ଶାନ୍ତ ହୋଇଯାଏ । ହେଲେ ଲୋଭ ଏଭଳି ଏକ ବିଚିତ୍ର ଜନ୍ତୁ ସକଳ ଭୂଭାଗ ଜୟ କରି ସକଳ ଭୋଗ୍ୟ ପଦାର୍ଥ ମାଲିକ ହେଲେ ବି ମନୁଷ୍ୟ ଅଶାନ୍ତ ରହିଯାଏ । ଉଦାହରଣ ବିଶ୍ୱବିଜୟୀ ଆଲେକ୍ ଜାଣ୍ଡର ହିରଣ୍ୟ କଶିପୁ ଆଦି ଆସୁରୀ ସ୍ୱଭାବ ମାନବ ଓ ଦାନବ ।

ପ୍ରଶ୍ନ-୯୩. ମହାନ୍ ମହାନ୍ ପଣ୍ଡିତ, ଶାସ୍ତ୍ରବିତ୍, ବହୁଜ୍ଞ ଏବଂ ବିଶେଷଜ୍ଞଙ୍କର ପତନ ହୁଏ ନିଜ ବିଦ୍ୟା, ପ୍ରତିଭା, ଜ୍ଞାନ, ଆଦିରେ ଲୋଭ କରି ଅସନ୍ତୁଷ୍ଟ ରହିବା କାରଣରୁ ।

ଅତଏବ ଏହି କାମ-କ୍ରୋଧ-ଲୋଭ-ଭୟ ଆମର ନିଶ୍ଚିତ ଶତ୍ରୁ । ଏମାନଙ୍କୁ ଗୃହସ୍ଥ ନିଜ ମନରୁ କିପରି ନିର୍ମୂଳ କରାଯାଇ ପାରିବ ?

**ଅସଂକଳ୍ପାତ୍ ଜୟେତ୍ କାମଂ କ୍ରୋଧଂ କାମ ବିବର୍ଜନାତ୍ ।**
**ଅର୍ଥ-ଅନର୍ଥ-ଈକ୍ଷୟା ଲୋଭଂ ଭୟଂ ତତ୍ତ୍ୱ-ଅବମର୍ଶନାତ୍ ॥୨୨॥**

ଉ.ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟ ଭୋଗକୁ କାମ କୁହାଯାଏ । ଯଥେଚ୍ଛା କାମ ସେବନ କଲେ ଇନ୍ଦ୍ରିୟଶକ୍ତି କ୍ରମେ ଦୁର୍ବଳ ହୋଇଯାଆନ୍ତି । ଜରା ଅବସ୍ଥାରେ ଭୟଙ୍କର କଷ୍ଟସହିବାକୁ ବାଧ ହୁଏ ମଣିଷ । ଏହା ଶୁଦ୍ଧ ବୁଦ୍ଧିଦ୍ୱାରା ବିଚାର କରି ଯଦୃଚ୍ଛା ଲାଭ ସନ୍ତୁଷ୍ଟ ରହି ଆଉ ଅଧିକ ପାଇବାକୁ ଇଚ୍ଛା ନ କଲେ କାମକୁ ଜିଣିହୁଏ । କାମନା ପୂରଣ ହେଲେ କ୍ରୋଧ ଉତ୍ପନ୍ନ ହୁଏ । ଭୌତିକ ଦୁଃଖ ଅପ୍ରାପ୍ତିରେ ସନ୍ତୁଷ୍ଟ ହୋଇପାରିଲେ କାମ ସହିତ କ୍ରୋଧ ମଧ୍ୟ ସ୍ୱତଃ ବିନଷ୍ଟ ହୋଇଯାଏ ।

ଅର୍ଥ ଉପାର୍ଜ୍ଜନରେ ଅଧର୍ମ, ଅନ୍ୟାୟକୁ ଆଶ୍ରୟ କଲେ ଦଣ୍ଡ ନିଶ୍ଚୟ ଭୋଗିବାକୁ ପଡ଼ିବ । ବିବେକ ଚକ୍ଷୁଦ୍ୱାରା (ଈକ୍ଷୟା) ଏ ରହସ୍ୟ ବୁଝିପାରିଲେ ଲୋଭ ଉପରେ ବିଜୟ ଲାଭ ହୁଏ । ପୁଣି ଅନ୍ୟଦୃଷ୍ଟିରୁ ବିଚାର କଲେ କାମନାର ପୂରଣ ହୋଇଥିଲେ ସିନା ଲୋଭ ଉତ୍ପନ୍ନ ହୋଇଥାନ୍ତା କାମନା ଯେତେବେଳେ ତ୍ୟାଗ କରିସାରିଲେଣି ଲୋଭ ଉତ୍ପନ୍ନ ହେବାର ପ୍ରଶ୍ନ ଉଠିବ କିପରି ?

ଜଗତକୁ କୃଷ୍ଣମୟ ଦେଖିବା ହିଁ ତତ୍ତ୍ୱ ଚିନ୍ତନ । ଜଗତରେ ଯଦି କେବଳ ଜଣେ ହିଁ ପିତା-ପୁତ୍ର-ପତି-ପତ୍ନୀ-ବନ୍ଧୁ-ସଖା-ସମ୍ପତ୍ତି- ଶତ୍ରୁ-ମିତ୍ର ଭାବରେ ବିଦ୍ୟମାନ ସେତେବେଳେ ସାଧକ ଆଉ ଭୟ କରିବ କାହାକୁ ? ଅର୍ଥାତ୍ ସାଧକ ସଂପୂର୍ଣ୍ଣ ଭୟଶୂନ୍ୟ ହୋଇଯିବ ।

ଅଧ୍ୟାତ୍ମବିଦ୍ୟା ଅର୍ଜନ କରି ଶୋକ ମୋହ ଓ ସାଧୁ ବୈଷ୍ଣବ ସେବାଦ୍ୱାରା ଦମ୍ଭ (ନଥିବା ଜିନିଷକୁ ଅନ୍ୟକୁ ଦେଖାଇବା ଚେଷ୍ଟା) ଗର୍ବ (ଥିବା ଜିନିଷକୁ ଅନ୍ୟକୁ ଦେଖାଇ ବଡ଼େଇ କରିବା) ଦୋଷ ଦୂରକରାଯାଇପାରେ । ସଂସାରୀ କଥା ନ କହି ମୌନ ରହି ଯୋଗସିଦ୍ଧି ଜନିତ ବିପତ୍ତିରୁ ଏବଂ ଶମ-ଦମ ଦ୍ୱାରା ହିଂସା ଆଦିକୁ ଜୟ କରିପାରିବ ଗୃହସ୍ଥ ସାଧକ ।

ପ୍ରଶ୍ନ-୯୪. ଦେଖାଯାଏ ସଂସାରରେ ତ୍ରିତାପରେ ଗୃହସ୍ଥ ତ୍ରାହି ତ୍ରାହି ରଡ଼ି ଛାଡ଼େ । ଦୁଃଖ ନ ଚାହିଁଲେ ଦୁଃଖ ମାଡ଼ି ଆସେ । ସୁଖ ଖୋଜିଲେ ସୁଖ ଲୁଚକାଳି ଖେଳେ । ନିଦ୍ରା ବା ମୃତ୍ୟୁ ଭୟ ତାକୁ ବଡ଼ କଲବଲ କରନ୍ତି । ଏହି ତ୍ରିତାପ ମୋହ ନିଦ୍ରାରୁ ଗୃହସ୍ଥ ପାରପାଇବ କିପରି ?

**କୃପୟା ଭୂତଜଂ ଦୁଃଖଂ ଦୈବଂ ଜହ୍ୟାତ୍ ସମାଧିନା ।**
**ଆତ୍ମଜଂ ଯୋଗ ବୀର୍ଯ୍ୟେଣ ନିଦ୍ରାଂ ସତ୍ତ୍ୱ ନିଷେବୟା ॥୨୪॥**

ଉ.ଜୀବେ ଦୟା କରି ଆଧିଭୌତିକ ତାପକୁ, ଧାରଣା-ଧ୍ୟାନ-ସମାଧି ଦ୍ୱାରା ଆଧିଦୈବିକ ତାପକୁ ଏବଂ ଦେହ-ମନ-ବୁଦ୍ଧି-ସ୍ୱଭାବ ଜନିତ' ଆଧ୍ୟାତ୍ମିକ ତାପକୁ କର୍ମଯୋଗ (ରାଗ-ଦ୍ୱେଷ ଶୂନ୍ୟ ସମତା) ଦ୍ୱାରା ଦୂର କରି ପାରିବ ଗୃହସ୍ଥ । ସର୍ବୋପରି ସତ୍ତ୍ୱଗୁଣର ସେବନ/ବିକାଶ କରାଇ (ସଦ୍ ଗ୍ରନ୍ଥ ପଠନ, ସତ୍‌ସଙ୍ଗ ସେବନ, ସତ୍ ଚିନ୍ତନ, ସତ୍ କର୍ମା ନୁଷ୍ଠାନ) ଦ୍ୱାରା ନିଦ୍ରା (କ୍ଷଣ ମୃତ୍ୟୁ) ଓ ଦୀର୍ଘନିଦ୍ରା (ମୃତ୍ୟୁ)ଉଭୟକୁ ଅକ୍ଲେଶରେ ଜିଣି ଯାଏ ଗୃହସ୍ଥ ।

ସତ୍ତ୍ୱଗୁଣ ଦ୍ୱାରା ରଜୋ-ତମୋଗୁଣକୁ ଜିଣିହୁଏ । ପୁଣି ସତ୍ତ୍ୱ ଗୁଣକୁ ସଂସାର ବିରକ୍ତି-ଭଗବତ୍ ଆସକ୍ତି ଦ୍ୱାରା ଜିଣିହୁଏ । ତେବେ ତନ୍-ମନ-ଧନ୍ ଦ୍ୱାରା କାୟ ମନୋ-ବାକ୍ୟରେ ସଦ୍ ଗୁରୁଙ୍କ ସେବା କଲେ ତିନି ଗୁଣ ଉପରେ ବିଜୟ ପ୍ରାପ୍ତ ହୁଏ ଗୃହସ୍ଥ । ଗୁରୁଙ୍କୁ ପୁଣି ସାକ୍ଷାତ୍ ଭଗବାନ ଭାବନାରେ ସେବା କରିବ ମଣିଷ ଭାବନାରେ ନୁହେଁ ।

ପ୍ରଶ୍ନ-୯୫. ଗୁରୁ ତ' ଆଉ ଭଗବାନଙ୍କ ଭଳି ଚିନ୍ମୟ ଦେହ ଧାରି ନୁହନ୍ତି । ସେ ଆମ ଭଳି ମୃଣ୍ମୟ ଦେହଧାରୀ । ତାଙ୍କୁ ଭଗବତ ଜ୍ଞାନରେ ସେବା କରିବା କ'ଣ ସମ୍ଭବ ?

**ଏଷ ବୈ ଭଗବାନ୍ ସାକ୍ଷାତ୍ ପ୍ରଧାନ ପୁରୁଷ-ଈଶ୍ୱରଃ ।**
**ଯୋଗେଶ୍ୱରୈଃବିମୃଗ୍ୟ-ଅଙ୍ଘ୍ରିଃଲୋକୋ ଯଂ ମନ୍ୟତେ ନରମ୍ ।୨୭।**

ଉ. ନା,ନା ତାହା କଦାପି ଠିକ୍ ନୁହେଁ । ଅନେକ ଗୁରୁଙ୍କ ଦେହ ମଧ୍ୟ ଚିନ୍ମୟ ହୋଇଥିବାର ପ୍ରମାଣିତ ହୋଇଛି । ଯଥା ଦତ୍ତାତ୍ରେୟ, ଶୁକଦେବ ପରମହଂସ, କ୍ରିୟାଯୋଗୀ ବାବାଜୀ ମହାରାଜ ଏବଂ ଋଷି ଯାଜ୍ଞବଲକ୍ୟ ଆଦି । ଗୁରୁ ବନ୍ଦନାରେ ବର୍ଣ୍ଣିତ ହୁଅନ୍ତି -ଗୁରୁଃ ବ୍ରହ୍ମା, ଗୁରୁଃ ବିଷ୍ଣୁ ଗୁରୁଃଦେବ ମହେଶ୍ୱର-ଗୁରୁଃ ସାକ୍ଷାତ୍ ପରମବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

ପୁଣି ଶିବ-ବ୍ୟାସାଦି ମୁନିମାନେ ମଧ୍ୟ ନିଜ ନିଜର ଗୁରୁଙ୍କ ଚରଣ କମଳ ଧ୍ୟାନ କରନ୍ତି ଚିନ୍ମୟ ବୋଲି । ଆମ ଭଳି ଅଳ୍ପ ବୁଦ୍ଧିଆ ଲୋକ କେବଳ ସଦ୍ ଗୁରୁଙ୍କୁ ସାଧାରଣ ମନୁଷ୍ୟ ଭାବି ସେବା କରି ତାଙ୍କ କୃପାଜନ୍ୟ ଚିନ୍ମୟ ପ୍ରେମରୁ ବଂଚିତ ହୋଇଥାଉଁ ।

ସଦ୍‌ଗୁରୁ ଓ ଭଗବାନ ମଧ୍ୟରେ ପାର୍ଥକ୍ୟର ସୀମା ଅତ୍ୟନ୍ତ ସୀମିତ । ଉଭୟ ଈଶ୍ୱର କୋଟିକ । ଭଗବାନଙ୍କର କ୍ଷମତା ପ୍ରାପ୍ତ ପ୍ରତିନିଧି ହିଁ ସଦ୍‌ଗୁରୁଦେବ । ଗୁରୁ ସେବକ ଈଶ୍ୱର ଓ ଭଗବାନ ସେବ୍ୟ-ଈଶ୍ୱର । ଆମ ଉପକାର ଦୃଷ୍ଟିରୁ ଭଗବାନଙ୍କଠାରୁ ସଦ୍‌ଗୁରୁ ଅଧିକ କୃପାମୟ ଉପକାରୀ । କାରଣ ଭଗବାନ ସ୍ୱୟଂ ଚିହ୍ନା ଦିଅନ୍ତି ନାହିଁ

ସିଧା ସଳଖ ଆମକୁ । ଗୁରୁ ଚିହ୍ନେଇ ଦିଅନ୍ତି-'ହେଇଟି ଏଇ ଭଗବାନ' ।

କର୍ମ-ଜ୍ଞାନ-ଯୋଗ ମାର୍ଗର ଅନ୍ତିମ ଫଳ ହରି ଭଜନ । ଯଦି ହରିଭଜନ ନ କଲେ ସାଧକ ରହିପାରୁଚି ତେବେ ଆମେ ଜାଣିବା ତାର ସକଳ କର୍ମ-ଜ୍ଞାନ-ଯୋଗ ଚୁଲିକି ଗଲା । ନିଆଁ ପାଉଁଶ ହେଲା । ଠିକ୍ ସେହି ନ୍ୟାୟରେ ସାଧକ ବୃତ୍ତି ପରକ କର୍ମ କରୁ କରୁ ଭୌତିକ ବିଦ୍ୟାଧ୍ୟୟନ କରେ । ଶେଷରେ ଅଧ୍ୟାତ୍ମ ବିଦ୍ୟା ଅର୍ଜନ ଲାଗି ଶ୍ରଦ୍ଧା-ବିଶ୍ୱାସ-ଆଗ୍ରହ -ଉତ୍ସାହରୁ ବଂଚିତ ହୁଏ । କାରଣ ଇଷ୍ଟ କର୍ମ-ପୂର୍ତ୍ତକର୍ମ-ପରୋପକାର ଇତ୍ୟାଦି ସିଧା ସଳଖ ଭକ୍ତି ରାଜ୍ୟରେ ପ୍ରବେଶ କରାଇ ପାରିବାରେ ଅକ୍ଷମ । ଅଧ୍ୟାତ୍ମ ବିଦ୍ୟା କେବଳ ସାଧକର ହାତ-କାନ ଧରି ଟାଣି ନିଅନ୍ତି ସେ ରାଜ୍ୟକୁ ।

ପ୍ରଶ୍ନ-୯୬. ଅଧ୍ୟାତ୍ମ ବିଦ୍ୟା ସାଧନରେ ଅନ୍ତିମ ଫଳ କିସ ?

**ଏବଂ ଅଭ୍ୟସିତଃ ଚିତ୍ତଂ କାଳେନ ଅଳ୍ପୀୟସା ଯତେଃ ।**
**ଅନୀଶଂ ତସ୍ୟ ନିର୍ବାଣଂ ଯାତି-ଅନିନ୍ଧନ ବହ୍ନିବତ୍ ।।୩୪।।**

ଉ.ଗୃହସ୍ଥ ହଠାତ୍ ଦିନେ ଆବିଷ୍କାର କରେ ଯେ ସେ ଅଜାଣତରେ କେତେବେଳେ ଜଣେ ସିଦ୍ଧ ପାଚିଲା ସନ୍ନ୍ୟାସୀ (ଯତେଃ) ହୋଇ ଯାଇଛି । ଜଳୁଥିବା ଅଗ୍ନି-କୁଣ୍ଡରୁ ଇନ୍ଧନ ସରିଗଲେ ଅଗ୍ନି ଯେମିତି ସ୍ୱତଃ ଲିଭି ଯାଏ । କାହାକୁ ଲିଭାଇବା ଦରକାର ପଡ଼େନା ଏହି ସ୍ୱତଃ ଅଗ୍ନି (କାମନା-ବାସନା-ସଂସ୍କାର) ଲିଭିଯିବା ଘଟଣା/ ପ୍ରକ୍ରିୟାକୁ ନିର୍ବାଣ (ବୁଦ୍ଧ ଦେବଙ୍କ ମହାନିର୍ବାଣ) କୁହାଯାଏ ।

ଜ୍ଞାନ ମାର୍ଗୀମାନଙ୍କର ପ୍ରାରବ୍ଧ ଶେଷ ହେଉଥିବାରୁ ତାକୁ ଦୁଃଖମୟ ସଂସାରରୁ ଆତ୍ୟନ୍ତିକ ମୁକ୍ତିମିଳେ ତାହା କେବଳ ଦେହ ତ୍ୟାଗ ପରେ । ପୂର୍ବରୁ ନୁହେଁ । ମନୁଷ୍ୟର ମନ ଥରେ ବ୍ରହ୍ମାନନ୍ଦ ଲାଭ କରି ପାରିଲେ ଭୌତିକ ସୁଖ ଜନିତ ବିଷୟଆନନ୍ଦ ଆଉ ଆଦୌ ଖୋଜେନା ।

ପ୍ରଶ୍ନ-୯୭. ସଂସାରରେ ଦେଖିବାକୁ ଅନେକ ସାଧୁ ସନ୍ଥ ସନ୍ନ୍ୟାସ ଅଶ୍ରମରୁ ପୁଣି ଗୃହସ୍ଥାଶ୍ରମୀ ହୋଇ (ଅବପନାତ) ଛୁଆ ପିଲା ଖେଳାଇ ଆନନ୍ଦ ପାଉଛନ୍ତି । ଏଭଳି ଗୃହସ୍ଥ ଆଶ୍ରମ ବନ୍ଦନୀୟ ନା ନିନ୍ଦନୀୟ ଅଟେ ?

**ଯଃ ପ୍ରବ୍ରଜ୍ୟ ଗୃହାତ୍ ପୂର୍ବଂ ତ୍ରିବର୍ଗ-ଅବପନାତ୍ ପୁନଃ ।**
**ଯଦି ସେବତେ ତାନ୍ ଭିକ୍ଷୁଃ ସ ବୈ ବାନ୍ତାଶୀ-ଅପତ୍ରପଃ ।।୩୬।।**

ଉ.ଧର୍ମ-ଅର୍ଥ-କାମ ସେବନରେ ପୂର୍ଣ୍ଣ ବୈରାଗ୍ୟ ଆସିଲେ ଗୁରୁ ତାଙ୍କୁ କଠିନ ପରୀକ୍ଷା କରି ସାରି ସନ୍ନ୍ୟାସ ଦୀକ୍ଷା ଦେବା ନିରାପଦ । ନଚେତ ଶିଷ୍ୟର ପତନ ଅନିବାର୍ଯ୍ୟ । ଏଥିରେ ଗୁରୁ ଶିଷ୍ୟ ଉଭୟଙ୍କ ପତନ ହୁଏ । ଗୁରୁ ମଧ୍ଯ ଦଣ୍ଡ ପାଆନ୍ତି ଭଗବାନଙ୍କଠାରୁ ଓ ଶିଷ୍ୟ ତ ଅବଶ୍ୟ ଦଣ୍ଡପାଏ ସଂସାରରେ ନିନ୍ଦା-ଘୃଣା-ଅପମାନ ପ୍ରାପ୍ତ ହୋଇ । ସଂସାର ସେମାନଙ୍କୁ ଥରେ ଖାଇସାରି ବାନ୍ତି କରି ପୁଣି ତାକୁ ଖାଇବାଲୋକ (ବାନ୍ତାଶୀ)/ଅଭକ୍ଷ୍ୟଭକ୍ଷୀ କହି ଦୂରଦୂର ମାରମାର କରେ । କାରଣ ସେମାନେ ନିର୍ଲ୍ଲଜ (ଅପତ୍ରପଃ) ଅସତ୍ତମ (ଧୂର୍ତ୍ତ) । ସେମାନଙ୍କ ଉପଦେଶ ଆଦେଶ, ଜପ-ତପ-ଶିକ୍ଷା ସକଳ ବିପଦ୍‌ଜନକ ବ୍ରହ୍ମଚାରୀ, ବାନପ୍ରସ୍ଥୀ, ଗୃହସ୍ଥାଶ୍ରମୀ ଓ ସନ୍ନ୍ୟାସୀ ସମସ୍ତଙ୍କ ଲାଗି । ଏମାନେ ସମାଜର ଏକ ଏକ ଦୁଷ୍ଟ ବ୍ରଣ, କଳଙ୍କ ରୂପେ ପରିଗଣିତ ।

ଏଠାରେ ଆମକୁ ବୁଝିବାକୁ ହେବ ମନୁଷ୍ୟ ଶରୀର ଆମକୁ ମିଳିନି ବିଷୟ ସୁଖ ଭୋଗିବାକୁ । ବରଂ ମିଳିଛି ଆତ୍ମା-ପରାମାତ୍ମାଙ୍କ ଅନୁଭବ ଲାଗି । ଜଣେ ଏହା ଅନୁଭବ କରିସାରି ପୁଣି କି ଲାଭ ପାଇଁ ନାରୀ-ପୁତ୍ର-ଗୃହ ଆସକ୍ତ ହେବ ସନ୍ନ୍ୟାସୀ ହୋଇ ? ତାଙ୍କୁ ଗୃହସ୍ଥ ବା ସନ୍ନ୍ୟାସୀ ନ କହି ଘୃଣ୍ୟ ଲମ୍ପଟ କହିବା ଉଚିତ୍ ।

ପ୍ରଶ୍ନ-୯୮. କୁହାଯାଏ ବୈଦିକ ଜ୍ଞାନ ମନୁଷ୍ୟର ବିବେକ ଚକ୍ଷୁ ଉନ୍ମୀଳନ କରନ୍ତି । ସେଥିରେ ଗୃହସ୍ଥ ପାଇଁ ପିତୃଯାନ/ଚନ୍ଦ୍ରଯାନ ମାର୍ଗ ପୁଣି ଦେବଯାନ ମାର୍ଗ ଉଭୟର ବିର୍ଣ୍ଣନା କାହିଁକି କରାଯାଇଛି ?

**ପ୍ରବୃତ୍ତଂ ଚ ନିବୃତ୍ତଂ ଚ ଦ୍ୱିବିଧଂ କର୍ମ ବୈଦିକମ୍ ।**
**ଆବର୍ତ୍ତେତ ପ୍ରବର୍ତ୍ତନ ନିବୃତ୍ତେନ-ଅଶ୍ନୁତେଽମୃତମ୍ ।।୪୭।।**

ଉ.ହଁ, ଗୃହସ୍ଥଜୀବନ ଆରମ୍ଭ ହୁଏ ଗୃହମେଧୀ /ଅସୁର ଜୀବନ ପରେ ପରେ । ନବୀନ ଗୃହସ୍ଥମାନେ ଅତ୍ୟନ୍ତ କଠିନ ଗୃହସ୍ଥାଶ୍ରମ ହଠାତ୍ ଅନୁସରଣ କରିବା ଅସମ୍ଭବ ଭାବନ୍ତି । ତେଣୁ ଅନେକ ଜନ୍ମଧରି ପ୍ରବୃତ୍ତି ମାର୍ଗରେ ଜନ୍ମ-ମରଣ ଚକ୍ରରେ ଘୂରିବା ପରେ ଅଧିକାର (ମନରେ ସାହସ) ଆସେ ନିବୃତ୍ତିମାର୍ଗରେ । ପ୍ରବୃତ୍ତି ମାର୍ଗରେ ପିତୃଲୋକ ସ୍ୱର୍ଗ ଲୋକ ସୁଖ ଆସ୍ୱାଦନ କଲେ ସିନା ଆହୁରି ଉଚ୍ଚତର ଆନନ୍ଦ ପ୍ରାପ୍ତିଲାଗି କଷ୍ଟ ଉଠାଇବ । ନଚେତ ସୁବିଧାବାଦୀ ହୋଇ ସମର ଭୂମିରେ ଗାଣ୍ଡିବ ଫିଙ୍ଗା ଅର୍ଜୁନ ହୋଇଯିବ ଯେ ! ତେଣିକି ସ୍ୱର୍ଗ ସୁଖରେ ବୈରାଗ୍ୟ ଆସିଲେ ସଦ୍‌ଗୁରୁଙ୍କ ଶରଣା ପନ୍ନ ହୋଇ ଅମୃତ ଆସ୍ୱାଦନ କରିପାରିବ ।

ପ୍ରଶ୍ନ-୯୯. ପିତୃଯାନ ମାର୍ଗ ଗୁହ୍ୟ ମାର୍ଗ ଅଟେ । ଏହା କର୍ମକାଣ୍ଡୀମାନଙ୍କର

ସ୍ୱର୍ଗକୁ ଯିବା ମାର୍ଗ । ପିତୃଯାନ ମାର୍ଗ ଅପେକ୍ଷା ଦେବଯାନ ମାର୍ଗ ଗୁହ୍ୟତର ମାର୍ଗ ଅଟେ । ଏହି କ୍ରମ ମୁକ୍ତି ମାର୍ଗ ଜ୍ଞାନୀ ମାନଙ୍କ ପାଇଁ । ଏ ଦୁଇମାର୍ଗଠାରୁ ଭିନ୍ନ ଆଉ କିଛି ଗୁହ୍ୟତମ ମାର୍ଗ ବେଦ ଭଗବାନ ବର୍ଣ୍ଣନା କରିଛନ୍ତି କି ?

**ଯ ଏତେ ପିତୃଦେବାନାଂ ଅୟନେ ବେଦ ନିର୍ମିତେ ।**
**ଶାସ୍ତ୍ରେଣ ଚକ୍ଷୁଷା ବେଦ ଜନସ୍ଥୋଽପି ନ ମୁହ୍ୟତି ।।୫୬।।**

ଉ.ହଁ,ହଁ ତାର ନିଶ୍ଚିତ ବ୍ୟବସ୍ଥା କରିଛନ୍ତି ସେ । କର୍ମ-ଜ୍ଞାନ ବେଦ ଭଗବାନଙ୍କର ଦୁଇଟି ବାହ୍ୟ ଚକ୍ଷୁ ମାତ୍ର । ତୃତୀୟ ଚକ୍ଷୁ ଲଲାଟ ସ୍ଥିତ ଚକ୍ଷୁ ଯାହା ମସ୍ତିଷ୍କ (ଦିମାଗ) ଦ୍ୱାରା ନିୟନ୍ତ୍ରିତ ନୁହେଁ ବରଂ ହୃଦୟ ଚକ୍ଷୁ (ଦିଲ୍) ଦ୍ୱାରା ନିଯନ୍ତ୍ରିତ । ତାଙ୍କୁ ଭାଗବତ୍ କୁହନ୍ତି ଭକ୍ତି ମାର୍ଗ ବା ବ୍ରହ୍ମଯାନ ମାର୍ଗ । ଏଥିରେ କର୍ମ-ଜ୍ଞାନ-ଧ୍ୟାନ-ଯୋଗ ଆଦି କିଛି କରିବାକୁ ପଡ଼େନା ହରି ଶରଣାଗତ ହେଲେ । ସେ ସବୁ ସ୍ୱଭାବତଃ ଆପଣାଛାଏଁ ଛାଏଁ ହୁଏ । ପରମାତ୍ମା ବା ଭଗବାନ ହୃଦୟ କମଳରେ ବସି ସ୍ୱୟଂ ଗଭର୍ଣ୍ଣ କରନ୍ତି । ଜୀବର ଛୁଟୀ । ଏହାହିଁ ଜୀବନ୍ମୁକ୍ତି ମାର୍ଗ । ଭକ୍ତର ପ୍ରେମ ଗନ୍ତାଘର !!

ପ୍ରଶ୍ନ ଉଠେ-ସେ ବ୍ରହ୍ମ ପରମାତ୍ମା ତତ୍ତ୍ୱ ପୁଣି କିସ ? ତାର ସ୍ୱରୂପ କ'ଣ ? ଉତ୍ତର ମିଳେ-ଏ ଶରୀର ସଂସାର ନ ଥିଲାବେଳେ ଯେ ରହନ୍ତି । ଥିବା ବେଳେ ଶରୀର ସଂସାର ଭିତରେ ସର୍ବବ୍ୟାପକ ହୋଇ ରହିଥିବେ । ପୁଣି ଶରୀର ସଂସାର ଅଦୃଶ୍ୟ ହେଲେ ମଧ୍ୟ ରହନ୍ତି ସେ ହିଁ ବ୍ରହ୍ମ-ପରମାତ୍ମା-ଭଗବାନ ।

ବସ୍ତୁ ଥିଲେ ପ୍ରତିବିମ୍ବ-ଛାୟା ରହେ । ପ୍ରତିବିମ୍ବ ସବୁଠାରେ ଦିଶେନା ଦର୍ପଣ ସାମନାରେ ରହିଲେ ପ୍ରତିବିମ୍ବ/ଛାୟା ଦୃଶ୍ୟମାନ ହୋଇଥାଏ । ପ୍ରତିବିମ୍ବର ବାସ୍ତବତା ନ ଥିଲେ ମଧ୍ୟ ଅବସ୍ଥିତି ଥାଏ । ସୁତରାଂ ଇନ୍ଦ୍ରିୟ ଲବ୍‌ଧ ଜ୍ଞାନ ଅନୁଭୂତି ସାବ୍ୟସ୍ତ କରିପାରିବ ନାହିଁ ଯେ 'ଭଗବତ୍ ତତ୍ତ୍ୱ' ବୋଲି କିଛି ଅଛି କି ନାହିଁ । କାରଣ ସେ ହିଁ ଆମ ସମସ୍ତଙ୍କ ଶରୀର ଓ ସଂସାରର ସୃଜନ-ପାଳନ-ସଂହାର କର୍ତ୍ତା ।

ପ୍ରଶ୍ନ-୧୦୦.ଶରୀର ଓ ସଂସାର ଉଭୟ କ୍ଷିତି-ଜଳ-ପାବକ-ଗଗନ-ସମୀର ପଞ୍ଚ ତତ୍ତ୍ୱରେ ନିର୍ମିତ । ସେହିଭଳି ଏ ଶରୀର କ'ଣ ସଂସାର ରୂପକ ବାସ୍ତବ ବସ୍ତୁର ଏକ ଅବାସ୍ତବ ଛାୟା କି ?

**କ୍ଷିତି-ଆଦୀନାଂ ଇହ-ଅର୍ଥାନାଂ ଛାୟା ନ କତମ-ଅପି ହି ।**
**ନ ସଂଘାତୋ ବିକାରୋଽପି ନ ପୃଥକ୍ ନ-ଅନ୍ୱିତୋ ମୃଷା ।।୫୯।।**

ଉ.ନା,ନା ଏହା ବିମ୍ବ-ପ୍ରତିବିମ୍ବ ଭଳି ବାସ୍ତବ କିମ୍ବା ଅବାସ୍ତବ (ଛାୟା) ନୁହନ୍ତି । କେବଳ ପଞ୍ଚଭୂତଙ୍କର ମିଶ୍ରଣ (ସଂଘାତୋ)ନୁହନ୍ତି ଏମାନେ । ଶରୀର ମଧ ସଂସାରର ବିକାର ନୁହେଁ କିମ୍ବା ସଂସାର ଠାରୁ ଭିନ୍ନ ନୁହେଁ । ସ୍ୱୟଂ ସଂସାର ମଧ ସତ୍ୟ ନୁହେଁ (ନ-ଅନ୍ୱିତୋ) କିମ୍ବା ମିଥ୍ୟା (ମୃଷା)ମଧ ନୁହେଁ ।

ଇନ୍ଦ୍ରିୟ ଲବ୍ଧ ଜ୍ଞାନ, ଦେହାତ୍ମ୍ୟ ବୁଦ୍ଧି ଥିବା ପର୍ଯ୍ୟନ୍ତ ବା ବିଷୟ ପ୍ରତି ଇନ୍ଦ୍ରିୟ ମାନଙ୍କ ଆକର୍ଷଣ ଥିବା ପର୍ଯ୍ୟନ୍ତ ଶରୀର -ସଂସାର-ସଂସାର କର୍ତ୍ତାଙ୍କ ଭିନ୍ନତା - ଅଭିନ୍ନତା ନିମିତ୍ତ -ଉପାଦାନ କାରଣ ରହସ୍ୟ ବୁଝିହୁଏନା । ଜାଗ୍ରତ ଅବସ୍ଥା ଓ ସୁଷୁପ୍ତି ଅବସ୍ଥା ସହିତ ସ୍ୱପ୍ନ ଅବସ୍ଥାର ଅନୁଭୂତି ସହିତ ଆଦୌ ତୁଳନୀୟ ନୁହନ୍ତି । ଏହାଠାରୁ ଏକ ଭିନ୍ନ ତୁରୀୟ ଅବସ୍ଥାର ବ୍ୟବସ୍ଥା ପରମାତ୍ମା ଖଞ୍ଜିଛନ୍ତି ଏଥିର ରହସ୍ୟ ଅନୁଭବ କରିବା ନିମିତ୍ତ । ଏଥିରେ ଦ୍ୱୈତ ଭାବ ନଷ୍ଟ ହୋଇ ଅଦ୍ୱୈତ ଭାବ ଅନୁଭୂତ ହଏ । ଯାହର ଅନ୍ୟନାମ ଅଦ୍ୱୟଜ୍ଞାନ ବା ପରମାତ୍ମା ତତ୍ତ୍ୱ ଜ୍ଞାନ ।

ପ୍ରଶ୍ନ-୧୦୧. ମନ-ବୁଦ୍ଧି-ଚିତ୍ତ-ଅହଂକାରଙ୍କର ଏହି ଚତୁର୍ଥ ତୁରୀୟ ଅବସ୍ଥାରେ କେଉଁ କେଉଁ ସ୍ତରରେ ଅଦ୍ୱୈତ ଅନୁଭବ ହୁଏ ଗୃହସ୍ଥ ସାଧକର ।

**ଭାବ-ଅଦ୍ୱୈତଂ କ୍ରିୟା-ଅଦ୍ୱୈତଂ ଦ୍ରବ୍ୟ -ଅଦ୍ୱୈତଂ ତଥା -ଆତ୍ମନଃ ।**
**ବର୍ତ୍ତୟନ୍ ସ୍ୱ-ଅନୁଭୂତ୍ୟା -ଇହ ତ୍ରୀନ୍ ସ୍ୱପ୍ନାନ୍-ଧୁନୁତେ ମୁନିଃ ।।୬୨।।**

ଉ.ସଂସାର କହିଲେ ବସ୍ତୁ , ବ୍ୟକ୍ତି ଓ କ୍ରିୟାକୁ ବୁଝାଏ । ସୁତରାଂ ଏ ତିନିଟିରେ ଅଦ୍ୱୈତ ଅନୁଭବ ହେବା ହିଁ ସାଧକପାଇଁ ତୁରୀୟାବସ୍ଥା ପ୍ରାପ୍ତି ।

ପ୍ରଶ୍ନ-୧୦୨. ଭାଗବତ ଧର୍ମରେ ଭାବ-ଅଦ୍ୱୈତ କହିଲେ କ'ଣ ବୁଝାଏ ?

**କାର୍ଯ୍ୟ କାରଣ ବସ୍ତୁ-ଐକ୍ୟ ଦର୍ଶନଂ ପଟ ତନ୍ତୁବତ୍ ।**
**ଅବସ୍ତୁତ୍ୱାତ୍ ବିକଳ୍ପସ୍ୟ ଭାବ-ଅଦ୍ୱୈତଂ ତତ୍ ଉଚ୍ୟତେ ।।୬୩।।**

ଉ.ବସ୍ତ୍ର ସୂତ୍ରରେ ତିଆରି ହୁଏ । କାର୍ଯ୍ୟ-କାରଣ ଦୃଷ୍ଟିରେ ବସ୍ତ୍ର କାର୍ଯ୍ୟ ଓ ସୂତ୍ର କାରଣ ଅତଏବ ଭିନ୍ନ । କିନ୍ତୁ ତତ୍ତ୍ୱଦୃଷ୍ଟିରେ ବସ୍ତ୍ର ଓ ସୂତ୍ର ଉଭୟେ ତୂଳାରୁ ଉତ୍ପନ୍ନ । ସୁତରାଂ ତୂଳା ହିଁ ପରମ କାରଣ ଓ ଏ ଦୁହେଁ କାର୍ଯ୍ୟ । ଏହା ହିଁ ଭାବ-ଅଦ୍ୱୈତ ।

ପ୍ରଶ୍ନ-୧୦୩. କ୍ରିୟା ଅଦ୍ୱୈତ କହିଲେ କାହାକୁ ବୁଝାଏ ?

**ଯଦ୍ ବ୍ରହ୍ମଣି ପରେ ସାକ୍ଷାତ୍ ସର୍ବକର୍ମ ସମର୍ପଣମ୍ ।**
**ମନୋବାକ୍ ତନୁଭିଃ ପାର୍ଥ କ୍ରିୟା-ଅଦ୍ୱୈତଂ ତତ୍ ଉଚ୍ୟତେ ।।୬୪।।**

ଉ. ହେ' ଯୁଧିଷ୍ଠିର (ପାର୍ଥ) ! ଗୃହସ୍ଥ କରୁଥିବା କାୟ,ମନ,ବାଣୀର ସକଳ କାର୍ଯ୍ୟକୁ କେବଳ ପରମାତ୍ମାଙ୍କ ପ୍ରସନ୍ନତା ନିମିତ୍ତ କରିବାକୁ କ୍ରିୟା -ଅଦ୍ୱୈତ କୁହାଯାଏ ।

ପ୍ରଶ୍ନ-୧୦୪.ଦ୍ରବ୍ୟାଦ୍ୱୈତ କହିଲେ କ'ଣ ବୁଝାଏ ?

**ଆତ୍ମ ଜାୟା ସୁତ-ଆଦୀନାଂ ଅନ୍ୟେଷାଂ ସର୍ବ ଦେହିନାମ୍ ।**
**ଯତ୍ ସ୍ୱ-ଅର୍ଥ କାମୟୋଃ ଐକ୍ୟଂ ଦ୍ରବ୍ୟ-ଅଦ୍ୱୈତମ୍ ତତ୍ ଉଚ୍ୟତେ ॥୬୫॥**

ଉ. ନିଜର, ନିଜ ପତ୍ନୀ,ପୁତ୍ର, ପିତା, ମାତା ଆଦି ସକଳ ଜୀବ ଜନ୍ତୁ ମଧ୍ୟ ସମସ୍ତେ ଆନନ୍ଦ ମୟ ଦ୍ରବ୍ୟରେ ନିର୍ମିତ ଓ ସମସ୍ତେ ସେଇ ଗୋଟିଏ ଚିଜ ଆନନ୍ଦ ପ୍ରାପ୍ତି ଲକ୍ଷ୍ୟରେ ଅନନ୍ତ କାଳରୁ ପ୍ରଯତ୍ନଶୀଳ । ଏହା ହିଁ ଦ୍ରବ୍ୟ-ଅଦ୍ୱୈତ ।

ପ୍ରଶ୍ନ-୧୦୫. ନିବୃତ୍ତି ବା ସନ୍ନ୍ୟାସ ମାର୍ଗରେ ତୀବ୍ର ବୈରାଗ୍ୟ ଆଣିବାକୁ ଗୃହ ତ୍ୟାଗ ଦରକାର ପଡ଼େ । ପ୍ରବୃତ୍ତି ମାର୍ଗରେ କର୍ମ କରି ଭକ୍ତି ଲଗାମ ଧରି ଜୀବନ ନିର୍ବାହ କଲେ ଭିତରେ ଭିତରେ ସନ୍ନ୍ୟାସ ପାକଳ ହୋଇଥାଏ । ଗୃହତ୍ୟାଗ ଦରକାର ପଡ଼େନା । ବୈଦିକ ମାର୍ଗରେ ବର୍ଣ୍ଣ-ଆଶ୍ରମ ଧର୍ମ ପାଳନ କରି ଗୃହସ୍ଥ କ'ଣ ସନ୍ୟାସୀଙ୍କ ଭଳି ମୁକ୍ତି ମଧ୍ୟ ପାଇ ପାରିବ ?

**ଏତୈଃ ଅନ୍ୟୈଃଚ ବେଦୋକ୍ତୈଃ ବର୍ତ୍ତମାନଃ ସ୍ୱକର୍ମଭିଃ ।**
**ଗୃହେଽପି-ଅସ୍ୟ ଗତିଂ ଯାୟାତ୍ ରାଜନ୍ ତତ୍ ଭକ୍ତିଭାକ୍ ନରଃ ॥୬୬॥**

ଉ.ଏହି ଭାଗବତ ପୁରାଣ ବର୍ଣ୍ଣିତ ଅନ୍ୟାନ୍ୟ ବେଦୋକ୍ତ ମାର୍ଗରେ ଠିକ୍ ଠିକ୍ ଗୃହସ୍ଥ ଧର୍ମ ପାଳନ କଲେ, ହେ' ଯୁଧିଷ୍ଠିର ! ଭୁକ୍ତି-ମୁକ୍ତି ତ କରତଳ ଗତ ହେବ । ପୁଣି ଅନ୍ୟ ମାନଙ୍କର ଅପ୍ରାପ୍ୟ ଜୀବନ୍ମୁକ୍ତି ବା ବିମୁକ୍ତିର ଅଧିକାରୀ ହୁଏ ଗୃହସ୍ଥ । ଭୁକ୍ତି-ମୁକ୍ତି କିଛି ଚାହେଁନା ଜଣେ ସିଦ୍ଧ ଗୃହସ୍ଥ । ଭଗବାନ ତାକୁ ସବୁ ଯାଚି ଯାଚି ଦିଅନ୍ତି । ସେ ହୁଏ ଭିତର ସନ୍ନ୍ୟାସରେ ମାଲାମାଲ ।

ପ୍ରଶ୍ନ-୧୦୬.ଦେବର୍ଷି ନାରଦଜୀ ଏଥର ସୁନ୍ଦର ଦୃଷ୍ଟାନ୍ତଟିଏ ଦେଲେ । କହିଲେ, 'ହେ, ଯୁଧିଷ୍ଠିର ! ଦେଖ ତୁମେ ଗୃହସ୍ଥ ହୋଇ ସ୍ୱଧର୍ମ ପାଳନ ଠିକ୍ ଠିକ୍ କରିଛ ବୋଲି ଭଗବାନ ଶ୍ରୀକୃଷ୍ଣ ପରମାତ୍ମା ହୋଇ ମଧ୍ୟ ତୁମ ଆଗରେ -ପଛରେ ଚାଲୁଛନ୍ତି । ଯାହାଙ୍କ ଦର୍ଶନ ପାଇଁ ବ୍ୟାସ-ପରାଶର-ବିଶ୍ୱାମିତ୍ର- ଯାଜ୍ଞ ବଳକ୍ୟ-ବାମଦେବ ଓ ମୁଁ ତୁମ ଘରକୁ ବାରମ୍ବାର ଆସୁଛୁ । ଆମ ସନ୍ନ୍ୟାସ ସବୁ କି କାମରେ ଲାଗୁଛି ? ଆମ ବୈରାଗ୍ୟ ଜ୍ଞାନ ବେଦାଧ୍ୟୟନ ତପସ୍ୟା ସବୁ ତୁମ ଗୃହସ୍ଥାଶ୍ରମ ଫଳ ପାଖରେ

ତୁଚ୍ଛ ଅତି ତୁଚ୍ଛ ପ୍ରମାଣିତ । ଆମେ କାହାକୁ ଗୋଟିଏ ବୋଲି ମୁଦ୍ରା ଦାନ କରିପାରୁନୁ । ଅଥଚ ତୁମେ କେତେବଡ଼ ରାଜସୂୟ ଯଜ୍ଞ କରିପାରିଛ ତାଙ୍କ ଆଶ୍ରୟରେ ! !' ଦ୍ୱିତୀୟ ଦୃଷ୍ଟାନ୍ତଟି ଦେଇ ନାରଦଜୀ ତାଙ୍କର ପୂର୍ବ ଜନ୍ମର ଗୃହସ୍ଥ ଜୀବନ ବିଷୟରେ କ'ଣ କହିଲେ ?

**ଅହଂ ପୁରାଭବଂ କଶ୍ଚିତ୍ ଗନ୍ଧର୍ବ ଉପବର୍ହଣଃ ।**
**ନାମ୍ନା-ଅତୀତେ ମହାକଳ୍ପେ ଗନ୍ଧର୍ବାଣାଂ ସୁସମ୍ମତଃ ॥୬୯॥**

ଉ.ନାରଦଜୀ କହିଲେ, 'ହେ' ରାଜନ୍ ! ମୁଁ ପୂର୍ବ କଳ୍ପରେ ମନୁଷ୍ୟ ଜନ୍ମରୁ ଉଠି ଉପବର୍ହଣ ନାମରେ ଜଣେ ଗନ୍ଧର୍ବ ହୋଇଥିଲି । ଗୃହସ୍ଥାଶ୍ରମୀ ଥିଲି । ଅମାପ ଐଶ୍ୱର୍ଯ୍ୟ, ଦାରା, ସୁତ, ସୁଖ ସମ୍ପଦର ଅଧିକାରୀ ହୋଇ ଭୁଲିଗଲି ପରମାତ୍ମାଙ୍କୁ । ଥରେ ସ୍ୱର୍ଗରେ ଏକ ପ୍ରଜାପତି ମାନଙ୍କ ସଭାରେ ହରିଗୁଣ କୀର୍ତ୍ତନ ନ କରି ଭୌତିକ ସୁଖ-ସମୃଦ୍ଧିର ପ୍ରଶଂସା କରିବାରୁ ବୈଷ୍ଣବ ଅପରାଧ ହେଲା । ଅଭିଶାପ ପାଇ ପୁଣି ମୃତ୍ୟୁ ଲୋକରେ ଦାସୀ ପୁତ୍ର ଭାବରେ ଜନ୍ମ ପାଇଲି । ହେଲେ ବୈଷ୍ଣବ ସେବାକରି ମୁଁ ପାପର ପ୍ରାୟଶ୍ଚିତ କରନ୍ତେ ଭଗବାନଙ୍କ ଆଶୀର୍ବାଦ ପ୍ରାପ୍ତ ହେଲି । ମୋତେ ଧ୍ୟାନରେ ଦର୍ଶନ ଦେଲେ ଭଗବାନ । ପରବର୍ତ୍ତୀ କଳ୍ପରେ ମୁଁ ପୁଣି ଶୁଦ୍ଧ ଭକ୍ତି ଥିବା ହେତୁ ଭଗବାନ ବ୍ରାହ୍ମାଙ୍କ ମାନସ ପୁତ୍ରରୂପେ ଜନ୍ମ ହୋଇ ବୀଣା ଧରି ହରିଗୁଣ ଗାଇ ଆନନ୍ଦ ସାଗରରେ ଭାସୁଛି ।'

ପ୍ରଶ୍ନ-୧୦୭. ଯୁଦ୍ଧିଷ୍ଠିର ପ୍ରଶ୍ନ କଲେ,'ତେବେ ସନ୍ନ୍ୟାସ ମାର୍ଗ ଓ ଗୃହସ୍ଥ ମାର୍ଗ ମଧ୍ୟରେ କେଉଁଟି ଆମ ଭଳି ଗୃହାସକ୍ତ ଲୋକଙ୍କ ନିମିତ୍ତ ଶ୍ରେୟସ୍କର ?'

**ଧର୍ମଃ ତେ ଗୃହମେଧିୟୋ ବର୍ଣ୍ଣିତଃ ପାପ ନାଶନଃ ।**
**ଗୃହସ୍ଥୋ ଯେନ ପଦବୀଂ ଅଞ୍ଜସା ନ୍ୟାସିନାଂ ଇୟାତ୍ ॥୭୪॥**

ଉ. ଦେବର୍ଷି କହିଲେ,'ହେ, ଯୁଦ୍ଧିଷ୍ଠିର ! ଆମ ଦୁହିଁଙ୍କର ପ୍ରଶଂସନୀୟ ଗୃହସ୍ଥାଶ୍ରମର ଫଳରୁ ଏହା ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ଅତ୍ୟନ୍ତ କଷ୍ଟକର ଶୁଷ୍କ ସନ୍ନ୍ୟାସ ଆଶ୍ରମଠାରୁ ଗୃହସ୍ଥ ଆଶ୍ରମ ସରଳ, ସହଜ ଓ ସୁବିଧା ଜନକ ମାର୍ଗ । ଯଦି ଚ ଏଥିରେ ଟିକିଏ ଅଧିକ ସମୟ ଲାଗେ ଶ୍ରୀହରିଙ୍କୁ ପ୍ରସନ୍ନ କରିବାକୁ । କିନ୍ତୁ ଏଥିରେ ସନ୍ନ୍ୟାସ ମାର୍ଗ ଭଳି ପତନର ଆଦୌ ଭୟ ନଥାଏ । ସ୍ୱୟଂ ଭଗବାନ ହାତ ଧରି ଚଲାଉଥାନ୍ତି ଗୃହସ୍ଥକୁ । ଦୈବାତ୍ ପତନ ହେଲେ ବି ସୁଧାରିବା ଦାୟିତ୍ୱ ତାଙ୍କର ।

ମୋର ଜୀବନରେ ତାହା ହିଁ ଘଟିଛି ବୋଲି ତୁମେ ଦେଖିଲ ତ !!'

ପ୍ରଶ୍ନ-୧୦୮. ଭଗବାନ ଶଙ୍କର (ଭବ) ସୃଷ୍ଟି କର୍ତ୍ତା ବ୍ରହ୍ମା (ପଦ୍ମଜ) ଆଦି ଯେଉଁ ଭଗବାନ ନାରାୟଣ, ରାମ, କୃଷ୍ଣଙ୍କ ସ୍ୱରୂପ ଇମିତି-ଇମିତି ସେମିତି-ସେମିତି ବୋଲି ଧ୍ୟାନ କରି କରି ନିରୂପଣ କରିବାରେ ବା ବୁଝିବାରେ ଅସମର୍ଥ ତାଙ୍କୁ ଜଣେ ସାଧାରଣ ଗୃହସ୍ଥ କିପରି ପ୍ରସନ୍ନ କରିପାରେ ?

**ନ ଯସ୍ୟ ସାକ୍ଷାତ୍ ଭବ ପଦ୍ମଜ-ଆଦିଭିଃ**
**ରୂପଂ ଧିୟା ବସ୍ତୁତୟା -ଉପବର୍ଣ୍ଣିତମ୍ ।**
**ମୌନେନ ଭକ୍ତ୍ୟା-ଉପଶମେନ ପୂଜିତଃ**
**ପ୍ରସୀଦତାଂ ଏଷ ସ ସାତ୍ୱତାଂ ପତିଃ ।।୭୭।।**

ଉ. ଏଥିପାଇଁ ଅତ୍ୟନ୍ତ ସରଳ ଉପାୟମାନ ଅଛି । ଜ୍ଞାନୀ ମାନେ ସାଧନା ଶେଷରେ ଶରଣାଗତି ସ୍ୱୀକାର କରି ମୌନ ରହି, ଭକ୍ତମାନେ କାୟ ମନୋ ବାକ୍ୟରେ ଶରଣାଗତିମୂଳକ ସେବା କରି ଓ କର୍ମୀମାନେ ଶରଣାଗତି ମୂଳକ ବର୍ଣ୍ଣ-ଆଶ୍ରମ ଧର୍ମ ପାଳନ କରି ଭକ୍ତ ବତ୍ସଳ (ସାତ୍ୱତାଂ ପତିଃ) ଭଗବାନଙ୍କୁ ପ୍ରସନ୍ନ କରିପାରନ୍ତି । ସେ ପ୍ରମାଣ କରି ଦେଖାନ୍ତି ଯେ-ସେ ହିଁ କେବଳ ଭକ୍ତ ମାନଙ୍କର ରକ୍ଷାକର୍ତ୍ତା, ପକ୍ଷପାତୀ, ସ୍ୱାମୀ, ଓ ମାର୍ଗ ଦର୍ଶକ । ସେ କର୍ମଯୋଗ କରୁ, ଜ୍ଞାନଯୋଗ କରୁ କି ଭକ୍ତି ଯୋଗ କରୁ । କେବଳ ନିଷ୍କାମ ଭକ୍ତି ଲୋଡା । ଅନ୍ୟ କିଛି ନୁହେଁ । ନା କର୍ମ, ନା ଜ୍ଞାନ ନା ଧ୍ୟାନ ।

## ୨୦.ମିଶ୍ର ବାସନା ପ୍ରକରଣ ସାର (ଯୁଧିଷ୍ଠିର-ନାରଦ ସମ୍ବାଦ)

### ଅଧ୍ୟାୟ ୧୧ଶ-୧୫ଶ

ଯେ ଶକ୍ତି, ସମ୍ପତ୍ତି, ସମୟ ଖର୍ଚ୍ଚ କରି ଶରୀର ସୁଖ ଓ ସଂସାରୀ ସୁଖ ଖୋଜେ ଶାସ୍ତ୍ର ମତରେ ସେ ଅସୁର । ଯେ ଏ ତିନି କଥାର ସଦୁପଯୋଗ କରି ପରମାତ୍ମାଙ୍କୁ ପ୍ରସନ୍ନ କରିବାକୁ ଚାହେଁ ସେ ସାଧୁ, ମହାତ୍ମା । ଆମ ଭଳି ଜୀବମାନେ ପ୍ରାୟତଃ ଏ ଦୁଇ ଦଳଙ୍କଠାରୁ ସ୍ୱତନ୍ତ୍ର, ମିଶ୍ରବାସନା ଯୁକ୍ତ ମଣିଷ । ଭାଗବତ ମତରେ ଧର୍ମରାଜ ଯୁଧିଷ୍ଠିର ମଧ୍ୟ ଏହି ଶ୍ରେଣୀରେ ଗଣାଯାଆନ୍ତି । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସଭାରେ ଦ୍ୱାରିକାନାଥ ଉପସ୍ଥିତ ଥିଲେ । ସୁଦର୍ଶନ ଚକ୍ର ତାଙ୍କ ହାତ ଆଙ୍ଗୁଠିରେ ପ୍ରକଟ ହେଲେ । ଶିଶୁପାଳଙ୍କ ମସ୍ତକ କଟିଗଲା । ସମସ୍ତେ ଶ୍ରୀକୃଷ୍ଣଙ୍କ ଜୟ ଘୋଷ କଲେ । ତଥାପି ଯୁଧିଷ୍ଠିର ଆଦୌ ଚିହ୍ନିପାରିଲେନି ଶ୍ରୀକୃଷ୍ଣ ହିଁ ସ୍ୱୟଂ ପରମେଶ୍ୱର ବା  ଭଗବାନ ବୋଲି !

ଭଗବାନଙ୍କୁ ଚିହ୍ନିବାର ଜଣେ ସୁପାତ୍ର ବୋଲି ଭକ୍ତ ଶ୍ରେଷ୍ଠ ନାରଦ ଏବେ ଚିହ୍ନାଇ ଦେଲେ ଯୁଧିଷ୍ଠିରଙ୍କୁ ଶ୍ରୀକୃଷ୍ଣ କିଏ ? ସାଧୁ ବା ସଦ୍‌ଗୁରୁ ଆମକୁ ଏଇଥି ପାଇଁ ଲୋଡ଼ା ପଡନ୍ତି । ଜ୍ଞାନ ମାର୍ଗୀ ସାଧକ ବନରେ ରହି, ଗୁମ୍ଫାରେ ଲୁଚି ଏକାକୀ ସାଧନ କରି ଈଶ୍ୱର ଦର୍ଶନ କରେ । କାରଣ ସେ ସ୍ୱାର୍ଥୀ । ଅନ୍ୟର ମଙ୍ଗଳ ଚିନ୍ତନ ପାଇଁ ତାଙ୍କୁ ସମୟ କାହିଁ । ଭକ୍ତ କିନ୍ତୁ ସାଙ୍ଗ ସାଥୀ ବନ୍ଧୁ ପରିଜନ ଭଳି ସତ୍‌ପାତ୍ରମାନଙ୍କ ଆଗରେ ନାଚି, ଗାଇ ସଂକୀର୍ତ୍ତନ କରି; କରାଇ ସମସ୍ତଙ୍କୁ ହରିପ୍ରେମ ବାଣ୍ଟିପାରେ ବୋଲି ସେ ବାସ୍ତବରେ ପରମାର୍ଥୀ । ଯାହାର ଦୃଷ୍ଟି ପ୍ରେମପୂର୍ଣ୍ଣ ଓ ହୃଦୟ ବିଶାଳ ସେ ପ୍ରଭୁଙ୍କର ଅତିପ୍ରିୟ । ସାଧୁ କୃପା ହେଲେ କହ୍ନେଇ ଆଉ ଲୁଚି ପାରେନା । ଈଶ୍ୱର ତା ହାତ ପାଆନ୍ତାରେ ଧରା ଦିଅନ୍ତି ।

ସାଧୁ, ବୈଷ୍ଣବ ଚିହ୍ନିବାକୁ ହେଲେ ସ୍ୱଧର୍ମ ପାଳନ ବାଧ୍ୟତା ମୂଳକ । ଏ ପ୍ରକରଣ ସାରା ପାଞ୍ଚ ଅଧ୍ୟାୟରେ ଚାରି ବର୍ଣ୍ଣର ଧର୍ମ, ଚାରି ଆଶ୍ରମର ଧର୍ମ, ନାରୀଧର୍ମ, ଗୁରୁଧର୍ମ, ରାଜା ଧର୍ମ, ପ୍ରଜାଧର୍ମ ଇତ୍ୟାଦି ବର୍ଣ୍ଣିତ । ସାମାନ୍ୟ ଧର୍ମ ଓ ବିଶେଷ ଧର୍ମର ପାର୍ଥକ୍ୟ ମଧ୍ୟ ଏ ପ୍ରକରଣରେ ବିସ୍ତୃତ ରୂପେ ଆଲୋଚିତ । ସାମାନ୍ୟ ଧର୍ମ ସମସ୍ତଙ୍କ ପାଇଁ ଏକ ରୂପରେ ପାଳନୀୟ । ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ ଇତ୍ୟାଦି ବିଶେଷ ଧର୍ମ ସମସ୍ତଙ୍କ ପାଇଁ କିନ୍ତୁ ଅଲଗା ଅଲଗା ପାଳିବାକୁ ହୁଏ । ବ୍ରାହ୍ମଣର ଧର୍ମ କ୍ଷତ୍ରିୟର ଧର୍ମଠାରୁ ସ୍ୱତନ୍ତ୍ର । ଜଣେ ଗୃହସ୍ଥ କେବେ ବି ସନ୍ନ୍ୟାସୀ ଧର୍ମ ପାଳିବାକୁ ବାଧ୍ୟ ନୁହେଁ । ଯଦ୍ୟପି ସବୁକଥା ବେଦ ଶାସ୍ତ୍ର ଉପଦିଷ୍ଟ ।

ସାମାନ୍ୟ ଧର୍ମ ମନୁ ସଂହିତାରେ ଦଶ ଲକ୍ଷଣ ବିଶିଷ୍ଟ । ଭାଗବତରେ କିନ୍ତୁ ଏଥିରେ ତିରିଶ ଲକ୍ଷଣ ଦର୍ଶାଯାଇଛି । ଆରମ୍ଭ ସତ୍ୟରୁ । ମଝିରେ ଦୟା, କ୍ଷମା ସହିଷ୍ଣୁତା, ପବିତ୍ରତା, ତପ, ତିତିକ୍ଷା, ଅହିଂସା, ବ୍ରହ୍ମଚର୍ଯ୍ୟ, ତ୍ୟାଗ, ସ୍ୱାଧ୍ୟାୟ, ସରଳତା ଆଦି ଅଠେଇଶ ପାହାଚ ଦର୍ଶାଇ ଶେଷ ଲକ୍ଷଣ ରଖାଯାଇଛି ଆତ୍ମ ସମର୍ପଣ ବା ନିରହଂକାରିତା ।

ବ୍ରହ୍ମଚାରୀ ଓ ସନ୍ନ୍ୟାସୀ ଧର୍ମରେ ସର୍ବଦା ସମଦୃଷ୍ଟି ଦରକାର । ଗୃହସ୍ଥ ଧର୍ମରେ କାର୍ଯ୍ୟରେ ବ୍ୟବହାରରେ ବିଷମ ଦୃଷ୍ଟି ରହିପାରେ କିନ୍ତୁ ଭାବାତ୍ମକ ସମଦୃଷ୍ଟି ଲୋଡା । ସଂସାରରେ ରାବଣଙ୍କ ଭଳି ସାଧୁ ବେଶ ପକାଇ ସୀତା ଚୋରି କରିବା ସହଜ । ରାମଙ୍କ ଭଳି ଗୃହସ୍ଥ ଧର୍ମୀ ହୋଇ ସରଳ ହେଲେ ଆମେ ସୀତାଙ୍କୁ ବା ଭକ୍ତିକୁ ହରାଇ ବସିବା । ଶ୍ରୀ ରାମ, ଭଗବାନ ହୋଇ ମଧ୍ୟ ସରଳତା ଯୋଗୁଁ ପତ୍ନୀଙ୍କ ବୋଲରେ ମାୟାମୃଗ ପଛରେ ଦୌଡିଲେ । ବନବାସ କାଳରେ ଶ୍ରୀରାମ ଓ ସୀତା ଅସହ୍ୟ କଷ୍ଟ ସହ୍ୟ କଲେ । ଶେଷରେ ଅବଶ୍ୟ ରାବଣଙ୍କ ମୃତ୍ୟୁ ଓ ସୀତାଙ୍କ ଉଦ୍ଧାର ହୋଇଛି । ରାମାୟଣ ଏକ ମହାନ୍ ଶିକ୍ଷା ଦେଲେ ଗୃହସ୍ଥ ଧର୍ମ ପାଳନ କେତେ କଷ୍ଟମୟ । ସରଳ ଲୋକ ପାଇଁ ପଦେ ପଦେ ବିପଦ । ଗୋଡ଼ ଖସିବାର ସମ୍ଭାବନା ବେଶୀ । ସେଇଥି ପାଇଁ ଗୃହସ୍ଥ ଭକ୍ତର ଉଦ୍ଧାରର ଠିକା ସ୍ୱୟଂ ଭଗବାନ ନିଅନ୍ତି । ସେ ଭକ୍ତ ବତ୍ସଳ । ଜ୍ଞାନୀ, କର୍ମୀ ଓ ଧ୍ୟାନୀଙ୍କୁ କିନ୍ତୁ ଆତ୍ମ ଉଦ୍ଧାର କରିବାକୁ ପଡ଼େ । ଭଗବାନ ସେମାନଙ୍କଠାରୁ ଟିକେ ଛାଡ଼ବାଡ଼ ହେଇ ରହନ୍ତି । ଏ ତିନି ମାର୍ଗ ଯାକ ପୁରୁଷାର୍ଥ ପରାୟଣ । ଅଥଚ ସରଳ ଗୃହସ୍ଥ ମାର୍ଗ, ଭାଗବତ ଧର୍ମ ପାଳନ ମୂଳକ ବୋଲି ଶରଣାଗତି ପରାୟଣ । ଏଥିରେ ପୁରୁଷାର୍ଥର ନାମ ଗନ୍ଧ ନଥାଏ । ଥାଏ ସରଳ ଈଶ୍ୱର ବିଶ୍ୱାସ ସହିତ ଦୃଢ ଶ୍ରଦ୍ଧା । ନାରଦଙ୍କ ଭଳି ଭକ୍ତି ଯୋଗୀ ସନ୍ନ୍ୟାସୀଙ୍କୁ ମଧ୍ୟ ଅହରହ ନାରାୟଣ ନାମ ଉଚ୍ଚାରଣ କରିବା ଦରକାର । ଜଣେ ଗୃହସ୍ଥ ଭକ୍ତ ଶଯ୍ୟା ତ୍ୟାଗ ଓ ଶଯ୍ୟା ଗ୍ରହଣ ବେଳେ ଦୁଇଥର ହରିନାମ କୀର୍ତ୍ତନରେ ଭଗବାନ ସନ୍ତୁଷ୍ଟ । ଭକ୍ତି ଧର୍ମରେ ଆଡ଼ମ୍ବର ପୂର୍ଣ୍ଣ ପୂଜା, ବିଧି, ମନ୍ତ୍ର, ପୁରୋହିତ ଲୋଡ଼ା ପଡେ ନା । ତୁଳସୀ ଦଳ ସହିତ ଆଞ୍ଜୁଳାଏ ବା ଚୁଳକାଏ ଜଳରେ ଶ୍ରୀହରି ପ୍ରସନ୍ନ ହୋଇଯାଆନ୍ତି ଯଦି ମନଟି ତାର ନିର୍ମଳ ଓ କର୍ମଫଳଟି ତାର କୃଷ୍ଣ ଅର୍ପିତ ।

ନାରୀ ଧର୍ମ ବର୍ଣ୍ଣନା ପ୍ରସଙ୍ଗରେ ଭାଗବତ ଧର୍ମ କହନ୍ତି ନାରୀର ଦେହ ଦୁର୍ବଳ ହୋଇପାରେ । ପୁରୁଷର ଦେହ ସବଳ ହେଲେ ମଧ୍ୟ ହୃଦୟ କଠୋର । ନାରୀର ହୃଦୟ କୋମଳ, ଆର୍ଦ୍ର, ଅଧିକ କଷ୍ଟ ସହିଷ୍ଣୁ ଓ ପର ଦୁଃଖ କାତର । ସେ ସ୍ୱଭାବତଃ ଦୟା ଦାନର ଅଧିକାରିଣୀ । ତେଣୁ ସିନା ଭକ୍ତିର ରଙ୍ଗ ନାରୀ ମନରେ ଜଲଦି ଲାଗିଯାଏ । ଭଗବାନଙ୍କ କୃପା ସହଜରେ ମିଳିଯାଏ । କଠୋର ସାଧନା କରେ ଗୃହସ୍ଥ ଜୀବନରେ ପତି । ପତି

ବୈଷ୍ଣବ କିମ୍ବା ଭକ୍ତ ହୋଇଥିଲେ ପତ୍ନୀଙ୍କୁ ପତିଙ୍କର ତପସ୍ୟାର ଫଳ ଅକ୍ଳେଶରେ ଦିଅନ୍ତି ଭଗବାନ । ପତି ସିନା ଭଗବାନଙ୍କ ଭକ୍ତ । ପତ୍ନୀ କିନ୍ତୁ ଭକ୍ତର ଭକ୍ତ ପରା ! ସେହି କାରଣରୁ ଅନସୂୟା, ଅହଲ୍ୟା, ଜୟଦେବଙ୍କ ପତ୍ନୀ ପଦ୍ମାବତୀ, ଗୀତାପଣ୍ଡାଙ୍କ ପତ୍ନୀ ଓ ମୀରାବାଈଙ୍କ ଭଳି ନାରୀମାନେ ଅକ୍ଷୟ କୀର୍ତ୍ତୀ ରଖିଗଲେ; ଏହି ଭାରତ ଭୂଇଁରେ । ଗୃହସ୍ଥ ଧର୍ମର ଜୟ ଜୟ କାର କରିଥିଲେ ।

ଜଣେ ପକ୍‌କା ଗୃହସ୍ଥ ଭାବେ ପତ୍ନୀ ତା ପାଇଁ କାମ ଭୋଗର ସାଧନ ନୁହେଁ । ବରଂ ଭଗବତ୍ ପ୍ରାପ୍ତି ପାଇଁ ଧର୍ମର ସାଧନ । ବୈଦିକ ଶାସ୍ତ୍ରରେ ସେ ଗୃହସ୍ଥର ଧର୍ମପତ୍ନୀ ଭାଇ !! କଦାପି କାଠ କଣ୍ଢେଇ କାମ ପତ୍ନୀ ନୁହେଁ ଇଉରୋପ ଆମେରିକାବାସୀଙ୍କ ଦୃଷ୍ଟି ଭଳି । ଭାଗବତ ଅନୁସାରେ ଭଗବାନଙ୍କ ଚବିଶି ଅବତାର ହୋଇଛି ଆଦର୍ଶ ବ୍ରହ୍ମଚାରୀ, ବାନପ୍ରସ୍ଥୀ, ସନ୍ନ୍ୟାସୀ, ଗୁରୁ, ଯୋଦ୍ଧା, ମୁକ୍ତି ମାର୍ଗ ପ୍ରଦର୍ଶକ, ବୈରାଗୀ ଧର୍ମ ପ୍ରଚାର ପ୍ରସାର ଲାଗି । ଦୁଇଟି ଶ୍ରେଷ୍ଠ ଅବତାର ଶ୍ରୀରାମରୂପରେ ସ୍ୱଧର୍ମ ପାଳନକାରୀ ଆଦର୍ଶ ଧାର୍ମିକ ଓ କୃଷ୍ଣ ଅବତାର ଶ୍ରୀକୃଷ୍ଣ ରୂପରେ ସ୍ୱଧର୍ମ ତ୍ୟାଗ କରି ଆଦର୍ଶ ପ୍ରେମିକ ଭୂମିକାରେ ଅଭିନୟ ଲାଗି ।

ପରବର୍ତ୍ତୀ ଅଷ୍ଟମ ସ୍କନ୍ଧରେ ବର୍ଣ୍ଣିତ ହେବ ଅସଦ୍ ବାସନା ପରିହାର କରି ସଦ୍‌ବାସନା ସଂଗ୍ରହ ଶେଷରେ କି ଭଳି ଯଜ୍ଞ, ଦାନ, ତାପ, କ୍ରିୟା ଦ୍ୱାରା ଈଶ୍ୱର ଶରଣାଗତି ସମ୍ଭବ ହୁଏ, ଏଇକଥା ଦର୍ଶାଇବା ଲକ୍ଷ୍ୟରେ ।

**ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ସପ୍ତମସ୍କନ୍ଧେ ପଞ୍ଚଦଶୋଽଧ୍ୟାୟଃ ।**

**।। ହରିଃ ଓଁ ତତ୍‌ସତ୍ ।।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

-୦-

### ସପ୍ତଦଶ ନକ୍ଷତ୍ର- ଅନୁରାଧା

# ଅଷ୍ଟମ ସ୍କନ୍ଧଃ

(ଅଧ୍ୟାୟ-୨୪,ଶ୍ଲୋକ-୯୩୧)

ଲକ୍ଷଣ-ମନ୍ୱନ୍ତର ଲୀଳା

## ପ୍ରକରଣ-୨୧

କ୍ରିୟା(ଅଧ୍ୟାୟ୧ମ-୪ର୍ଥ)

## ଅଥ ୧ମ ଅଧ୍ୟାୟଃ

### (ମନୁଙ୍କ ଅନୁଶାସନରେ ସତ୍‌ଧର୍ମ-ସତ୍‌କର୍ମ-କ୍ରିୟା)

ପ୍ରଶ୍ନ-୧. ଏ ପର୍ଯ୍ୟନ୍ତ ଗତ ସାତ ସ୍କନ୍ଧରେ ସ୍ୱାୟମ୍ଭୂବ ମନ୍ୱନ୍ତର କଥା ଶ୍ରବଣ କଲେ ରାଜା ପରୀକ୍ଷିତ । ଗୋଟିଏ କଳ୍ପରେ ଚଉଦ ମନ୍ୱନ୍ତର କାଳ ଭୋଗ ହୁଏ । ମାନବ ଧର୍ମ କଥା ସପ୍ତମ ସ୍କନ୍ଧରେ ଶ୍ରବଣ କରିଛନ୍ତି । ଅଧିକାରୀ ପୁରୁଷ ରୂପେ ରାଜା ମନୁ ପ୍ରତ୍ୟେକ ମନ୍ୱନ୍ତର କାଳ ଆରମ୍ଭରେ ସତ୍‌ଧର୍ମ ବା ଆଦର୍ଶ ଧର୍ମ ସ୍ଥାପନ କରନ୍ତି । ସୁତରାଂ ଅତୀତ ମନ୍ୱନ୍ତର କଥା ସହିତ ଚଳିତ ମନ୍ୱନ୍ତର କଥା ଶ୍ରବଣରେ ମଧ୍ୟ ଆଗ୍ରହୀ ହୋଇଛନ୍ତି ରାଜା ।

ବର୍ତ୍ତମାନ କଳ୍ପର ଚଳିତ ମନ୍ୱନ୍ତରର ନାମ କ'ଣ ବୋଲି ଶୁକଦେବ ପରମହଂସ ରାଜାଙ୍କୁ କହିଲେ ?

ଋଷି ଉବାଚ

**ମନବୋଽସ୍ମିନ୍ ବ୍ୟତୀତାଃ ଷଟ୍ କଳ୍ପେ ସ୍ୱାୟମ୍ଭୁବ-ଆଦୟଃ ।**
**ଆଦ୍ୟଃତେ କଥିତୋ ଯତ୍ର ଦେବାଦୀନାଂ ଚ ସମ୍ଭବଃ ॥୪॥**

ଉ.ଶୁକଦେବ କହିଲେ'ହେ,ରାଜନ୍! ସ୍ୱାୟମ୍ଭୂବ,ସ୍ୱାରୋଚିଷ,ଉତ୍ତମ,ତାମସ, ରୈବତ ଓ ଚାକ୍ଷୁସ ଏହି ଛଅ ମନ୍ୱନ୍ତର କାଳ ସରିଲାଣି । ବର୍ତ୍ତମାନ ବୈବସ୍ୱତ ମନ୍ୱନ୍ତର ବା ସପ୍ତମ ମନ୍ୱନ୍ତର ଚାଲୁଛି । ପ୍ରତ୍ୟେକ ମନ୍ୱନ୍ତରରେ ଇନ୍ଦ୍ର ଆଦି ଦେବତା, ସପ୍ତର୍ଷି, ମନ୍ୱନ୍ତର ଅବତାର ସ୍ୱତନ୍ତ୍ର ।

ସ୍ୱାୟମ୍ଭୁବ ମନୁଙ୍କର ଆକୂତି ପ୍ରସୂତି ଓ ଦେବହୂତି ନାମରେ ତିନି କନ୍ୟାଥିଲେ । ଏହା ପୂର୍ବରୁ ଦେବହୂତୀ ଓ ପତି କର୍ଦ୍ଦମ ପ୍ରଜାପିତ ଉପାଖ୍ୟାନ ବର୍ଣ୍ଣିତ ହୋଇ ସାରିଛି ।

ଏବେ ଆକୂତୀ ଓ ରଚି ପ୍ରଜାପତିଙ୍କ ଚରିତ ଶ୍ରବଣ କରନ୍ତୁ । ଯାହାଙ୍କ ଗର୍ଭରୁ ଯଜ୍ଞ ଭଗବାନ ପ୍ରକଟ ହୋଇଥିଲେ ।'

ପ୍ରଶ୍ନ-୨. ସ୍ୱାୟମ୍ଭୁବ ମନ୍ୱନ୍ତର ଶେଷରେ ମନୁଜୀଙ୍କର ଅତ୍ୟନ୍ତ ସଂସାର ବୈରାଗ୍ୟ ଉତ୍ପନ୍ନ ହେଲା । ଗୃହସ୍ଥାଶ୍ରମ ଧର୍ମର ଆଦର୍ଶ ସ୍ଥାପନ ଲାଗି ସେ କ'ଣ କଲେ ?

**ବିରକ୍ତଃ କାମ ଭୋଗେଷୁ ଶତରୂପା ପତିଃ ପ୍ରଭୁଃ ।**
**ବିସୃଜ୍ୟ ରାଜ୍ୟଂ ତପସେ ସଭାର୍ୟୋ ବନଂ ଆବିଶତ୍ ॥୭॥**

ଉ.ପତ୍ନୀ ଶତରୂପାଙ୍କ ସହିତ ରାଜ୍ୟ, ସିଂହାସନ ଆଦି ପରିତ୍ୟାଗ କରି ତପସ୍ୟା କରି ମୁକ୍ତି ପ୍ରାପ୍ତି ଲାଗି ନୈମିଷ ଅରଣ୍ୟରେ ପ୍ରବେଶ କଲେ । ଯାହାର ନାମ ବାନ ପ୍ରସ୍ଥଆଶ୍ରମ ।

ପ୍ରଶ୍ନ-୩.ସୁନନ୍ଦା ନନ୍ଦୀ କୂଳରେ ଏକ ପାଦରେ ଠିଆହୋଇ ଏକଶତ ବର୍ଷ କଠିନ ତପସ୍ୟା କଲେ । ତପସ୍ୟା ଶେଷରେ ସ୍ୱାୟମ୍ଭୁବ ମନୁଙ୍କ ଅନ୍ତରରେ କି ଦିବ୍ୟ ଅନୁଭବ ହେଲା ?

**ଆତ୍ମାବାସ୍ୟଂ ଇଦଂ ବିଶ୍ୱଂ ଯତ୍ କିଂଚିତ୍ ଜଗତ୍ୟାଂ ଜଗତ୍ ।**
**ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟ ସ୍ୱିତ୍ ଧନମ୍ ॥୧୦॥**

ଉ.ଜୀବର ଜଡ଼ ଦେହ ଅନ୍ତରରେ ଚେତନ ଆତ୍ମା ବିଦ୍ୟମାନ । ସେଇ ଆତ୍ମା ତାର ଦେହ ବାହାରେ ସମଗ୍ର ସଂସାରରେ ପରମାତ୍ମା ପରମ ଚେତନ ରୂପରେ ମଧ ନିତ୍ୟ ବିଦ୍ୟମାନ । ସୁତରାଂ କୌଣସି ସଂସାରୀ ବସ୍ତୁ ଭୋଗ କଲାବେଳେ ସେଇ ଜୀବାତ୍ମା ଏକାକୀ ଭୋଗ ନ କରି ଅନ୍ୟମାନଙ୍କ ଅଧିକାରକୁ ବିଚାର କରି ତ୍ୟାଗ ପୂର୍ବକ ଭୋଗ କରିବା ଉଚିତ୍ । କାରଣ ସଂସାରର ସକଳ ଧନ ସଂପଦ ଆଦି ଭୋଗ୍ୟ ଦ୍ରବ୍ୟ ମାଲିକ କେବଳ ପରମାତ୍ମା । ସେ ଅର୍ଜନ କରିଥିବା ଧନରେ ମଧ ଭଗବାନଙ୍କର ମାଲିକାନା ମାନି ଉଦର -ପରିବାର ପୋଷଣ ପରେ ବଳକା ଅର୍ଥକୁ ବିଳାସ-ଫେସନ-ବ୍ୟସନରେ ଖର୍ଚ୍ଚ ନ କରି ବରଂ ଅନ୍ୟମାନଙ୍କ ସେବାରେ ଲଗେଇବା ଦ୍ୱାରା ପରମାତ୍ମା ପ୍ରସନ୍ନ ହୁଅନ୍ତି ।

ମୁନିଋଷିମାନଙ୍କ ପ୍ରଦର୍ଶିତ ମାର୍ଗ କର୍ମଯୋଗ ଆଚରଣ କରି ମନୁଷ୍ୟ ପ୍ରଥମେ ସକାମ କର୍ମ କରି କରି ନିଷ୍କାମ ସ୍ଥିତିରେ ପହଞ୍ଚିବା ବେଦ ଭଗବାନଙ୍କ ଆଦେଶ । ସେପରି,ସ୍ଥିତିରେ ସାଧକ ପହଞ୍ଚିଲେ ସେ ସ୍ୱତଃ ଆତ୍ମାରାମ ଓ ଆପ୍ତକାମ ସ୍ଥିତି ପ୍ରାପ୍ତ ହୋଇଯାଏ ।

ସ୍ୱାୟମ୍ଭୁବ ମନୁଙ୍କ ତପସ୍ୟା କାଳରେ ରାକ୍ଷସ-ଅସୁରମାନେ ତାଙ୍କୁ ଖାଇଯିବା ପାଇଁ ଚେଷ୍ଟାକଲେ । ଭଗବାନ ସେତେବେଳେ ଯଜ୍ଞ ପତି ରୂପରେ ପ୍ରଥମ ମନ୍ୱନ୍ତର ଅବତାର ଗ୍ରହଣ କରି ସ୍ୱାୟମ୍ଭୁବ ମନୁଙ୍କୁ ରକ୍ଷା କରିଥିଲେ । ତତ୍‌ପରେ ସେଇ ଯଜ୍ଞ ପୁରୁଷ ଇନ୍ଦ୍ରପଦରେ ଅଧିଷ୍ଠିତ ହେଲେ ।

ଦ୍ୱିତୀୟ ମନ୍ୱନ୍ତରରେ ଅଗ୍ନିଦେବଙ୍କ ପୁତ୍ର ସ୍ୱାରୋଚିଷ ମନୁ ପଦରେ ପ୍ରତିଷ୍ଠିତ ହେଲେ । ଯଜ୍ଞ ପତିଙ୍କ ପୁତ୍ର ରୋଚନ ଇନ୍ଦ୍ର ହେଲେ । ଊର୍ଦ୍ଧ୍ୱ ସ୍ତମ୍ଭ ଆଦି ସପ୍ତର୍ଷି ପଦ ପ୍ରାପ୍ତ ହେଲେ ।

ତୃତୀୟ ମନ୍ୱନ୍ତର ଶାସନ କାଳରେ ପ୍ରିୟବ୍ରତଙ୍କ ପୁତ୍ର ଉତ୍ତମ ମନୁ ପଦ ସମ୍ଭାଳିଲେ । ବଶିଷ୍ଠଙ୍କର ସାତ ପୁତ୍ର ପ୍ରମଦ ଆଦି ସପ୍ତର୍ଷି ହେଲେ । ଇନ୍ଦ୍ରପଦରେ ବସିଲେ ସତ୍ୟଜିତ୍ ।

ଚତୁର୍ଥ ମନ୍ୱନ୍ତରରେ ମନୁହେଲେ ପ୍ରିୟବ୍ରତଙ୍କର ଦ୍ୱିତୀୟ ପୁତ୍ର ତାମସ୍ । ଇନ୍ଦ୍ରହେଲେ ତ୍ରିଶିଖ । ମନ୍ୱନ୍ତର ଅବତାର ହେଲେ ଶ୍ରୀ ବିଷ୍ଣୁ ହରି । ସେ ମା' ହରିଣୀ ଓ ପିତା ହରିମେଧାଙ୍କ ଠାରୁ ଜନ୍ମ ହୋଇଥିଲେ । ଏହି ହରି ଭଗବାନ ଗଜେନ୍ଦ୍ରକୁ ଗ୍ରାହଗ୍ରାସ ବିପତ୍ତିରୁ ଉଦ୍ଧାର କରିଥିଲେ । ଏବେ ଏହି ଚତୁର୍ଥ ମନ୍ୱନ୍ତରର ଗ୍ରାହ-ଗଜେନ୍ଦ୍ର ସୁନ୍ଦର ଚରିତ ଶ୍ରବଣ କରନ୍ତୁ ।

## ଅଥ ୨ୟ ଅଧ୍ୟାୟଃ

### (ଚତୁର୍ଥ ତାମସ ମନ୍ୱନ୍ତରରେ ଗଜେନ୍ଦ୍ରଙ୍କ ସଙ୍କଟ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୪. ତ୍ରିକୂଟ ନାମକ ରମଣୀୟ ପର୍ବତ କେଉଁଠାରେ ବିରାଜମାନ ଥିଲେ ?

**ଆସୀଦ୍ ଗିରିବରୋ ରାଜନ୍ ତ୍ରିକୂଟ ଇତି ବିଶ୍ରୁତଃ ।**
**କ୍ଷୀରୋଦେନ-ଆବୃତଃ ଶ୍ରୀମାନ୍ ଯୋଜନ-ଅୟୁତଂ ଉଚ୍ଛ୍ରିତଃ ।।୧।।**

ଉ. ଏହା ପୃଥିବୀ ପୃଷ୍ଠସ୍ଥିତ କୌଣସି ଭୌତିକ ପର୍ବତର ନାମ ନୁହେଁ । ଏହା ଦେବ ଲୋକର କ୍ଷୀର ସାଗର ବେଷ୍ଟିତ ଅତ୍ୟନ୍ତ ବିଖ୍ୟାତ ପର୍ବତ ଯାହାର ଉଚ୍ଚତା ଦଶ ହଜାର ଯୋଜନ ।

ଏହି ତ୍ରିକୂଟ ପର୍ବତର ଝରଣାରୁ ଦୁଧ କ୍ଷରଣ ହୁଏ । ଏହି ପର୍ବତ ଗୁମ୍ଫାମାନଙ୍କରେ ଦେବଲୋକବାସୀ ସିଦ୍ଧ, ଚାରଣ, ଗନ୍ଧର୍ବ, ବିଦ୍ୟାଧର, ଉରଗ, କିନ୍ନର ଆଦି ନିବାସ କରନ୍ତି । ସେଠାରେ ହେଉଥିବା ଦିବ୍ୟ ଗାଉଣା, ବାଜଣା ଶ୍ରବଣ କରି ଦିବ୍ୟ ସିଂହମାନେ ଈର୍ଷ୍ୟାରେ ଗର୍ଜନ କରିଥାନ୍ତି । ସେଠାରେ ଅନେକ ଦିବ୍ୟ ପୁଷ୍ପ, ଫଳ, ବୃକ୍ଷ, ପଶୁ, ପକ୍ଷୀ ଆଦି ଦେବଲୋକବାସୀଙ୍କ ମନୋରଞ୍ଜନ କରନ୍ତି ।

ଦିନକର କଥା । ଗୋଟିଏ ବଳବାନ ଦିବ୍ୟ ହସ୍ତୀ ସପରିବାର ଆସି ସେହି କ୍ଷୀର ସାଗରରେ ସ୍ନାନ କରୁଥିଲା । ହୃଦୟରେ ଅଫୁରନ୍ତ ଆନନ୍ଦ । ଭଗବତ୍ ଆନନ୍ଦ ବ୍ରହ୍ମାନନ୍ଦ କି ପ୍ରେମାନନ୍ଦ ନୁହେଁ । ପରିବାର ପୋଷଣ ଜନିତ ବିଷୟ ଆନନ୍ଦ ମାତ୍ର । ଭଗବାନଙ୍କୁ ଭୁଲି ବିଷୟ ଆନନ୍ଦରେ ମଗ୍ନ ହେବାରୁ ତାକୁ ସେ ଦିବ୍ୟ ଜଳରେ ଥିବା ଏକ ଦିବ୍ୟ ଅତ୍ୟନ୍ତ ବଳବାନ କୁମ୍ଭୀର ଗୋଡ଼ଧରି ଜଳକୁ ଟାଣିଲା । ହାତୀ ଅବଶ୍ୟ ବଳବାନ । କିନ୍ତୁ ଜଳରେ ତାର ବଳ କମ୍ । କୁମ୍ଭୀରର ବଳ ବେଶୀ ।

ଏ ଭଳି ସଂକଟରେ ସେ ଚେଷ୍ଟା କରିଥିଲା ନିଜ ବଳ ପୁରୁଷାର୍ଥ ଦ୍ୱାରା ଖସି ଆସିବ ବୋଲି । ହେଲେ ପାରିଲାନି ପରିବାରର ଅନ୍ୟାନ୍ୟ ସଦସ୍ୟ ପତ୍ନୀ, ପୁତ୍ର ଆଦି ସମସ୍ତେ ବଳ ଖଟାଇଲେ ତାକୁ ଉଦ୍ଧାର କରିବାକୁ । ତଥାପି କୁମ୍ଭୀର କବଳରୁ ସେ ଖସି ନ ପାରି ଅତ୍ୟନ୍ତ ବ୍ୟାକୁଳ ହେଲା । ପରିବାରର ଅନ୍ୟ ହସ୍ତୀମାନେ ଦେଖିଲେ ଯେ ତାର ଖସିବାର ବାଟ ନାହିଁ । ସୁତରାଂ ସେମାନେ ତାଙ୍କୁ ଛାଡ଼ି ନିଜ ନିଜ ରକ୍ଷାର ଉପାୟ କଲେ । ଯେ ଯାହା ବାଟରେ ଖସିଗଲେ ।

ଏକାକୀ ହୋଇ ଗଲା ଗଜରାଜ । ଏଥର ହୋସ୍ ହେଲା ତାର । ସ୍ଥିର ମନରେ ସେ ଚିନ୍ତନ କଲା । ପିତା-ମାତା-ପରିବାର କ'ଣ ସନ୍ତାନକୁ ରକ୍ଷା କରିପାରନ୍ତି ? ବ୍ୟାଧି ଗ୍ରସ୍ତକୁ ଔଷଧ କିମ୍ବା ବୈଦ୍ୟ କ'ଣ ଜୀବନ ଦେଇପାରିବେ ନା ଆୟୁଷ ଦେଇପାରିବେ ? ବୁଡ଼ିଗଲା ନାବକୁ ନାବିକ କିପରି ରକ୍ଷା କରିପାରିବ । ବିଷୟା ଜାଲରେ ପଡି ମୁଁ ମୃତ୍ୟୁ ଭୟରେ ଦୌଡୁଛି । ମୃତ୍ୟୁ(କାଳ କୁମ୍ଭୀର) ମୋ ପଛରେ ଦୌଡୁଛି । ମୃତ୍ୟୁ ପଛରେ ମୋର ଓ ମୃତ୍ୟୁର ନିୟନ୍ତ୍ରଣ କର୍ତ୍ତା ପରମେଶ୍ୱର ମଧ୍ୟ ଅଛନ୍ତି । ତାଙ୍କୁ ଭୟ ମଧ୍ୟ ଭୟ କରେ । ମୁଁ ଏବେ ଯାଉଛି ତାଙ୍କର ଶରଣ ପଶିବି ।

# ଅଥ ୩ୟ ଅଧ୍ୟାୟଃ

## (ଗଜେନ୍ଦ୍ର ସ୍ତୁତି ଓ ଭଗବାନଙ୍କ ହରି ଅବତାର କଥା)

### ଶ୍ରୀବାଦରାୟଣିଃ ଉବାଚ

ପ୍ରଶ୍ନ-୫. ସଙ୍କଟ କାଳରେ ଜୀବ କିମ୍ବା ମନୁଷ୍ୟ ମାନେ କାହିଁକି ହରିସ୍ମରଣ କରିପାରନ୍ତି ନାହିଁ ?

**ଏବଂ ବ୍ୟବସିତୋ ବୁଦ୍ଧ୍ୟା ସମାଧାୟ ମନୋ ହୃଦି ।**
**ଜଜାପ ପରମଂ ଜାପ୍ୟଂ ପ୍ରାକ୍ ଜନ୍ମନି-ଅନୁଶିକ୍ଷିତମ୍ ||୧||**

ଉ. ଗଜେନ୍ଦ୍ର ଏକ ସାଧାରଣ ବନ୍ୟ ହସ୍ତୀ ନ ଥିଲା । ପୂର୍ବ ଜନ୍ମରେ ହରିଭଜନ କରୁଥିବା ଜଣେ ନାରାୟଣ ଭକ୍ତ ଥିଲା କିନ୍ତୁ ବୈଷ୍ଣବ ଅପରାଧ ହେତୁ ଅଭିଶାପ ପାଇ ପର ଜନ୍ମରେ ହସ୍ତୀ ଦେହଟିଏ ସିନା ପାଇଥିଲା ତା ମନ ମସ୍ତିଷ୍କ, ହୃଦୟରେ ଶ୍ରୀହରି ସଶକ୍ତି ବିଦ୍ୟମାନ ଥିଲେ । କ୍ରିୟାଶୀଳ ଥିଲେ । ସୁତରାଂ ସେହି ପୁଣ୍ୟ ଫଳ ତାର ଉଦୟ ହେଲା ଏଠାରେ ।

ପ୍ରଶ୍ନ-୬. ଗଜେନ୍ଦ୍ର ବିପଦରେ ପଡ଼ନ୍ତେ ଈଶ୍ୱର ଭଜନ କଲେ ନା ଈଶ୍ୱରଙ୍କ ଈଶ୍ୱର ପରମେଶ୍ୱରଙ୍କ ମନ୍ତ୍ରଜପି ସ୍ତୁତି କରି ଉପକୃତ ହେଲେ ?

### ଗଜେନ୍ଦ୍ର ଉବାଚ

**ଓଁ ନମୋ ଭଗବତେ ତସ୍ମୈ ଯତ ଏତତ୍ ଚିତ୍ ଆତ୍ମକମ୍ ।**
**ପୁରୁଷାୟ ଆଦିବୀଜାୟ ପରେଶାୟ-ଅଭିଧୀମହି ||୨||**

ଉ.ସେ ମନ୍ତ୍ରରେ ଜଣାଇ ଦେଲେ-ଯାହାଙ୍କ ଠାରୁ ମୋର ଜଡ଼ ଦେହ-ମନ-ବୁଦ୍ଧି ଜାତ, ଜଡ଼ ଚେତନ ରୂପକ ସମଗ୍ର ସଂସାର ଜାତ, ଯାହାଙ୍କର ପୂର୍ବରୁ କେହି ନଥିଲେ, ଯେ ସକଳ ଈଶ୍ୱରଙ୍କର ମଧ୍ୟ ଈଶ୍ୱର (ନଚେଇବା ବାଲା) ମୁଁ ତାଙ୍କୁ (ପୁରୁଷାୟ)କେବଳ ଧ୍ୟାନ କରୁଛି (ଅଭିଧୀମହି) ।

ମୋର ଧ୍ୟେୟ କେବେ ପ୍ରକଟ ହୋଇ ବ୍ୟକ୍ତି ରୂପରେ ପୁଣି କେବେ ଅଦୃଶ୍ୟ ହୋଇ ଅବ୍ୟକ୍ତ ରୂପରେ ମଧ୍ୟ ରହନ୍ତି । ପ୍ରଳୟବେଳେ ଯାହାଙ୍କ ବ୍ୟତୀତ ସଚର-ଅଚର ଜଡ଼-ଚେତନ ସୃଷ୍ଟି ଅନ୍ଧକାର ମଧ୍ୟରେ ବିଲୀନ ହୋଇଯାଏ । ଯାହାଙ୍କୁ ଦର୍ଶନ କରିବା ନିମିତ୍ତ ଋଷି-ମୁନି-ଯୋଗୀ ମାନେ ନିରନ୍ତର ସମାଧିରେ ରହନ୍ତି । ଯାହାଙ୍କର ନାମ-ରୂପ-ଲୀଳା-ଗୁଣ-ଧାମ -ସନ୍ଥ ସମସ୍ତେ ଭୌତିକ/ପ୍ରାକୃତିକ ନୁହନ୍ତି ଚିନ୍ମୟ । ଯେ ଭୌତିକ ମନ, ବାଣୀ, ବୁଦ୍ଧିର ଅଗମ୍ୟ । ମୁଁ ତାଙ୍କୁ ସ୍ମରଣ କରୁଛି ।

ପ୍ରଶ୍ନ-୭. ଗଜେନ୍ଦ୍ର ତାଙ୍କ ସ୍ତୁତିରେ କେଉଁ କେଉଁ ଅବତାର ମାନଙ୍କୁ ମନେ ମନେ ସ୍ମରଣ କରି ପ୍ରଣତି ଜଣାଇଥିଲେ ?

**ନମଃ ଶାନ୍ତାୟ ଘୋରାୟ ମୂଢ଼ାୟ ଗୁଣଧର୍ମିଣେ ।**
**ନିର୍ବିଶେଷାୟ ସାମ୍ୟାୟ ନମୋ ଜ୍ଞାନଘନାୟ ଚ ॥୧୨॥**

ଉ. ମୁଁ ଓଁ ଜ୍ୟୋତି (ଶାନ୍ତାୟ)ଙ୍କୁ ନୃସିଂହ(ଘୋରାୟ)ଙ୍କୁ ପଶୁରୂପଧାରୀ ବରାହ, କଚ୍ଛପ,ମତ୍ସ୍ୟ ଓ ହୟଗ୍ରୀବ (ମୂଢ଼ାୟ)ଙ୍କୁ, ଦତ୍ତାତ୍ରେୟ (ନିର୍ବିଶେଷାୟ)ଙ୍କୁ ବୁଦ୍ଧ (ସାମ୍ୟାୟ)ଙ୍କୁ ଓ କପିଳ, ଋଷଭ(ଜ୍ଞାନ ଘନାୟ)ଙ୍କୁ ବିନମ୍ର ପ୍ରଣାମ କରୁଛି । ସେ ପ୍ରାକୃତ ଗୁଣ ଶୂନ୍ୟ ନିର୍ଗୁଣ ହୋଇ ମଧ ଜୀବକୁ ମାର୍ଗ ଦର୍ଶନ କରିବାକୁ, ଆନନ୍ଦ ଦେବାକୁ ସତ୍ତ୍ୱ, ରଜୋ ଓ ତମୋ ଗୁଣକୁ ଧାରଣ କରି ବିଷ୍ଣୁ, ବ୍ରହ୍ମା ଓ ଶଙ୍କର ହୋଇ ନିତ୍ୟ ଲୀଳା ବିହାର କରନ୍ତି । ସେ କେବଳ ମୋର ଧ୍ୟାନର ପ୍ରଭୁ ।

ପ୍ରଶ୍ନ-୮. ବୀଜ ବୃକ୍ଷକୁ ଜନ୍ମ ଦିଏ ବୋଲି ବୃକ୍ଷ କାର୍ଯ୍ୟ ଓ ବୀଜ କାରଣ । ପୁଣି ବୃକ୍ଷ ବୀଜକୁ ଜନ୍ମ ଦିଏ ବୋଲି ବୀଜ କାର୍ଯ୍ୟ ଓ ବୃକ୍ଷ କାରଣ । ବୀଜରୁ ବୃକ୍ଷ ଓ ବୃକ୍ଷରୁ ବୀଜ କରାଉଥିବା ପରମାତ୍ମଙ୍କୁ କ'ଣ କୁହାଯାଏ ଅଧ୍ୟାତ୍ମ ଶାସ୍ତ୍ରରେ ?

**ନମୋ ନମଃ ତେଽଖିଳ କାରଣାୟ**
**ନିଷ୍କାରଣାୟ-ଅଦ୍ଭୁତ କାରଣାୟ ।**
**ସର୍ବ-ଆଗମ-ଅମ୍ନାୟ ମହାର୍ଣ୍ଣବାୟ**
**ନମୋଽପବର୍ଗାୟ ପରାୟଣାୟ ॥୧୫॥**

ଉ. ସେ ସକଳ କାରଣମାନଙ୍କର କାରଣ ମହାକାରଣ ଅଟନ୍ତି । ତାଙ୍କର କେହି କାରଣ ନଥାନ୍ତି (ନିଷ୍କାରଣାୟ) । ବେଳେ ବେଳେ ଜଡ଼ ଖମ୍ବରୁ ପ୍ରକଟ ହୋଇ ଅଦ୍ଭୁତ କାରଣ ବୋଲି ନିଜକୁ ଜଣାଇ ଥାନ୍ତି ।

ସକଳ ବେଦ, ତନ୍ତ୍ର, ଶାସ୍ତ୍ରର ମୂଳ ସ୍ରୋତ ସେଇ ଏକ ପରମାତ୍ମା । ସକଳ ଜ୍ଞାନ ନଦୀ ମାନଙ୍କର ଉଦ୍‌ଗମ ଓ ବିଲୟ ସ୍ଥଳ ଜ୍ଞାନ ସମୁଦ୍ର ସେଇ ଏକ ପରମାତ୍ମା । ଜ୍ଞାନୀ ଜୀବଙ୍କର ମୋକ୍ଷଦାତା ପୁଣି ମୋକ୍ଷକୁ ତୁଚ୍ଛ କରିଥିବା ଭକ୍ତମାନଙ୍କର ଆଶ୍ରୟ ଦାତା । ସେ କାଠରେ ଅଗ୍ନି ଲୁଚିରହିବା ଭଳି ସକଳ ବସ୍ତୁ ବ୍ୟକ୍ତିରେ ନିତ୍ୟ ବିଦ୍ୟମାନ ଆତ୍ମା-ବ୍ରହ୍ମ- ପରବ୍ରହ୍ମ ।

ପ୍ରଶ୍ନ-୯. ଏ ପର୍ଯ୍ୟନ୍ତ ଗଜେନ୍ଦ୍ର ତାଙ୍କର ଇତି-ଇତି କହି ସଗୁଣ ସ୍ୱରୂପ

ବର୍ଣ୍ଣନ କଲେ । ପରମାତ୍ମଙ୍କ ନିର୍ଗୁଣ ସ୍ୱରୂପକୁ କି ଭଳି ସ୍ତୁତି କଲେ ନେତି-ନେତି ମାର୍ଗରେ ?

**ସର୍ବେ ନ ଦେବ-ଅସୁର ମର୍ତ୍ତ୍ୟ ତିର୍ଯ୍ୟକ୍**

**ନ ସ୍ତ୍ରୀ ନ ଷଣ୍ଢୋ ନ ପୁମାନ୍ ନ ଜନ୍ତୁଃ ।**

**ନ-ଅୟଂ ଗୁଣଃ କର୍ମ ନ ସତ୍ ନ ଚ ଅସତ୍**

**ନିଷେଧ ଶେଷୋ ଜୟତାତ୍ ଅଶେଷଃ ॥୨୪॥**

ଉ. ସମୁଦ୍ରରେ ଜଳ ଓ ତରଙ୍ଗ ଥାଆନ୍ତି କିନ୍ତୁ ଜଳକୁ କିମ୍ବା ତରଙ୍ଗକୁ ସମୁଦ୍ର କହିପାରୁନା ଆମ୍ଭେ । ଅଗ୍ନି କାଠରେ ଥାଆନ୍ତି,କାଠରୁ ବାହାରନ୍ତି କିନ୍ତୁ ଅଗ୍ନିକୁ କାଠ କିମ୍ୱା କାଠକୁ ଅଗ୍ନି କହିବା ପ୍ରମାଦ ପୂର୍ଣ୍ଣ ।

ସେହି ଭଳି ଦେବତା, ଅସୁର, ମନୁଷ୍ୟ, ପଶୁ, ସ୍ତ୍ରୀ, ପୁରୁଷ, ନଂପୁସକ, ଗୁଣ,କର୍ମ,ସ୍ଥୁଳ,ସୁକ୍ଷ୍ମ, କାର୍ଯ୍ୟ, କାରଣ ସବୁକଛି ପରମାତ୍ମାଙ୍କର ଠାରୁ ଜାତ ହେଲେ ମଧ୍ୟ ସେମାନଙ୍କୁ ପରମାତ୍ମା କହିବା ମୂର୍ଖତା ହେବ । ତଥାପି ଆମେ ନିରାଶ ହେବା ଉଚିତ ନୁହେଁ । ଜ୍ଞାନ ମାର୍ଗରେ ବ୍ରହ୍ମ ଭାବନା କରୁ କରୁ ସଂସାରର ସବୁ କିଛି ମନନ କରି ଏଇଟା ବ୍ରହ୍ମ ନୁହେଁ, ସେଇଟା ନୁହେଁ କହି କହି ସାଧକର ମନ ବୁଦ୍ଧି ଏକ ବିରକ୍ତି ଜନକ ଅବସ୍ଥାରେ ପହଞ୍ଚେ । ସୁତରାଂ ଯାହା ଅବଶେଷ ରହିଯାଏ ଆଉ ନିଷେଧ କରି ହୁଏନା ସେଇ ତ'ବ୍ରହ୍ମ ବା ପରମାତ୍ମା ଜ୍ଞାନ ମାର୍ଗୀ ସାଧକ ପାଇଁ ।

ଅତଏବ ଏକ ବାକ୍ୟରେ ସଂସାର ସହିତ ସଂସାର କର୍ତ୍ତାଙ୍କର ଭିନ୍ନ-ଅଭିନ୍ନ ଉଭୟ ସମ୍ବନ୍ଧ ଏକ ସମୟରେ ବିଦ୍ୟାମାନ । ସେ ବିଶ୍ୱ ସ୍ରଷ୍ଟା, ବିଶ୍ୱରୂପ, ବିଶ୍ୱଜ୍ଞାତା, ବିଶ୍ୱାତ୍ମନ ଓ ବିଶ୍ୱାତୀତ ହୋଇ ମଧ୍ୟ ବିଶ୍ୱ ଆଶ୍ରୟ ।

ସକାମ କର୍ମ କରି କରି କର୍ମ ଫଳ ଆସକ୍ତି ଜାଲରେ ବାନ୍ଧିହୁଏ କର୍ମ ମାର୍ଗୀ ସାଧକ । ଦୃଷ୍ଟି ବର୍ହିମୁଖତା ହେତୁ ସର୍ବବ୍ୟାପୀ ପରମାତ୍ମାଙ୍କୁ କେଉଁଠି ହେଲେ ଦେଖି ପାରେନା । ହିରଣ୍ୟ କଶିପୁ -ହିରଣ୍ୟାକ୍ଷ ଅସୁର ଦ୍ୱୟ କାମିନୀ-କାଂଚନ ଲୋଭରେ ଅଯଥା ଈଶ୍ୱର ଦ୍ୱେଷୀ ହୋଇ କେତେ କଷ୍ଟ ପାଇଲେ ବିଚରାମାନେ । କୁଆଡେ ନ ଖୋଜି ନିଜ ଅନ୍ତରରେ ଖୋଜିଥିଲେ ନିଶ୍ଚୟ ପାଇପାରିଥାନ୍ତେ ସେ ଦୁହେଁ ।

ପ୍ରଶ୍ନ-୧୦. କ'ଣ କରିଥିଲେ ହିରଣ୍ୟାକ୍ଷ ଏବଂ ହିରଣ୍ୟ କଶିପୁ ଈଶ୍ୱର ଦର୍ଶନ କରିପାରିଥାନ୍ତେ ?

**ନ-ଅୟଂ ବେଦ ସ୍ୱଂ ଆତ୍ମାନଂ ଯତ୍ ଶକ୍ତି ଅହଂଧିୟା ହତମ୍ ।**
**ତଂ ଦୁରତ୍ୟୟ ମାହାତ୍ମ୍ୟଂ ଭଗବନ୍ତଂ ଇତୋଽସ୍ମି-ଅହମ୍ ॥୨୯॥**

ଉ. ଯାହାଙ୍କ ଶକ୍ତି ପ୍ରାପ୍ତ ହୋଇ ସେ ମନରେ ଜାଣିପାରୁଛି, ବୁଦ୍ଧିରେ ବିଚାର କରିପାରୁଛି ତାଙ୍କୁ ନ ମାନିବାରୁ ଗଛ ଡ଼ାଳରେ ବସି ଗଛ ଡ଼ାଳ କାଟି ବିପଦରେ ପଡ଼ିବାକୁ ହୁଏ । ପୁଅକୁ କାନ୍ଧରେ ବସାଇ ସେଇ ପୁଅକୁ କୂଅ ପୋଖରୀରେ ଖୋଜିବା ଭଳି ଏ ମୂର୍ଖଙ୍କ ଜ୍ଞାନ, ଗାରିମା ପ୍ରଦର୍ଶନ ।

ଈଶ୍ୱରଙ୍କ କୃପା ସ୍ୱୀକାର କରି ଈଶ୍ୱର ଓ ଈଶ୍ୱର ଭକ୍ତଙ୍କ ଶରଣାଗତ ହୋଇଥିଲେ ପାଇଟି ଛିଡ଼ିଥାନ୍ତା । ନାରଦଙ୍କ କୃପାରୁ ପ୍ରହ୍ଲାଦ ଦର୍ଶନ କଲେ ନି କି ?

ପ୍ରଶ୍ନ-୧୧. ଗଜେନ୍ଦ୍ର ସଗୁଣ-ନିରାକାର ପରମାତ୍ମାଙ୍କ ସ୍ତୁତି କରିବାରୁ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର କେହି ଜଣେ ହେଲେ ଆସିଲେନି ତାଙ୍କ ପାଖକୁ କିନ୍ତୁ ସ୍ୱୟଂ ନାରାୟଣ ଗରୁଡ଼ ପୃଷ୍ଠରେ ଦେବୀ ଦେବତା ବିଷ୍ଣୁପାର୍ଷଦ, ଲକ୍ଷ୍ମୀଙ୍କ ସହିତ ଆବିର୍ଭୂତ ହେଲେ ଗଜେନ୍ଦ୍ର ସମ୍ମୁଖରେ ତୁରନ୍ତ । ଗଜେନ୍ଦ୍ର କ'ଣ ଦେଇ ପ୍ରସନ୍ନ କଲେ ଶ୍ରୀମନ୍ ନାରାୟଣଙ୍କୁ ?

**ସୋଽନ୍ତଃ ସରସି ଉରୁବଳେନ ଗୃହୀତ ଆର୍ତ୍ତୋ**
**ଦୃଷ୍ଟ୍ୱା ଗରୁତ୍ମତି ହରିଂ ଖ ଉପାତ୍ତ ଚକ୍ରମ୍ ।**
**ଉତ୍କ୍ଷିପ୍ୟ ସ-ଅମ୍ବୁଜ କରଂ ଗିରଂ ଆହ କୃଚ୍ଛ୍ରାତ୍**
**ନାରାୟଣ -ଅଖିଳ ଗୁରୋ ଭଗବନ୍ ନମସ୍ତେ ॥୩୨॥**

ଉ. କାଳ କୁମ୍ଭୀର ଘୋଷରାରେ ସେ ପୀଡ଼ିତ ହୋଇ ହଲ ଚଲ ହୋଇ ପାରୁ ନଥିଲେ । କିନ୍ତୁ ଶ୍ରୀହରି ବିଷ୍ଣୁଙ୍କୁ କର କମଳରେ ସୁଦର୍ଶନ ଚକ୍ର ଧରି ଗରୁଡ଼ ପୃଷ୍ଠରେ ଆକାଶରେ ଦେଖନ୍ତେ ତାଙ୍କର ବଳ ବଢ଼ିଗଲା । ସଙ୍ଗେ ସଙ୍ଗେ ସେ ପୁଷ୍କରିଣୀରୁ ଦିବ୍ୟ କମଳ ପୁଷ୍ପ ଟିଏ ଶୁଣ୍ଢରେ ଉପରକୁ ଉଠାଇ ତାଙ୍କୁ ସଶ୍ରଦ୍ଧ ସମର୍ପଣ କଲେ । କହିଲେ, 'ହେ' ପ୍ରଭୋ ! ଆପଣ ଜଗତ୍‌ଗୁରୁ ନାରାୟଣ । ମୋର ପ୍ରଣାମ ସ୍ୱୀକାର କରନ୍ତୁ । ମୁଁ ଆପଣଙ୍କର ଶରଣାଗତ ଶିଷ୍ୟ ।'

ଭଗବାନ ଅବିଳମ୍ୱେ ଗଜେନ୍ଦ୍ରଙ୍କ ଉପରେ ପ୍ରସନ୍ନ ହୋଇ ଚକ୍ର ଦ୍ୱାରା ନକ୍ର (କୁମ୍ଭୀର) ସଂହାର-ଗଜ ଉଦ୍ଧାର ଦୁଇ କାର୍ଯ୍ୟ କଲେ । ଦୁହେଁ ଯାକ ହରି ଭକ୍ତ ଥିବାରୁ ଦୁହେଁ ପ୍ରସନ୍ନ ହେଲେ । ଦୁହେଁ ଯାକ ଭଗବାନଙ୍କ କୃପାକୁ ସାଦରେ ସ୍ୱୀକାର କଲେ ।

ଭକ୍ତି ଧର୍ମର ଜୟ ପତାକା ଉଡ଼ିଲା, ଭଗବାନଙ୍କୁ ମଧ ଭକ୍ତବତ୍ସଳ ଉପାଧି ମିଳିଗଲା । ଏହି ଗଜେନ୍ଦ୍ର ପୂର୍ବ ଜନ୍ମରେ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ଗ୍ରାହ ପୂର୍ବ ଜନ୍ମର ହୂ ହୂ ନାମକ ଗନ୍ଧର୍ବ-ଏ କଥା ଶୁଣାଇବେ ପରବର୍ତ୍ତୀ ଅଧ୍ୟାୟରେ ।

## ଅଥ ୪ର୍ଥ ଅଧ୍ୟାୟଃ

### (ଗ୍ରାହ-ଗଜେନ୍ଦ୍ରଙ୍କ ବୈକୁଣ୍ଠ ଗମନ)

ପ୍ରଶ୍ନ-୧୨. ଭଗବାନ ଶ୍ରୀହରିଙ୍କ ଭକ୍ତ ଗ୍ରାହ ଓ ଗଜେନ୍ଦ୍ର ଉଭୟେ ଥିଲେ । ଗଜେନ୍ଦ୍ରଙ୍କ ସଂକଟରୁ ଉଦ୍ଧାର କରି ଗ୍ରହକୁ ସଂହାର କରିବା ପକ୍ଷପାତିତା ହେଲାନି କି ?

ଶ୍ରୀଶୁକ ଉବାଚ

**ତଦା ଦେବ -ଋଷି-ଗନ୍ଧର୍ବା ବ୍ରହ୍ମ-ଈଶାନ ପୁରୋଗମାଃ ।**
**ମୁମୁଚୁଃ କୁସୁମ-ଆସାରଂ ଶଂସନ୍ତଃ କର୍ମ ତତ୍ ହରେଃ ॥୧ ॥**

ଉ. ନା,ନା ତାହା ଆଦୌ ପକ୍ଷପାତିତା ନୁହେଁ । ଆପଣ ଓଲଟା ବୁଝୁଛନ୍ତି ପରୀକ୍ଷିତ । ବାସ୍ତବରେ କୁମ୍ଭୀରକୁ ଅଧିକ କୃପା କରି ପଶୁ ଜନ୍ମରୁ ତୁରନ୍ତ ଉଦ୍ଧାର କଲେ ସେ, ଶ୍ରୀହରିଙ୍କ ଭକ୍ତର ପାଦ ଧରିଥିବାରୁ । ଗଜେନ୍ଦ୍ରଙ୍କର କେବଳ ସଂକଟରୁ ଉଦ୍ଧାର ହେଲା ସେ ଜଣେ ବୈଷ୍ଣବ ବା ଭକ୍ତ ପାଦ ନ ଧରି କେବଳ ବିଷ୍ଣୁ ପଦ (ନାମ) ସ୍ମରଣ କରି ଶରଣାଗତ ହୋଇ ଥିବା କାରଣରୁ । ଗ୍ରାହ ଉଦ୍ଧାର ଆଗ ! ! ଗଜେନ୍ଦ୍ର ଉଦ୍ଧାର ପଛ ! ! ! ସୁତରାଂ ସେତେବେଳେ ଏ କାଣ୍ଡ ଦେଖି ବ୍ରହ୍ମା, ଶଙ୍କର, ଋଷି, ମୁନି ଓ ଦେବୀ ଦେବତା ମିଶି ସମସ୍ତେ ଭଗବାନଙ୍କର ଏ ଭଳି କାର୍ଯ୍ୟର ପ୍ରଶଂସା (ଶଂସନ୍ତଃ) କରିଛନ୍ତି । ଦୁଇ ଭକ୍ତ ଓ ଭଗବାନଙ୍କ ଉପରେ ଦିବ୍ୟ ପୁଷ୍ପ ବର୍ଷଣ (ମୁମୁଚୁଃ) କରିଛନ୍ତି । ନୃତ୍ୟ-ଗାନ-ଦୁନ୍ଦୁଭି ବାଦନ କରି ଶ୍ରୀହରିଙ୍କ ପ୍ରାକଟ୍ୟକୁ ସ୍ୱାଗତ ଜଣାଇଛନ୍ତି ।

ପ୍ରଶ୍ନ-୧୩. କାହା ଅଭିଶାପରେ ହୂ ହୂ ଗନ୍ଧର୍ବ କାହିଁକି କୁମ୍ଭୀର ଜନ୍ମ ପ୍ରାପ୍ତ ହୋଇଥିଲେ ?

**ଯୋଽସୌ ଗ୍ରାହଃ ସ ବୈ ସଦ୍ୟଃ ପରମ-ଆଶ୍ଚର୍ଯ୍ୟ ରୂପ ଧୃକ୍ ।**
**ମୁକ୍ତୋ ଦେବଳ ଶାପେନ ହୂ ହୂଃ ଗନ୍ଧର୍ବ ସତ୍ତମଃ ॥୩॥**

ଉ.ଦେବଳ ଋଷି ସ୍ନାନ କରୁଥିବା ବେଳେ ଏ ଗନ୍ଧର୍ବ ଶ୍ରୀହରିଙ୍କ ଭକ୍ତ ହୋଇ ମଧ୍ୟ ଋଷିଙ୍କ ଗୋଡ଼ ଟାଣିଥିଲେ କୌତୁକରେ । ଏହା ହିଁ ବୈଷ୍ଣବ ଅପରାଧ ଓ ଋଷି ଅଭିଶାପର କାରଣ ।

ପ୍ରଶ୍ନ-୧୪. ଭକ୍ତରାଜ କୁମ୍ଭୀର ଅଭିଶାପ ମୁକ୍ତ ହୋଇ କ'ଣ କଲେ ?

**ପ୍ରଣମ୍ୟ ଶିରସା-ଅଧୀଶଂ ଉତ୍ତମ ଶ୍ଲୋକଂ ଅବ୍ୟୟମ୍ ।**
**ଅଗାୟତ ଯଶୋ ଧାମ କୀର୍ତ୍ତନ୍ୟ ଗୁଣ ସତ୍ କଥମ୍ ।।୪।।**

ଉ.ଦିବ୍ୟ ଗନ୍ଧର୍ବ ରୂପ ଧରି ପରମେଶ୍ୱର ଶ୍ରୀହରି ଭଗବାନ (ଉତ୍ତମ ଶ୍ଲୋକ)ଙ୍କୁ ମଥା ଭୂମିରେ ଲଗାଇ ପ୍ରଣାମ ଜଣାଇଲେ । ଭଗବାନଙ୍କୁ ପରିକ୍ରମାକରି ଦିବ୍ୟ, ଗୁଣ, ଲୀଳା, ମାହାତ୍ମ୍ୟ ଗାନ କରି ସ୍ୱର୍ଗଲୋକ ଗମନ କଲେ ।

ପ୍ରଶ୍ନ-୧୫. ଗଜେନ୍ଦ୍ର ତାଙ୍କର ଜୀବନାବସାନ କାଳରେ କେଉଁ ପ୍ରକାର ମୁକ୍ତି ପ୍ରାପ୍ତ ହେଲେ ?

**ଗଜେନ୍ଦ୍ରୋ ଭଗବତ୍ ସ୍ପର୍ଶାତ୍ ବିମୁକ୍ତୋଽଜ୍ଞାନ ବନ୍ଧନାତ୍ ।**
**ପ୍ରାପ୍ତୋ ଭଗବତୋ ରୂପଂ ପୀତବାସାଃ ଚତୁର୍ଭୁଜଃ ।।୬।।**

ଉ. ସେ ଭଗବାନଙ୍କ ସାକ୍ଷାତ ସ୍ପର୍ଶ ଲାଭ କରିଥିବାରୁ ଜନ୍ମ-ମରଣ ଚକ୍ରରୁ ମୁକ୍ତ ହେଲେ । ସାରୂପ୍ୟ ମୁକ୍ତି ପ୍ରାପ୍ତହୋଇ ବୈକୁଣ୍ଠ ଗମନ କରିପାରିଲେ । ସଂବାଳୁଆରୁ ପ୍ରଜାପତିର ରୂପାନ୍ତରଣ ହେବା ଭଳି ସେ ପୀତାମ୍ବରଧାରୀ ଚତୁର୍ଭୁଜ ଶୋଭିତ ବିଷ୍ଣୁ ପାର୍ଷଦ ରୂପ ଧାରଣ କଲେ ଶରଣାଗତି ଜନିତ ବିଭୁକୃପାରୁ । ସ୍ୱସାଧନାରୁ ନୁହେଁ । କି ସମାଧି ସିଦ୍ଧିରୁ ନୁହେଁ । ଏଇ ତ ଶରଣାଗତିର ବାହାଦୂରୀ ।

ପ୍ରଶ୍ନ-୧୬. ଗଜେନ୍ଦ୍ର ପୂର୍ବ ଜନ୍ମରେ କି ଭଳି ବିଷ୍ଣୁଭକ୍ତ ଥିଲେ ?

**ସ ବୈ ପୂର୍ବଂ ଅଭୂତ୍ ରାଜା ପାଣ୍ଡ୍ୟୋ ଦ୍ରବିଡ଼ ସତ୍ତମଃ ।**
**ଇନ୍ଦ୍ରଦ୍ୟୁମ୍ନ ଇତି ଖ୍ୟାତୋ ବିଷ୍ଣୁବ୍ରତ ପରାୟଣଃ ।।୭।।**

ଉ. ସେ ପାଣ୍ଡ୍ୟ ରାଜ୍ୟର ଜଣେ ପରମ ବୈଷ୍ଣବ ରାଜା ରୂପରେ ରାଜପଣ କରୁଥିଲେ । ଦିନକର କଥା । ରାଜା କୁଳାଚଳ ପର୍ବତରେ ନିଜ ଆଶ୍ରମରେ ବସି ଧ୍ୟାନ ମଗ୍ନ ଥିଲେ । ଅଗସ୍ତ୍ୟ ମହର୍ଷି ତାଙ୍କ ଶିଷ୍ୟ ମଣ୍ଡଳ ଧରି ଆଶ୍ରମରେ ପହଞ୍ଚିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ସମାଧିରୁ ଉଠି ତାଙ୍କର ସ୍ୱାଗତ-ସେବା -ସତ୍କାର କରି ପାରିଲେନି । ଏହି ଅପରାଧ ହେତୁ ରାଜା ଋଷି ଶାପର ଶିକାର ହେଲେ । ଶାପ ପଡ଼ିଲା-ତୁ ଆତ୍ମଜ୍ଞାନ

ହରାଇ ମୂର୍ଖ ହାତୀ ଜନ୍ମ ପ୍ରାପ୍ତ ହୁଅ । ପାପର ପ୍ରାୟଶ୍ଚିତ କର । ଶ୍ରୀହରିଙ୍କୁ ପ୍ରସନ୍ନ କଲେ ଯାଇ ମୁକ୍ତ ହେବୁ ।

ପ୍ରଶ୍ନ-୧୭. ଅଗସ୍ତ୍ୟ ଋଷି ବ୍ରାହ୍ମଣ ହୋଇ ଅଭିଶାପ ଦେଲେ । ଇନ୍ଦ୍ରଦ୍ୟୁମ୍ନ ବୈଷ୍ଣବ ହୋଇ ପ୍ରତ୍ୟଭିଶାପ କାହିଁକି ଦେଲେ ନାହିଁ ?

ଶ୍ରୀଶୁକ ଉବାଚ

**ଏବଂ ଶପ୍ତ୍ୱା ଗତୋଽଗସ୍ତ୍ୟୋ ଭଗବାନ୍ ନୃପ ସାନୁଗଃ ।**
**ଇନ୍ଦ୍ରଦ୍ୟୁମ୍ନୋଽପି ରାଜର୍ଷିଃ ଦିଷ୍ଟଂତତ୍ ଉପଧାରୟନ୍ ॥୧୧॥**

ଉ. ଶାପ ଦେଇ ଅଗସ୍ତ୍ୟ ଋଷି ଶିଷ୍ୟମାନଙ୍କୁ (ସାନୁଗଃ) ଧରି ନିରାପଦରେ ପଳାଇଗଲେ । ଭକ୍ତର ସ୍ୱଭାବ ଅନ୍ୟକୁ କୃପା କରିବା । କାହାକୁ ଦଣ୍ଡ ଦେଇ ବାଟକୁ ଆଣିବାକୁ ଚେଷ୍ଟାକରିବା ନୁହେଁ । ସୁତରାଂ ରାଜା ଶାପକୁ ତାଙ୍କ ପାଇଁ ଅହୋଭାଗ୍ୟ (ଦିଷ୍ଟଂ) ମନେ କଲେ । ଅତ୍ୟନ୍ତ ହର୍ଷ ହୋଇ ଶାପକୁ ସ୍ୱୀକାର କରିନେଲେ । ତାର ଫଳ ଏବେ ଶ୍ରହରି ଦର୍ଶନ ରୂପରେ ପ୍ରାପ୍ତ ହେଲେ ଗଜେନ୍ଦ୍ର ପଶୁ ଜନ୍ମରେ ମଧ ।

ପ୍ରଶ୍ନ-୧୮. ଭଗବାନ ବିଷ୍ଣୁ-ବୈଷ୍ଣବଙ୍କର ଏ ଦିବ୍ୟ ଲୀଳାକୁ ଏକ ଅଷ୍ଟକ(ଶ୍ଳୋକ ୧୭-୨୪)ରେ ସ୍ୱୟଂ ଶ୍ରୀହରି ତାଙ୍କୁ ସ୍ମରଣ କରିବାକୁ ଆଦେଶ ଦେଇଛନ୍ତି । ତେବେ ଏ ଗଜେନ୍ଦ୍ର ଅଷ୍ଟକ ସ୍ମରଣର ମାହାତ୍ମ୍ୟ କିସ ?

ଶ୍ରୀ ଭଗବାନ ଉବାଚ

**ଯେ ମାଂ ସ୍ତୁବନ୍ତି-ଅନେନ-ଅଙ୍ଗ ପ୍ରତିବୁଧ ନିଶା-ଅତ୍ୟୟେ ।**
**ତେଷାଂ ପ୍ରାଣ-ଅତ୍ୟୟେ ଚ-ଅହଂ ଦଦାମି ବିମଳାଂ ମତିମ୍ ॥୨୫॥**

ଉ.ନାରାୟଣଙ୍କ ସଂକଳ୍ପ ଯେଉଁ ଭକ୍ତଗଣ ପ୍ରତ୍ୟେହ ନିଦ୍ରାତ୍ୟାଗ କରି ବ୍ରାହ୍ମମୁହୂର୍ତ୍ତରେ ଏହି ଅଷ୍ଟକରେ ମୋର ଧ୍ୟାନ ସ୍ମରଣ କରନ୍ତି ସେମାନଙ୍କ ପ୍ରାଣତ୍ୟାଗ କାଳକୁ ମୁଁ ଅପେକ୍ଷା କରେ । ସୁବିଧା ସୁଯୋଗ ଦେଖି ଦିନ ଗଣୁଥାଏ କିପରି ମୁଁ ତାକୁ ବୈକୁଣ୍ଠ ମୁକ୍ତି ପ୍ରଦାନ କରିବି । ସଂକ୍ଷେପରେ ଏହା ଗଜେନ୍ଦ୍ର ମୋକ୍ଷ ଲୀଳାର ଫଳଶ୍ରୁତି ଅଟେ ।

# ୨୧.କ୍ରିୟା ପ୍ରକରଣ ସାର (କର୍ତ୍ତାପଣର ଅହଂକାର ତ୍ୟାଗ)

## ଅଧ୍ୟାୟ ୧ମ-୪ର୍ଥ

ଅଷ୍ଟମ ସ୍କନ୍ଧରେ ମନ୍ୱନ୍ତର ଲକ୍ଷଣ ବର୍ଣ୍ଣିତ । ମନ୍ୱନ୍ତର ପ୍ରସଙ୍ଗରେ ମନୁଙ୍କର ଦୀର୍ଘ ଆୟୁଷ ଦର୍ଶନ କରାଇବା ଭାଗବତଙ୍କ ଉଦ୍ଦେଶ୍ୟ । ସୂକ୍ଷ୍ମ ଶରୀରରେ ରହି ଜଣେ ଜଣେ ମନୁଷ୍ୟ ଏ ଦୃଶ୍ୟମାନ ସଂସାରକୁ ୪୩,୨୦,୦୦୦ ବର୍ଷର ୭୧ଗୁଣ ସମୟ ଶାସନ କରିଥାନ୍ତି । ଯୁଗ ଅନୁସାରେ ଜୀବକୁ କାଳଜୟୀ ସତ୍‌ଧର୍ମ ଶିକ୍ଷା ଦେଉଥାନ୍ତି । ଏହି ସମୟ ମଧ୍ୟରେ ଭଗବାନଙ୍କ ଭିନ୍ନ ଭିନ୍ନ ଯୁଗାବତାର, ଲୀଳାବତାର ଇତ୍ୟାଦି ହୁଏ । ଏତେ ଦୀର୍ଘ ଆୟୁଷର ରହସ୍ୟ ବା କାଳ ଉପରେ ବିଜୟ ଉପାୟ ୪ ଭାଗରେ ବିସ୍ତାରିତ ଭାବରେ କହିଛନ୍ତି ଶୁକଦେବ ପରମହଂସ । ଯଜ୍ଞ, ଦାନ, ତପ ଓ କ୍ରିୟା ଏହି ଚାରି ପ୍ରକରଣରୁ ପ୍ରଥମ ପ୍ରକରଣ କ୍ରିୟା କଥା କହିଛନ୍ତ ଏହି ପ୍ରଥମ ଚାରି ଅଧ୍ୟାୟରେ । ଏହା କର୍ତ୍ତାପଣ ଅହଂକାର ତ୍ୟାଗ ନିମିତ୍ତ ଉଦ୍ଦିଷ୍ଟ ।

ମନୁଷ୍ୟ ଯାହା କରେ ତାହା କର୍ମ, ଅକର୍ମ, ବିକର୍ମ କିମ୍ବା ସତ୍ କର୍ମ (କ୍ରିୟା) । ଭଗବାନ ଅବତାର ନେଇ ଯାହା କରନ୍ତି ସେ ସବୁ ଲୀଳା । ପ୍ରକୃତି ଦ୍ୱାରା ଆମ ବିନା ପ୍ରଚେଷ୍ଟାରେ ଅଜାଣତରେ ଯାହା ହୁଏ ସେ ମଧ କ୍ରିୟା । ଯଥା ଶ୍ୱାସ କ୍ରିୟା, ରକ୍ତ ସଞ୍ଚାଳନ କ୍ରିୟା ଓ ରେଚନ (ମଳ-ମୂତ୍ର-ଝାଳ ବିସର୍ଜନ) କ୍ରିୟା । ଶ୍ରୁତି ଉପଦେଶରେ କରାଯାଉଥିବା କର୍ମ କେବଳ କର୍ମ ଅଟେ । ସ୍ମୃତି (ନିଷେଧ ଶାସ୍ତ୍ର) ବର୍ଣ୍ଣିତ ନିଷିଦ୍ଧ କର୍ମ ବିକର୍ମ ପଦବାଚ୍ୟ । ଉଭୟଙ୍କୁ ନ ମାନି ମନ ମାନି ଢଙ୍ଗରେ କରାଯାଉଥିବା ସକଳ କର୍ମ ବିକର୍ମ ଅଟେ । ସୁତରାଂ ତାହାରି ନାମ ସତ୍‌କର୍ମ ବା କ୍ରିୟା ଯାହା କଲେ ପରମାତ୍ମା ପ୍ରସନ୍ନ ହୁଅନ୍ତି । ସକଳ କର୍ମରେ ପୁରୁଷାର୍ଥ କରିବାକୁ ପଡୁଥିବା ବେଳେ କ୍ରିୟାରେ ପୁରୁଷାର୍ଥ ଆଦୌ ଦରକାର ହୁଏନା । ଦରକାର କେବଳ ଈଶ୍ୱରୀୟ ଶରଣା ଗତି । ଏ ପୂର୍ବ ବର୍ଣ୍ଣିତ ଅସଦ୍ ବାସନାକୁ ସତ୍ ବାସନାରେ ପରିଣତ କରିବାକୁ ଲୋଡା ମାୟାଙ୍କ ଉପରେ ବିଜୟ । ମାୟାଙ୍କର ତିନି ସେନାପତି କାମ, କ୍ରୋଧ ଓ ଲୋଭ ଜୀବକୁ କଣ୍ଢେଇ ଭଳି ଜନ୍ମ-ଜନ୍ମାନ୍ତର ନଚାନ୍ତି । ଭଗବାନଙ୍କ ଶରଣ ଗଲେ ସର୍ବ ପ୍ରଥମେ କାମକୁ ବା ପୁରଷାର୍ଥର ଅହଂକାରକୁ ଜିଣି ହୁଏ ।

ଗଜେନ୍ଦ୍ର ଉପାଖ୍ୟାନରେ ବର୍ଣ୍ଣିତ ଗଜେନ୍ଦ୍ର ଜଣେ ସଂସାରୀ ମନୁଷ୍ୟ ଠିକ୍ ଆମ ଭଳି । ପୁରୁଷାର୍ଥ ଅଭିମାନୀ ଗଜେନ୍ଦ୍ର ସପରିବାରେ ସରୋବରରେ କ୍ରୀଡା

କରୁଥିଲେ । ଏ ସଂସାର ସେଇ ସରୋବର । ଭଗବାନଙ୍କୁ ଭୁଲି ପୁରୁଷାର୍ଥ କରି କରି ସଂସାରି ସୁଖ ସାଉଁଟିବାରେ ଲାଗିବା ଜଳକ୍ରୀଡ଼ା ମାତ୍ର । କୁମ୍ଭୀର ଗୋଡ଼ ଟାଣିବା ଅର୍ଥ ଜୀବର କାଳ (ମୃତ୍ୟୁ) ଆକ୍ରମଣ । ପ୍ରଥମେ ସେ ଏକାକୀ କିନ୍ତୁ ପରେ ପରେ ସକୁଟୁମ୍ବ ଚେଷ୍ଟା କରିଛନ୍ତି କୁମ୍ଭୀର କବଳରୁ ମୁକୁଳିବାକୁ । ହେଲେ ତାଙ୍କର ସକଳ ପୁରୁଷାର୍ଥ ରୂପୀ ଚେଷ୍ଟା ବିଫଳ । ସକଳ ଅଭିମାନ ମଉଳି ଗଲା । ନିରୁପାୟ ହୋଇ ସର୍ବ ଶେଷରେ ଗଜେନ୍ଦ୍ର ଶେଷ ଅସ୍ତ୍ର ପ୍ରୟୋଗ କଲେ । ମନ ମଧରେ ଶ୍ରୀହରିଙ୍କ ରୂପ ଧ୍ୟାନ କଲେ । ପୂର୍ବ ଜନ୍ମର ଅଭ୍ୟାସ ଏବେ କାମ ଦେଲା । ପୂର୍ବ ଜନ୍ମରେ ସେ ଥିଲେ ସେଇ ଅଭିଶପ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ । ସେ ବୁଝିଗଲେ ଯେ ଅଗସ୍ତି ମୁନିଙ୍କୁ ଆସନରୁ ଉଠି ନମସ୍କାର ନ କରନ୍ତେ ଶାପଗ୍ରସ୍ତ ହୋଇ ଗଜେନ୍ଦ୍ର ଶରୀର ଧାରଣ କରିଛନ୍ତି ।

ମନ ପୁଷ୍ପ (ପଦ୍ମପୁଷ୍ପ ରୂପୀ) ଅହଂକାରକୁ ଶୁଣ୍ଢରେ ଟେକି ସମର୍ପଣ କରିଦେଲେ । ହରିକୃପା ବଳବତୀ । ଗଜେନ୍ଦ୍ର ପଶୁହୋଇ ମଧ୍ୟ ନାରାୟଣଙ୍କ ରୂପ ଧ୍ୟାନ କରିପାରୁଛନ୍ତି ! ବ୍ରହ୍ମା, ବିଷ୍ଣୁ, ଶଙ୍କର କେହି ଉଦ୍ଧାର କରିନାହାନ୍ତି ତାଙ୍କୁ । କାରଣ ସେ କାହାରି ନାମ ଧରି ଡାକପାରି ନାହାନ୍ତି । ତଥାପି ଭଗବାନ ନାରାୟଣ ସୁଦର୍ଶନ ଚକ୍ର ପ୍ରୟୋଗ କରି ତାଙ୍କୁ ତତ୍‌କ୍ଷଣାତ୍ ଉଦ୍ଧାର କରିଛନ୍ତି । ଜୀବନାନ୍ତେ ତାଙ୍କର ସଦ୍‌ଗତି ମଧ୍ୟ କରାଇଛନ୍ତି ।

ସଂସାର ସାଗରରେ ନିରାଶ୍ରୟ ହୋଇ ଭାସୁଛି ଜୀବ । ପଦେ ପଦେ ବୁଡ଼ି ଯିବାର ସମ୍ଭାବନା । ଦେହଟି ତାର ଭଙ୍ଗା ବା ଦଦରା ନାବ । ସୀମିତ ତା'ର ପୁରୁଷାର୍ଥ କରିବାର ଶକ୍ତି । ନିଜେ କାତ ମାରି କାହୁଁ ପାର ହେବ ସେ ଅଥଳ ସାଗର ? ନାଉରୀ ରାମଙ୍କ ସାହାଯ୍ୟ ଦରକାର । ନିର୍ବଳର ବଳ ରାମ । ପାପ ନଷ୍ଟ କରିବାକୁ ରାମ ନାମଙ୍କ ଶରଣ ଯିବା ଚାହି । ପାପ ଭଳି ପୁଣ୍ୟ ମଧ୍ୟ ବନ୍ଧନ କାରକ । ପାପ କଲେ ନର୍କ, ପୁଣ୍ୟ କଲେ ସ୍ୱର୍ଗ । ଉଭୟ କଲେ ମୃତ୍ୟୁଲୋକ ମିଳେ । ଚତୁର ଗଜେନ୍ଦ୍ର ଆମକୁ ଶିକ୍ଷା ଦେଇଗଲେ । ଆସ ଭାଇ, ପାପ-ପୁଣ୍ୟ କିଛି ନ କରି ଈଶ୍ୱରଙ୍କ ଶରଣ ଯିବା । ସ୍ମରଣ ଭକ୍ତି କରିବା । ଶରଣାଗତ ଲୋକର କର୍ମରେ ଈଶ୍ୱର ପାପ-ପୁଣ୍ୟ ଦେଖନ୍ତି ନାହିଁ । ଦେଖନ୍ତି ତାର ହୃଦୟର ଭାବର ଗଭୀରତା । ପୁଣ୍ୟକୁ ସମର୍ପଣ କରିବାକୁ ଚାହୁଁଥିବା ଲୋକର ଆଶ୍ରୟ କୃଷ୍ଣ । ଅତଏବ ଜୀବ ଗଜେନ୍ଦ୍ର ଭଳି ଆର୍ତ୍ତ/ ବ୍ୟାକୁଳ ହୋଇ ଶରଣ ପଶିଲେ ଶ୍ରୀକୃଷ୍ଣ ଧାଇଁ ଆସିବେ ତାକୁ ଉଦ୍ଧାର କରିବାକୁ । ସକଳ କୃତକର୍ମ ତାର ଭକ୍ତି ବା ପ୍ରଭୁ ସମର୍ପିତ କ୍ରିୟାରେ ପରିଣତ ହେବ । ଜୀବ ପାଇଁ

ପାଞ୍ଚ ପ୍ରକାର ମୁକ୍ତି ତୁଚ୍ଛ ହେଲେ ସେ ପ୍ରାପ୍ତ ହେବ ଜୀବନ୍ମୁକ୍ତି !!! ପୁରୁଷାର୍ଥ ଅଭିମାନର ତ୍ୟାଗ । କେବଳ ମଣିଷ, ଅସୁର ଦେବତା ଜନ୍ମ କାହିଁକି ପଶୁ ଜନ୍ମରେ ମଧ ହରି ରୂପ ଧ୍ୟାନ କାମରେ ଆସେ । ଜୀବ ହୋଇପାରେ କୃତ-କୃତ୍ୟ, ଜ୍ଞାତ-ଜ୍ଞାତବ୍ୟ ପୁଣି ପ୍ରାପ୍ତ- ପ୍ରାପ୍ତବ୍ୟ । ଭକ୍ତ ଭକ୍ତି, ଭଗବାନଙ୍କର ଜୟ ହେଉ ।

-୦-

# ପ୍ରକରଣ-୨୨ ତପ

## ସମୁଦ୍ର ମନ୍ଥନ ଲୀଳା (ଅଧ୍ୟାୟ ୫ମ-୧୫ଶ)

## ଅଥ ୫ମ ଅଧ୍ୟାୟଃ

## (ଦେବତାଙ୍କ ବିଷୟ ଭୋଗରେ ବିଘ୍ନ ଓ ହରି ସ୍ମରଣ)

ପ୍ରଶ୍ନ-୧୯.ପଞ୍ଚମ ମନ୍ୱନ୍ତରରେ ପ୍ରିୟବ୍ରତଙ୍କ ତୃତୀୟ ପୁତ୍ର ରୈବତ ମନୁ ଆସନ ଅଳଂକୃତ କଲେ । ସେ ପୂର୍ବବର୍ତ୍ତୀ ଦୁଇ ମନୁ ଉତ୍ତମ ତାମସଙ୍କ ସହୋଦର ଭାଇ ଥିଲେ । ରୈବତ ମନୁଙ୍କର ପୁତ୍ରମାନଙ୍କର ନାମ କ'ଣ ଥିଲା ?

ଶ୍ରୀଶୁକ ଉବାଚ

**ପଞ୍ଚମୋ ରୈବତୋ ନାମ ମନୁଃ ତାମସ୍ ସୋଦରଃ ।**
**ବଳି ବିନ୍ଧ୍ୟା-ଆଦୟଃ ତସ୍ୟ ସୁତା ହି-ଅର୍ଜୁନ ପୂର୍ବକାଃ ॥୨॥**

ଉ.ବଳି,ବିନ୍ଧ୍ୟ ଓ ଅର୍ଜୁନ ତିନିଜଣ ମୁଖ୍ୟ ସୁପୁତ୍ର ଥିଲେ । ଏହି ପଞ୍ଚମ ମନ୍ୱନ୍ତରରେ ଇନ୍ଦ୍ରପଦ ସମ୍ଭାଳିଲେ ବିଭୁ । ହିରଣ୍ୟରୋମା, ବେଦଶିରା ଓ ଊର୍ଦ୍ଧ୍ୱବାହୁ ଆଦି ସପ୍ତର୍ଷି ଥିଲେ । ପିତା ଶୁଭ୍ର ଓ ମାତା ବିକୁଣ୍ଠାଙ୍କ ଗର୍ଭରୁ ଭଗବାନ ବୈକୁଣ୍ଠ ନାମକ ମନ୍ୱନ୍ତର ଅବତାରେ ହୋଇ ଥିଲେ ।

ଷଷ୍ଠ ମନ୍ୱନ୍ତରରେ ଚାକ୍ଷୁଷ ମନୁ ପଦବୀ ସମ୍ଭାଳିଲେ । ମନ୍ତଦ୍ରୁମ ହେଲେ ଇନ୍ଦ୍ର ଓ ଆପ୍ୟ ଆଦି ହେଲେ ଦେବଗଣ । ପିତା ବୈରାଜ ମାତା ଦେବ ସମ୍ଭୂତିଙ୍କ ଗର୍ଭରେ ଭଗବାନଙ୍କ ଅଜିତ ଅବତାର ହୋଇଥିଲା । ଏହାଙ୍କର ଉପଦେଶରେ ସମୁଦ୍ର ମନ୍ଥନ ହୁଅନ୍ତେ ବିଷ-ଅମୃତ-ଲକ୍ଷ୍ମୀ-ଚନ୍ଦ୍ର ଆଦିଙ୍କର ପ୍ରାପ୍ତି ହୋଇଥିଲା ।

ପ୍ରଶ୍ନ-୨୦ କାହିଁକି ସମୁଦ୍ର ମନ୍ଥନ ଦରକାର ପଡ଼ିଲା ?

**ଯଦା ଦୁର୍ବାସଃ ଶାପେନ ସ-ଇନ୍ଦ୍ରା ଲୋକାଃ ତ୍ରୟୋନୃପ ।**
**ନିଃ ଶ୍ରୀକାଃଚ ଅଭବନ୍ ତତ୍ର ନେଶୁଃ ଇଜ୍ୟ-ଆଦୟଃ କ୍ରିୟା ॥୧୬॥**

ଉ.ଦୁର୍ବାସାଙ୍କ ଅଭିଶାପରେ ସ୍ୱର୍ଗରାଜ୍ୟ ଓ ରାଜା ଇନ୍ଦ୍ର ଶ୍ରୀହୀନ ହୋଇଗଲେ । ମର୍ତ୍ତ୍ୟରେ ଲୋକମାନେ ଯଜ୍ଞ କାର୍ଯ୍ୟରେ ମଧ ଆଗ୍ରହୀ ହେଉ ନଥିଲେ । ସେତେବେଳେ ଆସୁରୀ ଶକ୍ତିର ବୃଦ୍ଧି ପାଇଥିଲା । ରାଜା ବଳି ତାଙ୍କ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ପ୍ରସନ୍ନ କରି ଯଜ୍ଞ ବନ୍ଦ କରାଇ ଦେବତାମାନଙ୍କୁ ଦୁର୍ବଳ କରିସାରିଥିଲେ । ଦୁର୍ବଳ ଦେବତାଙ୍କୁ ସୁସ୍ଥ କରିବା ପାଇଁ ପ୍ରଚୁର ଅମୃତ ଦରକାର ପଡ଼ିଲା ।

ସକଳ ଦେବତା ମିଳିତ ହୋଇ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପାଖରେ ଗୁହାରି ଜଣାଇଲେ । ବ୍ରହ୍ମଦେବ ଦେଖିଲେ ଆସୁରୀ ଶକ୍ତିବଳରେ ବଳି ଆଦି ଭୌତିକ ସମୃଦ୍ଧିରେ ବଳୀୟାନ୍ ହେଲେଣି । ଦେବତାମାନେ ଅମାପ ବିଷୟଭୋଗ କରି କରି ଅଧ୍ୟାତ୍ମିକ ଶକ୍ତିରେ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଛନ୍ତି । ସେ ଭଗବାନ ଶଙ୍କରଜୀଙ୍କୁ ସାଥିକଲେ । ସମସ୍ତେ ମିଶି କ୍ଷୀରସାଗର ମଧ୍ୟ ସ୍ଥିତ ଶ୍ୱେତଦ୍ୱୀପକୁ ଗଲେ ।

ପ୍ରଶ୍ନ-୨୧. ଶ୍ୱେତଦ୍ୱୀପରେ କାହାକୁ ଭେଟିଲେ ସେମାନେ ?

**ଇତି-ଆଭାଷ୍ୟ ସୁରାନ୍ ବେଧାଃ ସହଦେବୈଃ ଅରିନ୍ଦମ ।**
**ଅଜିତସ୍ୟ ପଦଂ ସାକ୍ଷାତ୍ ଜଗାମ ତମସଃ ପରମ୍ ।।୨୪।।**

ଉ. ଭୌତିକ ଜଗତରୁ ଭିନ୍ନ (ତମସଃପରଂ) ସୂକ୍ଷ୍ମ ଜଗତର କ୍ଷୀର ସାଗର ଭଗବାନ ଅଜିତଙ୍କର ନିତ୍ୟ ନିବାସ ସ୍ଥାନ । ସେଠାରେ ସେ ଲକ୍ଷ୍ମୀ-ନାରାୟଣ ନାମରେ ପୂଜିତ ହୁଅନ୍ତି । ହେ' ଶତ୍ରୁଦମନ ପରୀକ୍ଷିତ (ଅରିନ୍ଦମ)! ବ୍ରହ୍ମାଜୀ (ବେଧାଃ) ଦେବତାମାନଙ୍କ ଗହଣରେ ସେଠାରେ ସାକ୍ଷାତ କଲେ ବୈକୁଣ୍ଠ ପତିଙ୍କୁ ।

ସମସ୍ତେ ମିଶି ପୁରୁଷ ସୂକ୍ତରେ ଭଗବାନଙ୍କୁ ସ୍ତୁତି କଲେ । ସେମାନେ କହିଲେ, 'ହେ' ପ୍ରଭୋ ! ଆମେ ଦେବଗଣ, ଋଷିଗଣଙ୍କ ଦେହ, ମନ, ବୁଦ୍ଧି, ଇନ୍ଦ୍ରିୟ, ଆଦି ସଦ୍‌ଗୁଣୀ ହେଲେ ମଧ୍ୟ ଆମେ ଆପଣଙ୍କ ଦିବ୍ୟ ସ୍ୱରୂପ ବୁଝିବାରେ ଅକ୍ଷମ । ସୁତରାଂ ଦାନବ-ମାନବ ଗଣ ରଜୋଗୁଣୀ-ତମୋଗୁଣୀ ହୋଇ ଆପଣଙ୍କୁ ଜାଣିବେ ବା କିପରି ? ସମଗ୍ର ଭୌତିକ ସୃଷ୍ଟିରେ ଆପଣ ଲୁଚି ରହି ସମସ୍ତଙ୍କ ଅଦୃଶ୍ୟ ଭାବରେ କୃପା କରି ସୃଜନ-ପାଳନ-ପୋଷଣ ରକ୍ଷଣ-ସଂହାର କରୁଛନ୍ତି । ଆପଣ ଉଦ୍ଭିଜ-ସ୍ୱେଦଜ-ଅଣ୍ଡଜ-ଜରାୟୁଜ ଆଦି ସକଳ ପ୍ରାଣୀଙ୍କର ପ୍ରାଣାଧାର । ଆମେ ସବୁ ଦେବୀ ଦେବତା ଆପଣଙ୍କୁ ଅଙ୍ଗ ପ୍ରତ୍ୟଙ୍ଗ ରୂପେ ଆପଣଙ୍କ ନିର୍ଦ୍ଦେଶ କେବଳ ପାଳନ କରିଥାଉ ।

ଏ ନିଖିଳ ଚରାଚର ସୃଷ୍ଟିରେ କେବଳ ଆପଣ ଏକାକୀ ସଂପୂର୍ଣ୍ଣ ଆତ୍ମାରାମ ଓ ଆପ୍ତକାମ ସିଦ୍ଧ । ଅନ୍ୟ ସମସ୍ତେ ସାଧକ ମାତ୍ର । ବାୟୁ ଗନ୍ଧଗୁଣ ପ୍ରତି ସଂପୂର୍ଣ୍ଣ ଅନାସକ୍ତ ରହିବା ଭଳି ମାୟିକ ସୃଷ୍ଟିରୁ ବିଷୟ ଭୋଗ ଆଶା ଆପଣ କେବେ ବି ଚାହିଁ ନ ଥାନ୍ତି ।

ପ୍ରଶ୍ନ-୨୨. ସ୍ତୁତି ଶେଷରେ ସ୍ମିତ ହାସ୍ୟଯୁକ୍ତ ଭଗବାନ ବିଷ୍ଣୁଙ୍କଠାରୁ ଦେବତାମାନେ କ'ଣ ଚାହାଁନ୍ତି ବୋଲି କହିଲେ ?

**ସ ତ୍ୱଂ ନୋ ଦର୍ଶୟ-ଆତ୍ମାନଂ ଅସ୍ମତ୍ କରଣ ଗୋଚରମ୍ ।**
**ପ୍ରପନ୍ନାନାଂ ଦିଦୃକ୍ଷୁଣାଂ ସସ୍ମିତଂ ତେ ମୁଖାମ୍ବୁଜମ୍ ||୪୫||**

ଉ. କହିଲେ, 'ହେ' ଭଗବନ୍! ଆମେ ଆପଣଙ୍କର ଶରଣାଗତ (ପ୍ରପନ୍ନାନାଂ)। ଘୋର ବିପଦରେ ଆମେ ପଡ଼ିଛୁ । ଆମକୁ ମାର୍ଗ ଦର୍ଶନ କରନ୍ତୁ ।

ଆମେମାନେ ଅତୀତରେ ଘୋର ସଂକଟରେ ପଡ଼ିଥିବା ବେଳେ ଆପଣ ଅତ୍ୟନ୍ତ ସହଜ ସରଳ ଉପାୟରେ ଲୀଳା ଅବତାର ଗ୍ରହଣ କରି ଜଟିଳ ସମସ୍ୟାର ଆଶ୍ଚର୍ଯ୍ୟ ଜନକ ସମାଧନ କରିଦେଇଥାନ୍ତି । ଏବେ ଆମକୁ ଉଦ୍ଧାର କରନ୍ତୁ ।'

ପ୍ରଶ୍ନ-୨୩. ସଂସାରରେ ଦେଖାଯାଏ ଦେବତାଙ୍କ ଭଳି ସକାମ କର୍ମୀ ମାନେ ବହୁ ଶ୍ରମଯୁକ୍ତ କର୍ମ କରି ଅଳ୍ପଫଳ କିମ୍ବା ନିଷ୍ଫଳ ଭାଗୀ ହୁଅନ୍ତି । ବିଷ୍ଣୁ ଭକ୍ତ ବା ବୈଷ୍ଣବଙ୍କ କର୍ମ ଫଳ ସେଭଳି ଫଳରୁ କ'ଣ ଭିନ୍ନ କି ?

**କ୍ଲେଶ ଭୂରି -ଅଳ୍ପ ସାରାଣି କର୍ମାଣି ବିଫଳାନି ବା ।**
**ଦେହିନାଂ ବିଷୟ-ଆର୍ତ୍ତାନାଂ ନ ତଥା-ଏବ-ଅର୍ପିତଂ ତ୍ୱୟି ||୪୭||**

ଉ. ନିଶ୍ଚୟ ଭିନ୍ନ । ସେମାନଙ୍କ କ୍ଲେଶ ଅଳ୍ପ କିନ୍ତୁ ଫଳ ବା ଲାଭ ବେଶୀ । ଅଜାମିଳ ଥରେ ନାରାୟଣ ନାମ ଉଚାରଣ କରି ,ଗଜେନ୍ଦ୍ର ଫୁଲଟିଏ ଅର୍ପଣ କରି, ଶବରୀ ଫଳମୂଳ ଅର୍ପଣ କରି ଏବଂ ରକ୍ମିଣୀ ତୁଳସୀ ପତ୍ରରେ ଗୋବିନ୍ଦଙ୍କୁ ତୁଳି ପାରିବା ଏ କଥାର ଜ୍ୱଳନ୍ତ ଦୃଷ୍ଟାନ୍ତ । କାରଣ ଏସବୁ ବୈଷ୍ଣବ କର୍ମ ।

ପ୍ରଶ୍ନ-୨୪.ବୈଷ୍ଣବମାନେ ଅନ୍ୟାନ୍ୟ ଦେବୀ ଦେବତା ନ ପୂଜିଲେ ସେମାନଙ୍କର ଅପରାଧ ହୁଏ ନାହିଁ କି ?

**ଯଥା ହି ସ୍କନ୍ଧ ଶାଖାନାଂ ତରୋଃ ମୂଳ-ଅବସେଚନମ୍ ।**
**ଏବଂ ଆରାଧନଂ ବିଷ୍ଣୋଃ ସର୍ବେଷାଂ ଆତ୍ମନଃ ଚ ହି ||୪୯||**

ଉ. ବୃକ୍ଷ ମୂଳରେ ଜଳ ଦାନ କଲେ ସ୍ୱତଃ ସ୍କନ୍ଧ, ଶାଖା, ପ୍ରଶାଖା ପତ୍ର, ଫୁଲ ଓ ଫଳ ସମସ୍ତେ ପୁଷ୍ଟ ହୁଅନ୍ତି । ସେମାନଙ୍କୁ ସ୍ୱତନ୍ତ୍ର ଭାବରେ ଜଳ ଦେବା ଆବଶ୍ୟକ ପଡ଼େ ନାହିଁ ।

ସେହି ଭଳି ସ୍ୱୟଂ ବିଷ୍ଣୁଙ୍କୁ ସେବା ଦ୍ୱାରା ପ୍ରସନ୍ନ କରାଯାଇପାରିଲେ ଅନ୍ୟ ଦେବତା ମାନଙ୍କ ସ୍ୱତନ୍ତ୍ର ପୂଜାରେ କି ଦରକାର ! କିନ୍ତୁ ଏକଥା ମନେ ରଖିବାକୁ ହେବ ଯେ ଦେବୀ ଦେବତାଙ୍କ ସହିତ ଶ୍ରୀହରି ବିଷ୍ଣୁଙ୍କର ଭିନ୍ନ-ଅଭିନ୍ନ ଦୁଇଟି ସଂପର୍କ

ନିତ୍ୟ ବିଦ୍ୟାମନ । ଏହାକୁ ପରମାତ୍ମ ତତ୍ତ୍ୱଜ୍ଞାନ କୁହାଯାଏ । ଅନ୍ୟ କଥାରେ କେବଳ ଭିନ୍ନ କିମ୍ବା ଅଭିନ୍ନ ଭାବିଲେ ଉଭୟରେ ଅପରାଧ ହୁଏ । ବିଷ୍ଣୁ ପୁରାଣ କହନ୍ତି-

**ଆରାଧନାନାଂ ସର୍ବେଷାଂ ବିଷ୍ଣୋଃ ଆରାଧନଂ ପରମ୍ ।**
**ତସ୍ମାତ୍ ପରତରଂ ଦେବୀ ତଦୀୟାନାଂ ସମର୍ଚ୍ଚନମ୍ ॥**

ଅର୍ଥାତ୍ ସକଳ ଦେବୀ ଦେବତା ପୂଜନ ମଧ୍ୟରେ ବିଷ୍ଣୁ ପୂଜନ ଶ୍ରେଷ୍ଠତର କିନ୍ତୁ ଶ୍ରେଷ୍ଠତମ ପୂଜନ ହେଲା ବୈଷ୍ଣବ ସେବା (ତଦୀୟାନାଂ ସମର୍ଚ୍ଚନମ୍ ) ।

## ଅଥ ୬ଷ୍ଠ ଅଧ୍ୟାୟଃ

### (ଦେବତା ଓ ଦୈତ୍ୟଙ୍କ ମଧ୍ୟରେ କପଟ ସନ୍ଧି ଘୋଷଣା)

### ଶ୍ରୀଶୁକଦେବ ଉବାଚ

ପ୍ରଶ୍ନ-୨୫. ଦେବତାମାନଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଅଜିତ ଭଗବାନଙ୍କ ଅବତାର ପ୍ରକଟ ହେଲା । ତାଙ୍କ ଆବିର୍ଭାବରେ ବ୍ରହ୍ମାଦି ଦେବତାମାନେ କି ଭଳି ସ୍ତୁତି ନିବେଦନ କଲେ ?

**ତେନ-ଏବ ସହସା ସର୍ବେ ଦେବାଃ ପ୍ରତିହତ-ଈକ୍ଷଣାଃ ।**
**ନ-ଅପଶ୍ୟନ୍ ଖଂ ଦିଶଃ କ୍ଷୌଣୀଂ ଆତ୍ମାନଂ ଚ କୁତୋ ବିଭୂମ୍ ॥୨॥**

ଉ. ପ୍ରଥମ ଦର୍ଶନରେ ସେମାନେ ଭଗବାନଙ୍କ ଦିବ୍ୟ ଦେହର ଅସହ୍ୟ ଜ୍ୟୋତିରେ କିଛି ଦେଖି ପାରିଲେନି । ଅକାଶ, ଦଶ ଦିଗ, ସ୍ଥୁଳ ପୃଥବୀ (କ୍ଷୌଣୀଂ), ନିଜ ଦେହକୁ ମଧ୍ୟ ଦେଖିବାରେ ଅସମର୍ଥ ହେଲେ । ଭଗବାନଙ୍କୁ ଦେଖିବେ କ'ଣ ? କେବଳ ଭଗବାନ ବ୍ରହ୍ମାଜୀ ଓ ଶଙ୍କରଜୀ ଦୁଇଜଣ ତାଙ୍କୁ ଦର୍ଶନ କରି ପାରୁଥିଲେ । ଶେଷରେ ଭଗବାନଙ୍କ କୃପାରୁ ସମସ୍ତେ ତାଙ୍କ ଦର୍ଶନ କଲେ ଓ ତାଙ୍କୁ ଭୂମିଷ୍ଠ ଦଣ୍ଡବତ ପ୍ରଣାମ କଲେ । ପୁଣି ଦିବ୍ୟ ସ୍ତୁତି ଆରମ୍ଭ କରିଦେଲେ ।

ପ୍ରଶ୍ନ-୨୬. ଭଗବାନଙ୍କୁ ସେମାନେ ସର୍ବତନ୍ତ୍ର ସ୍ୱତନ୍ତ୍ର ବୋଲି କିଭଳି ପଦରେ ସ୍ତୁତି କଲେ ?

**ତ୍ୱୟି-ଅଗ୍ର ଆସୀତ୍ ତ୍ୱୟି ମଧ୍ୟ ଆସୀତ୍**
**ତ୍ୱୟି-ଅନ୍ତ ଆସୀତ୍ ଇଦଂ ଆତ୍ମତନ୍ତ୍ରେ ।**

**ତ୍ୱଂ ଆଦିଃ ଅନ୍ତୋ ଜଗତୋଽସ୍ୟ ମଧ୍ୟଂ**
**ଘଟସ୍ୟ ମୃତ୍ସ୍ନା-ଇବ ପରଃ ପରସ୍ମାତ୍ ॥୧୦॥**

ଉ. କହିଲେ, 'ହେ, ପ୍ରଭୋ ! ଏ ସ୍ଥୁଳ ଦୃଶ୍ୟମାନ ସୃଷ୍ଟି ଆପଣଙ୍କ ଠାରୁ ଉତ୍ପନ୍ନ, ଆପଣଙ୍କ ଠାରେ ସ୍ଥିତ ଓ ଆପଣଙ୍କଠାରେ ଲୀନ ଅଦୃଶ୍ୟ ହୁଏ ମଧ । ମାଟିରୁ ଘଟ ଉତ୍ପନ୍ନ ହୁଏ ପୁଣି କିଛି ଦିନ ପରେ ସେଇ ଘଟମାଟି ହୋଇଯାଏ । ଆପଣ ସୂକ୍ଷ୍ମ ଠାରୁ ସୂକ୍ଷ୍ମତର ଓ ସୂକ୍ଷ୍ମତମ ଠାରୁ ମଧ ଆହୁରି ଅଧିକ ସୂକ୍ଷ୍ମତର । ଆପଣ ଏ ସୃଷ୍ଟିର ଆଦ୍ୟ ମଧ ଓ ଅନ୍ତ ଅଟନ୍ତି । ଆପଣ ସମସ୍ତଙ୍କ ଶାସନ କର୍ତ୍ତା ଆପଣଙ୍କର କେହି ଶାସନ କର୍ତ୍ତା ନାହାନ୍ତି ।

ଆପଣ ସ୍ୱୟଂ ଦିବ୍ୟ ସ୍ୱରୂପରେ ରହି ଭୌତିକ ତିନି ଗୁଣର ରୂପାନ୍ତରଣ କରନ୍ତି କିନ୍ତୁ ସ୍ୱୟଂ ଗୁଣ ସ୍ପର୍ଶ ରହିତଥାନ୍ତି । ଇନ୍ଧନରେ ଅଗ୍ନି, ଗାଈ ଦେହରେ ଦୁଗ୍ଧ, ପରିଶ୍ରମରେ ଜୀବନ ବୃତ୍ତି, ଭୂମିରେ ଅନ୍ନ, ଯୋଗରେ ସିଦ୍ଧି ଅଦୃଶ୍ୟରେ ରହିବା ଭଳି ଆପଣ ସବୁ ବସ୍ତୁ-ବ୍ୟକ୍ତି-ପରିସ୍ଥିତିରେ-କାଳରେ ଥାଇ ମଧ ନ ଥାନ୍ତି । ନଥିଲେ ମଧ ଥାଆନ୍ତି । ଜୀବ ଶରଣାଗତ ହେଲେ କେବଳ ଦର୍ଶନ ଦିଅନ୍ତି ।'

ଦେବତାମାନଙ୍କର ସୂକ୍ଷ୍ମ ଅଭିଳାଷ ଜାଣିଗଲେ ଭଗବାନ ଅଜିତ । ସୁତରାଂ ପରାମର୍ଶ ଦେଲେ ଯୁଦ୍ଧ ବନ୍ଦ କରି ସନ୍ଧି କରିବାକୁ । କାରଣ ସେତେବେଳେ ଦୈତ୍ୟମାନଙ୍କ ଭାଗ୍ୟଦେବୀ ଅନୁକୂଳ ଥିଲେ । ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ସେମାନେ ସେବା କରି ପ୍ରସନ୍ନ କରିସାରିଥାନ୍ତି । ସେମାନେ ଅଜେୟ ହୋଇଛନ୍ତି ଗୁରୁକୃପାରୁ ।

କୌଶଳରେ କାର୍ଯ୍ୟ ସିଦ୍ଧି କରିବା ବୁଦ୍ଧିମାନର କାର୍ଯ୍ୟ ବୋଲି ଭଗବାନ ଦେବଗଣଙ୍କୁ ଅହିମୂଷିକ ନ୍ୟାୟ ବତାଇ ଦେଲେ । ଥରେ କେଳା ସାପ ଓ ମୂଷାକୁ ଗୋଟିଏ ପେଡ଼ିରେ ବନ୍ଦ କରିଦେଲା । ସର୍ପ ଦେଖିଲା ମୂଷାକୁ ଖାଇଦେଲେ ଭୋକ ସିନା ଦୂର ହେବ ଆସନ୍ତା କାଲି କେଳା ପିଟି ପକାଇବ ତାକୁ । ସୁତରାଂ ଏକ ଉପାୟ ଚିନ୍ତା କଲା । ମୂଷାକୁ କହିଲା, 'ପେଡ଼ି କଣା କର । କଣା କରିବା କାମ ଶେଷ ହେଉ ହେଉ ସେ ମୂଷାକୁ ଖାଇ କଣାବାଟେ ବାହାରି ଗଲା । ଅତଏବ ହେ' ଦେବ ଗଣ ! ତୁମେ ଅସୁର ମାନଙ୍କ ସହିତ ସନ୍ଧି କରି କ୍ଷୀର ସାଗର ମନ୍ଥନ କର ।'

ପ୍ରଶ୍ନ- ୨୭. କ୍ଷୀର ସାଗର ମନ୍ଥନର କି ପ୍ରଣାଳୀ ବତାଇଲେ ଅଜିତ ଭଗବାନ ?

**କ୍ଷିପ୍ତ୍ୱା କ୍ଷୀର-ଉଦଧୌ ସର୍ବା ବୀରୁତ୍-ତୃଣ ଲତା-ଔଷଧୀଃ ।**
**ମନ୍ଥାନଂ ମନ୍ଦରଂ କୃତ୍ୱା ନେତ୍ରଂ କୃତ୍ୱା ତୁ ବାସୁକୀମ୍ ॥୨୨॥**

ଉ. ପ୍ରଥମେ କ୍ଷୀର ସମୁଦ୍ରରେ ଲତା, ତୃଣ, ଔଷଧୀୟ ଗୁଣ ଯୁକ୍ତ ପୁଷ୍ପ, ଫଳ ଆଦି ପକାଇ ମନ୍ଦର ପର୍ବତକୁ ମଥାନି ବା ଖୁଆଦଣ୍ଡ କରି ମନ୍ଥନ କର । ସାଧାରଣ ରଜ୍ଜୁରେ କାମ ଚଳିବ ନାହିଁ । ବାସୁକୀ ନାଗକୁ ରଜ୍ଜୁ ରୂପେ (ନେତ୍ରଂ) ବ୍ୟବହାର କରି ଗୋଟିଏ ପଟେ ଦେବତା ଓ ଅନ୍ୟ ପଟେ ଦାନବଗଣ ରହି ମନ୍ଥନ କର । ଏ କ୍ରିୟାରେ ମୁଁ ତୁମ ମାନଙ୍କୁ ମଧ ସାହାଯ୍ୟ କରିବି । ଅମୃତ ଉତ୍ପନ୍ନ ହେଲେ ମୁଁ ସେମାନଙ୍କୁ ନ ଦେଇ କେବଳ ତୁମ ମାନଙ୍କୁ ଦେବି ।

ହଁ ଶୁଣ ! ପ୍ରଥମେ କିନ୍ତୁ ବିଷ ଉତ୍ପନ୍ନ ହେବ ଏ ମନ୍ଥନରୁ । ଡରିବନି । ଶଙ୍କର ଭଗବାନଙ୍କୁ ସ୍ତୁତି ଦ୍ୱାରା ପ୍ରସନ୍ନ କରି ପିଆଇ ଦେବ । ବାରୁଣୀ (ମଦ୍ୟ) ବାହାରିଲେ ଦୈତ୍ୟଙ୍କୁ ଦେଇ ପକାଇବ । ଅନ୍ୟ ଜିନିଷ ବଣ୍ଟାବଣ୍ଟି କରି ନେଇପାର ।

ଦେବତାମାନେ ସ୍ୱାର୍ଥ ସିଦ୍ଧିରେ ଅତ୍ୟନ୍ତ କୌଶଳୀ । ପହଞ୍ଚିଲେ ରାଜା ବଳିଙ୍କ ପାଖରେ । ସନ୍ଧି ପ୍ରସ୍ତାବ ଆଗତ କଲେ । ରାଜା ବଳି ମଧ ଇନ୍ଦ୍ରଙ୍କ ପ୍ରସ୍ତାବକୁ ନିଜ ସ୍ୱାର୍ଥ ରକ୍ଷା ଉଦ୍ଦେଶ୍ୟ ରଖି କପଟରେ ଅନୁମୋଦନ କଲେ । ସେ ଭାବିଲେ ଦେବତାମାନେ ଏବେ ଏତେ ଦୁର୍ବଳ ଅମୃତ ବାହାରିଲେ ତାକୁ ଭାଗ ନ ଦେଇ ସେମାନେ ଜବରଦସ୍ତ ସବୁ ଖାଇନେବେ ।

ସେ ଯାହାହେଉ ଉଭୟ ପକ୍ଷ ମିଶି ମନ୍ଦର ପର୍ବତକୁ କିଛି ବାଟ ବୋହିନେଲେ କିନ୍ତୁ ହାଲିଆ ହୋଇ କାମ ଛାଡ଼ିଦେଲେ । ଭଗବାନ ଗରୁଡ଼ ପିଠିରେ ଯାଇ ସେଠାରେ ପହଞ୍ଚିଲେ । ମନ୍ଦର ପର୍ବତକୁ ନେଇ ଠିକଣା ଯାଗାରେ ରଖିଦେଲେ ।

## ଅଥ ୭ମ ଅଧ୍ୟାୟଃ

### (ସମୁଦ୍ର ମନ୍ଥନ ଆରମ୍ଭ ଓ ଶଙ୍କରଜୀଙ୍କ ବିଷପାନ)

ପ୍ରଶ୍ନ-୨୮.ବାସୁକୀନାଗଙ୍କୁ ଲୋଭ ଦେଖାଇଲେ ଦେବତା ମାନେ । ମନ୍ଥନରୁ ମିଳୁଥିବା ଅମୃତର ଭାଗ ତାଙ୍କୁ ମଧ ଦିଆଯିବ । ତାଙ୍କୁ ଅଣାଯାଇ ବେଢ଼ାଇ ଦିଆଗଲା ମନ୍ଦର ପର୍ବତ ଦେହରେ । ଅଜିତ ଭଗବାନ ଏକ ଚାଲାକି କଲେ । ସେ ପ୍ରଥମେ ସାପ ମୁଣ୍ଡ ଧରିପକାଇଲେ । ପରେ ପରେ ଦେବତାମାନେ ଧରି ନେଲେ । ଦୈତ୍ୟମାନେ ପ୍ରତିବାଦ କଲେ । ସାପର ଲାଞ୍ଜ ଅଶୁଭ । ସେମାନେ ସାପର ମୁଣ୍ଡ ପଟ ଧରିବେ । ଭଗବାନ ତ ଠିକ୍ ସେଇକଥା ଚାହୁଁ ଥିଲେ । ଅସୁରଙ୍କ ବୁଦ୍ଧି ଓଲଟ ପରା ।

ଦେବତାମାନେ ବାସୁକୀଙ୍କ ଲାଞ୍ଜ ଓ ଦୈତ୍ୟମାନେ ମୁଣ୍ଡପଟ ଧରିଲେ । ମନ୍ଥନ ହେଉ ହେଉ ପର୍ବତ ନିମ୍ନକୁ ଦବିବାରେ ଲାଗିଲା । ଭଗବାନ୍ ତତ୍କ୍ଷଣାତ୍ ତାଙ୍କ ଚିନ୍ମୟ ଦେହରୁ ଅନ୍ୟ ଏକ ଅବତାର ନେଲେ । ସେ କଛପ ଅବତାରରେ ମନ୍ଦର ପର୍ବତ ନିମ୍ନରେ ରହି ମନ୍ଥନ କ୍ରିୟାରେ ସାହାଯ୍ୟ କଲେ ।

ଭଗବାନ ସମସ୍ତଙ୍କୁ କୃପା ଦୃଷ୍ଟିରେ ଚାହିଁଲେ । ଦେବତାମାନଙ୍କର ସତ୍ତ୍ୱଗୁଣ, ଦୈତ୍ୟମାନଙ୍କ ରଜୋଗୁଣ ଓ ବାସୁକୀଙ୍କର ତମୋଗୁଣର ଅତିଶୟ ଅଭିବୃଦ୍ଧି ଘଟିଲା । ବାଲାନ୍ସ ରଖିବାକୁ ଆକାଶରେ ଏକ ଅଙ୍ଗୁଳି ପ୍ରକଟ କରି ପର୍ବତକୁ ଧରିନେଲେ । ଆକାଶରୁ ଦିବ୍ୟ ପୁଷ୍ପ ବୃଷ୍ଟି ହେଲା ।

ସମୁଦ୍ର ମନ୍ଥନରୁ ସର୍ବ ପ୍ରଥମେ ବିଷ ବାହାରିଲା । ଦେବ, ଦାନବ ଋଷିଗଣ, ପ୍ରଜାପତି ସମସ୍ତେ ମିଶି କି ଉପାୟ କଲେ ହଳା ହଳ ବିଷ ଜ୍ୱାଳାରୁ ସୃଷ୍ଟିକୁ ରକ୍ଷା କରିବା ନିମିତ୍ତ ?

ପ୍ରଜାପତୟଃ ଉଚୁଃ

**ଦେବ ଦେବ ମହାଦେବ ଭୂତ-ଆତ୍ମନ୍ ଭୂତ ଭାବନ ।**
**ତ୍ରାହି ନଃ ଶରଣ-ଆପନ୍ନାଂ ତ୍ରୈଲୋକ୍ୟ ଦହନାତ୍ ବିଷାତ୍ ||୨୧||**

ଉ. ସମସ୍ତେ ମିଳି ଭଗବାନ ଶଙ୍କରଜୀଙ୍କୁ କହିଲେ, 'ହେ' ଦେବାଧିଦେବ ! ଆପଣ ସକଳ ପ୍ରାଣୀଙ୍କ ଆତ୍ମା ସ୍ୱରୂପ ଓ ଭୂତ ପାଳକ ମଧ । ଆମେ ଆପଣଙ୍କର ଶରଣା ଗତ । ଏ କାଳକୂଟ ବିଷରେ ସମଗ୍ର ସୃଷ୍ଟି ଜଳି ଛାରଖାର ହୋଇଯାଉଛି । ଆପଣ କୃପାକରି କିଛି ବ୍ୟବସ୍ଥା କରନ୍ତୁ, ପ୍ରଭୋ ।

ହେ' ଭଗବନ୍ ! ଆପଣ ଓଁ ଜ୍ୟୋତିଙ୍କର ଆଶ୍ରୟ ଅଟନ୍ତି । ଅଗ୍ନି ଆପଣଙ୍କର ମୁଖ, ପୃଥିବୀ ପାଦ, କାଳ ଗତି, ଦଶ ଦିଗ କର୍ଣ୍ଣ, ବରୁଣ ଜିହ୍ୱା, ଆକାଶ ନାଭି, ବାୟୁ ଶ୍ୱାସ, ସୂର୍ଯ୍ୟ ଚକ୍ଷୁ, ଜଳ ରେତ, ଚନ୍ଦ୍ର ମନ, ବୁଦ୍ଧି ବ୍ରହ୍ମା, ଦ୍ୟୌ ମସ୍ତକ, ସମୁଦ୍ର ଉଦର, ପର୍ବତ ଅସ୍ଥି, ବୃକ୍ଷ ଲତା ରୋମାବଳୀ, ସପ୍ତ ଛନ୍ଦ ସପ୍ତ ଧାତୁ, ବୈଦିକ ପଦ୍ଧତି ଆପଣଙ୍କ ହୃଦୟ । ଆତ୍ମାରାମ ଯୋଗୀ ମାନେ ଆପଣଙ୍କ ଚରଣ ଯୁଗଳ ଧ୍ୟାନ କରନ୍ତି ମୁକ୍ତି ଲାଗି । ଆପଣଙ୍କ ଗୂହ୍ୟ ଲୀଳା ସଂସାରୀ ଜୀବ କାହୁଁ ଜାଣିବାରେ ସମର୍ଥ ହେବେ ?' ପ୍ରସନ୍ନ ହେଲେ ଶ୍ରୀଶଙ୍କରଜୀ । ମା' ଭବାନୀଙ୍କୁ ଉଦ୍ଦେଶ୍ୟ କରି କହିଲେ, 'ଦେଖ ପ୍ରିୟେ ! ପିଲାମାନେ କେତେ ସଂକଟରେ ପଡ଼ିଛନ୍ତି । ତାଙ୍କୁ କିଛି ସାହାଯ୍ୟ କରିବା ।'

ପ୍ରଶ୍ନ-୨୯. ଆଶ୍ରିତ ମାନଙ୍କର ସଂକଟ କାଳରେ ଆଶ୍ରୟଙ୍କର କର୍ତ୍ତବ୍ୟ କ'ଣ ବୋଲି ଭଗବାନ ଜଣାଇଲେ ଜଗତ୍ ମାତା ରୁଦ୍ରାଣୀଙ୍କୁ ?

**ଆସାଂ ପ୍ରାଣ ପରାପ୍ସୂନାଂ ବିଧେୟଂ ଅଭୟଂ ହି ମେ ।**
**ଏତାବାନ୍ ହି ପ୍ରଭୋଃ ଅର୍ଥୋ ଯଦ୍ ଦୀନ ପରିପାଳନମ୍ ॥୩୮॥**

ଉ.କହିଲେ,'ସମର୍ଥବାନ୍ ସାଧକର କର୍ତ୍ତବ୍ୟ ହେଲା ଦୀନ ଦୁଃଖୀଙ୍କର ପୀଡ଼ା ଦୂରକରି ନିଜ ଜୀବନକୁ ସାର୍ଥକ କରିବା । ଏମାନେ ସମସ୍ତେ ଈଶ୍ୱରୀୟ ରାଜ୍ୟରେ ଜୀବନ ସଂଘର୍ଷରେ ବ୍ୟସ୍ତ । ବିଚରାମାନେ ବିଷ ଭୟରେ ଦୁଃଖାର୍ତ୍ତ । ମୁଁ ଏବେ ବିଷପାନ କରି ସେମାନଙ୍କୁ ଅଭୟ ଦାନ କରିବି ।'

ପ୍ରଶ୍ନ-୩୦. ମାୟାବଦ୍ଧ ସାଧାରଣ ଜୀବଗଣ ସ୍ୱାର୍ଥସିଦ୍ଧି ଲାଗି ପରସ୍ପର ପ୍ରତି ଶତ୍ରୁତା ଆଚରଣ କରନ୍ତି । ସେମାନେ ସମୂହ ସ୍ୱାର୍ଥ ମୂଳକ ଚିନ୍ତନ ଲାଗି ଅବସର ମଧ୍ୟ ପାଆନ୍ତି ନାହିଁ । ତେବେ ସଂକଟ ସମୟରେ ପରସ୍ପର ଶତ୍ରୁତା ତ୍ୟାଗ କରି ମିଳିତ ହୋଇ ନିଜ ନିଜର ଉଦ୍ଧାର ଲାଗି କି ଉପାୟ କରନ୍ତି ?

**ପ୍ରାଣୈଃ ସ୍ୱୈଃ ପ୍ରାଣିନଃ ପାନ୍ତି ସାଧବଃ କ୍ଷଣ ଭଙ୍ଗୁରୈଃ ।**
**ବଦ୍ଧବୈରେଷୁ ଭୂତେଷୁ ମୋହିତେଷୁ-ଆତ୍ମ ମାୟୟା ॥୩୯॥**

ଉ. ସାଧୁ, ସନ୍ଥ,ବୈଷ୍ଣବଙ୍କ ଶରଣ ପଶନ୍ତି । କାରଣ ଏମାନେ ନିଜର ନାଶବାନ ଦେହ-ପ୍ରାଣକୁ ସମୂହ ପ୍ରାଣ ରକ୍ଷା ଲାଗି ହବନ୍ କରିପାରନ୍ତି । ସେଥିରେ ସେମାନେ ଜଗତର ଚରମ କଲ୍ୟାଣ କରି ପରମ ଆନନ୍ଦ ପ୍ରାପ୍ତ ହୋଇଥାନ୍ତି । ଶଙ୍କରଜୀଙ୍କ ବାଣୀ ଶ୍ରବଣ କରି ମା' ଭବାନୀ ମଧ୍ୟ ଲୋକ କଲ୍ୟାଣ ଅର୍ଥେ ତାଙ୍କର ବିଷ ପାନ ପ୍ରସ୍ତାବକୁ ସ୍ୱୀକୃତି ଦେଲେ । ସୁତରାଂ ଭଗବାନ ସେହି ହଳାହଳ ବିଷକୁ ନିଜ ଯୋଗ ଶକ୍ତି ବଳରେ ଅଞ୍ଜଳିରେ ଧାରଣ କରି ପାନ କରିଥିଲେ ।

ପ୍ରଶ୍ନ-୩୧. ହଳାହଳ ବିଷପାନ କରି ଭଗବାନ ଶଙ୍କର ପୁଣି କେଉଁ ଅସୁବିଧାର ସମ୍ମୁଖୀନ ହେଲେ ?

**ତସ୍ୟ-ଅପି ଦର୍ଶୟାମାସ୍ ସ୍ୱବୀର୍ଯ୍ୟଂ ଜଳ କଲ୍ମଷଃ ।**
**ଯଃ ଚକାର ଗଳେ ନୀଳଂ ତତ୍‌ଚ ସାଧୋଃ ବିଭୂଷଣମ୍ ॥୪୩॥**

ଉ.ତାଙ୍କର ବିଷ ଧାରଣ କରିବା ଶକ୍ତି, ସାମର୍ଥ୍ୟ ଥିଲା । ସେ ଅନ୍ତର ମଧ୍ୟରେ ରାମ ନାମ ରଖିଥିଲେ । ବିଷକୁ ରାମଙ୍କ ଉପରେ ରଖି ତୁଣ୍ଡରେ ପୁଣି ରାମ ନାମ ଜପି

ଚାଲିଲେ । ବିଷ ଭିତରକୁ ଗଲେ ବିପଦ, ବାହାରେ ଫିଙ୍ଗିଲେ ମଧ୍ୟ ବିପଦ । ଫଳରେ କଣ୍ଠରେ ବିଷ ରହି ଯିବାରୁ ତାଙ୍କ କଣ୍ଠ ଦେଶ ବିଷ ପ୍ରଭାବରେ ନୀଳ ରଙ୍ଗ ଧାରଣ କଲା । ସେହିଦିନ ଠାରୁ ଭକ୍ତମାନେ ତାଙ୍କୁ ଏକ ନୂତନ ପଦବୀ ଦେଇ 'ନୀଳକଣ୍ଠ' ନାମରେ ସ୍ତବସ୍ତୁତି-ପ୍ରାର୍ଥନା କଲେ । ବିଷ ତାଙ୍କ ଶ୍ରୀକଣ୍ଠରେ ଅଳଙ୍କାର ରୂପେ ଶୋଭାୟମାନ ହେଲା । ଅମୃତ ପାନ କରି ଏମାନେ ଦେବତା ହେଲେ । ବିଷପାନ କରିବାରୁ ଶିବ ଦେବଦେବ ମହାଦେବ ହେଲେ ।

ଦକ୍ଷ କନ୍ୟା ସତୀ ଭଗବାନ ଶଙ୍କରଜୀଙ୍କ ସାମର୍ଥ୍ୟ ଦେଖି ଚମତ୍ କୃତ ହେଲେ । ଏଣେ ତେଣେ ବିଛାଡ଼ି ହୋଇଥିବା ସାମାନ୍ୟ ବିଷକୁ ପାନ କରିବାରୁ କେତେକ ପ୍ରାଣୀ ସର୍ପ, ବିଛା, ବିଛି କଙ୍କଡ଼ା, ଡ଼ାଆଁଶ (ଦନ୍ଦଶୂକ) ଆଦି ଆଜି ମଧ୍ୟ ସଂସାରରେ ବିଷାକ୍ତ ପ୍ରାଣୀରେ ଗଣା ଯାଉଛନ୍ତି ।

## ଅଥ ୮ମ ଅଧ୍ୟାୟଃ

### (ସମୁଦ୍ର ମନ୍ଥନରୁ ଅମୃତ ପ୍ରାପ୍ତି ଓ ଭଗବାନଙ୍କ ମୋହିନୀ ଅବତାର)

ପ୍ରଶ୍ନ-୩୨.ଭଗବାନ ଶଙ୍କର ବିଷପାନ କରିବା ପରେ କ'ଣ ସମୁଦ୍ର ମନ୍ଥନ ବନ୍ଦ ହୋଇଗଲା କି ପୁନର୍ବାର ବିଷ ନିର୍ଗମନ ଭୟରେ ?

ଶ୍ରୀ ଶୁକ ଉବାଚ

**ପୀତେ ଗରେ ବୃଷାଙ୍କେଣ ପ୍ରୀତାଃ ତେଽମର ଦାନବାଃ ।**
**ମମନ୍ଥୁଃ ତରସା ସିନ୍ଧୁଂ ହବିର୍ଧାନୀ ତତୋଽଭବତ୍ ।।୧।।**

ଉ. ବୃଷଙ୍କ ଅଙ୍କରେ ବୁଲୁଥିବାରୁ ବୃଷାଙ୍କ କହିଲେ ଭଗବାନ ଶଙ୍କରଜୀଙ୍କୁ ବୁଝାଏ । ବିଷଜ୍ୱାଳାରୁ ସେ ଦେବତା-ଦାନବଙ୍କୁ ରକ୍ଷା କରନ୍ତେ ସେମାନେ ଏବେ ଅଧିକ ଉତ୍ସାହିତ (ପ୍ରୀତାଃ) ହେଲେ । ପରବର୍ତ୍ତୀ ମନ୍ଥନରେ କାମଧେନୁ ଗାଈ ବାହାରିଲେ । ତାଙ୍କ ଦୁଗ୍ଧରୁ ଘୃତ (ହବିର୍ଧାନୀ) ପ୍ରସ୍ତୁତ ହୋଇ ଯଜ୍ଞ କର୍ମ କରାଯାଏ ବୋଲି ଋଷିମାନଙ୍କୁ କାମଧେନୁଙ୍କୁ ପ୍ରଦାନ କରାଗଲା ।

ଉଚ୍ଚୈଶ୍ରବା ଅଶ୍ୱ ବାହାରନ୍ତେ ରାଜା ବଳି ତାଙ୍କୁ କବ୍‌ଜା କରିନେଲେ । ଇନ୍ଦ୍ର ମନ ଉଣା କରନ୍ତେ ଭଗବାନ ତାଙ୍କୁ ଅପେକ୍ଷା କରିବାକୁ କହିଲେ । ପରେ ପରେ

ଐରାବତ ହସ୍ତୀ ବାହାରିଲେ । ଦେବରାଜ ଇନ୍ଦ୍ର ତାଙ୍କୁ ପ୍ରାପ୍ତ ହେଲେ । କୌସ୍ତୁଭ ନାମକ ପଦ୍ମରାଗ ମଣି ବାହାରିଲା । ଭଗବାନ ବିଷ୍ଣୁ ବକ୍ଷରେ ସେ ଶୋଭାୟମାନ ହେଲେ । ପାରିଜାତ ପୁଷ୍ପ ବାହାରିବାରୁ ଦେବତାମାନ ତାକୁ ସ୍ୱର୍ଗକୁ ନେବାକୁ ଆଗ୍ରହୀ ହେଲେ । ଦିବ୍ୟ ଅପସରା ମାନେ ପ୍ରକଟ ହୁଅନ୍ତେ ଦେବତା ମାନେ ସେମାନଙ୍କୁ ନେଇ ସ୍ୱର୍ଗ ଶୋଭା ବର୍ଦ୍ଧନ କରିଥିଲେ ।

ପ୍ରଶ୍ନ-୩୩. ଅପ୍ସରାମାନଙ୍କୁ ନେବାକୁ ଦୈତ୍ୟମାନେ କାହିଁକି ଦାବୀ କଲେ ନାହିଁ ?

**ତତଃଚ ଆବିର୍‌ଭୁତ୍ ସାକ୍ଷାତ୍ ଶ୍ରୀ ରମା ଭଗବତ୍ ପରା ।**
**ରଞ୍ଜୟନ୍ତୀ ଦିଶଃ କାନ୍ତ୍ୟା ବିଦ୍ୟୁତ୍ ସୌଦାମନୀ ଯଥା ।।୮।।**

ଉ.ଠିକ୍ ସେହି ସମୟରେ ଅପ୍ସରାମାନଙ୍କ ସୌନ୍ଦର୍ଯ୍ୟକୁ ଫିକା କରିଦେଇ ସ୍ୱଦିବ୍ୟ କାନ୍ତିରେ ଦଶ ଦିଗକୁ ବିଜୁଳି ଭଳି ପ୍ରକାଶିତ କରି ନିତ୍ୟ ବିଷ୍ଣୁବକ୍ଷ ବିହାରିଣୀ(ଭଗବତ୍‌ପରା) ଜଗତ୍‌ମାତା ଲକ୍ଷ୍ମୀ ପ୍ରକଟ ହେଲେ । ଦୈତ୍ୟମାନଙ୍କୁ ଆଉ ଅପ୍ସରାମାନଙ୍କୁ ଦାବୀ କରିବା ସୁଯୋଗ ମିଳି ନଥିଲା ।

ମହାଲକ୍ଷ୍ମୀଙ୍କୁ କେହି ଚିହ୍ନି ନଥିଲେ । ଦୁର୍ବାସାଙ୍କ ଇନ୍ଦ୍ରଙ୍କୁ ଅଭିଶାପ(ଶ୍ରୀ ଭ୍ରଷ୍ଟ ହୁଅ ଇନ୍ଦ୍ର) ହେତୁ ସେ ବରୁଣ ପୁରୀ ସମୁଦ୍ରରେ ଲୁଚି ଯାଇଥିଲେ । ସେ ପ୍ରକଟ ହୁଅନ୍ତେ କି ମନୁଷ୍ୟ, ଦୈତ୍ୟ ଦେବ ସମସ୍ତେ ତାଙ୍କ ଅପୂର୍ବ ଶୋଭରେ ମୋହିତ ହୋଇ ତାଙ୍କୁ ପ୍ରାପ୍ତ ହେବାକୁ ଇଚ୍ଛା କଲେ । ଉଭୟ ପକ୍ଷ ଦାବୀ ମଧ କଲେ ।

ପ୍ରଥମେ ତାଙ୍କୁ ଏକ ସ୍ୱର୍ଣ୍ଣ ସିଂହାସନରେ ବସାଇ ଅଭିଷେକ କରିବା ସ୍ଥିର ହେଲା । ସେ କାହାକୁ ବରଣ କରିବେ ତାଙ୍କ ଉପରେ ଦାୟିତ୍ୱ ଦିଆଗଲା । ଅଭିଷେକ ଲାଗି ଦେବୀ-ଦେବତା-ଅସୁର ମିଶି ପବିତ୍ର ଗଙ୍ଗା ଜଳ ବୋହି ଆଣିଲେ । ପଞ୍ଚଗବ୍ୟ ସ୍ନାନ କଲେ ମା' ଧରିତ୍ରୀ ଦେବୀ । ଋତୁରାଜ ବସନ୍ତ ଯୋଗାଇଲେ ପୁଷ୍ପ ସମ୍ଭାର । ଋଷିମାନେ ବେଦ ମନ୍ତ୍ର ପାଠକଲେ ଶ୍ରୀ ସୂକ୍ତରେ । କିନ୍ନର ମାନେ ନୃତ୍ୟ କଲେ । ଗନ୍ଧର୍ବମାନେ ସାମ ସଙ୍ଗୀତ ଗାନ କଲେ । ମେଘମାନେ ମୃଦଙ୍ଗ-ଢୋଲ-ନାଗରା-ମହୁରୀ ଶଙ୍ଖ ବଜାଇଲେ । ଅଷ୍ଟ ଦିଗ୍‌ଗଜ ହସ୍ତୀମାନେ ଶୁଣ୍ଢ ଜଳରେ ମା'ଙ୍କର ଦିବ୍ୟ ଅଭିଷେକ ସ୍ନାନ କଲେ । ସମୁଦ୍ର ପିତା ହିସାବରେ ବରୁଣ ଦେଲେ ରେଶମୀ ବସ୍ତ୍ର । ବିଶ୍ୱକର୍ମା ଉପହାର ଦେଲେ ରତ୍ନ ଅଳଂଙ୍କାର । ସରସ୍ୱତୀ ମୁକ୍ତା ହାର, ବ୍ରହ୍ମାଜୀ ପଦ୍ମ ପୁଷ୍ପ, ନାଗଲୋକବାସୀ କର୍ଣ୍ଣ କୁଣ୍ଡଳ ପ୍ରଦାନ କଲେ ।

ଏଥର ମା' ମହାଲକ୍ଷ୍ମୀ କର କମଳରେ ଦିବ୍ୟ କମଳକୁ ନଚାଇ ବର ବରଣରେ ବାହାରିଲେ । ଏକ ଅଦ୍ଭୁତ ବିବାହ ସର୍ତ୍ତ ରଖିଲେ ସେ । ଯେଉଁ ନିର୍ଦ୍ଦୋଷ ଲୋକ ବିବାହ କରିବାକୁ ନ ଚାହେଁ ସେ କେବଳ ତାଙ୍କୁ ହିଁ ବରଣ କରି ବିବାହ କରିବେ ।

**ଯେ ନ ଚାହିଁବ ରମା ମା'କୁ । ରମା ଦାସୀ ହୋଇ ସେବେ ତାହାଙ୍କୁ।।**

ମା' ବୁଲି ବୁଲି ଦେଖିଲେ ଅଜସ୍ର ଜନଗହଳି ମଧ୍ୟରେ ଦେବତା, ଗନ୍ଧର୍ବ, ଅସୁର, ସିଦ୍ଧ, ଚାରଣ, ନାଗ, ଋଷି, ମୁନି ଓ ମନୁଷ୍ୟ ସମସ୍ତେ ଦୋଷଯୁକ୍ତ ପୁଣି ସମସ୍ତେ ତାଙ୍କୁ ଚାହୁଁ ଛନ୍ତି । କିଏ ବହୁତ ତପସ୍ୟା କରିଛି କିନ୍ତୁ କ୍ରୋଧକୁ ଜିଣି ପାରିନି । କିଏ ମହାନ ବିଦ୍ୱାନ୍ କିନ୍ତୁ କାମନା ଭରା । କିଏ ମହାପୁରୁଷ କିନ୍ତୁ କାମୁକ । କିଏ ଧର୍ମଜ୍ଞ କିନ୍ତୁ ଦୟାଳୁ ନୁହନ୍ତି । କିଏ ଭାରୀ ତ୍ୟାଗୀ, ତପସ୍ୱୀ କିନ୍ତୁ ମୁକ୍ତି ଖୋଜୁଛି । ପୁଣି କିଏ ଅତ୍ୟନ୍ତ ବଳବାନ ହୃଷ୍ଟ, ପୁଷ୍ଟ ଯୌବନଦୀପ୍ତ ଦେହ ଧରିଛି ମଲ୍ଲଭଳି କିନ୍ତୁ ମୃତ୍ୟୁକୁ ଡରୁଛି । ପୁଣି କିଏ ସଂସାର ଆସକ୍ତି ଶୂନ୍ୟ କିନ୍ତୁ ଭଗବତ୍ ଆସକ୍ତ ନୁହେଁ । କିଏ ଅତ୍ୟନ୍ତ ଦୀର୍ଘାୟୁ କିନ୍ତୁ ଅମଙ୍ଗଳ ସୂଚକ । କିଏ ସର୍ବଗୁଣ ସମନ୍ୱିତ ମହାଜ୍ଞାନୀ ଗର୍ବୀ ହୋଇ ଭଗବତ ଭକ୍ତି ଶୂନ୍ୟ ।

ପ୍ରଶ୍ନ-୩୪. ମହାଲକ୍ଷ୍ମୀ ଏତେ ସୁନ୍ଦରୀ ଥିଲେ । ତାଙ୍କୁ ପୁଣି ପାଇବାକୁ କିଏ ନ ଚାହିଁଥିବ ଭଲା !! କମ୍ବଳରୁ ବାଳ ବାଛୁ ବାଛୁ କ'ଣ ମହାଲକ୍ଷ୍ମୀ ଅଭିଆଡ଼ି ରହିଗଲେ କି ଆଉ ?

**ଏବଂ ବିମୃଶ୍ୟ-ଅବ୍ୟଭିଚାରି ସଦ୍‌ଗୁଣୈଃ**
**ବରଂ ନିଜ-ଏକ-ଆଶ୍ରୟ ତୟାଃ ଗୁଣ-ଆଶ୍ରୟମ୍ ।**
**ବବ୍ରେ ବରଂ ସର୍ବଗୁଣୈଃ ଅପେକ୍ଷିତଂ**
**ରମା ମୁକୁନ୍ଦଂ ନିରପେକ୍ଷଂ ଈପ୍‌ସିତମ୍ ।।୨୩।।**

ଉ. ନା,ନା ସେ ଅତ୍ୟନ୍ତ ସୌଭାଗ୍ୟବତୀ ଥିଲେ । ସେ ଆଦୌ ନିରାଶ ହେଲେନି । ଶେଷରେ ଦେଖିଲେ ଜନ କୋଳାହଳରୁ ଦୂରରେ ମନ୍ଦର ପର୍ବତ ଉପରେ ଅଜିତ ଭଗବାନ ମୁକୁନ୍ଦ ତାଙ୍କୁ ବିବାହ କରିବାକୁ ଆଡ଼ ଆଖିରେ ନ ଚାହିଁ ସଂପୂର୍ଣ୍ଣ ଉଦାସୀନ କିନ୍ତୁ ସ୍ମିତ ହାସ୍ୟ ଶୋଭିତ ହୋଇ ବସିଛନ୍ତି । ସେ କେବଳ ସକଳ ଦୋଷମୁକ୍ତ ଓ ଲକ୍ଷ୍ମୀକୁ ନ ଚାହୁଁ ଥିବା ଲୋକ (ନିରପେକ୍ଷଂ) ଥିଲେ । ସୁତରାଂ ସେ ସହର୍ଷ ନାରାୟଣଙ୍କ ଗଳାରେ ବରଣମାଳାଙ୍କୁ ଲମ୍ବାଇ ଦେଲେ । ସେଥିରେ କାହାରି କିଛି ଆପତ୍ତି କରିବାର

ନଥିଲା । ଦୁହେଁ ସିଂହାସନରେ ଶୋଭାୟମାନ ହେଲେ । ମହାସମାରୋହ ଓ ଆଡ଼ମ୍ବର ସହକାରେ ଲକ୍ଷ୍ମୀ-ନାରାୟଣଙ୍କ ବିବାହ ଉତ୍ସବ ପାଳିତ ହେଲା । ବ୍ରହ୍ମା-ଶଙ୍କର-ଇନ୍ଦ୍ର ଆଦି ସମସ୍ତେ ମିଶି ତାଙ୍କୁ ପୂଜନ କଲେ । ଦେବତାମାନେ ମହାଲକ୍ଷ୍ମୀଙ୍କ କୃପା କଟାକ୍ଷରେ ନିଜକୁ ଧନ୍ୟ ମନେ କଲେ । ଅନ୍ୟ ପକ୍ଷରେ ଲୋଭୀ କାମୁକ ଦୈତ୍ୟମାନେ ତାଙ୍କୁ ଉପେକ୍ଷା କଲେ ବୋଲି ଲକ୍ଷ୍ମୀଙ୍କ ଉପରେ ମନ ଊଣା କଲେ କିନ୍ତୁ ଲାଜରେ ଚୁପ୍ ରହିଗଲେ ।

ପୁଣି ଚାଲିଲା ସମୁଦ୍ର ମନ୍ଥନ । ଏଥର ଜଣେ ଦିବ୍ୟ ସୁନ୍ଦରୀ ଦେବୀ (ବାରୁଣୀ) ହାତରେ ମଦ୍ୟ ଧରି ଆବିର୍ଭୂତ ହେଲେ । ଦୈତ୍ୟମାନେ ସୁଯୋଗ ଅପେକ୍ଷାରେ ଏଯାଏଁ ଟାକି ରହିଥିଲେ । ସେମାନେ ମହାଆନନ୍ଦରେ ଲକ୍ଷ୍ମୀଙ୍କ ଉପେକ୍ଷା ପାଶୋରି ଯାଇ ଛଡ଼ା ଛଡ଼ି ହୋଇ ମଦ୍ୟପାନରେ ମସ୍ତ ହେଲେ । ମଦ୍ୟପାନରେ ଅଚ୍ଛେ, ବହୁତେ ନିଜ ନିଜ ହୋସ ହରାଇ ଦୈତ୍ୟମାନେ ପୁଣି ମନ୍ଥନରେ ମାତିଗଲେ ।

ବର୍ତ୍ତମାନ ଜଣେ ଅତ୍ୟଦ୍ଭୁତ ଦିବ୍ୟ ପୁରୁଷ ଧନ୍ୱନ୍ତରୀ (ଭଗବାନଙ୍କ ଅବତାର) ହସ୍ତରେ ଅମୃତ କଳସ ଧରି ଆବିର୍ଭୂତ ହେଲେ । ଦୈତ୍ୟମାନେ ସେତେବେଳକୁ ଅତ୍ୟନ୍ତ ବଳବାନ ହୋଇ ସାରିଥିଲେ । ସେମାନେ ଡେ଼ରି ନ କରି ସଙ୍ଗେ ସଙ୍ଗେ ଅମୃତ କଳସକୁ କବ୍‌ଜା କରିନେଲେ । ଦେବତାମାନେ ନିରୁତ୍ସାହିତ ହେଲେ । ବିଷର୍ଣ୍ଣ ଓ ହତ ବୁଦ୍ଧି ହୋଇ ଶ୍ରୀମନ୍ ନାରାୟଣଙ୍କ ଶରଣ ପଶିଲେ ।

ଭଗବାନ ତ ବଡ଼ ହଟିଆ । କହିଲେ, 'ପିଲେ ଦେଖ ! ଆଦୌ ହତାଶ ହୁଅ ନାହିଁ । ମୁଁ ମୋର ମାୟାଶକ୍ତିର ପ୍ରୟୋଗ କରୁଛି । ମଜା ଦେଖ ।' ସକଳ ଅସୁରମାନଙ୍କ ବୁଦ୍ଧିରେ ମାୟା ପ୍ରବେଶ କରନ୍ତେ ସମସ୍ତେ କେବଳ ଛଡ଼ା ଛଡ଼ିରେ ଲାଗିଲେ ସିନା ନା କିଏ ସ୍ୱୟଂ ଖାଇପାରିଲା ନା କାହାକୁ ଖୁଆଇ ଦେଲା । ଦେବତାମାନେ ଅମୃତ ନପାଇ ହତାଶ । ଅସୁରମାନେ ଅମୃତ ପାଇ ଖାଇ ନ ପାରି ମଧ୍ୟ ହତାଶ । ଏହାର ନାମ ଅଚିନ୍ତ୍ୟ, ଦୁର୍ଲ୍ଲଙ୍ଘ୍ୟ ବିଷ୍ଣୁମାୟା । ଶେଷରେ କେତେକ ଅସୁର ମଧ୍ୟ ଦାବୀ କଲେ - ଦେବତାମାନଙ୍କ ଭାଗ ମଧ୍ୟ ତାଙ୍କୁ ଦିଆଯାଉ ।

ଏହି ସମୟରେ ଭଗବାନଙ୍କର ଅଚିନ୍ତ୍ୟ ମୋହିନୀ ଅବତାର ଦୃଶ୍ୟମାନ ହେଲା । ସେ ରୂପର ଅତ୍ୟଧିକ ଆକର୍ଷଣରେ ଅସୁରମାନେ ଅମୃତ କଳସକୁ ଭୁଲି ମୋହିନୀ ନାରୀଙ୍କୁ ଲୋଭିଲା ଚକ୍ଷୁରେ ଦେଖି ତାଙ୍କ ଆଡ଼କୁ ଧାଇଁଲେ । ଭଗବାନ କାଳ ବିଳମ୍ବ ନ କରି ଅକ୍ଳେଶରେ ଅମୃତ କଳସକୁ କାମୁକ ଅସୁରଙ୍କ ଠାରୁ ହାତେଇ ନେଲେ । ଦେବତାମାନଙ୍କ ପିଣ୍ଡରେ ପ୍ରାଣ ପଶିଲା ଏଥର ।

# ଅଥ ୯ମ ଅଧ୍ୟାୟଃ

## (ସତ୍‌ପାତ୍ରରେ କେବଳ ଅମୃତ ପରିବେଷଣ)

ପ୍ରଶ୍ନ-୩୫.ମୋହିନୀ ଭଗବାନଙ୍କ ରୂପ, କାନ୍ତି, ଯାନୁ, ଯୌବନର ଆକର୍ଷଣରେ ଅସୁରଗଣ ଏତେ ମୋହିତ ହୋଇଗଲେ ଯେ ଭଗବାନଙ୍କୁ ଅମୃତ କଳସ ଛଡ଼ାଇବା ଦରକାର ପଡ଼ିଲାନି । ସେମାନେ ଅମୃତ କଳସକୁ ତାଙ୍କ କର କମଳରେ ଅର୍ପଣ କରି ଓଲଟି ତାଙ୍କୁ ଅନୁରୋଧ କଲେ ଯେ ସେ ନିଜେ ବାଣ୍ଟିବା ଦାୟିତ୍ୱ ଗ୍ରହଣ କରନ୍ତୁ । ଦୈତ୍ୟ ଗଣଙ୍କର ପ୍ରସ୍ତାବକୁ ଭଗବାନ କ'ଣ ସିଧା ସଳଖ ଗ୍ରହଣ କରିନେଲେ ?

ଶ୍ରୀ ଭଗବାନ ଉବାଚ

**କଥଂ କଶ୍ୟପଦାୟାଦାଃ ପୁଂଶ୍ଚଲ୍ୟାଂ ମୟି ସଙ୍ଗତାଃ ।**
**ବିଶ୍ୱାସଂ ପଣ୍ଡିତୋ ଜାତୁ କାମିନୀଷୁ ନ ଯାତି ହି ।।୯।।**

ଉ.ଭଗବାନ ସତ୍ୟବ୍ରତ ସତ୍ୟ ସଂକଳ୍ପ । କହିଲେ, 'ହେ' ଦିତି-କଶ୍ୟପଙ୍କ ସନ୍ତାନ ଦୈତ୍ୟଗଣ! ମୋ ଭଳି ପୁଂଶ୍ଚଳି ମୋହିନୀ ନାରୀକୁ ଏତେଟା ବିଶ୍ୱାସ କରୁଚ କିପରି ?ସଂସାରରେ ପଣ୍ଡିତ ହୋସିଆର୍ ଲୋକେ କାମିନୀ ନାରୀଠୁ ଦୂରେଇ ରହିବାକୁ ପସନ୍ଦ କରିଥାନ୍ତି ।'

ପ୍ରଶ୍ନ-୩୬. ବିଦ୍ୱାନ୍ ମାନଙ୍କ ମତରେ ଆଉ କାହାକୁ କାହାକୁ ଜଣେ ସାଧକ କାହିଁକି ବିଶ୍ୱାସ କରିବା ଅନୁଚିତ ?

**ସାଲା ବୃକ୍‌କାଣାଂ ସ୍ତ୍ରୀଣାଂ ଚ ସ୍ୱୈରିଣୀନାଂ ସୁରଦ୍ୱିଷଃ ।**
**ସଖ୍ୟାନି-ଆହୁଃ ଅନିତ୍ୟାନି ନୂତ୍‌ନଂ ନୂତନଂ ବିଚିନ୍ୱତାମ୍ ।।୧୦।।**

ଉ. କହିଲେ,'ହେ, ଦୈତ୍ୟଗଣ( ସୁରଦ୍ୱିଷଃ) ! ମର୍କଟ, ଶୃଗାଳ, କୁକୁର, କୁଳଟା ନାରୀ ଅତ୍ୟନ୍ତ ଯୌନ ଆତୁର ଓ ଯୌନ ସୁଖ କାଙ୍ଗାଳ । ସେମାନେ ଯେତେ ଯୌନ ସୁଖ ପ୍ରାପ୍ତ ହେଲେ ମଧ ନୂଆ ନୂଆ ଶିକାର ଅନ୍ୱେଷଣରେ ଥାଆନ୍ତି । ସେମାନଙ୍କ ସମ୍ବନ୍ଧ ବା ମିତ୍ରତା କେବେ ବି ସ୍ଥାୟୀ ହୋଇପାରେ ନାହିଁ ।'

ଏ ଭଳି କଥା ଶ୍ରବଣ କରି ଦୈତ୍ୟମାନଙ୍କର ଭଗବାନଙ୍କ ଉପରେ ବିଶ୍ୱାସ

ଆହୁରି ବୃଦ୍ଧି ପାଇଲା । ସେମାନେ ଏବେ କହିଲେ, 'ହେ' ସୁନ୍ଦରୀ ! ହେଇ ନିଅ ଏ ଅମୃତ କଳସ । ଆମେ ନିଜେ ବାଣ୍ଟି ପାରିଲୁ ନାହିଁ । ଏବେ ତୁମେ ଏ ଅମୃତକୁ ନିଜ ଇଚ୍ଛାରେ କାହାକୁ ଦେଉଛ ଦିଅ, ନିଜେ ସବୁ ଖାଇଦିଅ କିମ୍ବା ନଖାଇ ନ ଖୁଆଇ କେଉଁଠି ଫିଙ୍ଗିଦିଅ ଆମର କିଛି ଆପତ୍ତି ନାହିଁ ।' ଏବେ ଭଗବାନଙ୍କ ସାହସ ଆହୁରି ବଢ଼ିଗଲା । ସେ କହିଲେ, 'ତେବେ ଠିକ ଅଛି ମୁଁ ମୋ ଇଚ୍ଛାରେ ବାଣ୍ଟିବି ଅମୃତ ତୁମକୁ ଭଲ କି ମନ୍ଦ ଯାହା ଲାଗୁ ପଛେ ।' ଅସୁରମାନେ ହଁ ଭରିଦେଲେ । ମୋହିନୀ ଭଗବାନ ନାରାୟଣ ଏଣେ ନିଜ ପିନ୍ଧା ରେଶମୀ ଶାଢ଼ୀକୁ ଇତସ୍ତତଃ କରି ସୁନ୍ଦର, ସୁଢ଼ଳ, ବକ୍ଷଶ୍ରୀ ପ୍ରଦର୍ଶନ କରି ଅସୁର ମାନଙ୍କୁ ଅନ୍ୟ ମନସ୍କ କରାଇବାରେ ଲାଗିଲେ । ଉଦ୍ଦେଶ୍ୟ ହେଲା ସେମାନେ କିପରି ଅମୃତ କଳସ କଥା ବିସ୍ମରଣ ହୁଅନ୍ତୁ ।

ପ୍ରଶ୍ନ-୩୭. ଭଗବାନ କ'ଣ ଅସୁରମାନଙ୍କୁ ଅମୃତ ପାନ କରାଇବାକୁ ବାଧ ହେଲେ ?

**ଅସୁରାଣାଂ ସୁଧା ଦାନଂ ସର୍ପାଣାଂ ଇବ ଦୁର୍ନୟମ୍ ।**
**ମତ୍ୱା ଜାତି ନୃଶଂସାନାଂ ନ ତାଂ ବ୍ୟଭଜତ୍ ଅଚ୍ୟୁତଃ ॥୧୯॥**

ଉ. ଅଚ୍ୟୁତ ଭଗବାନ ବିଚାର କଲେ ଦୈତ୍ୟମାନଙ୍କର ସ୍ୱଭାବ ସର୍ପଙ୍କ ସ୍ୱଭାବ ଭଳି କ୍ରୂର ଓ କୁଟିଳ । ଏମାନଙ୍କୁ ଅମୃତ ଦେବା ଅର୍ଥ ସର୍ପକୁ ଦୁଗ୍ଧ ପାନ କରାଇ ପୋଷିବା ଭଳି ଘାତକ ବା ବିନାଶକାରୀ ପଦକ୍ଷେପ (ଦୁର୍ନୟମ୍) ହେବ । ସୁତରାଂ 'ବହୁଜନ ହିତାୟ ବହୁଜନ ସୁଖାୟ' ଲାଗି କେବଳ ଦେବତା ମାନଙ୍କୁ ଅମୃତ ପାନ କରାଇ ଅସୁର ମାନଙ୍କୁ ସେଥିରୁ ବଂଚିତ କରିଥିଲେ ।

ପ୍ରଥମେ ଦେବତା ଓ ଅସୁର ମାନଙ୍କୁ ସ୍ୱତନ୍ତ୍ର ପଙ୍‌କ୍ତିରେ ବସାଇଲେ । କହିଲେ, 'ପ୍ରଥମେ ଦେବଗଣକୁ ମୁଁ ଅମୃତ ପରିବେଷଣ କରି ସାରି ଦୈତ୍ୟମାନଙ୍କୁ ଦେବି ।' ଦେଇଥିବା ବଚନ ଅନୁସାରେ ଦୈତ୍ୟମାନେ ଏଥିରେ କିଛି ଆପତ୍ତି ମଧ କଲେ ନାହିଁ । କାଳେ ମୋହିନୀ ଅପ୍ରସନ୍ନ ହେବେ ଏ ଭୟରେ । ଅସୁର ରାହୁ କିନ୍ତୁ ଦେବତାଙ୍କ ବସ୍ତ୍ର ପରିଧାନ କରି ଦେବତା ମାନଙ୍କ ପଙ୍‌କ୍ତିରେ ବସି ଯାଇଥିଲା । ଦେବତାମାନେ ଚଳୁ କରି ଅମୃତ ଖାଇବେ । ଅସୁର ରାହୁ କିନ୍ତୁ ଡ଼େରି ହେଲେ କାଳେ ଧରାପଡ଼ିଯିବ ଏ ଭୟରେ ଅମୃତ ପାଉ ପାଉ ବିନା ଚଳୁରେ ଚାଟି ଖାଇଗଲା । ଦୁଇପଟେ ବସିଥିବା ସୂର୍ଯ୍ୟ ଓ ଚନ୍ଦ୍ର ଦେବତା ଏ କଥା ପାଟି କରି ପ୍ରକାଶ କରିଦେଲେ । ଭଗବାନ ସଙ୍ଗେ ସଙ୍ଗେ ନିଜ ସୁଦର୍ଶନ ଚକ୍ର ପ୍ରୟୋଗ କରି ରାହୁଙ୍କ ମୁଣ୍ଡ ଗଣ୍ଡି

ଦୁଇଗଡ଼ି କରିଦେଲେ କିନ୍ତୁ ସେତେବେଳେକୁ ନେଡ଼ି ଗୁଡ଼ ଯାଇ କହୁଣୀରେ । ଅମୃତ ପାନ କରି ରାହୁଙ୍କର ମୁଣ୍ଡ ଗଣ୍ଡି ଦୁଇଭାଗ ହୋଇ ଅମର ହୋଇଗଲେ । ନାମ ରହିଲା ରାହୁ-କେତୁ । ସେହି ଦିନରୁ ଅମାବାସ୍ୟା ପୂର୍ଣ୍ଣମୀ ତିଥିରେ ଦୁହେଁ ସୂର୍ଯ୍ୟ ଚନ୍ଦ୍ରଙ୍କୁ ପରାଗ-ଗ୍ରହଣ ଦ୍ୱାରା କବଳିତ କରୁଛନ୍ତି । ଅଦ୍ଭୁତ ଭଗବାନଙ୍କ ଲୀଳା !!

ପ୍ରଶ୍ନ-୩୮. ଦେବତାମାନଙ୍କୁ ଅମୃତ ପାନ କରାଇସାରିବା ପରେ ଅସୁରଙ୍କ ପାଳି ପଡ଼ିଲା । ଆସନ୍ନ ବିପଦ ଆଶଙ୍କାରେ ମୋହିନୀ ଭଗବାନ କ'ଣ କଲେ ?

**ପ୍ରୀତ ପ୍ରାୟେଽମୃତେ ଦେବୈଃ ଭଗବାନ୍ ଲୋକ ଭାବନଃ ।**
**ପଶ୍ୟତାଂ ଅସୁର-ଇନ୍ଦ୍ରାଣାଂ ସ୍ୱଂ ରୂପଂ ଜଗୃହେ ହରିଃ ॥୨୭॥**

ଉ. ଭଗବାନ୍ ନାରାୟଣ ତ୍ରିଲୋକୀ ପାଳକ, ହିତୈଷୀ ଓ ସମସ୍ତଙ୍କ ଶୁଭଚିନ୍ତକ । ସୁତରାଂ ଦେବତାଙ୍କୁ ଅମୃତ ପାନ କରାଇବା ଓ ଅସୁରଙ୍କୁ ଅମୃତ ପାନ ନ କରାଇବା ଉଭୟରେ ତାଙ୍କ କୃପା ସ୍ୱୀକାର କରାଯାଏ । ଦେବତାମାନଙ୍କ ଅମୃତ ସେବନ ପରେ ପରେ ସେ ମୋହିନୀ ରୂପ ତ୍ୟାଗ କରି ପୁଣି ବିଷ୍ଣୁ ରୂପରେ ପ୍ରକଟ ହୋଇଗଲେ ।

ସମୁଦ୍ର ମନ୍ଥନ କ୍ରିୟାରେ ସୁର-ଅସୁର ଉଭୟେ ସମାନ ପରିଶ୍ରମ କଲେ ଅବଶ୍ୟ କିନ୍ତୁ ଭଗବାନଙ୍କ ଭକ୍ତ ହୋଇଥିବାରୁ ଦେବତାମାନେ ଅମୃତ ପାନ ସୁଯୋଗ ପ୍ରାପ୍ତ ହେଲେ । ଅଭକ୍ତ ବୋଲି ଅସୁରଗଣ ସେଥିରୁ ବଂଚିତ ହେଲେ ।

ଭଗବାନଙ୍କୁ ମନେ ରଖି ଆମେ କାୟମନୋ ବାକ୍ୟରେ ଯାହା କରୁ ତାହା ଭଗବାନଙ୍କୁ ପ୍ରସନ୍ନ କରେ । ଅନ୍ୟ ପକ୍ଷରେ ଭଗବାନଙ୍କୁ ଭୁଲି ସେ ସବୁ କଲେ ବନ୍ଧନ କାରକ ଫଳ ମିଳେ ଆମକୁ ଭଗବାନଙ୍କ ଅପ୍ରସନ୍ନତାରୁ ।

# ଅଥ ୧୦ମ ଅଧ୍ୟାୟଃ

## (ଘମାଘୋଟ ଦେବାସୁର ଲଢ଼େଇ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୩୯. ଦୈତ୍ୟମାନଙ୍କ ସର୍ବଦା କୁଟିଳ ଏବଂ ଓଲଟ ବୁଦ୍ଧି । ଭଗବାନଙ୍କ ପରୋକ୍ଷ କୃପା ବୁଝିବାରେ ସେମାନଙ୍କ ବୁଦ୍ଧି ଅସମର୍ଥ । ସେମାନେ ହତାଶ ହୋଇ ମଦ୍ୟ ନିଶାରେ ଦେବତା ମାନଙ୍କ ସହିତ ଯୁଦ୍ଧ ପାଇଁ ଅଣ୍ଟା ଭିଡ଼ିଲେ । ସୁଯୋଗ ଦେଖି ଭଗବାନ ସେଠାରୁ ଖସିଗଲେ । ଦେବତାମାନେ ଡ଼ରିପଳାଇଲେ ନା ଯୁଦ୍ଧର ସମ୍ମୁଖୀନ ହେବାକୁ ପସନ୍ଦ କଲେ ?

**ତତଃ ସୁରଗଣାଃ ସର୍ବେ ସୁଧୟା ପୀତୟା -ଏଧିତାଃ ।**
**ପ୍ରତି ସଂଯୁଯୁଦ୍ଧଃ ଶସ୍ତ୍ରୈଃ ନାରାୟଣ ପଦ -ଆଶ୍ରୟାଃ ।।୪।।**

ଉ. ସେତେବେଳକୁ ସେମାନେ ତ ସ୍ୱର୍ଗରାଜ୍ୟରୁ ବିତାଡ଼ିତ ହୋଇସାରିଥିଲେ । ଅମୃତ ପାନ କରି ସେମାନେ ଏବେ ବଳବାନ (ଏଧିତାଃ) ହୋଇଛନ୍ତି । ଭାଗ୍ୟ ଦେବୀ ତାଙ୍କର ଅନୁକୂଳ କାରଣ ସ୍ୱୟଂ ବିଷ୍ଣୁଙ୍କୁ ସେମାନେ ପ୍ରସନ୍ନ କରିପାରିଛନ୍ତି । ସୁତରାଂ ସେମାନେ ମଧ ହତିଆର ଉଠେଇ ଅସୁରଙ୍କ ସମ୍ମୁଖୀନ ହେଲେ ।

କ୍ଷୀର ସାଗର କୂଳ ଏକ ରଣ କ୍ଷେତ୍ରରେ ପରିଣତ ହେଲା । ରଥୀ ସହ ରଥୀ, ଅଶ୍ୱାରୋହୀ ସହିତ ଅଶ୍ୱାରୋହୀ,ଗଜାରୋହୀ ସହ ଗଜାରୋହୀ ଓ ପଦାତିକ ସୈନ୍ୟ ସହିତ ପଦାତିକ ସୈନ୍ୟମାନେ ଭିଡିଗଲେ ଘମାଘୋଟ ପ୍ରାଣାନ୍ତକ ଲଢ଼େଇରେ ।

ଦୈତ୍ୟରାଜ ବିରୋଚନଙ୍କ ପୁତ୍ର ବଳି ବିହାୟସ ନାମକ ମୟନିର୍ମିତ ବାୟୁଯାନରେ ବସି ଯୁଦ୍ଧ କଲେ । ସେ ଯାନର ଏକ ବିଶେଷତ୍ୱ ଥିଲା ଯେ- ତାହା ମାୟାନିର୍ମିତ ହୋଇଥିବାରୁ କେତେବେଳେ ଦୃଶ୍ୟମାନ ହୁଏ ତ ପୁଣି କେତେବେଳେ ଅଦୃଶ୍ୟ । ବଳିରାଜାଙ୍କ ଚତୁର୍ଦ୍ଦିଗରେ ଅନ୍ୟାନ୍ୟ ସେନାପତି ମାନେ ଘେରିଥାନ୍ତି । ନମୁଚି, ଶମ୍ବର, ବାଣ, ବିପ୍ରଚିତ୍ତି, ଦ୍ୱିମୂର୍ଦ୍ଧା, କାଳ ନାଭ, ହେତି,ପ୍ରହେତି, ଉଲ୍ମଳ, ବଜ୍ରଦଂଷ୍ଟ୍ର, ବିରୋଚନ, ତାରକ, ଶୁମ୍ଭ, ନିଶୁମ୍ଭ, ଜମ୍ଭ, ମୟ, ପୁଲୋମ ଓ ନିବାତ କବଚ ଆଦି ଦୈତ୍ୟ ସେନାପତିମାନେ ନିଜ ନିଜ ହାତ ହତିଆର ଧରି ଯୁଦ୍ଧ କଲେ ।

ଦେବତାମାନେ କି ଛାଡ଼ିବା ଲୋକ ? ଇନ୍ଦ୍ରଙ୍କୁ ଐରାବତ ହସ୍ତୀ ପୃଷ୍ଠରେ ବସାଇ ତାଙ୍କ ଚାରିପଟେ ଦେବ ସେନାପତିମାନେ ନିଜ ନିଜ ପ୍ରିୟ ଅସ୍ତ୍ର ଶସ୍ତ୍ର ଧରି

ଯୁଦ୍ଧରେ ମାତିଗଲେ । ଉଭୟ ପକ୍ଷ ଦୁର୍ବଚନ ଦ୍ୱାରା ପରସ୍ପର ପ୍ରତି ସ୍ପର୍ଦ୍ଧା ପ୍ରତିସ୍ପର୍ଦ୍ଧା ସହ ପରସ୍ପରକୁ କ୍ଷତ ବିକ୍ଷତ କରିବାରେ ଲାଗିଲେ ।

ମହାରାଜା ବଳି ଇନ୍ଦ୍ରଙ୍କ ସହିତ, କାର୍ତ୍ତିକେୟ-ତାରକ, ବରୁଣ-ହେତି, ମିତ୍ର-ପ୍ରହେତି, ଯମରାଜ-କାଳନାଭ, ବିଶ୍ୱକର୍ମା-ମୟଦାନବ, ତ୍ୱଷ୍ଟା-ଶମ୍ବର, ସୂର୍ଯ୍ୟଦେବ-ବିରୋଚନ, ନମୁଚି-ଅଶ୍ୱିନୀ କୁମାର ଦ୍ୱୟ, ଚନ୍ଦ୍ରଦେବ-ରାହୁ, ବାୟୁ ଦେବ-ପୁଲୋମା, ବିଭାବସୁ-ମହିଷାସୁର, ଦୁର୍ମର୍ଷି-କାମଦେବ, ବୃହସ୍ପତି-ଶୁକ୍ରାଚାର୍ଯ୍ୟ, ଶନୈଶ୍ଚର-ନରକାସୁର, ମରୁଦ୍‌ଗଣ-ନିବାତ କବଚ ଲଢ଼େଇରେ ଲାଗିଲେ ।

ପ୍ରଶ୍ନ-୪୦. ଭୟଙ୍କର ଯୁଦ୍ଧରେ ପୂରା ଯୁଦ୍ଧଭୂମି କଟା ମୁଣ୍ଡ, ଗଣ୍ଡି, ହସ୍ତ,ପଦ, ଅଙ୍ଗ ପ୍ରତ୍ୟେଙ୍ଗ, ରୁଧିର, ଅସ୍ଥିରେ ପୂରିଗଲା । ଦାନବ ରାଜା ବଳି ଓ ଦେବତା ରାଜା ଇନ୍ଦ୍ରଙ୍କ ମଧ୍ୟରୁ ଯୁଦ୍ଧରେ କିଏ ମଲେ ?

**ବଳିଃ ମହା-ଇନ୍ଦ୍ରଂ ଦଶଭିଃ ତ୍ରିଭିଃ ଐରାବତଂ ଶରୈଃ ।**
**ଚତୁର୍ଭିଃ ଚତୁରୋ ବାହାନ୍ ଏକେନ-ଆରୋହଂ ଆର୍ଚ୍ଛୟତ୍ ॥୪୧॥**

ଉ. ବଳି ଇନ୍ଦ୍ରଙ୍କ ଉପରକୁ ଦଶବାଣ ଓ ଐରାବତକୁ ତିନି ବାଣ ଏକାବେଳକେ ପ୍ରୟୋଗ କଲେ । ଇନ୍ଦ୍ର ଏକ ସମୟରେ ଚାରି ବାଣରେ ନିଜର ରକ୍ଷା ଓ ଆଉ ଗୋଟିଏ ବାଣରେ ନିଜ ଦିବ୍ୟ ବାହାନ ଐରାବତଙ୍କର ରକ୍ଷା କଲେ । ଉଭୟଙ୍କ ବାଣ ଉଭୟେ କାଟି ପକାଉଥାନ୍ତି ପ୍ରତିରୋଧକ ବାଣ ପ୍ରୟୋଗ କରି ।

ଶେଷରେ ରାଜା ବଳି ମାୟାଯୁଦ୍ଧ କୌଶଳ ପ୍ରୟୋଗ କଲେ । ଅନେକ ଦେବତା ହତାହତ ହୋଇ ଯୁଦ୍ଧ ଭୂମିରେ ଲୋଟି ପଡ଼ିଲେ । ରାଜା ବଳିଙ୍କ ବିଜୟ ସମ୍ଭାବନା ଦେଖି ଦେବତାମାନେ ଭଗବାନ ବିଷ୍ଣୁଙ୍କୁ ଧ୍ୟାନ କଲେ ସେଇ ରଣାଙ୍ଗନରେ । ଭଗବାନ ଗରୁଡ଼ ପିଠିରେ ଚକ୍ର ହସ୍ତରେ ଆବିର୍ଭୂତ ହେଲେ । ଭଗବାନଙ୍କ ଜ୍ୟୋତି ପ୍ରଭାବରେ ଆସୁରୀ ମାୟା ହଟିଗଲା । ଭଗବାନ ସ୍ୱୟଂ ଦୁର୍ଦ୍ଦାନ୍ତ ଅସୁର କାଳନେମିକୁ ମାଳୀ, ଓ ସୁମାଳୀଙ୍କୁ ସୁଦର୍ଶନ ଚକ୍ରରେ ସଂହାର କରିପକାନ୍ତେ ଅସୁର ମାନେ ଡ଼ରିଗଲେ । ଅନେକେ ଯୁଦ୍ଧ ଭୂମିରୁ ଛତ୍ରଭଙ୍ଗ ଦେଲେ । କେତେ ଜଣ ନିଜ ନିଜ ପ୍ରାଣ ବଂଚାଇବାକୁ ଯଦୃଚ୍ଛା ପଳାୟନ କଲେ । ସୁଦର୍ଶନ ଚକ୍ରର ତେଜ ସହିବା ସେମାନଙ୍କ ପକ୍ଷରେ ଅସମ୍ଭବ ମନେ ହେଲା । ଭଗବାନ ଏଥରକ ଇନ୍ଦ୍ରଙ୍କ ଉପରେ ଦାୟିତ୍ୱ ଦେଇ ସ୍ୱୟଂ ଅନ୍ତର୍ଦ୍ଧାନ ହୋଇଗଲେ । ଲୁଚିଥିବା ଦୈତ୍ୟଗଣ ପୁଣି ଘେରିଗଲେ ଦେବତାମାନଙ୍କୁ ।

# ଅଥ ୧୧ଶ ଅଧ୍ୟାୟଃ

## (ଇନ୍ଦ୍ରଙ୍କ ଦ୍ୱାରା ଅସୁର ସଂହାର ଓ ଦେବାସୁର ସଂଗ୍ରାମ ସମାପ୍ତି)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୪୧. ଭଗବାନ ଶ୍ରୀହରିଙ୍କ ଅମୃତମୟ କୃପାଦୃଷ୍ଟି ପ୍ରଭାବରେ ହତାହତ ଦେବତାମାନେ ପୁନର୍ଜୀବନ ପ୍ରାପ୍ତ ହେଲେ । ସେମାନଙ୍କ କ୍ଷତ ଭରିଗଲା । ପୁଣି ବଳ, ବୀର୍ଯ୍ୟ, ତେଜରେ ସେମାନେ ଯୁଦ୍ଧ କରିବାରେ ଲାଗିଗଲେ ।

ଇନ୍ଦ୍ରଦେବ ଦ୍ୱିଗୁଣ ଉତ୍ସାହରେ ରାଜା ବଳିଙ୍କୁ ଯୁଦ୍ଧପାଇଁ ଆହ୍ୱାନ କଲେ । ବଳି କହିଲେ, 'ହେ' ଇନ୍ଦ୍ର ! ଏ ଯୁଦ୍ଧ ଭୂମିରେ ଯେତେ ସୁର-ଅସୁର ଅଛନ୍ତି ସମସ୍ତେ କାଳ ବଶ । ନିଜ -ନିଜର  କର୍ମ ଫଳ ଅନୁସାରେ ସମସ୍ତେ ଯଶ-ଜୟ-ପରାଜୟ ପ୍ରାପ୍ତ ହୋଇ ଅବଶ୍ୟ ମରିବେ । ତୁମକୁ କାଳରକାଳ ମହାକାଳ ଭଗବାନ ଅନୁକୂଳ ହୋଇଛନ୍ତି । ଅସୁରଙ୍କୁ ମାରିବାରେ ତୁମର ନିଜର କି ପୌରୁଷ ଅଛି ? ଯୁଦ୍ଧରେ ବିଜୟ ଲାଭ କରି ହର୍ଷିତ ହେବା, ଅହଂକାର କରିବା ବୁଦ୍ଧିମାନର କାମ ନୁହେଁ । ଏହା ତୁମର ଅଜ୍ଞାନତା ବୋଲି ଜାଣି ରଖ ।'

ଠିକ୍ ଏତିକିବେଳେ ରାଜା ଇନ୍ଦ୍ର ଅସ୍ତ୍ର ପ୍ରୟୋଗ କରି ବଳିଙ୍କୁ ରଥ ସହିତ ଭୂମିରେ ପକାଇ ଦେଲେ । ଜମ୍ଭାସୁର ଦେଖିଲେ ତାଙ୍କ ସଖା ବଳି ଭୂପତିତ । ଐରାବତ ଉପରେ ଗଦା ପ୍ରହାର କଲେ ଜମ୍ଭ । ଇନ୍ଦ୍ରଙ୍କ ଐରାବତ ହସ୍ତୀ ଚେତନା ହରାଇଲା । ସଙ୍ଗେ ସଙ୍ଗେ ଇନ୍ଦ୍ରଙ୍କ ସାରଥୀ ମାତଳି ରଥ ଆଣି ପହଞ୍ଚାଇଲେ । ଇନ୍ଦ୍ର ଆରୋହଣ କଲେ ରଥ । ଜମ୍ଭ ମାତଳି ଉପରେ ପ୍ରହାର କଲେ । ଏହି ଅବସରରେ ଇନ୍ଦ୍ରଦେବ ଜମ୍ଭଙ୍କ ଶିର କାଟି ପକାଇଲେ । ଏହା ଦେଖି ନମୁଚି, ବଳ ଓ ପାକ ତିନି ଜଣ ମିଶି ଇନ୍ଦ୍ରଙ୍କ ଉପରେ ମିଳିତ ଆକ୍ରମଣ କଲେ । ସେମାନେ ଏକ ସମୟରେ ଏତେ ଶର ବର୍ଷା କଲେ ଯେ ଇନ୍ଦ୍ର ଦେବ ତାଙ୍କ ରଥ ସହିତ ଶରରେ ସମ୍ପୂର୍ଣ୍ଣ ଘୋଡ଼େଇ ହୋଇଗଲେ । ଇନ୍ଦ୍ରଙ୍କୁ ନ ଦେଖି ଦେବତାମାନେ ହାହାକାର କଲେ । ଇନ୍ଦ୍ର କିନ୍ତୁ ଭଗବାନଙ୍କ କୃପାରୁ ସେଥିରୁ ମୁକୁଳି ଆସିଲେ । ବଜ୍ର ପ୍ରୟୋଗ କରି ବଳ ଓ ପାକଙ୍କର ଶିର କାଟି ପକାଇଲେ । ନମୁଚି ଭୟଙ୍କର ଆକ୍ରମଣ କଲା ଇନ୍ଦ୍ରଙ୍କୁ । ଇନ୍ଦ୍ରଙ୍କ ବଜ୍ର ପ୍ରହାର ମଧ ନିଷ୍ଫଳ ହୋଇଗଲା ।

ଇନ୍ଦ୍ର ହତାଶ ହେଲେ । ସଙ୍ଗେ ସଙ୍ଗେ ଆକାଶ ବାଣୀ ହେଲା-ନମୁଚି ତପସ୍ୟା କରି ବର ପ୍ରାପ୍ତ ହୋଇଛି କୌଣସି ଆର୍ଦ୍ର କିମ୍ବା ଶୁଷ୍କ ଅସ୍ତ୍ରରେ ସେ ମରିବନି ବୋଲି । ଇନ୍ଦ୍ରଙ୍କର ମନେ ପଡ଼ିଲା ଭଗବାନ ବତାଇଥିବା ସମୁଦ୍ର ଫେଣ ଅସ୍ତ୍ର କଥା ।

ଇନ୍ଦ୍ର କ'ଣ ଯୁଦ୍ଧ ଭୂମି ଛାଡ଼ି ଭୟରେ ପଳାୟନ କଲେ ନମୁଚି ରାକ୍ଷସ ସମ୍ମୁଖରୁ ?

**ନ ଶୁଷ୍କେଣ ନ ଚ-ଆର୍ଦ୍ରେଣ ଜହାର ନମୁଚେଃ ଶିରଃ ।**
**ତଂ ତୁଷ୍ଟୁବୁଃ ମୁନିଗଣା ମାଲ୍ୟୈଃ ଚ ଅବାକିରନ୍ ବିଭୁମ୍ ||୪୦||**

ଉ. ନା,ନା ଭଗବାନଙ୍କ ବତାଇଥିବା ଉପାୟ ଏବେ କାମରେ ଲଗାଇଲେ । ସମୁଦ୍ର ଫେଣ ଶୁଷ୍କ ନୁହେଁ କି ଆର୍ଦ୍ର ମଧ ନୁହେଁ । ଅତଏବ ଇନ୍ଦ୍ର ମନ୍ତ୍ର ଶକ୍ତି ବଳରେ ଫେଣ ଅସ୍ତ୍ରରେ ନମୁଚିର ଶିର ଛେଦନ ( ଜହାର) କଲେ । ମୁନି ଋଷିମାନେ ଆନନ୍ଦରେ ଇନ୍ଦ୍ରଙ୍କ ଉପରେ ପୁଷ୍ପ-ବର୍ଷଣ କଲେ । ମାଲ୍ୟାର୍ପଣ କରି (ଅବାକିରନ୍) ଧନ୍ୟ ଧନ୍ୟ କହିଲେ ।

ସ୍ୱର୍ଗରେ ଦୁନ୍ଦୁଭି ବାଜିଲା, ନାଚ, ଗୀତ ଚାଲିଲା । ଶେଷରେ ଅସୁରମାନଙ୍କ ସଂଖ୍ୟା ନଗଣ୍ୟ ମନେ ହେଲା । ଦେବର୍ଷି ନାରଦ ହସ୍ତକ୍ଷେପ କଲେ ଭଗବାନ ନାରାୟଣଙ୍କ ଇଚ୍ଛାରେ । ନାରଦଜୀ ବଳିଙ୍କ ସହିତ ଅନ୍ୟାନ୍ୟ ଅସୁର ମାନଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମରେ ପହଞ୍ଚାଇ ଦେବା ବନ୍ଦୋବସ୍ତ କଲେ । ଦୈତ୍ୟଗୁରୁ ମୃତ୍ୟୁ ସଞ୍ଜୀବନୀ ବିଦ୍ୟା ସାହାଯ୍ୟରେ ବଳି ଓ ଅନ୍ୟାନ୍ୟ ମୃତାହତ ଦୈତ୍ୟମାନଙ୍କୁ ପୁନର୍ଜୀବନ ଦେଲେ ଓ କ୍ଷତ ପୂରଣ କରିଦେଲେ ।

ପ୍ରଶ୍ନ-୪୨. ଶୁକ୍ରାଚାର୍ଯ୍ୟଙ୍କ (ଉଶନସା) ସ୍ପର୍ଶରେ ରାଜା ବଳିଙ୍କ ହୋସ ଆସିଲା । ଯୁଦ୍ଧରେ ପରାଜିତ ହୋଇ ମଧ ରାଜା ବଳି ଆଦୌ ଶୋକାକୁଳିତ ହୋଇନଥିଲେ କି ?

**ବଳିଃ ଚ-ଉଶନସା ସ୍ପୃଷ୍ଟଃ ପ୍ରତ୍ୟାପନ୍ନ ଇନ୍ଦ୍ରିୟ ସ୍ମୃତିଃ ।**
**ପରାଜିତୋଽପି ନ ଅଖିଦ୍ୟତ୍ ଲୋକତତ୍ତ୍ୱ ବିଚକ୍ଷଣଃ ||୪୮||**

ଉ. ରାଜା ବଳି ଜଣେ ଅସାଧାରଣ ତପସ୍ୱୀ ଥିଲେ । ଅଧ୍ୟାତ୍ମ ବିଦ୍ୟାରେ ମଧ ନିଜ ଜେଜେ ବାପା ପ୍ରହ୍ଲାଦ ଓ ପିତା ବିରୋଚନଙ୍କ ଭଳି ଧୂରୀଣ ପଣ୍ଡିତ ଥିଲେ । ଅସୁର କୁଳରେ ଜନ୍ମହେଲେ ମଧ ବୁଦ୍ଧି ତାଙ୍କର ବେଳେ ବେଳେ ତାମସିକ-ରାଜସିକ ରାଜ୍ୟରୁ ଉଠି ସାତ୍ତ୍ୱିକ ଜଗତକୁ ସ୍ପର୍ଶ କରୁଥିଲା । ସେ ଆଦୌ ଶୋକ କଲେ ନାହିଁ । କାରଣ ସେ ବୁଝିପାରିଲେ ଏ ଜୟ-ପରାଜୟ ଭଗବାନଙ୍କ ଲୀଳା ମାତ୍ର । ତାଙ୍କରି ଇଚ୍ଛାରେ ଓ ସ୍ୱକୃତ କର୍ମମାନଙ୍କ ଫଳ ଯୋଗୁ ଜୀବର ଜନ୍ମ-ମରଣ, ଜୟ-ପରାଜୟ,ସୁଖ-ଦୁଃଖ ପ୍ରାପ୍ତି ହୋଇଥାଏ । ତାହା ପୁଣି ସେ ଭୋଗ କରିବାକୁ ବାଧ । ସେ ଇନ୍ଦ୍ର-ଚନ୍ଦ୍ର-ଆଦି ଯେ ବା ହୁଅନ୍ତୁ । ବଳି ଅସୁର କୁଳରେ ଥାଇ ଈଶ୍ୱର ଭକ୍ତ ! !

# ଅଥ ୧୨ଶ ଅଧ୍ୟାୟଃ

## (ମୋହଶୂନ୍ୟ ମହାଦେବଙ୍କର ମୋହିନୀ ମୋହ)

ଶ୍ରୀ ବାଦରାୟଣିଃ ଉବାଚ

ପ୍ରଶ୍ନ-୪୩. ଭଗବାନ ଶଙ୍କରଜୀ ବିଷପାନ କରିବା ପରେ କୈଳାସ ଚାଲିଯାଇଥିଲେ । ଖବର ପାଇଲେ ଯେ ଶ୍ରୀହରି ମୋହିନୀ ଅବତାର ଗ୍ରହଣ କରି ତମୋଗୁଣୀ-ରଜୋଗୁଣୀ ଦାନବ ମାନଙ୍କୁ ଅଚିନ୍ତ୍ୟ ରୂପ ଯୌବନ ଦର୍ଶାଇ ସେମାନଙ୍କ ବୁଦ୍ଧି-ମନଙ୍କୁ ମୋହିତ କରି ଅମୃତ ପାନରୁ ବଂଚିତ କରିଛନ୍ତି । ସତ୍ତ୍ୱଗୁଣୀ ଦେବତାମାନଙ୍କୁ ଅମୃତ ପାନ କରାଇଛନ୍ତି । ସେ ସ୍ୱୟଂ ବିଷଜ୍ୱାଳାରେ ଅସହ୍ୟ ପୀଡ଼ା ମଧ୍ୟ ସହନ କରୁଥାନ୍ତି । ସେ ପୀଡ଼ାକୁ ଭୁଲିବାକୁ ସେ ଶ୍ରୀହରିଙ୍କ ସାନ୍ନିଧ ଦରକାର କରୁଥିଲେ । ସୁତରାଂ ସେ ତୁରନ୍ତ ଚାଲିଲେ ବୈକୁଣ୍ଠ । ସାଙ୍ଗରେ ମା' ଭଗବତୀ ଉମା ଓ ନନ୍ଦୀ ଭୃଙ୍ଗୀ ଆଦି ଅନେକ ଶିବଗଣ । ସମସ୍ତେ ଘେରିଗଲେ ଭଗବାନ ଶ୍ରୀହରିଙ୍କୁ । ଉକ୍ତ ଭୂମିକାରେ ରହି ଶ୍ରୀ ଶଙ୍କରଜୀ ବିଷ୍ଣୁଙ୍କ ପାଖରେ କି ଅଭିଳାଷା ବ୍ୟକ୍ତ କଲେ ?

ଶ୍ରୀ ମହାଦେବ ଉବାଚ

**ଦେବ ଦେବ ଜଗତ୍ ବ୍ୟାପିନ୍ ଜଗତ୍ ଈଶ ଜଗତ୍ ମୟ ।**
**ସର୍ବେଷାଂ ଅପି ଭାବାନାଂ ତ୍ୱଂ ଆତ୍ମା ହେତୁଃ ଈଶ୍ୱରଃ ॥୪॥**

ଉ. ଶ୍ରୀ ମହାଦେବ ନିବେଦନ କଲେ, 'ହେ' ଦେବତା ମାନଙ୍କର ଦେବତା ! ଆପଣ ବିଶ୍ୱବ୍ୟାପୀ, ବ୍ରହ୍ମାଣ୍ଡର ସର୍ବୋଚ୍ଚ ସ୍ୱାମୀ, ଆପଣ ନିଜକୁ ଜଗତରୂପରେ ରୂପାନ୍ତରିତ କରି ସ୍ୱୟଂ ଉପାଦାନ କାରଣ (ବନନେ ୱାଲା) ଆପଣ ଚର-ଅଚର ପ୍ରାଣୀ ଅନ୍ତର ନିବାସୀ ନାରାୟଣ, ସକଳ ବସ୍ତୁ-ବ୍ୟକ୍ତି-ପରିସ୍ଥିତିର ନିମିତ୍ତ କାରଣ (ବନାନେ ୱାଲା) ଓ ସକଳ ନିୟନ୍ତ୍ରଣ କାରୀ ମାନଙ୍କର ମଧ୍ୟ ନିୟନ୍ତ୍ରଣ କର୍ତ୍ତା ଆପଣଙ୍କୁ ମୋର ସାଦର ପ୍ରଣାମ ।

ଆପଣ ଏ ଦୃଶ୍ୟ-ଅଦୃଶ୍ୟ ସଂସାରର ଆଦି-ମଧ-ଅନ୍ତ ଅଟନ୍ତି । ଆପଣ ସକଳ ଆତ୍ମାଙ୍କର ମଧ ଆତ୍ମା ପରମାତ୍ମା । ଆପଣଙ୍କ ଚରଣ କମଳ ଧ୍ୟାନ କରି ଆମେ ନିର୍ଭୟ ହୋଇପାରିଛୁ । ଆପଣ କେବଳ ଭୌତିକ ପ୍ରକୃତିର ନିୟନ୍ତ୍ରଣର ନିଗଡ଼ ବନ୍ଧନରୁ ମୁକ୍ତ । ବ୍ରହ୍ମା ଇନ୍ଦ୍ରାଦି ଆମେ କିନ୍ତୁ ସମସ୍ତେ ଆପଣଙ୍କ ମାୟାଦ୍ୱାରା ନିୟନ୍ତ୍ରିତ ।

ସାଂଖ୍ୟବାଦୀଙ୍କ ମତରେ ଆପଣ ପରମ ପୁରୁଷ, ନିର୍ବିଶେଷ ଜ୍ଞାନବାଦୀଙ୍କ ମତରେ ଆପଣ ନିର୍ଗୁଣ ନିରାକାର ନିର୍ବିଶେଷ ଓଁ କାର ଜ୍ୟୋତି ସ୍ୱରୂପ, ମୀମାଂସକଙ୍କ ମତରେ ଆପଣ ବିଗ୍ରହବାନ ଧର୍ମ, ପତଞ୍ଜଳି ଯୋଗ ଦର୍ଶନ ମତରେ ଆପଣ ଆତ୍ମାମାନଙ୍କର ଆତ୍ମା ପରମାତ୍ମା ଓ ଭକ୍ତମାନଙ୍କ ଚିନ୍ମୟ ଦୃଷ୍ଟିରେ ଆପଣ ସର୍ବରୂପ-ସର୍ବନାମ ଧାରୀ ଭଗବାନ । ରଜୋତମୋଗୁଣୀ ନାସ୍ତିକ ମତରେ ଆପଣ ଶୂନ୍ୟ-ଶୂନ୍ୟ-ମହାଶୂନ୍ୟ ।'

ପ୍ରଶ୍ନ-୪୪.ସ୍ୱୟଂ ଶଙ୍କରଜୀ ଭଗବାନ ନାରାୟଣଙ୍କୁ କେଉଁ ଦୃଷ୍ଟିରେ ଦେଖନ୍ତି ବୋଲି କହିଲେ ?

**ଅବତାରା ମୟା ଦୃଷ୍ଟା ରମମାଣସ୍ୟ ତେ ଗୁଣୈଃ ।**
**ସୋଽହଂ ତତ୍ ଦ୍ରଷ୍ଟୁଂ ଇଚ୍ଛାମି ଯତ୍ ତେ ଯୋଷିତ୍ ବପୁ ଧୃତମ୍ ॥୧୨॥**

ଉ. ଶଙ୍କରଜୀ କହିଲେ,'ମୋ ସୀମିତ ଜୀବନ କାଳ ମଧରେ ମୁଁ ଆପଣଙ୍କର ଅନେକ ସଗୁଣ-ସାକାର ଭକ୍ତ ମନ ମୋହନ କାରୀ କଚ୍ଛପ-ବରାହ-ବାମନ-ନୃସିଂହ ଆଦି ଅବତାର ଦର୍ଶନ କରିଛି । ତଥାପି ମୋ ମନ-ବୁଦ୍ଧି-ଚିତ୍ତ ଅତୃପ୍ତ । ଏବେ ମୋତେ ସେହି ମୋହିନୀ ରୂପ ଦର୍ଶନ କରାଇ ଆପଣଙ୍କର ଭକ୍ତ ବାଞ୍ଛା କଳ୍ପତରୁ ନାମକୁ ସାର୍ଥକ କରନ୍ତୁ । ସେହି ଦିବ୍ୟରୂପ ଦର୍ଶନ ଲାଗି ଆମେ ସବୁ କୌତୁହଳୀ ହୋଇ କୈଳାସରୁ ଏଠାକୁ ଆସିଛୁ ।'

ଭଗବାନ କିନ୍ତୁ କୈଳାସପତିଙ୍କୁ ବୁଝାଇବାକୁ ଚେଷ୍ଟାକଲେ । କହିଲେ, 'ହେ' ଦେବ ଶ୍ରେଷ୍ଠ ! ସେ ଏକ ଗୋପନୀୟ ରୂପ । ସେ ରୂପ ଧାନ କରିବାକୁ ମୁଁ ନିଜେ ମୋର ଭକ୍ତମାନଙ୍କୁ ବାରଣ କରେ । ଅସୁରମାନେ ବହୁ କଷ୍ଟଲବ୍ଧ ଅମୃତ କଳସ ଜବରଦସ୍ତ ଛଡ଼ାଇ ନେଲେ ବୋଲି ଦେବତାମାନଙ୍କ ସ୍ୱାର୍ଥ ସାଧନ ଲାଗି ମୁଁ କିଛି ସମୟ ଲାଗି ସେ ରୂପ ଧାରଣ କରିଥିଲି । ଆପଣ ସେ ରୂପ ନ ଦେଖିଲେ ଭଲ ହୁଅନ୍ତା କିନ୍ତୁ ବିଷଜ୍ୱାଳାରେ ଛଟପଟ ଶଙ୍କରଜୀ ଛାଡୁଛନ୍ତି କେତେବେ ? ମୋହିନୀଙ୍କ

କାମ ବିଷ ହିଁ ହଳାହଳ ବିଷକୁ ତେଜହୀନ କରିପାରିବ । ତାଙ୍କର ଦୁରାଗ୍ରହ ଦେଖି ଭଗବାନ ଶ୍ରୀହରି କହିଲେ, 'ହଉ ତେବେ ଦେଖନ୍ତୁ ।'

ହଠାତ୍ ଶଙ୍କର ଭଗବାନ ଦେଖିଲେ ସମ୍ମୁଖରେ ଭଗବାନ ଅଦୃଶ୍ୟ । କିଛି ଦୂରରେ ମୋହିନୀ ନାରୀଟିଏ ହାତରେ ଲୀଳା କନ୍ଦୁକଟିଏ ଧରି ଉପରକୁ ବାରମ୍ବାର ଫିଙ୍ଗି ତଳେ ହାତ ପତାଇ ଧରୁଚି । ଅତ୍ୟନ୍ତ କ୍ଷୀଣ କଟୀ । ମନେ ହେଉଛି ନବ ଯୌବନର ବର୍ତ୍ତୁଳ ବକ୍ଷୋଜ ଭାରା ସହି ନପାରି ସେ କଟୀ ଭାଙ୍ଗି ଯିବ କି ଆଉ । ବିଚିତ୍ର ନାହିଁ-ନଥିଲା-ନୋହିବ ନାରୀଟିଏ । ପିନ୍ଧା ବସନ ଢ଼ିଲା, କେଶ ମୁକୁଳା, ମନ ବାଉଳା, ଯୌବନ ଉଛୁଳା ଓ ମଝିରେ ମଝିରେ ମଉକା ଦେଖି ସେ ନାରୀ ରତ୍ନ କଟାକ୍ଷ ବାଣ ମଧ୍ୟ ଚଳାଇଲା ।

ମହାଦେବଙ୍କ ମହାସମାଧି ନିମିଷକେ ଭାଙ୍ଗି ଚୁରମାର ହୋଇଗଲା । ଭୁଲିଗଲେ ସେ ପାଖରେ ମା' ପାର୍ବତୀ ଓ ପିଲାଏ ଶିବଗଣ ମଧ୍ୟ ଉପସ୍ଥିତ ବୋଲି । ସଂସାର ବନ୍ଧନର ମୂଳ କାରଣ ସ୍ତ୍ରୀ-ପୁରୁଷଙ୍କ ମୈଥୁନୀ ଭାବର ଆକର୍ଷଣ । ସେ ଭାବିଲେ ସେ ନାରୀ ମୋ ପ୍ରତି ନିଶ୍ଚୟ ଆକୃଷ୍ଟା । ନଚେତ ସେ ମୋ ପ୍ରତି ଏ ଭଳି କୃପାଦୃଷ୍ଟିରେ ଚାହିଁ ନୟନ ବାଣରେ ଘାୟଲ କରନ୍ତା କାହିଁକି ? ନିର୍ଲ୍ଲଜ ହେଲେ ଶଙ୍କରଜୀ । ହୋସ ଉଡ଼ିଗଲା ତାଙ୍କର । ବୃକ୍ଷ ଉହାଡ଼ରେ ଲୁଚି ପୁଣି ଦେଖାଦେଲେ ମୋହିନୀ ରୂପ ଧାରୀ ଠାକୁରଜୀ ଗୋଟିଏ ସ୍ଥାନରେ ଠିଆ ନ ହୋଇ ସେ ଇତସ୍ତତଃ ହୁଅନ୍ତେ ଅଣ୍ଡିରା ହାତୀଟିଏ ମାଈ ହାତୀକୁ କଣ୍ଟା ଝଣ୍ଟା ନ ମାନି ଅନୁସରଣ କରିବା ଭଳି ଶଙ୍କରଜୀ ପଛେ ପଛେ ଦୌଡ଼ୁଥାନ୍ତି ।

ସୌଭାଗ୍ୟକୁ ପାଖରେ ପାଇ ଶଙ୍କରଜୀ ତାଙ୍କୁ ଦୁଇ ହାତରେ ଆଲିଙ୍ଗନ କରି ତାଙ୍କ ମୁକୁଳା କେଶକୁ ଧରି ନେଲେ । ଆଖି ପିଛୁଳାକେ ଭଗବାନ ମୋହିନୀ ତାଙ୍କ ଆଲିଙ୍ଗନରୁ ଖସିଗଲେ । ଦେଖୁ ଦେଖୁ ଉର୍ଦ୍ଧ୍ୱରେତା ମହାତପସ୍ୱୀ ଦେବ ଦେବ ମହାଦେବଙ୍କର ବହୁକାଳର ସଂଚିତ ରେତ ସ୍ଖଳିତ ହୋଇଗଲା । ହାରିଗଲେ ଦେବଦେବ ମହାଦେବ । ଜିଣିଗଲା କୃଷ୍ଣପୁତ୍ର ରତିଧବ ପ୍ରଦ୍ୟୁମ୍ନ ଅବତାର ଧାରୀ କନ୍ଦର୍ପ ।

ପ୍ରଶ୍ନ-୪୫. ଭଗବାନ ଶଙ୍କରଙ୍କ ବୀର୍ଯ୍ୟ ଅତ୍ୟନ୍ତ ଶକ୍ତିଶାଳୀ ଅଟେ । ଯେଉଁଠି ଯେଉଁଠି ଶିବ ବୀର୍ଯ୍ୟର ପତନ ହୋଇଥିଲା ସେଠାରେ ଭୂପୃଷ୍ଠରେ କ'ଣ କ'ଣ ସବୁ ସୃଷ୍ଟି ହେଲା ?

**ଯତ୍ର ଯତ୍ର ଅପତତ୍ ମହ୍ୟାଂ ରେତଃ ତସ୍ୟ ମହାତ୍ମନଃ ।**
**ତାନି ରୂପ୍ୟସ୍ୟ ହେମ୍ନଃ ଚ କ୍ଷେତ୍ରାଣି ଆସନ୍ ମହୀପତେ ॥୩୩॥**

ଉ. ହେ' ରାଜା ପରୀକ୍ଷିତ (ମହୀପତେ), ସେଠାରେ ରୂପା ଖଣି ଓ ସୁନା (ରୂପ୍ୟସ୍ୟ ହେମ୍ନଃ ଚ) ଖଣି ମାନ ସବୁ ସୃଷ୍ଟି ହୋଇଥିଲା ।' ସୁତରାଂ ଯେଉଁ ମାନେ ସୁନା-ରୁପା-ସଂଗ୍ରହ ଲାଳସୀ ସେମାନେ ମୋହିନୀ ରୂପ ଧ୍ୟାନ କରିବା ନିମିତ୍ତ ଶ୍ରୀ ଶଙ୍କରଜୀ ପରାର୍ମଶ କରିବା ଉଚିତ୍ !!!

ପ୍ରଶ୍ନ-୪୬. ଏପରି ସୁନ୍ଦର ମାୟାପତି (ହରି)-ମହାଦେବ (ହର) ଲଢ଼େଇରେ ହାରିଯାଇ ଶ୍ରୀଶଙ୍କର ଭଗବାନ୍ ନିଶ୍ଚୟ ମନ କଷ୍ଟ କରିଥିବେ ?

**ଅଥ-ଅବଗତ ମାହାତ୍ମ୍ୟ ଆତ୍ମନୋ ଜଗତ୍ ଆତ୍ମନଃ ।**
**ଅପରିଜ୍ଞେୟ ବୀର୍ଯ୍ୟସ୍ୟ ନ ମେନେ ତତ୍ଉହ ଅଦ୍ଭୁତମ୍ ॥୩୬॥**

ଉ. ନା ନା ସେ କଥା ନୁହେଁ । ବରଂ ସେ ମହାଆନନ୍ଦ ସାଗରରେ ବୁଡ଼ି ଆତ୍ମହରା ହେଲେ । ଭଗବାନ ବିଷ୍ଣୁଙ୍କ ଦ୍ୱାରା ପରାଜିତ ହୋଇ ମଧ୍ୟ ନିଜକୁ ଗୌରବାନ୍ୱିତ ଧନ୍ୟ ମନେ କଲେ । ସେ ଗର୍ବରେ ଫାଟି ପଡ଼ିଲେ । କହି ବୁଲିଲେ, 'ମୋ ପ୍ରଭୁ କେତେ ଶକ୍ତିଶାଳୀ କେତେ ମହାନ୍ ଦେଖ ଭାଇ ! ମୁଁ ଏତେ ଦିନକେ ତାଙ୍କ ମାୟାକୁ ପରୀକ୍ଷା କରି ଜାଣି ପାରିଲି ଏ କଥା ।'

ଭଗବାନ ବିଷ୍ଣୁ ବର୍ତ୍ତମାନ ମୋହିନୀ ରୂପ ସମ୍ବରଣ କରି ସ୍ୱ ରୂପରେ ଅବସ୍ଥାନ କଲେ । କହିଲେ, 'ହେ' ଦେବଶ୍ରେଷ୍ଠ ! ମୁଁ ଏବେ ମୋ ମାୟା ଶକ୍ତି ହଟାଇ ନେଉଛି । ଆପଣ ପୁଣି ଆପଣଙ୍କ ଶିବତତ୍ତ୍ୱରେ ପ୍ରତିଷ୍ଠିତ ହୁଅନ୍ତୁ । ଆପଣଙ୍କର କଲ୍ୟାଣ ହେଉ । ଆପଣଙ୍କ ହଳାହଳ ବିଷର ଜ୍ୱାଳା ଶାନ୍ତ ହେଉ ମୋ କୃପାଦୃଷ୍ଟିରୁ । ସଂସାର ବାସୀ ଏଣିକି ସତର୍କ ହେବେ ନିଶ୍ଚୟ । ନାରୀ ରୂପ ଯୌବନ ଧ୍ୟାନ କେତେ ବିପଦ୍ ଜନକ ସେମାନେ ଅନୁମାନ କରିପାରିବେ । ଆପଣଙ୍କ ବ୍ୟତୀତ ମୋର ମୋହିନୀ ମାୟାରେ ଥରେ ପଡ଼ି ସେଥିରୁ ଖସିବାର ଉପାୟ କିଏ ଅବା କରିପାରିବ ? ଯାଆନ୍ତୁ ଏଥର ପିଲାମାନଙ୍କୁ ନେଇ କୈଳାସ ।'

ପ୍ରଶ୍ନ-୪୭. ଶଙ୍କରଜୀ ଭଗବାନଙ୍କ ଆଦେଶ ପାଳନ କଲେ । କୈଳାସରେ ମା' ଭଗବତୀ ଉମାଙ୍କୁ ସମ୍ବୋଧନ କରି ଏ ମୋହିନୀ ରୂପ ଧ୍ୟାନର କି ଉପକାର - ଅପକାର ବିଷୟରେ ଶିକ୍ଷା ଦେଲେ ?

**ଅୟି ବ୍ୟପଶ୍ୟଃ ତ୍ୱଂ  ଅଜସ୍ୟ ମାୟାଂ**
**ପରସ୍ୟ ପୁଂସଃ ପରଦେବତାୟାଃ ।**
**ଅହଂ କଳାନାଂ ଋଷଭୋଽପି ମୁହ୍ୟେ**
**ଯୟା-ଅବଶୋଽନ୍ୟେ  କିଂ ଉତ-ଅସ୍ୱତନ୍ତ୍ରାଃ ॥୪୩॥**

ଉ. ଭଗବାନ ଶଙ୍କରଜୀ ଉମାଙ୍କୁ ଉପଦେଶ ଦେବା ଛଳରେ ସଂସାରକୁ ଜଣାଇ କହିଲେ, 'ହେ' ଦେଖିଲ ତ ପ୍ରିୟେ ! ପରମ ପୁରୁଷ ବିଷ୍ଣୁ ଭଗବାନ (ଅଜ)ଙ୍କ ମାୟା କେତେ ଶକ୍ତିଶାଳୀ । ମୁଁ ତ୍ରିଗୁଣାତୀତ ଆତ୍ମ ତତ୍ତ୍ୱବିତ୍ ମହାଜ୍ଞାନୀ, ସକଳ ଦେବୀ ଦେବତାଙ୍କ ପୂଜ୍ୟ, ମହା ବିଦ୍ୱାନ୍ ହୋଇ ମଧ୍ୟ ତାଙ୍କ ମୋହିନୀ ମାୟା ଜାଲରେ ଫସି ଗଲି । ସେଥିରୁ ତୁମେ ଅନୁମାନ କରିପାର ସତ୍ତ୍ୱଗୁଣୀ ଦେବତା, ଋଷିଗଣ, ରଜୋଗୁଣୀ ମନୁଷ୍ୟ, ତପସ୍ୱୀ ଓ ତମୋଗୁଣୀ ଦୈତ୍ୟ ଦାନବ ଅସୁର ଗଣ ଜ୍ଞାନ ଦ୍ୱାରା, ତପସ୍ୟା ଦ୍ୱାରା, ସ୍ୱସାଧନା ଦ୍ୱାରା ବିଷ୍ଣୁମାୟା ଜୟ କରିବା କେତେ କଷ୍ଟକର!!!

ଏବେ ଜାଣିଲ ତ ପାର୍ବତୀ! ମୁଁ କାହିଁ ଘରଦ୍ୱାର ନ କରି ମଶାଣିରେ ରହୁଛି । ବାସନ କୁଶନରେ ନ ଖାଇ ନର କପାଳରେ ଖାଉଛି । ସ୍ନୋ ପାଉଡ଼ର ସାବୁନ ନ ଲଗାଇ ମଶାଣି ପାଉଁଶ ଦେହରେ ବୋଳି ହେଉଛି । ଯେ ଯାହା ମାଗିଲେ ନିଜ ଆବଶ୍ୟକତା ବିଚାର ନକରି ଦେଇ ପକାଉଛି । ସାରା ଜୀବନ ଶରୀର ସଂସାର ଯତ୍ନ କରିବା କଥା ଭୁଲି ହରିଭଜନର ଯତ୍ନ କରୁଛି !!!'

ସଂସାରରୁ ଲବ୍‌ଧ ଭୌତିକ ସୁଖ-ଦୁଃଖ ଉଭୟରୁ ଉପରକୁ ଉଠିବାର ଏକ ମାତ୍ର ମାର୍ଗ ନିରନ୍ତର ହରିସ୍ମରଣ, ହରି ନାମ ଜପ ଓ ହରିଙ୍କୁ ପ୍ରସନ୍ନ କରିବାକୁ କରାଯାଉଥିବା କର୍ମ ଓ ହରିଙ୍କୁ ଜାଣିବା ଜ୍ଞାନ ।

# ଅଥ ୧୩ଶ ଅଧ୍ୟାୟଃ
## (ଆଗାମୀ ସପ୍ତ ମନ୍ୱନ୍ତରର ବର୍ଣ୍ଣନ)
### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୪୮.ଏ ପର୍ଯ୍ୟନ୍ତ ସ୍ୱାୟମ୍ଭୁବ, ସ୍ୱାରୋଚିଷ ,ଉତ୍ତମ, ତାମସ, ଚାକ୍ଷୁଷ ଓ ରୈବତ ଏହି ଛଅ ମନ୍ୱନ୍ତର କଥା କେଉଁଠି ସଂକ୍ଷେପରେ କେଉଁଠି ସବିସ୍ତୃତ ବର୍ଣ୍ଣନ କରାଯାଇସାରିଛି । ଚଳିତ ସପ୍ତମ ମନ୍ୱନ୍ତରର ବିସ୍ତୃତ ବର୍ଣ୍ଣନା କରିବାକୁ ଯାଇ ବକ୍ତା ମହାଶୟ ଶ୍ରୀ ଶୁକଦେବ ଗୋସ୍ୱାମୀ କ'ଣ କହିଲେ ?

**ମନୁଃ ବିବସ୍ୱତଃ ପୁତ୍ରଃ ଶ୍ରାଦ୍ଧଦେବ ଇତି ଶ୍ରୁତଃ ।**
**ସପ୍ତମୋ ବର୍ତ୍ତମାନୋ ଯଃ ତତ୍ ଅପତ୍ୟାନି ମେ ଶୃଣୁ ॥୧॥**

ଉ. କହିଲେ, 'ହେ' ରାଜା ପରୀକ୍ଷିତ ! ବର୍ତ୍ତମାନ ସପ୍ତମ ମନ୍ୱନ୍ତର ବା ବୈବସ୍ୱତ ମନ୍ୱନ୍ତର ଭୋଗ ହେଉଛି । ବିବସ୍ୱାନ କହିଲେ ସୂର୍ଯ୍ୟଦେବଙ୍କୁ ବୁଝାଏ । ବିବସ୍ୱାନଙ୍କ ପୁତ୍ର ବୈବସ୍ୱତ ମନୁଙ୍କ ପିତୃଦତ୍ତ ନାମ ଶ୍ରାଦ୍ଧଦେବ । ତାଙ୍କର ଦଶ ପୁତ୍ରଙ୍କ ନାମ ଇକ୍ଷାକୁ ନଭଗ, ଧୃଷ୍ଟ, ଶର୍ଯ୍ୟାତି ଏବଂ ନରିଷ୍ୟନ୍ତ ଆଦି ।

ଏ ମନ୍ୱନ୍ତରର ଦେବତା ମାନେ ହେଲେ-ଦ୍ୱାଦଶ ଅଦିତିପୁତ୍ର ଆଦିତ୍ୟ, ଅଷ୍ଟ ବସୁ, ଏକାଦଶ ରୁଦ୍ର ବିଶ୍ୱଦେବଗଣ ଓ ଅଣଚାଶ ମରୁଦ୍‌ଗଣଙ୍କ ସହିତ ସେମାନଙ୍କ ରାଜା ପୁରନ୍ଦର (ଇନ୍ଦ୍ର) ନାମରେ ଜଣାଶୁଣା ।

ସପ୍ତଋଷି ହେଲେ-କଶ୍ୟପ, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର, ଗୌତମ, ଜମଦଗ୍ନି ଓ ଭରଦ୍ୱାଜ । ମନ୍ୱନ୍ତର ଅବତାର ହେଉଛନ୍ତି ଅଦିତି-କଶ୍ୟପଙ୍କ ଶେଷ ସନ୍ତାନ ଭଗବାନ ବାମନ ଦେବ । ଦେବଶିଳ୍ପୀ ବିଶ୍ୱକର୍ମାଙ୍କର ଦୁଇ କନ୍ୟା ସଂଜ୍ଞା ଓ ଛାୟା ସୂର୍ଯ୍ୟ ଦେବଙ୍କର ପତ୍ନୀ ହୋଇଥିଲେ । ତାଙ୍କର ତୃତୀୟ ପତ୍ନୀଙ୍କ ନାମ ବଡ଼ବା । ସଂଜ୍ଞାଙ୍କ ଗର୍ଭରୁ ଯମ, ଯମୁନା ଓ ଶ୍ରାଦ୍ଧଦେବ ତିନି ସନ୍ତାନ ଜାତ ହୋଇଥିଲେ । ଏହି ଶ୍ରାଦ୍ଧଦେବ ହିଁ ଆମର ବୈବସ୍ୱତ ମନୁ ଅଟନ୍ତି । ସୂର୍ଯ୍ୟ-ଛାୟାଙ୍କ ସନ୍ତାନ ସାବର୍ଣ୍ଣି -ଶନି-ତପତୀ ଅଟନ୍ତି । ସୂର୍ଯ୍ୟ-ବଡ଼ବାଙ୍କର ସନ୍ତାନଙ୍କ ନାମ ଅଶ୍ୱିନୀ କୁମାର ଦୁଇ ଭାଇ ।'

ପ୍ରଶ୍ନ-୪୯. ଷଷ୍ଠ ମନ୍ୱନ୍ତରରେ ବଳିରାଜାଙ୍କ ଶହେ ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ ହୋଇଥିଲା । ସେ ଇନ୍ଦ୍ର ଆସନର ଦାବୀ ଦାର । ସେ କେବେ କେଉଁ ମନ୍ୱନ୍ତରରେ ଇନ୍ଦ୍ର ଆସନ ଅଳଂକୃତ କରିବେ ?

**ତତ୍ର ଦେବାଃ ସୁତପସୋ ବିରଜା ଅମୃତ ପ୍ରଭାଃ ।**
**ତେଷାଂ ବିରୋଚନ ସୁତୋ ବଳିଃ ଇନ୍ଦ୍ରୋ ଭବିଷ୍ୟତି ॥୧୨॥**

ଉ. ଏହି ସପ୍ତମ ମନ୍ୱନ୍ତର ଶେଷରେ ଅଷ୍ଟମ ମନ୍ୱନ୍ତର ଆରମ୍ଭ ହେବ । ସୂର୍ଯ୍ୟ-ଛାୟାଙ୍କର ସନ୍ତାନ ସାବର୍ଣ୍ଣି ମନ୍ୱନ୍ତର ଅଧିପତି ହେବେ । ସୁତପା, ବିରଜା, ଅମୃତ ପ୍ରଭା ଆଦି ଦେବତା ହେବେ । ସେତିକି ବେଳେ ବିରୋଚନଙ୍କ ପୁତ୍ର ବଳି ଇନ୍ଦ୍ର ଆସନ ଅଧିକାର କରିବେ । ଯଦିଚ ସେ ଏବେ ସୁତଳ ଲୋକରେ ଭଗବାନଙ୍କ ଆଦେଶରେ ଇନ୍ଦ୍ର-ପଦବୀଠାରୁ ଅଧିକ ସୁଖରେ ଅଛନ୍ତି । ଗାଲବ, ଦିପ୍ତିମାନ, ପର୍ଶୁରାମ, ଅଶ୍ୱତ୍‌ଥାମା, କୃପାଚାର୍ଯ୍ୟ, ଋଷ୍ୟଶୃଙ୍ଗ ଓ ବ୍ୟାସ- ଏଇ ସାତଜଣ ସପ୍ତର୍ଷି ଭାବରେ ପ୍ରତିଷ୍ଠିତ ହେବେ ।

ପ୍ରଶ୍ନ-୫୦. ନବମ ମନ୍ୱନ୍ତରକୁ ଦକ୍ଷସାବର୍ଣ୍ଣି ମନ୍ୱନ୍ତର କୁହାଯାଏ । ସେହି ସାବର୍ଣ୍ଣି ମନୁ କାହାର ପୁତ୍ର ଓ କିଏ ତାଙ୍କର ପୁତ୍ର ?

**ନବମୋ ଦକ୍ଷ ସାବର୍ଣ୍ଣିଃ ମନୁଃ ବରୁଣ ସମ୍ଭବଃ ।**
**ଭୂତକେତୁଃ ଦୀପ୍ତ କେତୁଃ ଇତି-ଆଦ୍ୟାଃ ତତ୍ ସୁତା ନୃପ ॥୧୮॥**

ଉ. ଶୁକଦେବ କହିଲେ,‘ହେ, ରାଜା ପରୀକ୍ଷିତ ! ସେ ବରୁଣଙ୍କ ସୁପୁତ୍ର । ତାଙ୍କର ଦୁଇ ପୁତ୍ରଙ୍କ ନାମ ଭୂତ କେତୁ ଓ ଦୀପ୍ତ କେତୁ । ଦଶମ ମନୁ ହେବେ ବ୍ରହ୍ମସାବର୍ଣ୍ଣି । ମନୁପୁତ୍ର ହେବେ ଭୂରିଷେଣ । ସପ୍ତର୍ଷି ହେବେ-ହବିଷ୍ମାନ୍, ସୁକୃତ, ସତ୍ୟ, ଜୟ ଓ ମୂର୍ତ୍ତି ଇତ୍ୟାଦି । ଏକାଦଶ ମନୁ ଧର୍ମ ସାବର୍ଣ୍ଣି, ଦ୍ୱାଦଶ ମନୁ ରୁଦ୍ର ସାବର୍ଣ୍ଣି ଓ ତ୍ରୟୋଦଶ ମନୁ ଦେବ ସାବର୍ଣ୍ଣି ହେବେ ।’

ପ୍ରଶ୍ନ-୫୧. ଏ ପାଦ୍ମ କଳ୍ପର ଶେଷ ମନୁ କିଏ ହେବେ ?

**ମନୁଃ ବା ଇନ୍ଦ୍ର ସାବର୍ଣ୍ଣିଃ ଚତୁର୍ଦ୍ଦଶମ ଏଷ୍ୟତି ।**
**ଉରୁ ଗମ୍ଭୀର ବୁଦ୍ଧି-ଆଦ୍ୟାଃ ଇନ୍ଦ୍ର ସାବର୍ଣ୍ଣି ବୀର୍ଯ୍ୟଜାଃ ॥୩୩॥**

ଉ. ଇନ୍ଦ୍ର ସାବର୍ଣ୍ଣି ହେବେ ଚତୁର୍ଦ୍ଦଶ ମନୁ । ତାଙ୍କର ତିନି ପୁତ୍ରଙ୍କର ନାମ ଉରୁ,ଗମ୍ଭୀର ଓ ବୁଧ । ଇନ୍ଦ୍ର ହେବେ ଶୁଚି । ଦେବତା ହେବେ-ଅଗ୍ନି,ବାହୁ ଓ ଶୁଚି ଆଦି । ମନ୍ୱନ୍ତର ଅବତାରଙ୍କ ନାମ ବୃହଭାନୁ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପ୍ରଶ୍ନ-୫୨. ଅତୀତର ଛଅ ମନୁ, ବର୍ତ୍ତମାନର ମନୁଙ୍କ-ସହିତ ଭବିଷ୍ୟରେ ସାତ ମନୁ ମିଶି ଚଉଦ ମନ୍ୱନ୍ତର ଓ କଳ୍ପର କାଳ ମାନ (ପରିମାଣ) କେତେ ?

**ରାଜନ୍ ଚତୁର୍ଦ୍ଦଶ -ଏତାନି ତ୍ରିକାଳ-ଅନୁଗତାନି ତେ ।**
**ପ୍ରୋକ୍ତାନି-ଏଭିଃ ମିତଃ କଳ୍ପୋ ଯୁଗ ସାହସ୍ର ପର୍ଯ୍ୟୟଃ ।।୩୬।।**

ଉ. ଏହି କାଳ ମଧ୍ୟରେ(ସତ୍ୟ -ତ୍ରେତା-ଦ୍ୱାପର-କଳି) ଏକସ୍ତରୀ ଚତୁର୍ଯୁଗରେ ମନ୍ୱନ୍ତର ଓ ଏକ ହଜାର ଚତୁର୍ଯୁଗ ବା ମହାଯୁଗ ଭୋଗ ହେବ ଯାହାକୁ ବ୍ରହ୍ମାଙ୍କର ଦିନବାର ଘଣ୍ଟା ବା କଳ୍ପ କୁହାଯାଏ । ଏହା ପରେ ପୁଣି ଏତିକି କାଳ ସୃଷ୍ଟି ପ୍ରଳୟ ଘଟି ଅଦୃଶ୍ୟ ହୋଇ ରହିବ । ଉଭୟ କାଳ ମିଶି ବ୍ରହ୍ମାଜୀଙ୍କ ଅହୋରାତ୍ର ସମୟ ଅଟେ । ଏହିଭଳି ତିରିଶ ଅହୋରାତ୍ର ଭୋଗରେ ଏକ ମାସ ବାରମାସରେ ଏକ ବର୍ଷ ଓ ଏକ ଶହ ଆଠ ବର୍ଷରେ ବ୍ରହ୍ମାଜୀଙ୍କ ଆୟୁଷ ଦ୍ୱିପରାର୍ଦ୍ଧ ଅବସାନ ହେବ । ସେହି ମହାପ୍ରଳୟକୁ ପ୍ରାକୃତିକ ବା ବ୍ରହ୍ମ ପ୍ରଳୟ କୁହାଯାଏ । ଭଗବାନଙ୍କ ଇଚ୍ଛାରେ ପୁଣି ନୂଆ ବ୍ରହ୍ମା ଦାୟିତ୍ୱ ଗ୍ରହଣ କଲାପରେ ନୂଆ ସୃଷ୍ଟି ଆରମ୍ଭ ହେବ । ମହାକାଳ ଚକ୍ର ଘୂରି ଚାଲିବ ଅବାଧ ଗତିରେ ।

## ଅଥ ୧୪ଶ ଅଧ୍ୟାୟଃ

### (ମନ୍ୱନ୍ତର କାଳୀନ ଶାସନ ଓ ଧର୍ମ ରକ୍ଷା ବ୍ୟବସ୍ଥା)

ପ୍ରଶ୍ନ-୫୩. ଜଣେ ରାଜା ତାଙ୍କ ଶାସନ କାଳରେ ମନ୍ତ୍ରୀ ପରିଷଦ ଦ୍ୱାରା ଶାସନ କାର୍ଯ୍ୟ ପରିଚାଳନା କରନ୍ତି । ପାର୍ଲାମେଣ୍ଟାରୀ ଶାସନରେ ପାଞ୍ଚବର୍ଷ ଲାଗି ମନ୍ତ୍ରୀ ପରିଷଦ, ରାଷ୍ଟ୍ରପତି ନ୍ୟାୟପାଳିକା ସଂସ୍ଥାଦ୍ୱାରା ଶାସନ ଚାଲେ । ମନ୍ୱନ୍ତର କାଳୀନ ଏତେ ଦୀର୍ଘ କାଳ ବ୍ୟାପି ଶାସନ ବ୍ୟବସ୍ଥା କାହା ଦ୍ୱାରା, କିପରି ଓ କାହା ନିର୍ଦ୍ଦେଶରେ ନିୟନ୍ତ୍ରିତ ହୁଏ ?

ଋଷିଃ ଉବାଚ

**ମନବୋ ମନୁପୁତ୍ରଃଚ ମୁନୟଃଚ ମହୀପତେ ।**
**ଇନ୍ଦ୍ରାଃ ସୁରଗଣାଃ ଚ ଏକ ସର୍ବେ ପୁରୁଷ ଶାସନାଃ ॥୨॥**

ଉ. ସ୍ୱୟଂ ଭଗବାନଙ୍କ ଦ୍ୱାରା(ପୁରୁଷ ଶାସନାଃ) ମନୁ, ମନୁପୁତ୍ର, ଇନ୍ଦ୍ର, ଦେବତା ମଣ୍ଡଳୀ, ସପ୍ତର୍ଷି ଓ ମନ୍ୱନ୍ତର ଅବତାର ଏହି ଛଅ ଅଙ୍ଗ ଦ୍ୱାରା ନିଯୁକ୍ତ ହୋଇ ମନ୍ୱନ୍ତର ଧର୍ମ, ଯୁଗ ଧର୍ମ, ବର୍ଣ୍ଣ-ଆଶ୍ରମ ଧର୍ମ ବ୍ୟବସ୍ଥା ଆଦି ସୁପରି କଳ୍ପିତ ପନ୍ଥାରେ ଚାଲି ଆସୁଛି ଆବହମାନ କାଳରୁ ।

ସୃଷ୍ଟିର ସମ୍ବିଧାନ (ବିଧି-ନିୟମ ବ୍ୟବସ୍ଥା) କୁ ବେଦ କୁହାଯାଏ । କେବେ କେବେ ବୈଦିକ ଧର୍ମର ପତନ ହେଲେ ପୁନଃସ୍ଥାପନର ବ୍ୟବସ୍ଥା କରିଥାନ୍ତି ସେହି ଭଗବାନ ନାରାୟଣ । ଧର୍ମକୁ ଗୁଳାରେ ଚଳାଇବାକୁ ତାଙ୍କର ଅବତାର ଦରକାର ପଡେ ।

ପ୍ରଶ୍ନ-୫୪. ଧର୍ମ ବ୍ୟବସ୍ଥାର ସ୍ଥାପନ, ପ୍ରଚାର ପ୍ରସାର ଆଦି ସ୍ୱୟଂ ଭଗବାନ କରନ୍ତି ନା କାହାଦ୍ୱାରା କରାଇଥାନ୍ତି ?

**ତତୋ ଧର୍ମଂ ଚତୁଷ୍ପାଦଂ ମନାବୋ ହରିଣା-ଉଦିତାଃ ।**
**ଯୁକ୍ତାଃ ସଂଚାରୟନ୍ତି-ଅଦ୍ଧା ସ୍ୱେସ୍ୱେ କାଳେ ମହୀଂ ନୃପ ॥୫॥**

ଉ. ଏକ ଚତୁର୍ଯୁଗରେ ଧର୍ମଙ୍କର ଚାରି ଚରଣ ଥାଏ-ତପ, ଶୌଚ,ଦୟା ଓ ସତ୍ୟ । କ୍ରମଶଃ ଗୋଟିଏ ଗୋଟିଏ ଯୁଗ ଶେଷରେ ଗୋଟିଏ ଗୋଟିଏ ଚରଣ କ୍ଷୟ ହୋଇ କଳିଯୁଗରେ କେବଳ ସତ୍ୟ ଚରଣରେ ଧର୍ମ ରହିଥାନ୍ତି । ପୁଣି ସତ୍ୟଯୁଗ ଆଗମନରେ ଚାରି ଚରଣରେ ପ୍ରତିଷ୍ଠିତ ହୁଅନ୍ତି ।

ଶ୍ରୀମଦ୍‌ଭଗବତଗୀତା ଅନୁସାରେ ସେ ପ୍ରଥମେ ସ୍ୱଧର୍ମ ଶିକ୍ଷା ଦିଅନ୍ତି ବିବସ୍ୱାନ (ସୁର୍ଯ୍ୟଙ୍କୁ), ବିବସ୍ୱାନ ଦିଅନ୍ତି ବୈବସ୍ୱତ ମନୁଙ୍କୁ, ତାପରେ ମନୁଙ୍କ ଠାରୁ ଧର୍ମ ଜାଣନ୍ତି ଇକ୍ଷ୍ୱାକୁ । ଶେଷରେ ରାଜର୍ଷିମାନେ ଏ ଧର୍ମ ରହସ୍ୟ ଜାଣି ପାରି ଅନ୍ୟମାନଙ୍କୁ ଶିକ୍ଷା ଦିଅନ୍ତି ।

ରାଜା-ମହାରାଜା ମାନେ ଶ୍ରୁତି-ସ୍ମୃତିକୁ ଆଧାର କରି ଶାସନ କାର୍ଯ୍ୟ ଚଳାଇଥାନ୍ତି । ଦେବତାମାନଙ୍କୁ ମାନବମାନେ ଯଜ୍ଞ ଦ୍ୱାରା ପ୍ରସନ୍ନ କରନ୍ତି । ଦେବତାମାନେ ଅନ୍ନ, ବସ୍ତ୍ର, ଔଷଧ ଆଦି ଯଜ୍ଞ ସାମଗ୍ରୀ ସେମାନଙ୍କୁ ଯୋଗାଇ ଦେଉଥାନ୍ତି । ଇନ୍ଦ୍ର

ଦରକାର ମୁତାବକ ବର୍ଷା କରାଇ ଅନ୍ନ, ଜଳ, ଆଦି ବ୍ୟବସ୍ଥା ମାନବ ଜାତି ପାଇଁ କରନ୍ତି । ପ୍ରଥମେ କପିଳ ସାଂଖ୍ୟ ଜ୍ଞାନ, ଚତୁଃସନ ଜ୍ଞାନ ଯୋଗ, ଯାଜ୍ଞ ବଲ୍କ୍ୟ ଋଷି କର୍ମ ଯୋଗ ଓ ଦତ୍ତାତ୍ରେୟ ମୁନିଙ୍କ ଦ୍ୱାରା ଯୋଗ ଜ୍ଞାନର ପ୍ରଚାର ପ୍ରସାର ହୁଏ ।

ମରୀଚି ଆଦି ପ୍ରଜାପତିଙ୍କ ଦ୍ୱାରା ମନୁଷ୍ୟ, ଜୀବ, ଜନ୍ତୁଙ୍କ ସଂଖ୍ୟା ବୃଦ୍ଧି ହୋଇ ସୃଷ୍ଟି ବିସ୍ତାର ହୁଏ । କାଳ ପ୍ରବାହରେ ସ୍ୱୟଂ ଭଗବାନ ସଂହାର କାର୍ଯ୍ୟ କରାଇ ଖଣ୍ଡ ପ୍ରଳୟ, ଯୁଗ ପ୍ରଳୟ, ଚତୁର୍ଯୁଗ ପ୍ରଳୟ, ମନ୍ୱନ୍ତର ପ୍ରଳୟ, କଳ୍ପାନ୍ତ ପ୍ରଳୟ ଓ ବ୍ରହ୍ମପ୍ରଳୟ ଆଦି କରୁଥାନ୍ତି ।

ଏହିପରି ସମଗ୍ର ସୃଷ୍ଟିରେ ସତ୍ୱଗୁଣ, ରଜୋଗୁଣ ଓ ତମୋଗୁଣର ବିକାଶ, ବିନାଶ ଦ୍ୱାରା ସୃଷ୍ଟି ସଂଚାଳନ, ପରିମାର୍ଜନ, ସଂହାର ପ୍ରକ୍ରିୟା ଚାଲୁରହେ ସୁନ୍ଦର ବ୍ୟବସ୍ଥିତ ଢ଼ଙ୍ଗରେ । ସୁତରାଂ ସୃଷ୍ଟିକୁ କାଓସ୍ ନ କହି କସ୍‌ମସ୍ କୁହାଯାଏ । ସ୍ୱୟଂ ଭଗବାନ ଅଦୃଶ୍ୟ ଭାବରେ ରହି ଅଦେଖା ହାତରେ ସବୁ ନିୟନ୍ତ୍ରଣ ସଂଚାଳନ କରନ୍ତି । ତେଣୁ ସିନା ମନୁଷ୍ୟ, ଦେବତା ଓ ଦାନବ ଭୋଗ ବିଳାସୀ ହୋଇ ମାୟାରେ ପଡ଼ି ଏ ରହସ୍ୟ ଭେଦ କରି ପାରିବାରେ ଅସମର୍ଥ ହୁଅନ୍ତି । ଭଗବାନଙ୍କର ଏହି ଖେଳ ଅନନ୍ତ କାଳରୁ ଚାଲୁରହିଛି । ଏବେ ଚାଲୁଛି । ଭବିଷ୍ୟତରେ ମଧ୍ୟ ଚାଲିବ ।

# ଅଥ ୧୫ଶ ଅଧ୍ୟାୟଃ

## (ବିଶ୍ୱଜିତ୍ ଯଜ୍ଞ କରି ବଳିରାଜାଙ୍କର ସ୍ୱର୍ଗ ଲୋକ ବିଜୟ)

### ରାଜା ଉବାଚ

ପ୍ରଶ୍ନ-୫୫. ଭଗବାନ ନାରାୟଣ ସକଳ ଐଶ୍ୱର୍ଯ୍ୟର ମାଲିକ ହୋଇ ସେ କାହିଁକି ମର୍ତ୍ତ୍ୟ ଲୋକର ରାଜା ପାଖରେ ହାତପତେଇ ମାଗିବାକୁ ଇଚ୍ଛା କଲେ ?

**ବଳେଃ ପଦତ୍ରୟଂ ଭୂମେଃ କସ୍ମାତ୍ ହରିଃ ଅଯାଚତ ।**
**ଭୂତ୍ୱ-ଈଶ୍ୱରଃ କୃପଣ ବତ୍ ଲବ୍‌ଧ ଅର୍ଥୋଽପି ବବନ୍ଧ ତମ୍ ।।୧।।**

ଉ. ଭଗବାନ ଲୀଳାମୟ ଓ ଇଚ୍ଛାମୟ । ଭକ୍ତକୁ ଆନନ୍ଦ ଦେବାକୁ, ସାଧାରଣ ପ୍ରଜାକୁ ଲୋକ ଶିକ୍ଷା ଦେବା ପାଇଁ ସେ କେତେ ସୁଚିନ୍ତିତ ଢ଼ଙ୍ଗରେ ନାଟକ କରନ୍ତି । ତେଣୁ ବାମନ ହୋଇ ଟିକି ଟିକି ପାଦରେ ତିନି ପାଦ ଭୂମି ମାଗିଲେ ଭିକାରୀ ବେଶରେ । ବଳିରାଜା ଆନନ୍ଦରେ ସବୁଦେଲା ପରେ ମଧ୍ୟ ନିର୍ଦ୍ଦୋଷରେ ବଳିଙ୍କୁ ବରୁଣ ଫାଶରେ ଭଗବାନ ବାନ୍ଧି ପକାଇଲେ । କେଡ଼େ ସୁନ୍ଦର ଅବୋଧ୍ୟ ଲୀଳା ବିଳାସ ଶ୍ରୀହରି ବିଷ୍ଣୁଙ୍କର !!

### ଶ୍ରୀ ଶୁକ ଉବାଚ

ହେ' ରାଜନ୍ ସାବଧାନ ହୋଇ ଶ୍ରବଣ କରନ୍ତୁ । ଦେବାସୁର ସଂଗ୍ରାମରେ ବଳିରାଜା ପରାଜିତ ହେଲେ । ଭୃଗୁ ବଂଶୀ ଶୁକ୍ରାଚାର୍ଯ୍ୟ ତାଙ୍କୁ ମୃତ୍ୟୁ ସଂଜୀବନୀ ମନ୍ତ୍ରରେ ପୁନର୍ଜୀବନ ଦାନ ଦେଲେ । ରାଜା କାୟ ମନୋ, ବାକ୍ୟରେ ଗୁରଦେବଙ୍କ ସେବା କରି ପ୍ରସନ୍ନ କଲେ । ଗୁରୁଦେବଙ୍କ ପରାମର୍ଶରେ ରାଜା ବିଶ୍ୱଜିତ ଯଜ୍ଞ କଲେ । ମନ୍ତ୍ର ପଢ଼ି ଆହୂତି ଦିଅନ୍ତେ ପ୍ରକଟିତ ହେଲା ଦିବ୍ୟ ରଥ, ଇନ୍ଦ୍ରଙ୍କ ଅଶ୍ୱ ସଦୃଶ ଦିବ୍ୟ ଅଶ୍ୱ ସିଂହ ଚହ୍ନିତ ଧ୍ୱଜା, ଦିବ୍ୟ ଧନୁ, ଦିବ୍ୟ କବଚ ଓ ଦିବ୍ୟ ଶରପୂର୍ଣ୍ଣ ତୂଣୀର । ରାଜା ବଳି ଗୁରୁଦେବଙ୍କୁ, ବ୍ରାହ୍ମଣ ମାନଙ୍କୁ ଓ ପରମ ବୈଷ୍ଣବ ପ୍ରହ୍ଲାଦଜୀଙ୍କୁ ସାଦର ନମସ୍କାର କଲେ ।

ଶୁଭ ମୁହୂର୍ତ୍ତରେ ଆରମ୍ଭ କଲେ ରାଜା ସ୍ୱର୍ଗ ବିଜୟ ଅଭିଯାନ । ସଙ୍ଗରେ ଦୁର୍ଦ୍ଧର୍ଷ ଦୈତ୍ୟ ସେନାପତି ଗଣ ଓ ଗୁରୁଦେବଙ୍କ ଆଶୀର୍ବାଦ । ଇନ୍ଦ୍ରପୁରୀ ଆକ୍ରମଣ କଲେ ବଳି । ଦେବରାଜ ଇନ୍ଦ୍ର ନିଜ ଗୁରୁ ବୃହସ୍ପତିଙ୍କ ପରାମର୍ଶ ଲୋଡ଼ିଲେ । ଦେବ ଗୁରୁ ବୃହସ୍ପତି ସବୁ ଶୁଣି ନିରାଶ ବାଣୀ ଶୁଣାଇଲେ ଇନ୍ଦ୍ରଙ୍କୁ । ସୁଚିନ୍ତିତ ପରାମର୍ଶ ଦେଇ କହିଲେ, 'ଦେବରାଜ! ଏବେ ବଳି ଗୁରୁସେବା କରି ଅଧ୍ୟାତ୍ମ ଶକ୍ତିରେ ଅତ୍ୟନ୍ତ ବଳବାନ । ତୁମେ ତାଙ୍କୁ ସ୍ୱର୍ଗରାଜ୍ୟ ଛାଡ଼ି ଦେଇ ପଳାୟନ କର । ଭାଗ୍ୟ ଦେବୀ ଅନୁକୂଳ ହେବା ପର୍ଯ୍ୟନ୍ତ ତୁମେ ପ୍ରତୀକ୍ଷା କର ।'

ବଳି ବ୍ରାହ୍ମଣ ଓ ବୈଷ୍ଣବଙ୍କ ସେବା କରି ବଳବାନ ହୋଇଛନ୍ତି । ଅଳ୍ପ ଦିନ ପରେ ସେ ବ୍ରାହ୍ମଣ ଅପମାନ କରି ଦୁର୍ବଳ ହୋଇଯିବେ । ଗୁରୁଦେବଙ୍କ କଥା ମାନି ସକଳ ଦେବତା ଇଚ୍ଛାନୁରୂପ ଦେହ ଧରି ସ୍ୱର୍ଗ ଛାଡ଼ି ପଳାଇଲେ । ବଣ ଜଙ୍ଗଲରେ ଲୁଚି ରହିଲେ ଇନ୍ଦ୍ରଙ୍କ ପରବର୍ତ୍ତୀ ନିର୍ଦ୍ଦେଶ ପର୍ଯ୍ୟନ୍ତ ।

ପ୍ରଶ୍ନ-୫୬. ଇନ୍ଦ୍ରାଦି ଦେବତାମାନେ ସ୍ୱର୍ଗ ଛାଡ଼ି ପଳାନ୍ତେ (ନିଲୀନେଷୁ) ରାଜା ବିରୋଚନପୁତ୍ର ବଳି କ'ଣ କଲେ ?

**ଦେବେଷୁ-ଅଥ ନିଲୀନେଷୁ ବଳିଃ ବୈରାଚନଃ ପୁରୀମ୍ ।**
**ଦେବଧାନୀଂ ଅଧିଷ୍ଠାୟ ବଶଂ ନିନ୍ୟେ ଜଗତ୍ ତ୍ରୟମ୍ ।।୩୩।।**

ଉ. ଦୈତ୍ୟ ରାଜା ବଳି ସ୍ୱର୍ଗ ରାଜ୍ୟ ସଂପୂର୍ଣ୍ଣ ଦଖଲ କରି ଇନ୍ଦ୍ରାସନରେ ଅଧିଷ୍ଠିତ ହେଲେ ଓ ଭୂଃ, ଭୁବଃ ସ୍ୱଃ ଲୋକର ଅଧୀଶ୍ୱର ହେଲେ ।

ପ୍ରଶ୍ନ-୫୭. ସଙ୍ଗେ ସଙ୍ଗେ ବଳିଙ୍କର ଇନ୍ଦ୍ରପଦକୁ ସ୍ଥାୟୀ କରିବାକୁ ଶତ ଅଶ୍ୱମେଧ ଯଜ୍ଞ କାର୍ଯ୍ୟରେ ଦୈତ୍ୟ ଗୁରୁ ଶୁକ୍ରାଚାର୍ଯ୍ୟ ଲଗାଇଦେଲେ । ବଳିରାଜା ବଳପୂର୍ବକ ସ୍ୱର୍ଗ ସିଂହାସନ ଅଧିକାର କରିଥିବାରୁ ତ୍ରିଲୋକରେ ତାଙ୍କୁ ସମସ୍ତେ ନିନ୍ଦା କରିଥିଲେ କି ?

**ତତଃ ତତ୍ ଅନୁଭାବେନ ଭୁବନ ତ୍ରୟ ବିଶ୍ରୁତାମ୍ ।**
**କିର୍ତ୍ତିଂ ଦିକ୍ଷୁ ବିତନ୍ୱାନଃ ସ ରେଜ ଉଡୁରାଟ୍ ଇବ ।।୩୫।।**

ଉ. ନା,ନା ବଳି ଶତ ଅଶ୍ୱମେଧ ଯଜ୍ଞ ଆରମ୍ଭ କରନ୍ତେ ତ୍ରିଲୋକରେ ଦଶ ଦିଗରେ ତାଙ୍କ ଯଶ କୀର୍ତ୍ତିତ ହେବାକୁ ଲାଗିଲା । ଦେବ, ଦାନବ, ମାନବ ସମସ୍ତେ ମିଶି ତାଙ୍କୁ ପ୍ରଶଂସା, ଫୁଲମାଳ ଆଦିରେ ସମ୍ବର୍ଦ୍ଧିତ କରିବାରେ ଲାଗିଲେ । ତାରାଗଣ ମଧ୍ୟରେ ଚନ୍ଦ୍ରଦେବଙ୍କ (ଉଡୁରାଟ୍ )ଭଳି ଅତ୍ୟନ୍ତ ଶକ୍ତିଶାଳୀ ହୋଇ ଦାନବ ମାନଙ୍କ ମଧ୍ୟରେ ସେ ଶୋଭା ପାଉଥିଲେ । ସେ ତିନି ଲୋକର ଅଖଣ୍ଡ ଅମାପ ଐଶ୍ୱର୍ଯ୍ୟ ଭୋଗ କରିବାରେ ଲାଗିଲେ ।

# ୨୨.ତପ ପ୍ରକରଣ ସାର - ସମୁଦ୍ର ମନ୍ଥନ

## (ତପସ୍ୟାର ଅହଂକାର ତ୍ୟାଗ)

### ଅଧ୍ୟାୟ ୫ମ-୧୫ଶ

ପୂର୍ବ ପ୍ରକରଣରେ କାମରେ ସଂଯମ ଆଣିବା ଉପାୟ ଈଶ୍ୱରୀୟ ଶରଣାଗତି ବୋଲି ବର୍ଣ୍ଣନା କରାଯାଇଛି । ସଂସାରୀ କାମନା ପୂରଣ ନ ହେଲେ ଜୀବର କ୍ରୋଧ ଉତ୍ପନ୍ନ ହୁଏ । ଏହା ମାୟା ମହାରାଣୀଙ୍କ ଦ୍ୱିତୀୟ ସେନାପତି କ୍ରୋଧକୁ ଜୟ ନ କରି ପାରିବାର କାରଣ ଈଶ୍ୱର୍ ବିମୁଖତା । ଈଶ୍ୱର ଶରଣାଗତ ନ ହୋଇ ସମୁଦ୍ର ମନ୍ଥନ ଲୀଳା ଭଳି ଯେତେ ସାଧନ କର୍ମ କଲେ ମଧ ତାହା ସତ୍‌କର୍ମରେ ଗଣା ଯାଏନା । ସେଥିପାଇଁ ସମୁଦ୍ର ମନ୍ଥନ କରି ଦେବତାମାନେ ଅମୃତପ୍ରାପ୍ତ ହେବା ବେଳେ ଦୈତ୍ୟମାନେ ସେଥିରୁ ବଞ୍ଚିତ ହୋଇଛନ୍ତି । ବାରୁଣୀ ପାନ କରି ପୁଣି ବାଟବଣା ହୋଇଛନ୍ତି ।

ମଣିଷ ପାଇଁ ଭୋଗ ସଂଗ୍ରହ କାମନା ଭରା ମାନସିକ ସଂସାର ହିଁ ଏଠାରେ ବର୍ଣ୍ଣିତ ସମୁଦ୍ର । ସମୁଦ୍ର ଈଶ୍ୱରଙ୍କ ସୃଷ୍ଟି ସୁତରାଂ ସତ୍ୟ କିନ୍ତୁ ଈଶ୍ୱର ଶରଣାଗତି ବିନା ଭକ୍ତି ରସ ରୂପକ ଅମୃତ ପାନ କରିବା ଆଶା ହିଁ ମିଥ୍ୟା । ଆମର ସୁ ଓ କୁ ପ୍ରକୃତି ଏଠାରେ ବର୍ଣ୍ଣିତ ଦେବତା ଓ ଦୈତ୍ୟ ରୂପରେ । ସ୍ୱଧର୍ମ ପାଳନ ବା ଧର୍ମମୟ ଜୀବନ ଯାପନ ହିଁ ଏହି ସମୁଦ୍ର ମନ୍ଥନ କ୍ରିୟା । ମନ ହେଉଛି ମନ୍ଦର ଅଚଳ (ସ୍ଥିର ପର୍ବତ) । ଯାହାକୁ ସ୍ଥିର ରଖିବାକୁ ଭଗବାନଙ୍କୁ କଚ୍ଛପ ରୂପ ଧରିବା ଦରକାର ପଡ଼େ । ଅନ୍ୟ ନାମ ଈଶ୍ୱର ବିଶ୍ୱାସ । ପ୍ରେମ ଡୋର ହେଉଛି ବାସୁକୀ ନାଗ । ସମୁଦ୍ରକୁ ଫିଙ୍ଗିବା ବନସ୍ପତି, ପତ୍ର ଇତ୍ୟାଦି ଦେହକୁ ପୋଷଣ କରୁଥିବା ଅନ୍ନ, ଜଳ ଆଦି ଭୋଜନ ସାମଗ୍ରୀ, ସାଧନାର ପ୍ରଥମ ଅବସ୍ଥାରେ ଆମକୁ ମିଳୁଥିବା ନିନ୍ଦା ଅପମାନ ହେଉଛି ମନ୍ଥନରୁ ବାହାରିଥିବା ବିଷ । ଜୀବନ ମନ୍ଥନରେ ପ୍ରଥମେ ବିଷ ଓ ଶେଷରେ ଅମୃତ ମିଳେ । ଶିବଙ୍କ ଭଳି ତ୍ୟାଗୀ ବୈରାଗୀ ଲୋକ ଏ ବିଷ ମଧ ହଜମ କରିପାରନ୍ତି । ଅନ୍ୟ ସାଧକମାନେ ଡରନ୍ତି । ବିଷକୁ ଖାଲି ଅସୁରମାନେ ଡରିଲେନି ବରଂ ବେଶୀ ଡରିଲେ ଦେବତାମାନେ ।

ଶିବଙ୍କ ଭଳି ଆଧ୍ୟାତ୍ମମାର୍ଗ ସାଧକ ନିନ୍ଦା ଅପମାନ ରୂପକ ବିଷକୁ ନା ଗର୍ଭସ୍ଥ କରିବା ଉଚିତ୍ ନା ବାହାରକୁ ଫିଙ୍ଗିବା ଉଚିତ୍ । କଣ୍ଠରେ ରଖିଦେଲେ ସାଧକର ସୌନ୍ଦର୍ଯ୍ୟ ବଢାଏ ସେ ବିଷ । ଅମୃତ ପିଇବା ସାଧକମାନେ ଦେବତା ବୋଲାଇବା ବେଳେ ଶିବାଜୀ ମହାଦେବ ଉପାଧି ସହିତ ନୀଳକଣ୍ଠ ଉପାଧି ପାଇଲେ । ବାରୁଣୀ ପିଇବା ଲୋକ ଅସୁର, ଅମୃତ ପିଇବା ଲୋକ ଦେବ ବୋଲାଇଲେ । ବିଷ ପିଇ ଜଗତ କଲ୍ୟାଣ କରନ୍ତେ ଶିବ ମହାଦେବ ବୋଲାଇଲେ । ସେହି ହଳାହଳ ବିଷର ଜ୍ୱାଳା ଆଜି ତାଙ୍କୁ ଅହରହ ରାମ ନାମ କରାଇ ପାରୁଛି । ସୃଷ୍ଟି ଶେଷ ପର୍ଯ୍ୟନ୍ତ କରାଉଥିବ ମଧ୍ୟ । ଏହି ହରି ନାମ ଜପରେ ସେ ଏତେ ହରି ତନ୍ମୟ ହୋଇଛନ୍ତି ଯେ ଦେବତା ହେବାକୁ ଅମୃତ ନ ପିଇ ମଧ୍ୟ ଜ୍ଞାନ ଭକ୍ତିର ଦିବ୍ୟ ନାମ ଅମୃତ ପାନର ମାଦକତାକୁ ଆଜି ମଧ୍ୟ ସଂସାରକୁ ଜଣାଉଛନ୍ତି ।

ସମୁଦ୍ର ମନ୍ଥନରୁ ଚଉଦ ରତ୍ନ ମିଳିଲା । କାମଧେନୁ ଗାଈ ସନ୍ତୋଷର ପ୍ରତୀକ । ଋଷିମାନେ ନେଲେ । ଉଚ୍ଚୈଶ୍ରବା ଅଶ୍ୱ କୀର୍ତ୍ତୀ ଯଶର ପ୍ରତୀକ । ଅସୁରମାନେ ଯଶ ପ୍ରଶଂସାର ଅଧିକ ଲୋଭୀ ତେଣୁ ହାତେଇ ନେଲେ । ଐରାବତ ହସ୍ତୀ ସୂକ୍ଷ୍ମ ଦୃଷ୍ଟି । ଦେବତାମାନେ ପ୍ରାପ୍ତ ହେଲେ । ଚନ୍ଦ୍ର, ପାରିଜାତ ଓ ଅପସରା ଦୈବୀଗୁଣଯୁକ୍ତ ସାଧକମାନଙ୍କର ପ୍ରାପ୍ୟ । ସୁତରାଂ ଦେବତାମାନେ ପାଇଲେ । ଅଷ୍ଟମ ରତ୍ନରୂପେ ଅଷ୍ଟ ଐଶ୍ୱର୍ଯ୍ୟ ଯୁକ୍ତ ଲକ୍ଷ୍ମୀ ଉଦ୍ଭବ ହେଲେ । ଲକ୍ଷ୍ମୀ ସ୍ୱୟଂ ଭକ୍ତି । ସେ ନମ୍ରତା, ଦୀନତା, ସଦା ସନ୍ତୁଷ୍ଟ ମନ୍ଦଗୁଣ ରହିତ ସିଂହାସନ ଖୋଜନ୍ତି । ତେଣୁ ନାରାୟଣ ପ୍ରାପ୍ତ ହେଲେ ଲକ୍ଷ୍ମୀଙ୍କୁ । ପରେ ପରେ ମନ୍ଥନରୁ ବାରୁଣୀ ମଦ୍ୟ ମିଳିଲା । ଦୈତ୍ୟମାନେ ପାନ କରି ମସ୍ତ ହେଲେ । ଜଣେ ସ୍ତ୍ରୀକୁ କାମ ଭାବରେ ଦେଖିବା ଲୋକ ହିଁ ଦୈତ୍ୟ ।

ଶେଷରେ ଅମୃତ କଳସ ଧରି ସ୍ୱୟଂ ଭଗବାନ ଧନ୍ୱନ୍ତରୀ ଅବତାର ରୂପରେ ପ୍ରକଟ ହେଲେ । ଦୈତ୍ୟମାନେ ବଳାତ୍କାରରେ ଅମୃତ କଳସ ଛଡ଼ାଇ ନେବାକୁ ଦୌଡ଼ିଲେ । ଦେବତା ଓ ଅସୁର କଳସ ଛଡାଛଡି ବେଳେ ଭାରତର ଚାରି ସ୍ଥାନରେ ସେଇ ଅମୃତ କଳସ କିଛି କିଛି ସମୟ ଲାଗି ରଖାଯାଇଥିଲା । ସେଇ ଚାରି ସ୍ଥାନ ଆଜିର କୁମ୍ଭମେଳା ତୀର୍ଥ । ହରିଦ୍ୱାର, ଉଜ୍ଜୟିନୀ, ନାସିକ୍ ଓ ପ୍ରୟାଗ । ବାର ବାର ବର୍ଷରେ ସେଇ ଅମୃତ କଣ ଲୋଭରେ କୁମ୍ଭମେଳା ସେଇ ଦିନୁ ଭାରତ ବର୍ଷରେ ଆଜି ଯାଏଁ ଚାଲି ଆସୁଛି । ଆଗକୁ ଚାଲିବ ମଧ୍ୟ ।

ଦେବତାମାନେ ଦେଖିଲେ, ଅମୃତ ଭାଣ୍ଡ ସେମାନେ ହରାଇ ବସିବେ । ଅନ୍ୟ ଉପାୟ ନ ଦେଖି ଭଗବାନ ନାରାୟଣଙ୍କ ଶରଣ ପଶିଲେ । ଭଗବାନ ତ ସେଇ ସୁଯୋଗ ଅପେକ୍ଷାରେ ଥିଲେ । ତତ୍କ୍ଷଣାତ୍ ଭୁବନ ମୋହିନୀ ତ୍ରୈଲୋକ୍ୟ ସୁନ୍ଦରୀ ଅବତାରରେ ପ୍ରକଟ ହେଲେ । ଦୈତ୍ୟମାନେ ମଦ୍ୟ ନିଶାରେ ପାଗଳ ହୋଇସାରିଥାନ୍ତି । ମୋହିତ ହୋଇଗଲେ ଭଗବାନଙ୍କ ଅଦୃଷ୍ଟ ପୂର୍ବ ଅଶ୍ରୁତ ପୂର୍ବ, ରୂପମାୟାରେ । ଭଗବାନଙ୍କ ବୁଦ୍ଧି ପାଖରେ ଦୈତ୍ୟ କ'ଣ ଦେବତାଙ୍କ ବୁଦ୍ଧି ମଧ ତୁଚ୍ଛ ଅତି ତୁଚ୍ଛ । ମୋହିନୀ ଭଗବାନ ଛଳ ପ୍ରୟୋଗ କରି ଅସୁରମାନଙ୍କୁ ବଞ୍ଚିତ କରି ଦେବତାମାନଙ୍କୁ ଅମୃତ ପାନ କରାଇଲେ । ରାହୁ କୌଶଳରେ ଛଳ କରି ଅମୃତ ପାନ କରି ଦିଅନ୍ତେ ଭଗବାନ ନାରାୟଣ ନିଜ ସୁଦର୍ଶନ ଚକ୍ରରେ ତାଙ୍କୁ ରାହୁ-କେତୁ ଦୁଇ ଦୈତ୍ୟରେ ପରିଣତ କଲେ । ଅମୃତ ପାନ କରିଥିବାରୁ ସେ ଦୁହେଁ ମଧ ଅମର ହୋଇଗଲେ ।

ଲକ୍ଷ୍ୟ କରିବା କଥା ଯେ ଦେବତାମାନଙ୍କୁ ଅମୃତ ପାନ କରାଇବା ଯେତିକି କୃପା, ଦାନବମାନଙ୍କୁ ଅମୃତ ପାନ ନକରାଇବା ମଧ ତତୋଽଧିକ କୃପା । ଅସୁରମାନେ କଦାପି ହରି ଶରଣାଗତ ହୁଅନ୍ତି ନାହିଁ । ସୁତରାଂ ସେମାନଙ୍କ ଆୟୁଷ ବୃଦ୍ଧି ହେଲେ ଅଧିକରୁ ଅଧିକ ପାପ କାର୍ଯ୍ୟ କରି ପାପ ପଙ୍କରେ ଘାଣ୍ଟି ହୋଇ ଅଧିକ ଦଣ୍ଡ ମୁଣ୍ଡାଇ ଥାଆନ୍ତେ !!! ଏହି ପ୍ରକରଣ ନିଷ୍କର୍ଷ ହେଲା ଯେ ସାଧନା (ସମୁଦ୍ର ମନ୍ଥନ) କଲେ ମଧ ହରି ଶରଣାଗତ ନ ହେଲେ କଦାପି ହରିକୃପା ସ୍ୱର୍ଗ କିମ୍ବା ଅମୃତ ମିଳେ ନା । ସର୍ବ ଶେଷରେ ଭୟଙ୍କର ଦେବାସୁର ସଂଗ୍ରାମ ହୋଇଛି । ଶ୍ରୀହରିଙ୍କ ଆଶୀର୍ବାଦରୁ ଦେବତାମାନେ ବିଜୟ ଲାଭ କରିଛନ୍ତି । ହରି ବିମୁଖତା ହେତୁ ଦୈତ୍ୟମାନେ ହାରିଛନ୍ତି । ଶିବଜୀ ପୁଣିଥରେ ଭଗବାନଙ୍କ ମୋହିନୀ ରୂପ ଦର୍ଶନ କରିବାକୁ ଇଚ୍ଛା କରନ୍ତେ ଭଗବାନଙ୍କର ହରି-ହର ରୂପ ଅର୍ଦ୍ଧନାରୀଶ୍ୱର ଅବତାର ଦେଖିବା ସୁଯୋଗ ସଂସାରକୁ ପ୍ରାପ୍ତ ହେଲା ।

-୦-

# ପ୍ରକରଣ ୨୩-ଦାନଲୀଳା

## ବଳି ବାମନ ସମ୍ବାଦ (ଅଧ୍ୟାୟ ୧୬ଶ-୨୩ଶ)

## ଅଥ ୧୬ଶ ଅଧ୍ୟାୟଃ

### ( ଅଦିତିଙ୍କୁ କଶ୍ୟପ ମହର୍ଷିଙ୍କର ପୟୋବ୍ରତ ଉପଦେଶ)

ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୫୮. ରାଜା ବଳି ସ୍ୱର୍ଗ ଅଧିକାର କରିବା ଘଟଣାରେ ଦେବମାତା ଅଦିତି ଅତ୍ୟନ୍ତ ଦୁଃଖିତ ହୋଇ ବିଳାପ କଲେ । ତାଙ୍କ ପିଲାମାନେ ଦୈତ୍ୟମାନଙ୍କ ଭୟରେ ଲୁଚିବା ଆଦୌ ତାଙ୍କର ସହ୍ୟ ହେଉ ନଥାଏ । ଦିନେ ଅଦିତିଙ୍କ ଆଶ୍ରମରେ ପହଞ୍ଚିଲେ ତାଙ୍କ ପତି ମହର୍ଷି କଶ୍ୟପ । ଲକ୍ଷ୍ୟ କଲେ ଅଦିତିଙ୍କ ବିଷାଦ ଭରା ବଦନ ମଣ୍ଡଳ । ମହର୍ଷି କଶ୍ୟପ ପତ୍ନୀ ଅଦିତିଙ୍କ ବିଷାଦର କାରଣ କ'ଣ ହୋଇପାରେ ବୋଲି ଆଶଙ୍କା କଲେ ?

**ଅପି-ଅଭଦ୍ରଂ ନ ବିପ୍ରାଣାଂ ଭଦ୍ରେ ଲୋକେଽଧୁନାଽଽଗତମ୍ ।**
**ନ ଧର୍ମସ୍ୟ ନ ଲୋକସ୍ୟ ମୃତ୍ୟୋଃ ଛନ୍ଦ-ଅନୁବର୍ତ୍ତିନଃ ।।୪।।**

ଉ. ମୁନି ମହାଶୟ କୋମଳ କଣ୍ଠରେ ପରବର୍ତ୍ତୀ ସାତ ଶ୍ଳୋକରେ ପଚାରିଲେ, ହେ' କଲ୍ୟାଣି ! କ'ଣ କିଛି ଅଘଟଣ ଘଟିଛି କି ? କାଳର କରାଳ କବଳକୁ ଭୟ ନ କରି ଲୋକେ କ'ଣ ବ୍ରାହ୍ମଣ, ବେଦ, ଧର୍ମ, ସନ୍ଥଙ୍କ ଅବମାନନା କରିଛନ୍ତି କି ? ଗୃହସ୍ଥାଶ୍ରମର ଧର୍ମ-ଅର୍ଥ-କାମ ଲକ୍ଷ୍ୟ ପରମାତ୍ମାଙ୍କ ଆଶ୍ରୟରେ ପୂର୍ତ୍ତି କରିବାକୁ ଚାହିଁଲେ ସଂସାର ଆସକ୍ତ ଲୋକେ ମଧ୍ୟ ବିଷୟ ଆସକ୍ତିରୁମୁକ୍ତ ହୋଇପାରନ୍ତି । ତୁମକୁ ବିଷାଦ ଗ୍ରାସ କରିବ କିପରି ?

ଅତିଶୟ କୁଟୁମ୍ବ ଆସକ୍ତି ହେତୁ ଅତିଥି ସେବାରେ ତ୍ରୁଟି କରିଛ କି ? ତାଙ୍କୁ ବସିବାକୁ ଆସନ ଦେଇନ କି ? ସେ ଉପଯୁକ୍ତ ସତ୍କାର ଅଭାବ ହେତୁ ଠିଆ ଠିଆ ଚାଲିଗଲେ କି ଆଉ ? ଯେଉଁ ଘରେ ଅତିଥିଙ୍କୁ ପାଣି ଗିଲାସେ ମଧ୍ୟ ମିଳେ ନା ସେ କେଉଁ ଗୃହରେ ଲେଖା ? ସେ ତ ଧୂର୍ତ୍ତ ଶୃଗାଳ ରହୁଥିବା ବିଳ ମାତ୍ର ।

ତୁମେ କ'ଣ ତ୍ରିସଂଧ୍ୟାରେ ଅଗ୍ନିକୁଣ୍ଡରେ ଘୃତାହୂତି ଦେବାରେ ଅବହେଳା କରିଛ କି ? ଅଗ୍ନି ଓ ବ୍ରାହ୍ମଣ ଭଗବାନଙ୍କ ଦୃଶ୍ୟମାନ ମୁଖ । ଭଗବାନ ବ୍ରାହ୍ମଣ ମୁଖରେ ଖାଆନ୍ତି ଓ ବୈଷ୍ଣବ ମୁଖରେ କହନ୍ତି । ସେମାନଙ୍କ ସେବାରେ ଗୃହସ୍ଥ ମାନେ ପାପ ମୁକ୍ତ

ହୋଇ ଉଚ୍ଚରୁ ଉଚ୍ଚତର ଲୋକ ପ୍ରାପ୍ତ ହୁଅନ୍ତି । ତୁମର ପୁତ୍ରମାନେ ସମସ୍ତେ ସତ୍ତ୍ୱଗୁଣୀ ଦେବତା । ସେମାନେ କିଛି ବିପଦରେ ପଡ଼ିଛନ୍ତି କି ? ଏ ସବୁ କାରଣ ମଧ୍ୟରୁ ତୁମ ମାନସିକ ଅଶାନ୍ତିର କାରଣ କେଉଁଟି କୁହ ।'

ପ୍ରଶ୍ନ-୫୯. ମା' ଅଦିତି ତାଙ୍କ ବିଷାଦର କାରଣ କ'ଣ ବୋଲି ପ୍ରକାଶ କଲେ ?

ଅଦିତିଃ ଉବାଚ

**ଭଦ୍ରଂ ଦ୍ୱିଜଗବାଂ ବ୍ରହ୍ମନ୍ ଧର୍ମସ୍ୟ-ଅସ୍ୟ ଜନସ୍ୟ ଚ ।**
**ତ୍ରିବର୍ଗସ୍ୟ ପରଂ କ୍ଷେତ୍ରଂ ଗୃହମେଧିନ୍ ଗୃହା ଇମେ ॥୧୧॥**

ଉ. ଅଦିତି କହିଲେ, 'ହେ' ବ୍ରହ୍ମଜ୍ଞାନୀ ପତିଦେବତା ! ଗୋ, ବ୍ରାହ୍ମଣ, ଧର୍ମ କାହାରି ସେବାରେ କିଛି ତ୍ରୁଟି ବିଚ୍ୟୁତ ହୋଇନାହିଁ । ତ୍ରିବର୍ଗ ପ୍ରାପକ ଏ ଗୃହସ୍ଥ ଧର୍ମ ଠିକ୍ ଠିକ୍ ଚାଲିଛି । ଅଗ୍ନି, ଅତିଥି, ସେବକ, ଭିକ୍ଷୁକଙ୍କ ସେବା ମୁଁ ଆପଣଙ୍କ ଆଦେଶାନୁସାରେ ପାଳନ କରିଛି । ହେ' ମରୀଚି ପୁତ୍ର କଶ୍ୟପ ଦେବ । ଭଗବାନ ସୁର-ଅସୁରଙ୍କ ପ୍ରତି ସମଦର୍ଶୀ ଅବଶ୍ୟ କିନ୍ତୁ ଦେବତାମାନେ ସତ୍ତ୍ୱ ଗୁଣୀ ବୋଲି ତାଙ୍କ ପ୍ରତି ଟିକିଏ ଅଧିକ ସମ୍ବେଦନଶୀଳ ହୁଅନ୍ତି । ସେଥିପାଇଁ କେତେକ ଲୋକ ତାଙ୍କୁ ପକ୍ଷପାତୀ ଦୋଷରେ ଦୋଷୀ ବୋଲି ଆକ୍ଷେପ କରନ୍ତି ।

ଆପଣ ଅନେକ ଦିନଧରି ସମାଧିସ୍ଥ ଥିଲେ । ଗୃହ, ସଂସାରରେ ଭଲ-ମନ୍ଦ ଆପଣ ଜାଣି ପାରି ନାହାନ୍ତି । ଦିତିଙ୍କ ପିଲାମାନେ ସ୍ୱର୍ଗ ରାଜ୍ୟ ମୋ ପିଲାଙ୍କଠାରୁ ଛଡ଼ାଇ ନେଇଛନ୍ତି । ମୋ ପିଲାଏ ଏବେ ଭିକାରୀ ହୋଇ ଦୈତ୍ୟ ଭୟରେ ବଣ ଜଙ୍ଗଲରେ ଲୁଚି ବୁଲୁଛନ୍ତି । ପିଲାମାନେ ଦୁଃଖ କଷ୍ଟ ପାଇବା ଦେଖି କେଉଁ ମା' ବିଷାଦଗ୍ରସ୍ତ ନ ହେବ ଭଲା !! ସୁତରାଂ ମୁଁ ନିବେଦନ କରୁଛି-ଆପଣ ମୋ ପିଲାମାନଙ୍କ ଦୁଃଖ ଦୂର କରିବା ବ୍ୟବସ୍ଥା କରନ୍ତୁ ।'

ଭଗବାନ ଶୁକ କହିଲେ, 'ହେ' ରାଜନ୍ ଦେଖନ୍ତୁ ! ଭଗବାନଙ୍କ ମାୟା କେତେ ପ୍ରବଳ । ସଂସାର ଆସକ୍ତିରେ ସାରା ସଂସାର ବନ୍ଧା । ଦକ୍ଷ ପୁତ୍ରୀ ଓ କଶ୍ୟପ ମୁନିଙ୍କ ପତ୍ନୀ ଅଦିତିଙ୍କର ଏତେ ପୁତ୍ର ସୁଖ, ସଂସାର ସୁଖ ଆସକ୍ତି ! ତୁମ-ଆମ କଥା କିଏ ପଚାରେ ? ହେଇ ଦେଖନ୍ତୁ ରାଜନ୍ କ'ଣ ବା ଏ ନାଶବାନ୍ ଶରୀର ? ଆମେ ତ' ଆଉ ଜଡ଼ ଶରୀର ନୋହୁ । ଚିନ୍ମୟ ଆତ୍ମା । ଚିନ୍ମୟ ଆତ୍ମାଙ୍କ ସହ ପତି-ପୁତ୍ର-ଧନ- ସୁଖ ସହ କି ସମ୍ବନ୍ଧ ?'

ପ୍ରଶ୍ନ-୬୦. ମହାପୁରୁଷ କଶ୍ୟପ ଅଦିତିଙ୍କ ଏ ଭଳି ସଂସାରୀ ସୁଖ ପ୍ରାର୍ଥନା ଶୁଣି କ'ଣ ନିଜ ପତ୍ନୀଙ୍କୁ ନିରାଶା ବାଣୀ ଶୁଣାଇଲେ ?

**ଉପତିଷ୍ଠସ୍ୱ ପୁରୁଷଂ ଭଗବନ୍ତଂ ଜନାର୍ଦ୍ଦନମ୍ ।**
**ସର୍ବଭୂତ ଗୁହ-ଆବାସଂ ବାସୁଦେବଂ ଜଗଦ୍ ଗୁରୁମ୍ ॥୨୦॥**

ଉ. ନା,ନା ଆଦୌ ନିରାଶ କଲେ ନି । ବରଂ ଏକ ଅତ୍ୟନ୍ତ ଭବ୍ୟ, ସୁନ୍ଦର ଉପାୟ ବତାଇ ଦେଲେ । କହିଲେ, 'ହେ' ଭଦ୍ରେ! ପରମ ପୁରୁଷ ଭଗବାନଙ୍କୁ ସେବା-ପୂଜା-ଧ୍ୟାନ- ଶରଣାଗତି ମାଧ୍ୟମରେ ପ୍ରସନ୍ନ କର(ଉପତିଷ୍ଠସ୍ୱ) । ସେ ସମସ୍ତଙ୍କ ମୋକ୍ଷ ମାର୍ଗର ଠିକଣା ଇଚ୍ଛା ପୂରଣ କରନ୍ତି ବୋଲି ତାଙ୍କ ନାମ ଜନାର୍ଦ୍ଦନ । ସକଳ ଜୀବ ଅନ୍ତଃକରଣରେ ରହୁଥିବାରୁ ପରମାତ୍ମା । ସକଳ ଦେବୀ ଦେବତାଙ୍କ ନିୟନ୍ତ୍ରଣ କର୍ତ୍ତା ବୋଲି ବାସୁଦେବ । ସକଳ ଗୁରୁଙ୍କର ଗୁରୁ ପରମ ଗୁରୁ ହୋଇଥିବାରୁ ଜଗଦ୍‌ଗୁରୁ ଅଟନ୍ତି ।ସେ ହିଁ କେବଳ ତୁମର ସଦିଚ୍ଛା ପୂରଣ କରି ପାରିବେ । ଅନ୍ୟ କେହି ଏହା ପାରିବେ ନାହିଁ ।' ସୁତରାଂ ପତିଙ୍କ ପରାମର୍ଶରେ ଅତ୍ୟନ୍ତ ଉତ୍ସାହିତ ହୋଇ ଦେବମାତା ଅଦିତି ଶ୍ରୀ ହରିଙ୍କୁ ପ୍ରସନ୍ନ କରିବାରେ ତୁରନ୍ତ ଲାଗିଗଲେ ।

ପ୍ରଶ୍ନ-୬୧. ପରମାତ୍ମାଙ୍କୁ ପ୍ରସନ୍ନ କରିବାର ଉପାୟ ମହର୍ଷି କଶ୍ୟପ ନିଜ ମନ-ବୁଦ୍ଧି ପ୍ରୟୋଗ କରି ନା ସେ ଆଉ କୌଣସି ଅଧିକାରୀ ସୂତ୍ରରୁ ଏହା ପ୍ରାପ୍ତ ହୋଇଥିଲେ ବୋଲି ଅଦିତିଙ୍କୁ କହିଲେ ?

କଶ୍ୟପ ଉବାଚ

**ଏତତ୍ ମେ ଭଗବାନ୍ ପୃଷ୍ଟଃ ପ୍ରଜାକାମସ୍ୟ ପଦ୍ମଜଃ ।**
**ଯତ୍ ଆହ ତେ ପ୍ରବକ୍ଷାମି ବ୍ରତଂ କେଶବ ତୋଷଣମ୍ ॥୨୪॥**

ଉ. ମହର୍ଷି କଶ୍ୟପ ଏକମାସ ବ୍ୟାପୀ ପୟୋବ୍ରତ ବିଧି ଶ୍ଳୋକ(୨୪-୬୪) ଏହି ଅଣଚାଳିଶ ଶ୍ଳୋକରେ ଉପଦେଶ ଦେଲେ । କହିଲେ, 'ପୂର୍ବେ ପିତାଙ୍କ ଆଦେଶରେ ସୃଷ୍ଟି ବଢ଼ାଇବା ଇଚ୍ଛାରେ ମୁଁ ଏହାର ଉପାୟ ବ୍ରହ୍ମଦେବ (ପଦ୍ମଜଃ)ଙ୍କୁ ପଚାରିଥିଲି । ତାଙ୍କଠାରୁ ଶ୍ରବଣ କରି ମୁଁ ନିଜେ ଏ ବ୍ରତ କରି ଫଳ ପ୍ରାପ୍ତ ହୋଇଛି । ତୁମେ ଏବେ କର । ନିଶ୍ଚୟ ସୁଫଳ ପ୍ରାପ୍ତ ହେବ ।'

ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ପ୍ରତିପଦାଠାରୁ ଶୁକ୍ଳ ଦ୍ୱାଦଶୀ ପର୍ଯ୍ୟନ୍ତ ଏହି ବାରଦିନ ଭକ୍ତିଯୁକ୍ତ ସାଧନା କରିବାକୁ ହୁଏ । ଅମାବାସ୍ୟା ଦିନ ବଣରୁ ବରାହ ଖୋଦିତ ମୃତ୍ତିକା ସଂଗ୍ରହ କରି ଦେହରେ ବୋଳି ସ୍ନାନ କରିବ । ମୃତ୍ତିକା ସଂଗ୍ରହ ବେଳେ ଓ ସ୍ନାନ

ବେଳେ ବରାହ ଅବତାର ସ୍ତୁତି ମନ୍ତ୍ର ଗାଇବାକୁ ହେବ । ଦ୍ୱାଦଶ ଅକ୍ଷରୀ ବାସୁଦେବ ମନ୍ତ୍ର ଉଚାରଣ କରି କରି ଶ୍ରୀକୃଷ୍ଣ ବାସୁଦେବଙ୍କ ବିଗ୍ରହକୁ ସ୍ନାନ-ବସ୍ତ୍ର-ଉପବୀତ ଧାରଣ ଶୃଙ୍ଗାର ଧୂପ-ଦୀପ-ଗନ୍ଧ-ପୁଷ୍ପ-ନୈବେଦ୍ୟ-ନମସ୍କାର ଆଦି ସମର୍ପଣ କରିବ ।

ସେଇ ମନ୍ତ୍ର ଗାଇ ସରୁ ଅରୁଆ ଚାଉଳକୁ ଦୁଧରେ ସିଝାଇ ଗୁଡ଼ (ମିଠା) ମିଶ୍ରିତ କରି ପ୍ରଥମେ ଅଗ୍ନିଙ୍କୁ, ବ୍ରାହ୍ମଣଙ୍କୁ, ବଳି ବୈଶ୍ୱଦେବଙ୍କୁ ସମର୍ପଣ କରି ନିଜେ ପ୍ରସାଦ ରୂପେ ଗ୍ରହଣ କରିବ । ଶହେ ଆଠ ଥର ବାସୁଦେବ ମନ୍ତ୍ର ଜପ କରି କରି ତାଙ୍କ ଶ୍ରୀ ବିଗ୍ରହଙ୍କୁ ପ୍ରଦିକ୍ଷଣ କରି ଭୂମିରେ ପଡ଼ି ଦଣ୍ଡବତ୍ ପ୍ରଣାମ କରିବ । ନିବେଦିତ ପତ୍ର-ପୁଷ୍ପ-ଫଳକୁ ନିଜେ ମସ୍ତକରେ ଛୁଆଁଇ ଜଳାଶୟ, ନଦୀ କିମ୍ବା ସମୁଦ୍ରରେ ବିସର୍ଜନ କରିଦେବ ।

ଦୁଇଜଣ ବ୍ରାହ୍ମଣଙ୍କୁ ପ୍ରତିଦିନ ଅନ୍ନ, କ୍ଷିରୀ ପ୍ରସାଦ ଖୁଆଇବ । ବାରଦିନ ଯାକ ଅର୍ଚ୍ଚାବିଗ୍ରହକୁ ଦୁଗ୍ଧ ସ୍ନାନ କରାଉଥିବ । ନିଜେ କେବଳ ଦୁଗ୍ଧ ଆହାର କରି ରହିବ । ହରି ଅର୍ଚ୍ଚନ, ହବନ ମଧ ବାରଦିନ ଯାଏଁ କରିବ । ବ୍ରହ୍ମଚର୍ଯ୍ୟ ପାଳନ କରିବ । ଭୂମିରେ ଶୟନ କରିବ । ଦିନରେ ତିନିଥର ସ୍ନାନ କରିବ । ସଂସାରୀ କଥା କହିବନି କି ଶୁଣିବନି । ଜୀବ ହିଂସା ସଂପୂର୍ଣ୍ଣ ତ୍ୟାଗ କରିବ । ତ୍ରୟୋଦଶୀ ଦିନ ବିଗ୍ରହଙ୍କୁ ପଞ୍ଚାମୃତ ସ୍ନାନ କରାଇ ବ୍ରତ ଉଦ୍‌ଯାପନ କରିବ । ବସ୍ତ୍ର, ଅଳଂକାର, ଗୋ, ଭୂମି, ସୂର୍ଣ୍ଣ ଆଦି ଦାନ କରି ବ୍ରାହ୍ମଣଙ୍କୁ ପ୍ରସନ୍ନ କରିବ । ଶେଷ ଦିନ ଯଥା ଶକ୍ତି ବ୍ରାହ୍ମଣ ଭୋଜନ ଦେବ । ଶେଷରେ ଚାଣ୍ଡାଳମାନଙ୍କୁ ମଧ ବଳକା ପ୍ରସାଦ ବାଣ୍ଟିଦେବ । ଏହା ଏକ ଅତି ସୁନ୍ଦର ବ୍ୟବସ୍ଥା ।'

ପ୍ରଶ୍ନ ୬୨. ଏ ପୟୋବ୍ରତର ମାହାତ୍ମ୍ୟ ଆଉ କେଉଁ ଜପ-ତପ-ତୀର୍ଥ -ବ୍ରତ -ଯଜ୍ଞ -ଦାନ-ତପ-କ୍ରିୟା ଆଦି ସହିତ ସମାନ ହୋଇ ପାରିବ ?

**ତ ଏବ ନିୟମାଃ ସାକ୍ଷାତ୍ ତ ଏବ ଚ ଯମା-ଉତ୍ତମାଃ ।**
**ତପୋ ଦାନଂ ଜପଂ ଯଜ୍ଞୋ ଯେନ ତୁଷ୍ୟତିଽଧୋକ୍ଷଜଃ ॥୬୧॥**

ଉ. ଏଥିରୁ କୌଣସି ଗୋଟିଏ ମଧ ନୁହନ୍ତି । ଏ ବ୍ରତ ପାଳନରେ ସାଧକ/ସାଧିକାଙ୍କର ସ୍ୱତଃ ଯମ-ନିୟମ ପାଳନ ସହ ଦଶ ଇନ୍ଦ୍ରିୟ ଓ ମନ-ବୁଦ୍ଧି-ଅହଂକାର-ଚିତ୍ତ. ସମସ୍ତଙ୍କର ଭଗବତ ଅର୍ପଣ ହୋଇଯାଏ । ଶରଣାଗତି ମାତ୍ରା ଦେଖି ପ୍ରସନ୍ନ ହୋଇ ସ୍ୱୟଂ ନାରାୟଣ (ଅଧୋକ୍ଷଜଃ ) ଯଥାଯୋଗ୍ୟ ଫଳ ପ୍ରଦାନ କରନ୍ତି । ଏଥିରେ ଏକ ସାଙ୍ଗରେ ସ୍ୱ' କଲ୍ୟାଣ,ପର କଲ୍ୟାଣ ଓ ଜଗତ୍ କଲ୍ୟାଣ ମଧ ସାଧିତ ହୁଏ ।

# ଅଥ ୧୭ଶ ଅଧ୍ୟାୟଃ

## (ଅଦିତିଙ୍କର ପୟୋବ୍ରତ ସଫଳ ଓ ଭଗବାନଙ୍କ ଠାରୁ ବର ପ୍ରାପ୍ତି)

ପ୍ରଶ୍ନ-୬୩. କଶ୍ୟପ ଋଷିଙ୍କ ଉପଦେଶ ଅନୁସାରେ ନିଷ୍ଠାର ସହିତ ପୟୋବ୍ରତ ଅନୁଷ୍ଠାନ କଲେ ଅଦିତି । ତାଙ୍କ ବ୍ରତରେ ପ୍ରସନ୍ନ ହୋଇ ଭଗବାନ ନାରାୟଣ କେଉଁ ରୂପରେ ଦର୍ଶନ ଦେଲେ ଅଦିତିଙ୍କୁ ?

ଶ୍ରୀ ଶୁକ ଉବାଚ

**ତସ୍ୟାଃ ପ୍ରାଦୁଃ ଅଭୂତ୍ ତାତ ଭଗବାନ୍ ଆଦି ପୁରୁଷଃ ।**
**ପୀତବାସାଃ ଚତୁଃ ବାହୁଃ ଶଙ୍ଖଚକ୍ର ଗଦା ଧରଃ ||୪||**

ଉ. ଶୁକଦେବ କହିଲେ,'ହେ, ରାଜା(ତାତ) ! ପରମ ପୁରୁଷ ଭଗବାନ ତାଙ୍କ ସମ୍ମୁଖରେ ପୀତାମ୍ବର ପିନ୍ଧି ଚତୁର୍ବାହୁରେ ଚତୁଃଆୟୁଧ ଧରି ପ୍ରକଟ ହୋଇଗଲେ ।'

ଦଣ୍ଡବତ ପ୍ରଣାମ କଲେ ଅଦିତି ଭୂମିରେ ମସ୍ତକ ଲଗାଇ । ତୁଣ୍ଡରୁ କଥା ବାହାରୁ ନ ଥାଏ । ଥର ଥର ଦେହ । ପୁଲକିତ ସର୍ବାଙ୍ଗ ଶରୀର । ଭଗବାନଙ୍କ କୃପାରୁ ସେ ଶ୍ରୁତି ମଧୁର ସ୍ତୁତି ଗାନ କଲେ । କିଛି ବର ମାଗିବାରେ ସଂକୋଚ କରନ୍ତେ ଭଗବାନ ନିଜ ଆଡୁ କହିଲେ, 'ମୁଁ ସର୍ବାନ୍ତର୍ଯ୍ୟାମୀ । ସୁତରାଂ ତୁମ ବ୍ରତର ଉଦ୍ଦେଶ୍ୟ ମୁଁ ଜାଣେ । ତୁମେ ବର ନିଜ ପାଇଁ ନ ମାଗି ଦେବତା ପୁତ୍ରମାନଙ୍କ ଭୌତିକ ସୁଖ ଐଶ୍ୱର୍ଯ୍ୟ ଚାହୁଁଛ । ତୁମେ ଚାହୁଁଛ ତୁମ ପୁତ୍ର ଦେବତାମାନଙ୍କ ଶତ୍ରୁ ଦୈତ୍ୟମାଙ୍କର ମାତା ଓ ପତ୍ନୀ-ଭଗ୍ନୀଗଣ କ୍ରନ୍ଦନ କରନ୍ତୁ ।'

ପ୍ରଶ୍ନ-୬୪. ଏଭଳି ଭୌତିକ ସୁଖ ସମୃଦ୍ଧି ଭଗବାନ ତ କେବେ କାହାକୁ ଦିଅନ୍ତି ନାହିଁ । ଓଲଟି କାହାର ଥିଲେ ଛଡ଼େଇ ନିଅନ୍ତି । ଏ ଅଡୁଆ ପରିସ୍ଥିତିରେ ଭଗବାନ ପୁଣି ଆଦିତିଙ୍କୁ କି ବର ପ୍ରଦାନ କରି ସନ୍ତୁଷ୍ଟ କଲେ ?

**ଆତ୍ମଜାନ୍ ସୁ ସମୃଦ୍ଧାନ୍ ତ୍ୱଂ ପ୍ରତ୍ୟାହୃତ ଯଶଃ ଶ୍ରିୟଃ ।**
**ନାକ ପୃଷ୍ଠଂ ଅଧିଷ୍ଠାୟ କ୍ରୀଡ଼ତୋ ଦ୍ରଷ୍ଟୁଂ ଇଚ୍ଛସି ||୧୫||**

ଉ. ସେତେବେଳକୁ ସ୍ୱର୍ଗ ଲୋକରେ ଦେବତାମାନେ ଯଥେଷ୍ଟ ଭୌତିକ, ମାନସିକ କଷ୍ଟ ପାଇସାରିଥାନ୍ତି । ତାଙ୍କୁ ପୁଣି ସ୍ୱ' ପଦ ପଦବୀରେ ପ୍ରତିଷ୍ଠା କରିବା ଭଗବାନଙ୍କ ଇଚ୍ଛା । ତେଣୁ ସେ ଦିତିଙ୍କୁ କହିଲେ, 'ତୁମେ ଖୁସିରେ ରହିବ । ତୁମର ବାଞ୍ଛା ପୂର୍ଣ୍ଣ ହେଉ । ତୁମେ ଚାହୁଁଛ ତୁମ ପିଲାମାନେ, ପୁଣି ନିଜ ଐଶ୍ୱର୍ଯ୍ୟ ଭୋଗ ଫେରି ପାଆନ୍ତୁ । ଏବଂ ଅସ୍ତୁ ।' ପୁଣି କହିଲେ, 'ହେ ମାତା ! ମୁଁ ତୁମରି ଗର୍ଭରେ ପୁତ୍ର

ରୂପେ ଜନ୍ମ ହେବି କାରଣ ମୁଁ ତୁମ ବ୍ରତ ଓ କଶ୍ୟପଙ୍କ କଠୋର ତପସ୍ୟା ଉଭୟରେ ପ୍ରସନ୍ନ ହୋଇଛି । ତୁମେ ତୁମ ପତିଙ୍କୁ ଭଗବାନ ଜ୍ଞାନରେ ସେବା କର । ତୁମର କଲ୍ୟାଣ ହେଉ ।'

ପରେ ପରେ ଭଗବାନ କଶ୍ୟପ ଋଷିଙ୍କ ବୀର୍ଯ୍ୟକୁ ଆଧାର କରି ଦିତିଙ୍କ ଗର୍ଭରେ ପ୍ରବେଶ କଲେ ।

ପ୍ରଶ୍ନ-୬୫. ସେତେବେଳେ ଭଗବାନଙ୍କ ବାମନ ଅବତାର ହେବା କଥା କ'ଣ ଏ ତିନି ଜଣଙ୍କ ବ୍ୟତୀତ ଆଉ କେହି ଜାଣି ପାରି ନ ଥିଲେ ?

**ଅଦିତେଃ ଅଧିଷ୍ଠିତଂ ଗର୍ଭଂ ଭଗବନ୍ତଂ ସନାତନମ୍ ।**
**ହିରଣ୍ୟ ଗର୍ଭୋ ବିଜ୍ଞାୟ ସମୀଡ୍େ ଗୁହ୍ୟନାମଭିଃ ॥୨୪॥**

ଉ. ହଁ ସୃଷ୍ଟି କର୍ତ୍ତା ବ୍ରହ୍ମାଜୀ ଭଗବାନଙ୍କ କୃପାରୁ ଏହାର ସଂକେତ ପାଇଗଲେ । ଭଗବାନ ବିଷ୍ଣୁଙ୍କର ଅଦିତି ଗର୍ଭରେ ଗୋପନରେ (ଗୁହ୍ୟ) ରହିବା ଜାଣି ସେ ବୈଦିକ ମନ୍ତ୍ରଦ୍ୱାରା ଅତ୍ୟନ୍ତ ବିନମ୍ର ଗର୍ଭସ୍ତୁତି କରିଥିଲେ ।

## ଅଥ ୧୮ଶ ଅଧ୍ୟାୟଃ

### (ଭଗବାନଙ୍କ ବାମନ ଅବତାର ଗ୍ରହଣ ଓ ବଳିଙ୍କ ଯଜ୍ଞସ୍ଥଳରେ ପ୍ରବେଶ)

### ଶ୍ରୀ ଶୁକଦେବ ଉବାଚ

ପ୍ରଶ୍ନ-୬୬. ଭାଦ୍ରବ ମାସ ଶୁକ୍ଳ ଦ୍ୱାଦଶୀ ତିଥିରେ ଅଭିଜିତ୍ ନକ୍ଷତ୍ର (ଶ୍ରବଣା ନକ୍ଷତ୍ରର ପୂର୍ବାର୍ଦ୍ଧ)ରେ ମଧ୍ୟାହ୍ନ ସମୟରେ ବାମନ ଭଗବାନ ପ୍ରକଟ ହେଲେ । ସ୍ୱର୍ଗରେ ଦୁନ୍ଦୁଭି ବାଜି ଉଠିଲା । ଅପ୍ସରା ଗଣ ନୃତ୍ୟାଦି କଲେ । ପୁଷ୍ପ ସଜା ସଜିରେ ଅଦିତି-କଶ୍ୟପଙ୍କ ଆଶ୍ରମ ଘୋଡ଼େଇ ହୋଇ ପଡ଼ିଲା । କଶ୍ୟପ ମୁନି ନିଜେ ଭଗବାନଙ୍କର ଜୟ ଜୟକାର କଲେ । ଗର୍ଭରୁ ପ୍ରକଟ ହେଉ ହେଉ ଭଗବାନ ଆଠ ବର୍ଷ ବୟସ୍କ ଦିବ୍ୟ ବଟୁ ବା ବାମନ ଶରୀର ଧାରଣ କଲେ ।

ଋଷି ମୁନି ଦେବୀ ଦେବତା ସମସ୍ତେ ଆସି ଭିଡ଼ ଜମେଇଲେ । ଜାତ କର୍ମ ସଂସ୍କାର ଆଦି କରାଗଲା । ଯଜ୍ଞ ଉପବୀତ ସଂସ୍କାର ହେଲା । ସୂର୍ଯ୍ୟ ଦେବ ଦେଲେ

ଗାୟତ୍ରୀ ମନ୍ତ୍ର । ବୃହସ୍ପତି ଉପବୀତ, କଶ୍ୟପ ମଞ୍ଜୁ ମେଖଳା, ପୃଥିବୀ ମାତା ମୃଗ ଛାଲ, ଚନ୍ଦ୍ର ଦଣ୍ଡ, ଅଦିତି କୌପୀନ, ଇନ୍ଦ୍ର ଛତ୍ର, ବ୍ରହ୍ମାଜୀ କମଣ୍ଡଲୁ, ସପ୍ତର୍ଷି କୁଶ ଆସନ, ସରସ୍ୱତୀ ରୁଦ୍ରାକ୍ଷ ମାଳା, କୁବେର ଭିକ୍ଷା ପାତ୍ର ପ୍ରଦାନ କଲେ । ବ୍ରହ୍ମଚାରୀ ବାମନ ଦେବଙ୍କୁ ପ୍ରଥମ ଭିକ୍ଷା ପ୍ରଦାନ କଲେ ମା' ଭଗବତୀ ଉମା । ଯଜ୍ଞ ଶାଳାରେ ଭଗବାନ ଅଗ୍ନି ପ୍ରଜ୍ୱଳନ କରି ଆହୁତି ଦେଲେ । ଶୁଣିଲେ ରାଜା ବଳି ନର୍ମଦା ନଦୀ ଉତ୍ତର ପଟେ ଭୃଗୁକଚ୍ଛ ନାମକ ସ୍ଥାନରେ ଶହେତମ ଅଶ୍ୱମେଧ ଯଜ୍ଞ କରୁଛନ୍ତି ।

ଭଗବାନ ବାମନ ଦେବ ତୁରନ୍ତ ପହଞ୍ଚି ଗଲେ ବଳି ରାଜାଙ୍କ ଯଜ୍ଞ ସ୍ଥଳରେ । ତାଙ୍କ ବେଦ ଧ୍ୱନି ତରଙ୍ଗ ଓ ଦିବ୍ୟ ଶରୀରର ଦିବ୍ୟ କାନ୍ତିରେ ସମଗ୍ର ଯଜ୍ଞ ସ୍ଥଳ ଆଲୋକିତ ହୋଇଗଲା । ରାଜା ବଳି ଓ ଶୁକ୍ରାଚାର୍ଯ୍ୟ ଆଦି ଆନନ୍ଦରେ ପୁଲକିତ ହୋଇ ଉଠିଲେ । ଯଯମାନ ପୁରୋହିତ ଓ ଅନ୍ୟାନ୍ୟ ମୁନି ଋଷିଗଣ ସ୍ୱାଗତ ସତ୍କାର କଲେ ବ୍ରାହ୍ମଣ ଦେବତାଙ୍କର ।

ରାଜା ବଳି ଆଗେଇ ଆସି ତାଙ୍କର ଚରଣ କମଳ ପ୍ରକ୍ଷାଳନ କରି ଧୌତ ଜଳକୁ ମସ୍ତକରେ ଧାରଣ କଲେ । ବିନୀତ ଭାବରେ ପ୍ରଶ୍ନ କଲେ, 'ହେ' ପ୍ରଭୋ ! କି ସେବା କରି ପାରିବି ମୁଁ ଆପଣଙ୍କର ।' କ'ଣ କହି ଦୈତ୍ୟରାଜ ବଳି ନିଜକୁ ସୌଭାଗ୍ୟବାନ ବୋଲି ନିସଂକୋଚରେ ପ୍ରକାଶ କଲେ ?

**ଅଦ୍ୟ ନଃ ପିତରଃ ତୃପ୍ତା ଅଦ୍ୟ ନଃ ପାବିତଂ କୁଳମ୍ ।**
**ଅଦ୍ୟ ସ୍ୱିଷ୍ଟଃ କ୍ରତୁଃ ଅୟଂ ଯତ୍ ଭବାନ୍ ଆଗତ ଗୃହାନ୍ ॥୩୦॥**

ଉ. ଦାନ ସଫଳ ହୁଏ ଉପଯୁକ୍ତ ଯାଚକ ସତ୍ ପାତ୍ର ହସ୍ତରେ ଅର୍ପଣ କଲେ । ଯେମିତି ବିଦ୍ୟା ସଫଳ ହୁଏ ସତ୍ ଶିଷ୍ୟକୁ ପ୍ରଦାନ କଲେ । ଏତେ ଦିନ ଯଜ୍ଞ କରି ଏ ଭଳି ଅପୂର୍ବ ବ୍ରହ୍ମତେଜ ଯୁକ୍ତ ବ୍ରାହ୍ମଣ ସେ କେବେ ଦର୍ଶନ କରି ନଥିଲେ । ଏବେ ସତ୍ ପାତ୍ର ଜଣେ ପାଇ ସେ କହିଲେ, 'ହେ' ବାହ୍ମଣ ଦେବତା ! ମୋ ଜୀବନ ଧନ୍ୟ, ଗୃହସ୍ଥାଶ୍ରମ ସଫଳ ହେଲା । ମୋର କୁଳ, ଗୋତ୍ର, ପିତୃ ପୁରୁଷ, ଅଶ୍ୱମେଧ ଯଜ୍ଞ (ସ୍ୱିଷ୍ଟଃ କ୍ରତୁଃ) ଧନ୍ୟ ହୋଇଗଲେ । ଆପଣଙ୍କ ପବିତ୍ର ଚରଣ ରଜରେ ଏ ଯଜ୍ଞ ସ୍ଥଳୀ ଅତୀବ ପବିତ୍ର ହୋଇଗଲା । ଆମ ସମସ୍ତଙ୍କ ଜନ୍ମ-ଜନ୍ମାନ୍ତରର ପାପ ଧୌତ ହୋଇଗଲା । ମନେ ହୁଏ ଆପଣ କିଛି ପାଇବା ଆଶାରେ ବୋଧେ ଆସିଛନ୍ତି । କୁହନ୍ତୁ -କ'ଣ ଦେଇ ମୁଁ କୃତାର୍ଥ ହେବି- ଭୂମି, ଧନ, ଗୋ, ସ୍ୱର୍ଣ୍ଣ, ବସ୍ତ୍ର, କନ୍ୟା, ଭୋଜନ, ପାନୀୟ, ନା ଆଉ କିଛି ?'

# ଅଥ ୧୯ଶ ଅଧ୍ୟାୟଃ

## (ବାମନଙ୍କ ସାନ ସାନ ପାଦ ମାପରେ ତିନିପାଦ ଭୂମି ଯାଚନା)

### ଶ୍ରୀ ଶୁକଦେବ ଉବାଚ

ପ୍ରଶ୍ନ-୬୭. ଦୈତ୍ୟରାଜ ବଳିଙ୍କ ଦାନ ଯାଚିବା ଦେଖି ବାମନ ଦେବ ଅତ୍ୟନ୍ତ ପ୍ରସନ୍ନ ହେଲେ । ସଙ୍ଗେ ସଙ୍ଗେ ବଳିଙ୍କ ପିତା ବିରୋଚନ, ପିତାମହ ପ୍ରହ୍ଲାଦ, ପ୍ରପିତାମହ ହିରଣ୍ୟ କଶିପୁ, ହିରଣାକ୍ଷଙ୍କ ସହିତ ଭୃଗୁବଂଶୀ ଗୁରୁ ସମସ୍ତଙ୍କର ପ୍ରଶଂସା କରିବାରେ ଲାଗିଗଲେ । କହିଲେ, 'ହେ' ଦୈତ୍ୟପତି ! ତୁମ ପିତାମହ ପ୍ରହ୍ଲାଦ ତୀର୍ଥ କ୍ଷେତ୍ରରେ ଦାନ କରିବାକୁ ଓ ଯୁଦ୍ଧ କ୍ଷେତ୍ରରେ ଯୁଦ୍ଧ କରିବାକୁ କେବେ ବି ପଛେଇ ନାହାନ୍ତି । ତାଙ୍କ ଯଶ ଆଜି ମଧ୍ୟ ତ୍ରିଲୋକରେ କୀର୍ତ୍ତିତ ହେଉଛି ।

ହଁ, ତୁମ ବଂଶଜ ହିରଣ୍ୟାକ୍ଷଙ୍କୁ ଯୁଦ୍ଧରେ ମାରି ଶ୍ରୀହରି ବିଷ୍ଣୁ ନିଜକୁ ବୀର ମାନୁଥିଲେ ମଧ୍ୟ କାଳେ କାଳେ ଦେବତାମାନେ ହିରଣ୍ୟାକ୍ଷଙ୍କ ବୀରତ୍ୱ ପ୍ରଶଂସା କରିଥାନ୍ତି । ହିରଣ୍ୟାକ୍ଷ ମଧ୍ୟ ତ୍ରିଲୋକ ବିଜୟୀ ହେଲେ ନିଜ କଠୋର ତପସ୍ୟା ବଳରେ । ଶେଷରେ ପହଞ୍ଚିଲେ ବିଷ୍ଣୁଲୋକରେ ବୈକୁଣ୍ଠ ବିଜୟ ଲକ୍ଷ୍ୟରେ । ଶ୍ରୀ ବିଷ୍ଣୁ ଦେଖିଲେ- ଯେଉଁଠାକୁ ଗଲେ ଏ ମୋ ପଛରେ ଦୌଡ଼ିବ । ମୁଁ ସର୍ବତ୍ର ବିଦ୍ୟମାନ ଥିଲେ ମଧ୍ୟ ଏ ବର୍ହିଦୃଷ୍ଟି ହେତୁ ମୋତେ ଆସି ଏଠାରେ ଖୋଜୁଛି । ଏବେ ମୁଁ କ'ଣ କରିବି, କେଉଁଠି ଲୁଚିବି । ଠିକଣା ଉପାୟ ପାଞ୍ଚିଲେ । ଶେଷରେ ତ୍ରିଲୋକ ବିଜୟୀ ଦୈତ୍ୟରାଜଙ୍କ ହୃଦୟ କମଳରେ ଲୁଚି ବସିଲେ । ଚତୁର୍ଦ୍ଦଶ ଭୁବନ ଖୋଜିସାରି ସେ ଘୋଷଣା କଲେ ଭଗବାନ ମୋ ଭୟରେ କେବଳ ପଳାତକ ନୁହନ୍ତି, ମୃତ ମଧ୍ୟ । ସୁତରାଂ ମୋର ଶତ୍ରୁଶୂନ୍ୟ ହେଲା ଏ ସାରା ସଂସାର । ଏ ଭଳି ବିଲକ୍ଷଣ ବିରଳ ବୀର ଥିଲେ ତୁମ ପିତାମହ ହିରଣ୍ୟ କଶିପୁ ।' ବଳିରାଜାଙ୍କ ପିତାଙ୍କୁ କିଭଳି ଶବ୍ଦରେ ପ୍ରଶଂସା କଲେ ଭଗବାନ ବାମନ ଦେବ ?

**ପିତା ପ୍ରହ୍ଲାଦ ପୁତ୍ରଃ ତେ ତତ୍ ବିଦ୍ୱାନ୍ ଦ୍ୱିଜବତ୍ସଳଃ ।**
**ସ୍ୱୟଂ ଆୟୁଷ୍ଠ ଦ୍ୱିଜଲିଙ୍ଗେଭ୍ୟୋ ଦେବେଭ୍ୟୋଽଦାତ୍ ସ ଯାଚିତଃ ॥୧୪॥**

ଉ. ତୁମ ପିତା ବିରୋଚନ ଭକ୍ତରାଜ ପ୍ରହ୍ଲାଦଙ୍କ ସୁପୁତ୍ର କମ୍ ବିଦ୍ୱାନ ଓ ବ୍ରାହ୍ମଣ ବତ୍ସଳ ନ ଥିଲେ । ତାଙ୍କ ଯଶ, କୀର୍ତ୍ତିରେ ଈର୍ଷ୍ୟାପରାୟଣ ହୋଇ ସ୍ୱୟଂ ଦେବରାଜ ଇନ୍ଦ୍ର ଛଳରେ ବ୍ରାହ୍ମଣ ବେଶରେ ପହଞ୍ଚି ରାଜାଙ୍କ ଆୟୁଷ ମାଗିଥିଲେ । ଏ ରହସ୍ୟ ଜାଣି ମଧ୍ୟ ତୁମ ପିତା ଇନ୍ଦ୍ରଙ୍କୁ ନିଃସଙ୍କୋଚରେ ତାଙ୍କ ଆୟୁଷ ଦାନ ଦେଇ ଦେଲେ । ତାଙ୍କର ଉଦାହରଣ ବେଯୋଡ଼, ଅତୁଳୀନୀୟ ।'

ପ୍ରଶ୍ନ-୬୮. ବଳିଙ୍କ କୁଳ ଗୋତ୍ର ପ୍ରଶଂସା କରି କରି ଶେଷରେ କି ଦୁର୍ଲ୍ଲଭ ଜିନିଷ ମାଗିଲେ ଲକ୍ଷ୍ମୀପତି ଶ୍ରୀ ବିଷ୍ଣୁ ?

**ତସ୍ମାତ୍ ତ୍ୱତ୍ତୋ ମହୀଂ ଈଷତ୍ ବୃଣେଽହଂ ବରଦ-ଋଷଭାତ୍ ।**
**ପଦାନି ତ୍ରୀଣି ଦୈତ୍ୟେନ୍ଦ୍ର ସଂମ୍ମିତାନି ପଦା ମମ ॥୧୬॥**

ଉ. ମାଗିଲେ, 'ହେ ଅସୁର ରାଜ ! ମୁଁ ଧନ, ସଂପତ୍ତି, ଘୋଡ଼ା ହାତୀ, ରାଜ ସିଂହାସନ ମାଗୁନି । ମାଗୁଛି ମୋ ଆଶ୍ରମ ନିର୍ମାଣ ଲାଗି ମୋ ନିଜ ପାଦ ମାପରେ ତିନି ପାଦ ଭୂମି କେବଳ । ତୁମେ ଶ୍ରେଷ୍ଠ ଦାନୀ (ବରଦ ଋଷଭ) ବୋଲି ସାରା ଜଗତ୍ ଜାଣେ । ଆଶାକରେ ମୋତେ ନିରାଶ କରିବନି । ମୁଁ ତ ବ୍ରହ୍ମଚାରୀ । ଯେତିକି ଦରକାର ସେତିକି ମାତ୍ର ମାଗୁଛି । ଅଧିକ ପ୍ରତିଗ୍ରହ (ସଂଗ୍ରହ) ବ୍ରହ୍ମଚାରୀ ପ୍ରତି ବିପଦର କାରଣ ହୋଇଥାଏ ।'

ପ୍ରଶ୍ନ-୬୯. ବଳି ରାଜା ମନେ ମନେ ନିଶ୍ଚୟ ଖୁସୀ ହୋଇ ଥିବେ ଯାହା ହେଉ ଅଳ୍ପକେ ଖସିଗଲି ବୋଲି ?

**ମାଂ ବଚୋଭିଃ ସମାରାଧ୍ୟ ଲୋକାନାଂ ଏକଂ ଈଶ୍ୱରମ୍ ।**
**ପଦ ତ୍ରୟଂ ବୃଣୀତେ ଯୋ ଽବୁଦ୍ଧିମାନ୍ ଦ୍ୱୀପ-ଦାଶୁଷମ୍ ॥୧୯॥**

ଉ.ବଳି ଦାନ ସିନା ଦେଉ ଥିଲେ । ଭୟଙ୍କର ଦେବା ଅହଂକାର ବ୍ୟାଧିରେ ପୀଡ଼ିତ ଥିଲେ ସେ । ପ୍ରଥମେ ଭଗବାନଙ୍କୁ ଅଳ୍ପ ବୁଦ୍ଧିଆ ମୂର୍ଖ କହି ପରେ ନିଜର ପ୍ରଶଂସା କରିବାରେ ମାତିଗଲେ । କହିଲେ, 'ହେ' ବଟୁବ୍ରାହ୍ମଣ ! ଆପଣ କଥା କହୁଛନ୍ତି ଜ୍ଞାନ ବୃଦ୍ଧଙ୍କ ଭଳି କିନ୍ତୁ ଦାନ ମାଗୁଛନ୍ତି ଜଣେ ଅଳ୍ପବୁଦ୍ଧିମାନ ବାଳକ ଭଳି । ନିଜର ହିତ, ସ୍ୱାର୍ଥ ବାଳକ ସିନା ଜାଣେ ନାହିଁ । ଆପଣଙ୍କୁ କ'ଣ ଏ କଥା ବତାଇବାକୁ ପଡ଼ିବ ?'

ମୁଁ ଏ ଚର-ଅଚରାତ୍ମକ ତ୍ରିଭୁବନର ମାଲିକ ଈଶ୍ୱର । ମୋତେ ପ୍ରଶଂସାଦ୍ୱାରା

ପ୍ରସନ୍ନ କରିପାରିଲେ ମୁଁ ନବ ବର୍ଷ ପରିମିତ ଏକ ବିଶାଳ ଦ୍ୱୀପ ଭୂ ଖଣ୍ଡକୁ ଯେ କୌଣସି ଯାଚକକୁ ଦାନ ଦେଇ ପାରେ (ଦାଶୁଷମ୍ ) । ଏ କଥା ଜାଣି ନ ଥିବାରୁ ଆପଣ ମାତ୍ର ତିନି ପାଦ ଭୂମି ମାଗୁଛନ୍ତି । ତାହା ପୁଣି ନିଜର ଟିକି ଟିକି ପାଦରେ!!! ଆପଣ ଜାଣନ୍ତି କି–ମୋ ପାଖରୁ ଯେ ଥରେ ଦାନ ନିଏ ସେ ଏତେ ସଂପତ୍ତି ପାଏ ଯେ, ଆଉଥରେ ମାଗିବାକୁ ସେ ମୋ ପାଖକୁ ଆସେନା କି ଆଉ କାହା ପାଖକୁ ମଧ୍ୟ ଯାଏନା ।'

ପ୍ରଶ୍ନ–୭୦. ଏତେ ଲୋକଙ୍କ ଆଗରେ ବଳିଙ୍କ ମୁଖରୁ ନିଜକୁ ଅଳ୍ପ ବୁଦ୍ଧିଆ, ମୂର୍ଖ ଇତ୍ୟାଦି କହୁଥିବା ଶୁଣିଲେ ଭଗବାନ । ଅପମାନଜନକ କଥା ଗୁଡ଼ାକ ତାଙ୍କୁ କେମିତିକା କେମିତିକା ଲାଗିଲା । ସେ ମଧ୍ୟ ତାଙ୍କ ଟ୍ରମ୍ପ କାର୍ଡ଼ ଦେଖାଇ ଦି' ପଦ ନ ହାଙ୍କି ଛାଡ଼ନ୍ତେ କାହିଁକି ? କହିଲେ, 'ହେ' ରାଜନ୍! ମନ–ବୁଦ୍ଧି ଅସଂଯମୀ ଲୋକ ତ୍ରିଲୋକର ସଂପତ୍ତି ପ୍ରାପ୍ତ ହୋଇ କ'ଣ କେବେ ସନ୍ତୁଷ୍ଟ ରହିପାରେ ? ଯଦି ସେ ତିନି ପାଦ ଭୂମିସ୍ଥିତ ନିଜ ଆଶ୍ରମରେ ଅସନ୍ତୁଷ୍ଟ ହେବ, ତେବେ ଜମ୍ବୁଦ୍ୱୀପ(ପୃଥିବୀ) ଦାନ ପାଇ ମଧ୍ୟ ଶାକ, ଶାଲ୍ମଳୀ, ବକ, କ୍ରୌଞ୍ଚ ଦ୍ୱୀପ ଆଦି ସପ୍ତ ଦ୍ୱୀପ ମାଗି ବସିବ ।

ପୃଥୁ,ଗୟ ଆଦି ଚକ୍ରବର୍ତ୍ତୀ ସମ୍ରାଟଗଣ ଅତୀତରେ ଐଶ୍ୱର୍ଯ୍ୟ ଭୋଗ ପାଇଁ ସମଗ୍ର ସୃଷ୍ଟି ମଧ୍ୟ ମନୁଷ୍ୟ ଲାଗି ଯଥେଷ୍ଟ ନୁହେଁ ବୋଲି କହିଛନ୍ତି । ଅର୍ଥରେ ଓ କାମରେ ଅସନ୍ତୋଷ ହିଁ ଜୀବର ସଂସାର ବନ୍ଧନ ଓ ଜନ୍ମ–ମରଣ ଚକ୍ରରେ ଘୂର୍ଣ୍ଣନର କାରଣ ହୋଇଥାଏ । ବ୍ରାହ୍ମଣ ପାଇଁ ଅର୍ଥ କାମରେ ସନ୍ତୋଷ ତାର ସାଧନା ପାଇଁ କି ସୁବିଧା ସୁଯୋଗ ଆଣିଦିଏ ?'

**ଯଦୃଚ୍ଛା ଲାଭ ତୁଷ୍ଟସ୍ୟ ତେଜୋ ବିପ୍ରସ୍ୟ ବର୍ଦ୍ଧତେ ।**
**ତତ୍ ପ୍ରଶାମ୍ୟତି–ଅସନ୍ତୋଷାତ୍ ଅମ୍ଭସା–ଇବ–ଅଶୁଶୁକ୍ଷଣିଃ ॥୨୬॥**

ଉ. ଅଗ୍ନିରେ (ଅଶୁଶୁକ୍ଷଣିଃ) ଜଳ (ଅମ୍ଭସା) ପକାଇଲେ ଅଗ୍ନି ଶାନ୍ତ ହୋଇଯାଏ । ବ୍ରାହ୍ମଣ ପ୍ରାରବ୍ଧ ଲବ୍ଧ ଜିନିଷରେ ସନ୍ତୁଷ୍ଟ ରହି ପରମାତ୍ମାଙ୍କୁ କୃତଜ୍ଞତା ଜ୍ଞାପନ କରିପାରିଲେ ତାର ଅର୍ଥ–କାମ ଭୋଗର ଲାଳସାର ଗଜା ମରୁଡ଼ି ହୋଇଯାଏ । ଫଳରେ ତାର ଅଲୌକିକ ବ୍ରହ୍ମତେଜ ଉତ୍ତରୋତ୍ତର ବୃଦ୍ଧିପାଏ ।

ସତ୍ତ୍ୱଗୁଣରେ ବଳୀୟାନ ରାଜା ବଳି ଏବେ ବୁଝିଗଲେ ଭଗବାନଙ୍କ କଲ୍ୟାଣକର ଅଭିପ୍ରାୟ । ଅଧିକ ଯୁକ୍ତି ତର୍କ ନ କରି ଶଙ୍ଖରେ ଜଳ ଧାରଣ କଲେ

ସଂକଳ୍ପ ଲାଗି । ହସି ହସି କହିଲେ, 'ଠିକ୍ ଅଛି । ନିଅ ତେବେ ତୁମ ପାଦରେ ମାପି । ଶୁକ୍ରାଚାର୍ଯ୍ୟ ଜଣେ ଆଦର୍ଶ ପୁରୋହିତ । ସେ ଦେଖିଲେ -ଏ ମାଗିବା ଲୋକ ସ୍ୱୟଂ ଶ୍ରୀବିଷ୍ଣୁ । କପଟରେ ଦେବ କାର୍ଯ୍ୟ ସିଦ୍ଧ କରିବାକୁ ଅସିଛନ୍ତି । ମୋ ଯଯମାନ ବଳିର ସବୁ କିଛି ଲୁଟି ନେବେ । ମୋ ପୁରୋହିତ ଗିରି ବୃତ୍ତି ଚଳିବ କେମିତି ?

ପ୍ରଶ୍ନ-୭୧. ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ପବିତ୍ର ଦାନ କ୍ରିୟାରେ ଷଣ୍ଢ ପୂରେଇବାକୁ ଯାଇ କ'ଣ କଲେ ?

**ଏଷ ତେ ସ୍ଥାନଂ ଐଶ୍ୱର୍ଯ୍ୟଂ ଶ୍ରିୟଂ ତେଜୋ ଯଶଃ ଶ୍ରୁତମ୍ ।**
**ଦାସ୍ୟତି ଐଚ୍ଛିଦ୍ୟ ଶକ୍ରାୟ ମାୟା ମାଣବକୋ ହରିଃ ॥୩୨॥**

ଉ. ଶୁକ୍ରାଚାର୍ଯ୍ୟ କହିଲେ, 'ହେ ରାଜା ବଳି! ସାବଧାନ । ଏ ଯାଚକ ସାମାନ୍ୟ ବଟୁବ୍ରାହ୍ମଣ ବାଳକ (ମାଣବକ)ନୁହଁନ୍ତି । ଏ ସର୍ବସ୍ୱ ହରଣ କାରୀ ସ୍ୱୟଂ ଶ୍ରୀହରି ବିଷ୍ଣୁ । କପଟରେ ବଟୁ ବ୍ରହ୍ମଚାରୀ ସାଜିଛନ୍ତି । ଦେବ ହିତକାରୀ, ଅସୁର ବିନାଶକାରୀ । ତୁମର ରାଜ୍ୟ(ସ୍ଥାନଂ) ଧନ ସଂପତ୍ତି, ତେଜ, ଯଶ ଆଦି ସବୁ ତୁମଠାରୁ ମାଗିନେବେ । ଇନ୍ଦ୍ରକୁ (ଶକ୍ରାୟ ) ଦେଇ ଦେବେ ।

ମୋ କଥା ଶୁଣ ଆଉ ମାନ । ତୁମର କଲ୍ୟାଣ ହେବ । ତୁମେ ତୁମ ପାଦରେ ମାପି ତିନି ପାଦ ଭୂମି ଦେଇପାର । କିଛି ଆପତ୍ତି ନାହିଁ ।' ବଳି କହିଲେ, 'ଗୁରୁଦେବ ! ଏଥିରେ ଦାନରେ ମହତ୍ତ୍ୱ ରହିଲା କେଉଁଠି ? ତାଙ୍କ ଇଚ୍ଛାରେ ଆମେ ସିନା ଦାନ ଦେବା ଉଚିତ୍ । ଦୈତ୍ୟଗୁରୁ ପୁଣି କହିଲେ, 'ଦେଖ! ବଳି । ତୁମେ ତାଙ୍କ ପାଦ ମାପରେ ତିନି ପାଦ ଭୂମି ଦେବ କିପରି ? ସେ ଶ୍ରୀବିଷ୍ଣୁ । ହାତୀର ଦେଖାଇବା ଦାନ୍ତ ଅଲଗା । ଖାଇବା ଦାନ୍ତ ଅଲଗା । ସେହିପରି ସେ ଦେଖାଉଛନ୍ତି ଟିକି ଟିକି ପାଦ । ନେଲା ବେଳକୁ ପାଦ ବଡ଼ କରି ଦେବେ । ଗୋଟିଏ ପାହୁଣ୍ଡରେ ସମଗ୍ର ପୃଥିବୀ ଓ ଦ୍ୱିତୀୟ ପାଦରେ ଭୁବଃ, ସ୍ୱଃ ତ୍ରିଲୋକ ମାପି ନେଇ ଯିବେ । ତୁମେ ଜୀବିକା ଚଳାଇବ କିପରି କେଉଁଠି ରହି ? ଏଣେ ମୋ ଛୁଆ ପିଲା କ'ଣ ଦାଣ୍ଡରେ ବସିବେ ? ପୁଣି ଆଗକୁ ଆହୁରି ଭୟଙ୍କର ବିପଦ । ତୃତୀୟ ପାଦ ସେ ତାଙ୍କ ନାଭିକମଳରୁ ବାହାର କରି ଭୂମି ମାଗିଲେ ତୁମେ ଦେବ କେଉଁଠୁ ? ଦାନ ସଂକଳ୍ପ ବଚନ ପୂରା କରି ନ ପାରି ଶେଷରେ ନର୍କ ଗତି ପ୍ରାପ୍ତ ହେବ । ହୋସିଆର ବଳି! ମାୟାବୀଙ୍କ ମାୟାରେ ଜାଣି ଜାଣି ପଡ଼ନାହିଁ । ତୁମର ପିଲାକୁଟୁମ୍ବ ଭାସିଯିବେ । ହାତରୁ ଯିବ । ପୁଣି ପଣତରୁ ଯିବ । ବେଳ ଥାଉ ବନ୍ଧ ବାନ୍ଧ । ନାହିଁ କରି ଫେରାଇ ଦିଅ ଦେଇ ପାରିବିନି କହି । କିଛି ଭାସି ଯିବନି ।'

ପ୍ରଶ୍ନ-୭୨. ଦୈତ୍ୟଗୁରୁ ସିଦ୍ଧ ଶୁକ୍ରାଚାର୍ଯ୍ୟଙ୍କ ମତରେ କେଉଁ ଭଳି ଦାନ ଦେବା ନିରାପଦ ବୋଲି ନିଜ ପ୍ରଣତ ଶିଷ୍ୟ ବଳିଙ୍କୁ ବୁଦ୍ଧି ବତେଇଥିଲେ ?

**ନ ତତ୍ ଦାନଂ ପ୍ରଶଂସନ୍ତି ଯେନ ବୃତ୍ତିଃ ବିପଦ୍ୟତେ ।**
**ଦାନଂ ଯଜ୍ଞଃ ତପଃ କର୍ମ ଲୋକେ ବୃତ୍ତିମତୋ ଯତଃ ॥୩୬॥**

ଉ.ଶୁକ୍ରାଚାର୍ଯ୍ୟ କହିଲେ, 'ହେ' ବଳି ! ଯଦି ନିଜ ଜୀବିକା ବିପନ୍ନ ହେଉଥାଏ ସେ ଦାନ କ'ଣ ଦାନରେ ଲେଖା ? ବୃତ୍ତି, ଜୀବିକା, ସାଧନ ହାତରେ ଥିଲେ ସିନା ଜଣେ ଯଜ୍ଞ ଦାନ, ତପ, କ୍ରିୟା କରିପାରିବ ? ତୁମେ କରୁଥିବା ଦାନ ଆଦୌ ପ୍ରଶଂସନୀୟ କର୍ମ ନୁହେଁ । ବୁଦ୍ଧିମାନର କାର୍ଯ୍ୟ ନୁହେଁ । ବରଂ ନିନ୍ଦନୀୟ କର୍ମ ।'

ପ୍ରଶ୍ନ-୭୩. ନ୍ୟାୟ, ଧର୍ମ ମାର୍ଗରେ ଅର୍ଜିତ ଅର୍ଥକୁ କି' ଭଳି ସଦୁପଯୋଗ କଲେ ଇହଲୋକ ଓ ପରଲୋକ (ଅମୁତ୍ର) ଉଭୟ ଲୋକରେ ଜଣେ ପରମ ଆନନ୍ଦରେ ବିହାର କରେ (ମୋଦତେ) ?

**ଧର୍ମାୟ ଯଶସେଽର୍ଥାୟ କାମାୟ ସ୍ୱଜନାୟ ଚ ।**
**ପଞ୍ଚଧା ବିଭଜନ୍ ବିତ୍ତଂ ଇହ-ଅମୁତ୍ର ଚ ମୋଦତେ ॥୩୭॥**

ଉ. ବୁଦ୍ଧିମାନ ଲୋକ ଅର୍ଜିତ ଧନକୁ ସମାନ ପାଞ୍ଚଭାଗ କରିବ । ଏକ ଅଂଶକୁ ଧର୍ମ ଅର୍ଜନ ଲାଗି, ଅନ୍ୟାନ୍ୟ ଚାରି ଅଂଶକୁ ଯଶ ବୃଦ୍ଧି ଲାଗି, ଧନର ଅଭିବୃଦ୍ଧି ଲାଗି, ନିଜ ଶରୀର ସଂସାର ନିର୍ବାହ ଲାଗି ଓ ବଳକା ଅଂଶକୁ କୁଟୁମ୍ବ, ପରିବାର , ବନ୍ଧୁ ସଙ୍ଗୁଳାଦି କାର୍ଯ୍ୟରେ ବିନିଯୋଗ କରିବା ଉଚିତ୍ ।

କହିଲେ,'ହେ, ଅସୁର ଶିରୋମଣି ! ତୁମେ ଭାବୁଥିବ କାଳେ-ମୁଁ ଦେବି ବୋଲି କହିଛି । ନ ଦେଲେ ଅସତ୍ୟ ପ୍ରତିଜ୍ଞ ହେବି । ଭୟ କରୁଛ କି ? ଶୁଣ । ସଂସାରରେ ଓଁ କେବଳ ସତ୍ୟ । ଅନ୍ୟ ସବୁ ଅସତ୍ୟ । ଦେହ ଭିତରେ 'ଓଁ' ଅଛନ୍ତି । ଅସତ୍ୟ ଶରୀର-ସଂସାରରେ ସତ୍ୟ ଓଁ ନିତ୍ୟ ବିଦ୍ୟମାନ । ଶରୀର ବୃକ୍ଷ ହେଲେ 'ଓଁ'ଫୁଲ ଓ ଫଳ । ଦେହ ରହିଲେ ସିନା ସାଧକ ପୁଣ୍ୟ, ଧର୍ମ, ଅଧ୍ୟାତ୍ମ ବିଦ୍ୟା ଅର୍ଜନ କରିପାରିବ !! ବିନା ବୃକ୍ଷରେ ଫୁଲ, ଫଳ ଆସିବ କୁଆଡୁ ? ଓଁ ଜପ କଲେ ସାଧକର ଧନ-ଆସକ୍ତି ସଂସାର ଆସକ୍ତି କଟିଯାଏ । ସାଧକ ଦାନ କରିବ ଅବଶ୍ୟ କିନ୍ତୁ ଜୀବିକା ହରାଇ ନୁହେଁ । ସର୍ବସ୍ୱ ଦେଇ ନୁହେଁ । ଦେହ ତାର ରକ୍ଷା ହେବ କିପରି ? କି ସାଧନା କରିପାରିବ ସେ ତାର ଶରୀର ସଂସାର ରକ୍ଷା ନ ହେଲେ !!

ଗୃହସ୍ଥ ଧର୍ମରେ ଗୃହରେ ଭିକ୍ଷା ଦେବା ପାଇଁ ଥିଲେ ମଧ୍ୟ ସାବଧାନ ହୋଇ ମଝିରେ ମଝିରେ ନାହିଁ, ଦେବି ନାହିଁ କହିଦେଲେ ଭଲ । ଏହା ଦ୍ୱାରା ଧନ ରକ୍ଷଣ ହୁଏ ଓ ବୃଦ୍ଧି ମଧ୍ୟ ହୁଏ । ତେବେ ସବୁବେଳେ ଏ ଭଳି କହିଲେ ସଂସାରରେ ନିନ୍ଦା ସହିବାକୁ ପଡ଼େ । ଦେଖି ଚାହିଁ କାମ କଲେ ଭଲ ।'

ପ୍ରଶ୍ନ-୭୪. ଅସୁର ଗୁରୁ ହେଲେ ମଧ୍ୟ ଶୁକ୍ରାଚାର୍ଯ୍ୟ ଜଣେ ସଦ୍‌ଗୁରୁଙ୍କ ସମ୍ମାନ ପାଉଥିଲେ । ଏତେ ବୁଦ୍ଧି ବତାଇବା ପରେ ଯେତେବେଳେ ରାଜା ବଳି ଉଁ ଚୁଁ କିଛି କହିଲେନି ଶେଷରେ ସେ' କି କଥା କହି ଭିଟୋ ପ୍ରୟୋଗ କରିବାକୁ ଚେଷ୍ଟା କଲେ ?

**ସ୍ତ୍ରୀଷୁ ନର୍ମ ବିବାହେ ଚ        ବୃତ୍ତି-ଅର୍ଥେ ପ୍ରାଣ ସଂକଟେ ।**
**ଗୋ ବ୍ରାହ୍ମଣ-ଅର୍ଥେ ହିଂସାୟାଂ ନ-ଅନୃତଂ ସ୍ୟାତ୍ ଜୁଗୁପ୍‌ସିତମ୍ ।।୪୩।।**

ଉ. କହିଲେ, 'ସାତ ସ୍ଥାନରେ ମିଥ୍ୟା କହିବା ମଧ୍ୟ ନିନ୍ଦନୀୟ ନୁହେଁ ବୋଲି ଶାସ୍ତ୍ର ପ୍ରମାଣ ଅଛି । ପତ୍ନୀକୁ ପ୍ରସନ୍ନ କରିବା ବେଳେ, ବନ୍ଧୁମାନଙ୍କ ସହିତ ହାସ୍ୟ-ପରିହାସ ବେଳେ, ପୁତ୍ର-କନ୍ୟାଙ୍କୁ ଯୌତୁକ ଦେବା ପ୍ରସଙ୍ଗ ବେଳେ, ନିଜ ଜୀବିକା ରକ୍ଷା ଲକ୍ଷ୍ୟରେ, ନିଜ ଜୀବନ, ପ୍ରାଣ ସଂକଟବେଳେ, ଗୋରୁ କିମ୍ବା ବ୍ରାହ୍ମଣଙ୍କ ହିତ ବା ପ୍ରାଣରକ୍ଷା ଉଦ୍ଦେଶ୍ୟରେ ମିଥ୍ୟା କହିଲେ ଏଇ ସାତ ଯାଗାରେ ଦୋଷ ଲାଗେନା ।

# ଅଥ ୨୦ଶ ଅଧ୍ୟାୟଃ

## (ବଳିଙ୍କର ବ୍ରହ୍ମାଣ୍ଡ ସମର୍ପଣ ଓ ବାମନ ଭଗବାନଙ୍କ ବିଶ୍ୱରୂପ ଧାରଣ)

ପ୍ରଶ୍ନ-୭୫. ରାଜା ବଳି ଗୁରୁଙ୍କ ଧର୍ମ ଉପଦେଶ ଧ୍ୟାନ ଦେଇ ଶୁଣିଲେ । ଶେଷରେ କ'ଣ ସ୍ଥିର କରି ଗୁରୁଙ୍କ ଠାରୁ ପୁଣି କି ପରାମର୍ଶ ଲୋଡ଼ିଲେ ?

ବଳିଃ ଉବାଚ

**ସତ୍ୟଂ ଭଗବତା ପ୍ରୋକ୍ତଂ ଧର୍ମୋଽୟଂ ଗୃହମେଧିନାମ୍ ।**
**ଅର୍ଥଂ କାମଂ ଯଶୋବୃତ୍ତିଂ ଯୋ ନ ବାଧତେ କର୍ହିଚିତ୍ ।।୨।।**

ଉ. ବଳି ବିଚାର କଲେ-ଶାସ୍ତ୍ର କହିଛନ୍ତି ଯେ ଏ ଭଳି ଗୁରୁ ପରିତ୍ୟାଜ୍ୟ ।

**ଗୁରୋଃ ଅପି-ଅବଲିପ୍ତସ୍ୟ କାର୍ଯ୍ୟ-ଅକାର୍ଯ୍ୟଂ ଅଦାନତଃ ।**
**ଉତ୍‌ପଥ ପ୍ରତିପନ୍ନସ୍ୟ ପରିତ୍ୟାଗୋ ବିଧୀୟତେ (ମହାଭାରତ)**

ଅତ୍ୟନ୍ତ ଧନ ଲୋଭୀ (ଅବଲିପ୍ତ), କ୍ରୋଧରେ କାର୍ଯ୍ୟ-ଅକାର୍ଯ୍ୟ ନିର୍ଣ୍ଣୟରେ ଅକ୍ଷମ ଓ କାମୁକ (ଉତ୍‌ପଥ ପ୍ରତିପନ୍ନ) ଗୁରୁଙ୍କୁ ନ ମାନିଲେ କଲ୍ୟାଣ ହୁଏ ।

ପୁଣି ଭାବିଲେ ବାସ୍ତବ ଗୁରୁ ବିଷ୍ଣୁ ଭକ୍ତ ହେବା ଶାସ୍ତ୍ର ନିର୍ଦ୍ଦେଶ ଅଛି ।

**ଷଟ୍ କର୍ମ ନିପୁଣୋ ବିପ୍ରୋ ମନ୍ତ୍ର ତନ୍ତ୍ର ବିଶାରଦଃ ।**
**ଅବୈଷ୍ଣବୋ ଗୁରୁଃ ନ ସ୍ୟାତ୍ ବୈଷ୍ଣବଃ ଶ୍ୱପଚୋ ଗୁରୁଃ (ପଦ୍ମ ପୁରାଣ)**

ମନ୍ତ୍ର, ତନ୍ତ୍ର, ବେଦଜ୍ଞ ଯଦି ଅବୈଷ୍ଣବ ତେବେ ସେ ବାସ୍ତବ ସଦ୍‌ଗୁରୁ ନୁହନ୍ତି । କୁକୁର ମାଂସ ଭକ୍ଷୀ ଚାଣ୍ଡାଳ ବୈଷ୍ଣବ ହେଲେ ସଦ୍‌ଗୁରୁରେ ଗଣ୍ୟ । ଶେଷରେ ରାଜା କହିଲେ, 'ଗୁରୁଦେବ ! ଆପଣ ଯାହା କହୁଛନ୍ତି ଗୃହମେଧୀ ଧର୍ମରେ ଧର୍ମ-ଅର୍ଥ-କାମ ତିନି ଲକ୍ଷ୍ୟ ପୂରଣ ଲାଗି ତାହା ବିଲକୁଲ୍ ସତ୍ୟ । ଏଥିରେ ଦାତାଙ୍କର ଯଶ ବିର୍ଦ୍ଧିତ ହୁଏ । ବୃତ୍ତି ରକ୍ଷା ମଧ୍ୟ ହୋଇଥାଏ । ମୁଁ ପରା ବିରୋଚନଙ୍କ ପୁତ୍ର ସ୍ୱନାମ ଧନ୍ୟ ହରିଭକ୍ତ ପ୍ରହ୍ଲାଦଙ୍କର ପୌତ୍ର । ଜଣେ ସାଧାରଣ ଲୋକ ଭଳି ମୁଁ କିପରି ଛଳ କପଟ, ନିନ୍ଦନୀୟ ମିଥ୍ୟା ଆଶ୍ରୟରେ ଜଣକୁ ଠକି ପାରିବି ନିଜ ବୃତ୍ତି ବା ଦେହ ରକ୍ଷା ଲାଗି !!! ଆପଣ ମଧ୍ୟ ଶାସ୍ତ୍ରରୁ ଆମକୁ ପଢାଇଛନ୍ତି -ଅସତ୍ୟଠାରୁ ଭଳି ବଡ଼ ଅଧର୍ମ ନାହିଁ । ମା' ଧରିତ୍ରୀ ଘୋଷଣା କରିଛନ୍ତି -ମୁଁ ସବୁ ପାପୀଙ୍କ ଭାରା ସହି ପାରିବି କେବଳ ମିଥ୍ୟାବାଦୀଙ୍କ ବ୍ୟତୀତ ।'

ପ୍ରଶ୍ନ-୭୬. କାହାକୁ ଭୟ କରି ରାଜା ବଳି ଗୁରୁଙ୍କ ଉପଦେଶ ମାନିବାକୁ ପଶ୍ଚାତ୍‌ପଦ ହେଲେ ?

**ନ-ଅହଂ ବିଭେମି ନିରୟାତ୍ ନ-ଅଧନ୍ୟାତ୍ ଅସୁଖ- ଅର୍ଣ୍ଣବାତ୍ ।**
**ନ ସ୍ଥାନ ଚ୍ୟବନାତ୍ ମୃତ୍ୟୋଃ ଯଥା ବିପ୍ର ପ୍ରଲମ୍ଭନାତ୍ ।।୫।।**

ଉ.ବଳି ପୁଣି କହିଲେ, 'ହେ, ଗୁରୁଦେବ! ମୁଁ ନର୍କକୁ ଯିବାକୁ ଭୟ କରୁନାହିଁ (ନିରୟାତ୍)। ଦରିଦ୍ରତାକୁ, ଦୁଃଖ ସମୁଦ୍ରରେ ପଡ଼ିବାକୁ ବା ରାଜ ସିଂହାସନ ହରାଇବାକୁ(ସ୍ଥାନ ଚ୍ୟବନାତ୍) ଏପରି କି ଭୟଙ୍କର ମୃତ୍ୟୁକୁ ମଧ୍ୟ ମୁଁ ତିଳେ ମାତ୍ର ଭୟ କରୁନାହିଁ । ଜଣେ ବ୍ରହ୍ମତେଜୋଦୀପ୍ତ ଭିକ୍ଷାଶୀ ବ୍ରାହ୍ମଣଙ୍କୁ ଠକିବାକୁ ଭୟ କରୁଛି ।

ମଲାବେଳେ ଯଦି ଧନ-ସଂପତ୍ତି-ସିଂହାସନ ସବୁ ଛାଡ଼ିବାକୁ ପଡ଼ିବ, ମରିବା ପୂର୍ବରୁ ସେ ସବୁକୁ ଜଣେ ବ୍ରାହ୍ମଣଙ୍କୁ (ଆପଣଙ୍କ ମତରେ ପ୍ରଚ୍ଛନ୍ନ ବିଷ୍ଣୁଙ୍କୁ ) ଦାନ ଆକାରରେ ପ୍ରଦାନ କରି ମୁଁ ପ୍ରସନ୍ନ ନ ହେବି କାହିଁକି ?'

ପ୍ରଶ୍ନ-୭୭. ପୂର୍ବରୁ ଇତିହାସରେ ଦାନ ଦେବା ବେଳେ ଶରୀର ସଂସାରକୁ କ୍ଷଣ ଭଙ୍ଗୁର, ତୁଚ୍ଛ ବୋଲି କହି ଭାବପ୍ରବଣ ହୋଇ ଅତ୍ୟନ୍ତ ପ୍ରିୟ ଦୁସ୍ତ୍ୟଜ ବସ୍ତୁକୁ ଦେଇ ଦେବାର ଦୃଷ୍ଟାନ୍ତ ଅଛି କି ?

**ଶ୍ରେୟଃ କୁର୍ବନ୍ତି ଭୂତାନାଂ ସାଧବୋ ଦୁସ୍ତ୍ୟଜ-ଅସୁଭିଃ ।**
**ଦଧ୍ୟଙ୍ଗ୍ ଶିବି ପ୍ରଭୃତୟଃ କୋ ବିକଳ୍ପୋ ଧରା -ଆଦିଷୁ ।।୭।।**

ଉ. ଇତିହାସ ଏଭଳି ମହାପୁରୁଷଙ୍କ ନାମ ଓ ଯଶ ସ୍ୱର୍ଣ୍ଣିମ ଅକ୍ଷରରେ କାଳ କାଳକୁ ସାଇତି ରଖିଛି । ଦଧୀଚି, ଯଦୁ, ଶିବି, ବିରୋଚନ, କର୍ଣ୍ଣ, ଆରୁଣୀ, ରନ୍ତିଦେବ ଇତ୍ୟାଦି ଦେହ, ·ଅସ୍ଥି, ପ୍ରାଣ ଏପରି କି ନିଜ ଆୟୁଷ- ଯୌବନ ପର୍ଯ୍ୟନ୍ତ ଦାନ ଦେବାର ଭାରତ ଇତିହାସ ସାକ୍ଷୀ ।

ଏଭଳି ସ୍ଥଳେ ତୁଚ୍ଛ ଭୂମି କିଛି ଦେବାକୁ ମୁଁ ଅନିନ୍ଦନୀୟ କି ନିନ୍ଦନୀୟ ଯାହା ବି ହେଉ ମିଥ୍ୟାର ଆଶ୍ରୟ ନେବି କିଆଁ ? ଅନ୍ୟ ପକ୍ଷରେ ଦେଖନ୍ତୁ, ଗୁରୁଦେବ! ହିରଣ୍ୟ କଶିପୁ, ହିରଣ୍ୟାକ୍ଷ ଆଦି ଦୈତ୍ୟ ଶ୍ରେଷ୍ଠମାନେ ଯୁଦ୍ଧ କରି କାହାକୁ କିଛି ଦାନ ନ ଦେଇ ସବୁ କିଛି ଭୋଗ କରିବାକୁ ଚାହିଁଛନ୍ତି । ଆଜି କାହାନ୍ତି ସେମାନେ ? କାହିଁ ସେମାନଙ୍କର ଦାତା-ଭୋକ୍ତାର ଯଶ କୀର୍ତ୍ତି । ସେ ସମସ୍ତେ ମହାକାଳ ମୁଖରେ ଗ୍ରସିତ ।

ବିଷୟ ଭୋଗ ଲାଳସାରେ ଯୁଦ୍ଧ ଭୂମିରେ ପ୍ରାଣ ତ୍ୟାଗ କରିବା ଲୋକ ବହୁତ ମିଳିବେ । ଯେଉଁ ସାଧୁ, ବୈଷ୍ଣବ ସଂସାରକୁ ମାର୍ଗ ଦର୍ଶନ କରାନ୍ତି-ଅକଥନୀୟ ଯନ୍ତ୍ରଣା ପୀଡ଼ା ସହି ସେମାନଙ୍କୁ କିଛି ମାଗିବା ଜିନିଷ ଦେବା ଲୋକ ସଂସାରରେ ଅତ୍ୟନ୍ତ ବିରଳ ।

ଆପଣଙ୍କ ଭଳି ସତ୍‌ପାତ୍ରରେ କିଛି ଦାନ ଦେଲେ ତ ପୁଣ୍ୟ ହୁଏ । ନିଜ ପାଇଁ କିଛି ନରଖି ସର୍ବସ୍ୱ ଦେଇଦେଲେ ମହାପୁଣ୍ୟ ହୋଇଥାଏ । ତେବେ ଏ ଭଳି ଦୁର୍ଲ୍ଲଭ ସତ୍‌ପାତ୍ର (ଆପଣଙ୍କ ମତରେ ସ୍ୱୟଂ ବିଷ୍ଣୁ)ଙ୍କୁ ଯଦି ସର୍ବସ୍ୱ ଦିଆଯାଇ ପାରେ, ତେବେ କେତେ ଯେ ପୁଣ୍ୟ ହେବ, କିଏ କହିପାରିବ ଗୁରୁଦେବ !!!

ଲୋକେ ଯଜ୍ଞ କରନ୍ତି ବିଷ୍ଣୁଙ୍କୁ ପ୍ରସନ୍ନ କରିବାକୁ । ସେ ତ ଆସି ଏଠାରେ ସ୍ୱୟଂ ଉପସ୍ଥିତ । ସେ ସର୍ବଦା ଜୀବକୁ କୃପାକରିବାକୁ ସୁଯୋଗ ବାହାନା ଖୋଜୁଥାନ୍ତି । କାହାକୁ ଦେଇ କୃପା କରନ୍ତି । କାହାଠାରୁ ନେଇ ମଧ୍ୟ କୃପା କରନ୍ତି । ମୁଁ ଉପର ହାତରେ ଦେବି । ସେ ଯାଚକ ହେଇ ପୁଣି ତଳ ହାତରେ ନେବେ । ଯେତିକି ଯାହା, ଯେମିତି ମାଗୁଛନ୍ତି-ଯାଉଛି ଦେଇ ପକାଇ ନିଶ୍ଚିନ୍ତ ହୋଇଯିବି ।

ଗୁରୁ ଶୁକ୍ରାଚାର୍ଯ୍ୟ ଦେଖିଲେ ବଳି ମୋ ହାତରୁ ଯିବ, ପଣତରୁ ବି ଯିବ । ଅନ୍ୟ ଉପାୟ ନ ଦେଖି ନିଜର ବହୁ କଷ୍ଟ ଲବ୍ଧ ତପସ୍ୟାର ଫଳକୁ କ୍ଷୟ କରିଦେଲେ । ମହାନ୍ ବିଷ୍ଣୁ ଭକ୍ତ ବଳିଙ୍କୁ ଶାପ ଦେଇ । ହାତରେ ଜଳଧରି କହିଲେ,'ଗୁରୁ ଆଦେଶ ଅମାନ୍ୟ ହେତୁ ତୁମେ ଶ୍ରୀ ଭ୍ରଷ୍ଟ ହୁଅ ବଳି ।' ବିନା ପ୍ରତିବାଦରେ ବଳି ମୁଣ୍ଡପାତି ଗ୍ରହଣ କଲେ ଗୁରୁ ଅଭିଶାପ । ଭରସା କେବଳ ଭଗବତ୍ କୃପା । ଶଙ୍ଖରେ ଜଳ ଧାରଣ କରି ସଂକଳ୍ପ କରିବାକୁ ବାହାରିଲେ । ଶୁକ୍ରାଚାର୍ଯ୍ୟ ତଥାପି ମଙ୍ଗ ଛାଡୁ ନାହାନ୍ତି । ମାଛିଟିଏ ହୋଇ ଶଙ୍ଖ ରନ୍ଧ୍ର ବନ୍ଦ କଲେ । ଭଗବାନ ସର୍ବାନ୍ତର୍ଯ୍ୟାମୀ । ସଙ୍ଗେ ସଙ୍ଗେ ଧରିଥିବା କୁଶ ଫୋଡ଼ି ଶୁକ୍ରାଚାର୍ଯ୍ୟଙ୍କ ଗୋଟିଏ ଚକ୍ଷୁ ନଷ୍ଟ କରିଦେଲେ । ସଂସାରକୁ ଏକ ମହାନ୍ ଶିକ୍ଷା ଦେଲେ- ଗୁରୁ ଯଦି ସ୍ୱାର୍ଥ ବୁଦ୍ଧିରେ ଶିଷ୍ୟକୁ ପରମାର୍ଥରୁ ବିଚ୍ୟୁତ କରନ୍ତି ବା କରିବାକୁ ଚେଷ୍ଟା କରନ୍ତି ତାଙ୍କୁ ଏକ ଚକ୍ଷୁ ବିଶିଷ୍ଟ କଣା ଗୁରୁର ସମ୍ମାନ ମିଳିବ ।

ଜଳ ଶଙ୍ଖରୁ ନିର୍ଗତ ହେଲା । ବଳିଙ୍କର ଦାନ ସଂକଳ୍ପ ପର୍ବ ଶେଷ ହେଲା । ପତ୍ନୀ ବିନ୍ଧ୍ୟାବଳି ସ୍ୱର୍ଣ୍ଣ କଳସୀରେ ଗଙ୍ଗାଜଳ ଧରି ଧାଇଁ ଆସିଲେ । ଭଗବାନଙ୍କ ଚରଣ ପ୍ରକ୍ଷାଳନ କରି ପତି-ପତ୍ନୀ ଉଭୟେ ଧୌତ ଜଳକୁ ମସ୍ତକରେ ଧାରଣ କଲେ ଓ କିଛି ଅଂଶ ଶ୍ରଦ୍ଧାରେ ସେବନ କଲେ । ସ୍ୱର୍ଗରେ ଦୁନ୍ଦୁଭି ବାଜିଲା । ଦେବୀ, ଦେବତା, ସିଦ୍ଧ ଗନ୍ଧର୍ବଗଣ ଆନନ୍ଦରେ ପୁଷ୍ପ ବର୍ଷଣ କଲେ । ସେମାନେ ଭାବିଲେ ଭଗବାନଙ୍କ ବଳି ବିଜୟ ଆସନ୍ନ ।

ପ୍ରଶ୍ନ-୭୮. ରାଜା ବଳି ଭୂଃ, ଭୁବଃ, ସ୍ୱଃ ତ୍ରିଲୋକର ଅଧିକାରୀ ଥିଲେ । ବାମନ ଦେବ ତାଙ୍କ ଟିକି ଟିକି ତିନି ପାଦରେ କେତେ ଯାଗା ମାପି ନେଲେ ?

**ତଦ୍ ବାମନଂ ରୂପଂ ଅବର୍ଦ୍ଧତ-ଅଦ୍ଭୁତଂ**
**ହରେଃ ଅନନ୍ତସ୍ୟ ଗୁଣ ତ୍ରୟଂ ଆତ୍ମକମ୍ ।**
**ଭୂଃ ଖଂ ଦିଶୋ ଦ୍ୟୌଃ ବିବରାଃ ପୟୋଧରାଃ**
**ତିର୍ଯ୍ୟକ୍ ନୃ ଦେବାଃ ଋଷୟ ଯତ୍ ଆସତ ॥୨୧॥**

ଉ. ବାମନ ଭଗବାନଙ୍କ ବିଗ୍ରହ ମୃଣ୍ମୟ ନ ଥିଲା । ତାଙ୍କ ଚିନ୍ମୟ ବିଗ୍ରହ ଏବେ ଅତ୍ୟଦ୍ଭୁତ ବିଶ୍ୱରୂପ ହେବାରେ ଲାଗିଲା । ରାଜା ବଳି ତାଙ୍କ ରାଜ୍ୟମାନଙ୍କର ସୀମା-ସରହଦ ଦେଖାଇ ଚାଲିଲେ । ଭଗବାନଙ୍କ ଦିବ୍ୟ ଚରଣ କମଳ ବଢି ଚାଲିଲା । ଗୋଟିଏ ପାଦ ଏତେ ବଢ଼ିଗଲା ଯେ-ସେଥିରେ ସମଗ୍ର ପୃଥ୍ୱୀ, ଅନ୍ତରୀକ୍ଷ, ଦଶ ଦିଗ, ସପ୍ତସମୁଦ୍ର, ସପ୍ତ କୁଳାଚଳ, ମନୁଷ୍ୟ, ଦେବତା, ଋଷି, ସପ୍ତପାତାଳ ଲୋକ ସହିତ ନାଗ ଲୋକ ଓ ତହିଁର ସମସ୍ତ ଅଧିବାସୀ ରହିଗଲେ ।

ତାଙ୍କ ପାଦରେ ପୃଥିବୀ, ପେଣ୍ଡାରେ ପର୍ବତ ସକଳ, ଆଣ୍ଠୁରେ ନଭଚର ପକ୍ଷୀଗଣ, ଜଙ୍ଘରେ ବାୟୁମଣ୍ଡଳ, ବସ୍ତ୍ର ତଳେ ସଂଧ୍ୟା, ଗୁପ୍ତାଙ୍ଗରେ ପ୍ରଜାପତି, କଟୀରେ ପାର୍ଷଦଗଣ ନାଭିରେ ଆକାଶ, ନାଭିଉପରେ ସପ୍ତସିନ୍ଧୁ , ବକ୍ଷରେ ତାରାଗଣ, ହୃଦୟରେ ଧର୍ମ, ପୃଷ୍ଠ ଭାଗରେ ଅଧର୍ମ, ଚତୁର୍ହସ୍ତରେ ଶଙ୍ଖ-ଚକ୍ର-ଗଦା-ପଦ୍ମ ଦୃଶ୍ୟ ହେଲେ । ସୌଭାଗ୍ୟବଶତଃ ବଳି, ଗୁରୁ ଶୁକ୍ରାଚାର୍ଯ୍ୟ, ପତ୍ନୀ ବିନ୍ଧ୍ୟାବଳିଙ୍କ କନ୍ୟା ରତ୍ନାବଳୀଙ୍କ ସହିତ ସମସ୍ତ ସଭା ସଦ୍‌ଗଣ ଏ ଦିବ୍ୟ ରୂପ ଦର୍ଶନ କରିପାରିଲେ ।

ପ୍ରଶ୍ନ-୭୯. ଭଗବାନଙ୍କ ଦ୍ୱିତୀୟ ପାଦ ପାଇଁ ରାଜା ବଳି ଆଉ ଭୂମି କେଉଁଠୁ ଯୋଗାଡ଼ କଲେ ?

**ପଦଂ ଦ୍ୱିତୀୟଂ କ୍ରମତଃ ତ୍ରିବିଷ୍ଟପଂ**
**ନ ବୈ ତୃତୀୟାୟ ତଦୀୟଂ ଅଣୁ-ଅପି ।**
**ଉରୁକ୍ରମସ୍ୟ-ଅଙ୍ଘ୍ରିଃ ଉପରି-ଉପରି -ଅଥୋ**
**ମହଃ ଜନାଭ୍ୟାଂ ତପସଃ ପରଂ ଗତଃ ॥୩୪॥**

ଉ. ଦ୍ୱିତୀୟ ପାଦ ପାଇଁ ସପ୍ତସ୍ୱର୍ଗ (ତ୍ରିବିଷ୍ଟପଂ) ମଧ୍ୟ ନିଅଣ୍ଟ ପଡ଼ିଲା ବଳିଙ୍କ ରାଜ୍ୟର । ଭଗବାନଙ୍କର ତୃତୀୟ ପାଦ ପାଇଁ ତାଙ୍କର ଆଉ ଜମି କାହିଁ ? ସ୍ୱର୍ଗ କଥା ଛାଡ଼ । ମହ-ଜନ-ତପ- ସତ୍ୟ ଲୋକ ସବୁ ଚାଲିଗଲାଣି ମହାଦାନୀ, ତ୍ରିଲୋକ୍ୟାଧିପତି ବଳି ରାଜାଙ୍କର ।

# ଅଥ ୨୧ଶ ଅଧ୍ୟାୟଃ

## (ସର୍ବ ସମର୍ପଣ ପରେ ମଧ୍ୟ ବଳି ବନ୍ଧନ )

### ଶ୍ରୀ ଶୁକଦେବ ଉବାଚ

ପ୍ରଶ୍ନ-୮୦.ବାମନ ଦେବଙ୍କ ନଖ ଚନ୍ଦ୍ରର ଦିବ୍ୟ ତେଜରେ ବ୍ରହ୍ମଲୋକ ହତ ପ୍ରଭ ହେଲା । ଭଗବାନଙ୍କ ବିଶ୍ୱରୂପ ଦର୍ଶନ କରିବା ନିମିତ୍ତ, ବ୍ରହ୍ମାଜୀ, ସନକାଦି ମୁନିଗଣ, ଋଷି, ପ୍ରଜାପତି ଆଦି ଠୁଳ ହେଲେ । ବ୍ରହ୍ମାଜୀ ବ୍ରହ୍ମଲୋକରେ ଭଗବାନଙ୍କ ପାଦ ଧୌତ କଲେ ତାଙ୍କ କମଣ୍ଡଳୁ ଜଳରେ । ସେହି ଧାର ଗଙ୍ଗାଜଳ ହୋଇ ସ୍ୱଃ ଲୋକରେ ପତିତ ପାବନୀ ହୋଇ ସେହିଦିନୁ ପ୍ରବାହିତ ହେଲା ।

ଭଗବାନ ପୁଣି ବାମନ ରୂପ ଗ୍ରହଣ କଲେ । ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ପୁଷ୍ପ ନୈବେଦ୍ୟ ଆଦି ଯୋଗାଡ଼ରେ ଲାଗିଲେ ଦେବୀ ଦେବତା ଗଣ । ସ୍ତବ, ସ୍ତୁତି, ପ୍ରାର୍ଥନା, ପୂଜନ ଚାଲିଲା । ଭାଲୁମାନଙ୍କ ରାଜା ଜାମ୍ବବାନ ବିଗୁଲ୍ ବାଦନ କରି ଭଗବାନଙ୍କ ବିଜୟ ଘୋଷଣା କଲେ । ବଳିରାଜା ସକଳ ଐଶ୍ୱର୍ଯ୍ୟ ଶୂନ୍ୟ ହୁଅନ୍ତେ ଦୈତ୍ୟମାନେ ଦୁଃଖିତ ହେଲେ । କୁହାକୋହି ହେଲେ, ଏ ସାମାନ୍ୟ ବଟୁ ବ୍ରାହ୍ମଣ ନୁହନ୍ତି । ମହା କପଟୀ ବିଷ୍ଣୁ ନିଶ୍ଚୟ । ଭିକ୍ଷୁକ ବେଶରେ ଆସି ଆମ ରାଜାଙ୍କର ସର୍ବ ସଂପଦ ଲୁଟିନେଲେଣି । ଆମ ରାଜା ଯଜ୍ଞବ୍ରତ ଧାରଣ କରିଥିବାରୁ କାହାରିକୁ ଦଣ୍ଡଦେବା ଶକ୍ତି ପ୍ରୟୋଗ କରିପାରୁ ନାହାନ୍ତି । ଆମ ରାଜା ସତ୍ୟବାଦୀ, ଯଜ୍ଞ ଦୀକ୍ଷିତ, ବ୍ରାହ୍ମଣ ସେବକ । ସୁତରାଂ ସେ କେବେ ମିଥ୍ୟା କହିବେ ନାହିଁ । ସଂକଳ୍ପ ଭଙ୍ଗ କରିବେ ନାହିଁ । ସେମାନେ ହତିଆର ଉଠାଇଲେ ତାଙ୍କ ରାଜାଙ୍କ ଶତ୍ରୁ ଭଗବାନଙ୍କୁ ହତ୍ୟା କରିବାକୁ । ଏ କାଣ୍ଡ ଦେଖି ବିଷ୍ଣୁପାର୍ଷଦମାନେ ହସିଲେ । ସେମାନେ ମିଳିତ ହୋଇ ଅସୁରମାନଙ୍କୁ ମଧ୍ୟ ଆକ୍ରମଣ କଲେ ।

ପରିସ୍ଥିତି ପୁଣି ଯୁଦ୍ଧ ଆଡ଼କୁ ମୁହାଁଇବା ଦେଖି ରାଜା ବଳି କ'ଣ କଲେ ?

**ଯଃ ପ୍ରଭୁଃ ସର୍ବଭୂତାନାଂ ସୁଖ ଦୁଃଖ-ଉପପତ୍ତୟେ ।**
**ତଂ ନ-ଅତିବର୍ତ୍ତିତୁଂ ଦୈତ୍ୟାଃ ପୌରୁଷୈଃ ଈଶ୍ୱରଃ ପୁମାନ୍ ॥୨୦॥**

ଉ. ବଳି ତାଙ୍କ ସେନାପତିମାନଙ୍କୁ ପାଖକୁ ଡ଼ାକି ପରାମର୍ଶ ଦେଇ କହିଲେ, 'ହେ' ବିପ୍ରଚିତ୍ତି ରାହୁ,ନେମି ! ମୋ କଥା ଟିକିଏ ଶୁଣ । ଯୁଦ୍ଧ କରନାହିଁ । କାଳ ଆମର ଅନୁକୂଳ ନୁହେଁ । ଯେଉଁ ଶ୍ରୀହରି ବିଷ୍ଣୁ ଜୀବର ସୁଖ ଦୁଃଖର ବିଧାନ ଓ ହରଣ କର୍ତ୍ତା

(ଉପପତ୍ତଯେ) ବ୍ରହ୍ମା-ଶଙ୍କର ଆଦିଙ୍କ ନିୟନ୍ତ୍ରଣ କର୍ତ୍ତା ତାଙ୍କୁ ଯୁଦ୍ଧରେ ଜିଣିବାକୁ ଇଚ୍ଛା କରିବା ଯେ କୌଣସି ଜୀବ ପକ୍ଷରେ ଦୁଃସାହସ ମାତ୍ର । ପୂର୍ବେ ଯେଉଁ କାଳ ଦେବତା ମାନଙ୍କ ପ୍ରତିକୂଳ ଥିବାରୁ ଆମେ ସେମାନଙ୍କୁ ଅକ୍ଳେଶରେ ଜିଣିଯାଇ ଥିଲେ, ସେହି କାଳ ଏବେ ଆମର ପ୍ରତିକୂଳ । ଆମେ ହାରି ଯିବା ନିଶ୍ଚୟ ।'

ପ୍ରଶ୍ନ-୮୧. କାଳର କାଳ ମହାକାଳ ହେଉଛନ୍ତି ସ୍ୱୟଂ ନାରାୟଣଙ୍କର ଏକ ଦୁର୍ଜ୍ଜୟ ଶକ୍ତି । କେଉଁ କେଉଁ ଉପାୟରେ କାଳକୁ ଜିଣିପାରିବା ଅସମ୍ଭବ ବୋଲି ରାଜା ବଳି ତାଙ୍କ ସେନାପତି ମାନଙ୍କୁ ବୁଝାଇଲେ ?

**ବଳେନ ସଚିବୈଃ ବୁଦ୍ଧ୍ୟା ଦୁର୍ଗୈଃ ମନ୍ତ୍ର ଔଷଧ-ଆଦିଭିଃ ।**
**ସାମ-ଆଦିଭିଃ ଉପାୟୈଃ ଚ କାଳଂ ନ -ଅତ୍ୟେତି ବୈ ଜନଃ।।୨୨।।**

ଉ. ବଳି କହିଲେ, 'ସେ ମହାକାଳ ଶକ୍ତିକୁ କୌଣସି ଜୀବ ଶାରୀରିକ ବଳ ଦ୍ୱାରା, ମନ୍ତ୍ରଣା ଦ୍ୱାରା, କିଲ୍ଲା ଆଶ୍ରୟରେ ରହି, ମନ୍ତ୍ର ଦ୍ୱାରା ଔଷଧୀ, ଜଡ଼ି ବୁଟି, ପ୍ରୟୋଗ କରି , କିମ୍ବା ସାମ-ଦାନ-ଦଣ୍ଡ-ଭେଦ କୂଟ ନୀତି ପ୍ରୟୋଗ କରି ପରାସ୍ତ କରି ନ ପାରେ । ସୁତରାଂ ଅନୁକୂଳ କାଳକୁ ଅପେକ୍ଷା କର ।' ଅସୁରମାନେ ରସାତଳ ଲୋକରେ ଏବେ ଆତ୍ମଗୋପନ କଲେ । ଅସମାପ୍ତ ଯଜ୍ଞ ସମାପ୍ତ କଲେ ପୁରୋହିତମାନେ । ଭଗବାନ ଏଥର ଗରୁଡ଼ଙ୍କୁ ପଠାଇ ବଳିଙ୍କୁ ବନ୍ଧନ କଲେ ତୃତୀୟପାଦ ଦାନ ନ ଦେଇପାରି ସଂକଳ୍ପ ଭଙ୍ଗ କରିବାରୁ ।

ପ୍ରଶ୍ନ-୮୨. ଭଗବାନ ଅସୁର ଶିରୋମଣି ବଳିଙ୍କୁ କ'ଣ କହି ବନ୍ଧନ କଲେ ?

**ପଦାନି ତ୍ରୀଣି ଦତ୍ତାନି ଭୂମେଃ ମହ୍ୟଂ ତ୍ୱୟା-ଅସୁର ।**
**ଦ୍ୱାଭ୍ୟାଂ କାନ୍ତା ମହୀ ସର୍ବା ତୃତୀୟଂ ଉପକଳ୍ପୟ ।।୨୯।।**

ଉ. କହିଲେ, 'ହେ' ରାଜା ! ତୁମେ ତିନି ପାଦ ଭୂମି ଦେବାକୁ ସତ୍ୟ କରିଥିଲ । ମୁଁ ଦୁଇ ପାଦରେ ତୁମର ସକଳ ରାଜ୍ୟ ମାପି ନେଲି । ଏବେ ତୃତୀୟ ପାଦ ପାଇଁ ଭୂମି ଦାନ ବ୍ୟବସ୍ଥା ନ କରିବା ପର୍ଯ୍ୟନ୍ତ ବରୁଣ ପାଶରେ ବନ୍ଧନରେ ରହିଥାଅ ।

ଅବଶ୍ୟ ତୁମେ ଇନ୍ଦ୍ରଙ୍କ ସ୍ୱର୍ଗ ରାଜ୍ୟ, ସୂର୍ଯ୍ୟମଣ୍ଡଳ, ଚନ୍ଦ୍ରମଣ୍ଡଳ, ସମଗ୍ର ଆକାଶ ମଣ୍ଡଳ ଦଶ ଦିଗ ଦେଇ ସାରିଛ । ଐଶ୍ୱର୍ଯ୍ୟ ବଡ଼ାଇ କରି ମାଗିବା ବସ୍ତୁ ସବୁକୁ ନିଶ୍ଚୟ ଦେବାକୁ ପ୍ରତିଶ୍ରୁତି ଦେଲ । ଏବେ ତାହା ନ ଦେଇ ପାରି କିଛି କାଳ ଯାଇ ନର୍କ ଦଣ୍ଡ ଭୋଗ କରିପାର ।'

ଏ ପର୍ଯ୍ୟନ୍ତ ଦାତା, ଗ୍ରହୀତା ଉଭୟେ ଖୁସୀ ହେଉଥିଲେ । ବଳି ଭାବୁଥିଲେ ଭଗବାନଙ୍କର ନେବାକୁ ଆଉ ତୃତୀୟ ପାଦ ନାହିଁ । ମତେ ଆଉ କିଛି ଦେବାକୁ ପଡ଼ିବ ନାହିଁ । ଖସିଗଲି ମୁଁ ସଂକଳ୍ପ ଭଙ୍ଗ ପାପରୁ । ଭଗବାନ ମଧ୍ୟ ଖୁସୀ ହେଉଥିଲେ ବଳିର ମୁଁ ସର୍ବ ସଂପଦ ନେଇ ସାରିଲିଣି । ତାର ଆଉ ଦେବାକୁ କିଛି ନାହିଁ । ହେଲେ ଦେଖାଗଲା ଭକ୍ତ-ଭଗବାନ ଉଭୟେ କୁହୁଡ଼ି ପହଁରୁଛନ୍ତି ।

## ଅଥ ୨୨ଶ ଅଧ୍ୟାୟଃ

## (ବଳିମହାରାଜଙ୍କ ଦ୍ୱାରା ସ୍ୱ-ସମର୍ପଣ ଏବଂ ଭଗବାନଙ୍କ ପରାଜୟ)

ପ୍ରଶ୍ନ-୮୩. ବଳି କହିଲେ, 'ହେ' ପ୍ରଭୋ ! (ଉତ୍ତମ ଶ୍ଳୋକ) ଆପଣଙ୍କର ନେବାକୁ ଆଉ ପାଦ ନାହିଁ । ଥିଲେ ସିନା ମୁଁ ଦେଇଥାନ୍ତି ।' ଭଗବାନ ଚଟ୍‌କିନି କହିଲେ, 'ମୋର ପାଦ ଅଛି । ହେଇ ଦେଖ ।' ଭକ୍ତରାଜ ବଳି ଆହୁରି ପାଦେ ଆଗକୁ ବଢ଼ି କହିଲେ, 'ମୋର ଜମି ମଧ୍ୟ ଅଛି ।' କିଛିତ ନ ଥିଲା । ବଳି ଆଉ କେଉଁ ଜମି ଯାଚିଲେ ଭଗବାନଙ୍କୁ ?

ବଳିଃ ଉବାଚ

**ଯଦି-ଉତ୍ତମ ଶ୍ଳୋକ ଭବାନ୍ ମମ-ଈରିତମ**
**ବଚୋବ୍ୟଳୀକଂ ସୁରବର୍ଯ୍ୟ ମନ୍ୟତେ ।**
**କରୋମି ଋତଂ ତତ୍ ନ ଭବେତ୍ ପ୍ରଲମ୍ଭନଂ**
**ପଦଂ ତୃତୀୟଂ କୁରୁ ଶୀର୍ଷ୍ଣି ମେ ନିଜମ୍ ।।୨।।**

ଉ. ବଳି ରାଜା ସପ୍ରେମ ନିବେଦନ କଲେ ଭଗବାନଙ୍କୁ । କହିଲେ, 'ହେ' ଦେବତାମାନଙ୍କ ପୂଜନୀୟ ଦେବ । ମୁଁ କେବେ ବି ସଂକଳ୍ପକୁ ମିଥ୍ୟା କରିପାରିବି ନାହିଁ । ମୋର ଏକ ଏକାନ୍ତ ପ୍ରାଇଭେଟ୍ ରାଜ୍ୟ ଅଛି । ଯାହା ମୋର ନିଜସ୍ୱ ଭୂମି । ଜନ୍ମ-ଜନ୍ମାନ୍ତରର ସାଇତା ସଂପଦ । ମୋର ମସ୍ତିଷ୍କ ସ୍ଥିତ ଅହଂକାର । କୃପାକରି ମୋ ମସ୍ତକ ଉପରେ ଆପଣ ନିଜର ତୃତୀୟ ଚରଣ କମଳ ସ୍ଥାପନ କରି ମାପି ନିଅନ୍ତୁ ।

ହେ ପ୍ରଭୋ ! ମୁଁ ଆପଣଙ୍କ ଭକ୍ତର ଭକ୍ତ । ଭକ୍ତ ପ୍ରହ୍ଲାଦ ଓ ବିରୋଚନଙ୍କ

ଭକ୍ତ ଅଟେ । ମୁଁ ଯମ ଲୋକ, ନର୍କ ଯନ୍ତ୍ରଣା, ସଂସାର ଭୟ କାହାକୁ ମଧ୍ୟ ଭୟ କରେ ନା । ଭୟ କରେ କେବଳ ବ୍ରାହ୍ମଣଙ୍କ ଅସନ୍ତୋଷ ଜନିତ ଅପକୀର୍ତ୍ତିକୁ । ଆପଣଙ୍କ ଦ୍ୱାରା ବରୁଣ ପାଶରେ ବଦ୍ଧ ହୋଇ ଦଣ୍ଡିତ ହୋଇ ଆଜି ମୁଁ ନିଜକୁ ଧନ୍ୟ ମନେ କରୁଛି । କାହିଁକି ଜାଣନ୍ତି କି ? ଆମେ ମାନେ ବିଷୟୀ ମାୟାବଦ୍ଧ ସାମାନ୍ୟ ଜୀବ । ଆମର ନିଜର ଭଲ ମନ୍ଦ ଆମେ ନିଜେ ଜାଣୁନା । ଆମ ମାନଙ୍କୁ ଆପଣ ଦୁଃଖ, କଷ୍ଟ ଦଣ୍ଡ ଆଦି ଦେଇ ଆମର ସଂସାର ଭୋଗ ଆସକ୍ତି ଛଡ଼ାଇବା କ'ଣ ସାମାନ୍ୟ କୃପା କି ? ଆଦୌ ନୁହେଁ । ଏହା ତ ଅତ୍ୟନ୍ତ ମହତ୍ କୃପା ଆମ ଉପରେ ।

ମୁଁ ବନ୍ଧନରେ ପଡ଼ି ଆଦୌ ଦୁଃଖିତ ନୁହେଁ । ଲଜ୍ଜିତ ମଧ୍ୟ ନୁହେଁ । ଧନ-ଦାରା-ସୁତ-ଦେହ ସବୁ ତ ଆପଣଙ୍କ ନିଜ ସମ୍ପତ୍ତି । ଦରକାର ବେଳେ ଆପଣ ଆମଠାରୁ ଯଦି କିଛି ମାଗି ନିଅନ୍ତି ଆମେ ତ ଖୁସୀ ହେବା କଥା ! !'

ପ୍ରଶ୍ନ-୮୪. ଶାସ୍ତ୍ର କହନ୍ତି- ଯେଉଁ କୁଳରେ ବୈଷ୍ଣବଟିଏ ଜନ୍ମ ଲାଭ କରନ୍ତି, ପିତୃଲୋକରେ, ସ୍ୱର୍ଗ ଲୋକରେ ତାଙ୍କ ପିତା-ପିତାମହ ଆଦି ସପ୍ତ ପୁରୁଷ ଆନନ୍ଦରେ ନୃତ୍ୟ କରି ବିଭୋର ହୁଅନ୍ତି । ଏଠାରେ ରାଜା ବଳି ଭଗବାନ ବିଷ୍ଣୁଙ୍କୁ ପ୍ରସନ୍ନ କରିପାରି ଥିବାରୁ ତାଙ୍କ ପୂର୍ବଜ ମାନେ କ'ଣ ଖୁସୀ ହେଲେ କି ?

ଶ୍ରୀଶୁକ ଉବାଚ

**ତସ୍ୟ ଇତ୍ଥଂ ଭାଷମାଣସ୍ୟ ପ୍ରହ୍ଲାଦୋ ଭଗବତ୍ ପ୍ରିୟଃ ।**
**ଆଜଗାମ କୁରୁଶ୍ରେଷ୍ଠ ରାକା ପତିଃ ଇବ-ଉତ୍ଥିତଃ ||୧୨||**

ଉ. ରାଜା ବଳି ଭଗବାନଙ୍କୁ ଏହି ଭଳି ଅଲୌକିକ କୃପା ପାଇଁ କୃତଜ୍ଞତା ଜଣାଉ ଥିବା ବେଳେ ତାଙ୍କ ପିତାମହ ହରିଭକ୍ତ ଶିରୋମଣି ପ୍ରହ୍ଲାଦ ମହାରାଜଜୀ ସେଠାରେ ପ୍ରକଟ ହୋଇଗଲେ (ଆଜଗାମ) ଅଫୁରନ୍ତ ଆନନ୍ଦ ଲହରୀ ଖେଳାଇ । ସେତେବେଳେ ମନେ ହେଲା ସତେ ଯେପରି ମିଞ୍ଜି ମିଞ୍ଜି ଜଳୁଥିବା ନକ୍ଷତ୍ର ମାନଙ୍କ ମଧ୍ୟରେ ରାକାପତି ଚନ୍ଦ୍ରଦେବ ଉଦୟ ହେଲେ କି ଆଉ ! ! !

ବଳିରାଜା ବନ୍ଧନରେ ଥାଇ ସାଦର ପ୍ରଣାମ ଜଣାଇଲେ ହରିଭକ୍ତ ପ୍ରହ୍ଲାଦଜୀଙ୍କୁ । ପ୍ରହ୍ଲାଦଜୀ ମଧ୍ୟ ଭୂମିଷ୍ଠ ନମସ୍କାର କଲେ ବାମନ ଭଗବାନଙ୍କୁ । ସେ ଗଦ୍‌ଗଦ୍ କଣ୍ଠରେ ଭଗବାନଙ୍କୁ କହିଲେ, 'ହେ' ଭଗବାନ ! ବଳିକୁ ସ୍ୱର୍ଗ ରାଜ୍ୟ ଦେବା ଓ ଠିକଣା ସମୟ ଦେଖି ତାଙ୍କ ଠାରୁ ସ୍ୱର୍ଗ ସିଂହାସନ କାଢ଼ି ନେବା ଉଭୟରେ ଆପଣଙ୍କ କୃପା ନିହିତ । ଇନ୍ଦ୍ର ପଦ ଆଦି ଐଶ୍ୱର୍ଯ୍ୟ ଏତେ ମୋହ ଆସକ୍ତି ଉତ୍ପାଦକ

ଯେ, ମହା ମହା ପଣ୍ଡିତ ମାନେ ମଧ୍ୟ ଅକଲ୍ ହରାଇ ବସନ୍ତି । ସେ ପରିସ୍ଥିତିରେ ଜଣେ ମୋହ ଆସକ୍ତ ବିଷୟୀ ଲୋକ ଆତ୍ମସାକ୍ଷାତ୍କାର ଉପାୟ ଖୋଜିବ କୁଆଡୁ ?'

ଏବେ ମହାରାଣୀ ବିନ୍ଧ୍ୟାବଳୀ ଭଗବାନଙ୍କୁ ସାଦର ନମସ୍କାର ଜଣାଇଲେ । କହିଲେ, 'ଏ ସଂସାର ଆପଣ ସୃଷ୍ଟି କରିଛନ୍ତି ଆପଣଙ୍କ ଲୀଳା ବିନୋଦ ଲାଗି । କ୍ଷୁଦ୍ର ଜୀବ, ରାଜାଟିଏ କି ସାମାନ୍ୟ ଇନ୍ଦ୍ରଟିଏ ହୋଇଗଲେ ଭାବୁଛି ଏ ସବୁ ମୋ ଭୋଗ ପାଇଁ ଖଞ୍ଜାଯାଇଛି । ସବୁକୁ ମୁଁ-ମୋର-ମୋ ପାଇଁ ଭାବି ବନ୍ଧନରେ ପଡୁଛି । ଆପଣ ମୋ ପତିଦେବଙ୍କୁ ବନ୍ଧନ କରିଛନ୍ତି ନିଶ୍ଚୟ କୃପା କରିବା ଲାଗି ।'

ପ୍ରଶ୍ନ-୮୫. ବଳି ରାଜାଙ୍କର ଏ ଭଳି ସଂକଟମୟ ମୁହୂର୍ତ୍ତରେ ସୃଷ୍ଟି କର୍ତ୍ତା ବ୍ରହ୍ମଦେବ କିପରି ନୀରବ ଦ୍ରଷ୍ଟା ସାଜିଲେ ?

ଶ୍ରୀବ୍ରହ୍ମା ଉବାଚ

**ଭୂତ ଭାବନ ଭୂତ-ଈଶ ଦେବ ଦେବ ଜଗତ୍ ମୟ ।**
**ମୁଞ୍ଚ-ଏନଂ ହୃତ ସର୍ବସ୍ୱଂ ନ-ଅୟଂ ଅର୍ହତି ନିଗ୍ରହମ୍ ॥୨୧॥**

ଉ. ନୀରବଦ୍ରଷ୍ଟା ସାଜିଲେ କେତେବେଳେ ? ସେ ତ' ବଳିଙ୍କ ପାଇଁ ଓକିଲାତି କରିବାକୁ ଅଣ୍ଟା ଭିଡ଼ିଲେ । ଭଗବାନଙ୍କୁ ନିବେଦନ କଲେ, 'ହେ' ସର୍ବଜୀବ ପାଳକ (ଭୂତ ଭାବନ) ! ସକଳ ଜୀବଙ୍କ ପ୍ରାଣାଧାର, ସର୍ବଦେବ ବନ୍ଦନୀୟ, ବିଶ୍ୱାତ୍ମା, ଦୟାକରି ବଳିଙ୍କୁ ଏବେ ବନ୍ଧନ ମୁକ୍ତ କରନ୍ତୁ । ତାର ଆପଣ ସର୍ବସ୍ୱ ନେଇ ସାରିଲେଣି । ସେ ଏଣିକି ଅନ୍ୟ କୌଣସି ଦଣ୍ଡର (ନିଗ୍ରହମ୍) ପାତ୍ର ନୁହନ୍ତି ।

ରାଜା ବଳି ତ୍ରିଲୋକ ବିଜୟୀ ଥିଲେ । ସେ ତାଙ୍କର ତ୍ରିଲୋକ ସହିତ ନିଜ ସ୍ୱ (ଅହଂକାର) ମଧ୍ୟ ଦାନ କଲେଣି ନିଜ ମସ୍ତକ ଉପରେ ଆପଣଙ୍କ ଚରଣ କମଳ ରଖାଇ । ସେ ଏସବୁ କରିଛନ୍ତି ଉଦାର ହୃଦୟରେ, ଆପଣଙ୍କୁ ପ୍ରସନ୍ନ କରାଇବା ଲକ୍ଷ୍ୟରେ । ସେ ଆପଣଙ୍କର ସଂପୂର୍ଣ୍ଣ ଶରଣାଗତ ଭକ୍ତ ।'

ପ୍ରଶ୍ନ-୮୬. ଭଗବାନ ଶ୍ରୀମନ୍ ନାରାୟଣଙ୍କ ଲୀଳା ଏ ଭଳି ଦୁର୍ବୋଧ ଯେ -ସ୍ୱୟଂ ବ୍ରହ୍ମଦେବ ମଧ୍ୟ ଏହାର ରହସ୍ୟ ଭେଦ କରିବାରେ ଅସମର୍ଥ । ବଳି ବନ୍ଧନ ଲୀଳାର ରହସ୍ୟ ବୁଝାଇବା ପାଇଁ ବ୍ରହ୍ମାଜୀଙ୍କୁ କ'ଣ କହିଲେ ?

ଶ୍ରୀ ଭଗବାନ ଉବାଚ

**ବ୍ରହ୍ମନ୍ ଯଂ ଅନୁଗ୍ରହ୍ଣାମି ତଦ୍ ବିଶୋ ବିଧୁନୋମି-ଅହମ୍ ।**
**ଯତ୍ ମଦଃ ପୁରୁଷଃ ସ୍ତବ୍ଧୋ ଲୋକଂ ମାଂ ଚ-ଅବମନ୍ୟତେ ॥୨୪॥**

ଉ. କହିଲେ, 'ହେ' ସୃଷ୍ଟିକର୍ତ୍ତା ବ୍ରହ୍ମଦେବ ! ମୋ ଭକ୍ତକୁ ସବୁ ଦେଇ ଓ ଭକ୍ତ ଠାରୁ ସବୁ ଛଡ଼ାଇ (ବିଧୁନୋମି) ନେଇ ଉଭୟରେ ପରୀକ୍ଷା କରେ ସଂସାର ଆସକ୍ତି ତା'ର ଅଛି କି ନା  କାରଣ ଐଶ୍ୱର୍ଯ୍ୟ ମଦରେ ଜୀବ ଏତେ ମତୱାଲା (ସ୍ତବ୍ଧୋ) ହୋଇ ଯାଏ ଯେ-ସେ ଇନ୍ଦ୍ର-ଚନ୍ଦ୍ର-ବ୍ରହ୍ମା-ଶଙ୍କର କ'ଣ ମୋତେ ମଧ୍ଯ ତିରସ୍କାର କରି ବସେ ।

ତେଣୁ ମୁଁ ଯାହାକୁ କୃପା କରେ ତାର ସର୍ବସ୍ୱ ଛଡ଼େଇ ନେଇ ତାର ଧୈର୍ଯ୍ୟ,ସହନଶୀଳତା ଗୁଣର ପରୀକ୍ଷା କରିଥାଏ । ଏତିକି ଜାଣନ୍ତୁ ଆପଣ ।'

ପ୍ରଶ୍ନ-୮୭. ଏହି ମୁଁ -ମୋର-ମୋ ପାଇଁ ମାୟା ଜାଲରୁ ବିଷୟୀ ଜୀବକୁ ଉଦ୍ଧାର କରିବାପାଇଁ ଶ୍ରୀମନ୍ ନାରାୟଣ କି ଉପାୟ ନିର୍ଦ୍ଧାରଣ କରିଛନ୍ତି  ?

**ଯଦା କଦାଚିତ୍ ଜୀବାତ୍ମା ସଂସରନ୍ ନିଜ କର୍ମଭିଃ ।**
**ନାନା ଯୋନିଷ୍ୱ-ଅନୀଶୋଽୟଂ ପୌରୁଷୀଂ ଗତିଂ ଆବ୍ରଜେତ୍ ॥୨୫॥**

ଉ. ବାମନ ଦେବ କହିଲେ, 'ବିଷୟସୁଖ ଭୋଗ ଲୋଭରେ ଜୀବ ସକାମ କର୍ମ କରି କରି ଚଉରାଶି  ଲକ୍ଷ ଯୋନି ଭ୍ରମଣ (ସଂସରନ୍) କରୁଥାଏ । ମାୟା (ଅନୀଶୋ) ଦ୍ୱାରା ସେ ବୁଝିପାରେ ନା ଆତ୍ମସାକ୍ଷାତ୍କାର ନ କରିବା ହିଁ ତା ଦୁଃଖର ଅସଲି କାରଣ ।

କେବେ କେବେ ମୁଁ କୃପାକରି ତାକୁ ମଣିଷ ଶରୀର (ପୌରୁଷୀଂ ଗତିଂ ) ଟିଏ ଦେଇଥାଏ ବିଚରା ମୋତେ ଖୋଜିବ ପରା !! ସେ ଖୋଜିଲେ ମୁଁ ହାଜର!!!

ପ୍ରଶ୍ନ-୮୮. ଭଗବାନଙ୍କର ଏହି କୃପା ସକଳ ଜୀବଙ୍କ ପ୍ରତି ସମାନ ଭାବରେ ହୁଏ ନା ଏଥିରେ ପୁଣି ସମାାନ୍ୟ କୃପା ବିଶେଷ କୃପା ଭଳି କିଛି-ପାତର-ଅନ୍ତର ଥାଏ  ?

**ଜନ୍ମ କର୍ମ ବୟୋ ରୂପ ବିଦ୍ୟା-ଐଶ୍ୱର୍ଯ୍ୟ ଧନ-ଆଦିଭିଃ  ।**
**ଯଦି-ଅସ୍ୟ ନ ଭବେତ୍ ସ୍ତମ୍ଭଃ ତତ୍ର- ଅୟଂ ମଦ୍ ଅନୁଗ୍ରହଃ ॥୨୬॥**

ଉ. ହଁ ହଁ ସେ ନିଶ୍ଚୟ ପାତର-ଅନ୍ତର କରନ୍ତି । ତାର ମଧ୍ଯ କିଛି ବିଶେଷ କାରଣ ଥାଏ । ଭଗବାନଙ୍କୁ ଖୋଜିବା-ନ ଖୋଜିବା ଉଭୟ ଲୋକଙ୍କୁ ସେ ଶରୀର, ଜୀବନ, ବଳ, ମନ, ବୁଦ୍ଧି, ବିବେକ, ଇତ୍ୟାଦି ସବୁ କିଛି ଯୋଗାନ୍ତି । ନ ଖୋଜିବା ଲୋକଠାରୁ ସେ ସବୁ ଛଡ଼ାଇ ନିଅନ୍ତି ନାହିଁ ମଧ୍ଯ । ଭାବୁଥାନ୍ତି କାଳେ ଏ ମତେ ଖୋଜିବ ପରା । କିନ୍ତୁ ବିଚରା ଜୀବ ତାଙ୍କ ଅସ୍ତିତ୍ୱକୁ ମଧ୍ଯ ସ୍ୱୀକାର ନ କରି ନାସ୍ତିକ

ହୋଇ, ତାଙ୍କ କୃପାକୁ ସଂପୂର୍ଣ୍ଣ ଅସ୍ୱୀକାର କରି ନିଜ ଜନ୍ମ, କର୍ମ, ବୟସ, ରୂପ, ବିଦ୍ୟା, ଅଲୌକିକ ବିଭୂତି ଧନ ଆଦିର ବଡ଼େଇ କରେ । ଏ ସବୁ ତା ପୁରୁଷାର୍ଥର ସ୍ୱ ଅର୍ଜିତ ବୋଲି ବଖାଣ କରେ । ହାୟରେ କପାଳ !! ଏହା ତାଙ୍କ ସାମାନ୍ୟ କୃପା ।

ହେ' ବ୍ରହ୍ମାଜୀ ! ଯଦି ଏ ସବୁ ଜଣକ ପାଖରେ ଥାଇ ସେ ଭଜନ କରେ ଓ ସେ ସବୁରେ ଅନାସକ୍ତ ରହିପାରେ ତେବେ ଆପଣ ଜାଣନ୍ତୁ ତା ପ୍ରତି ମୋର ବିଶେଷ କୃପାଦୃଷ୍ଟି ରହିଛି । ସେ ମୋର ଗେଲ ବସର ସନ୍ତାନ । ସେ ମୋ ଅଧୀନସ୍ଥ ନୁହେଁ । ବରଂ ମୁଁ ତା ହାତର କାଠ କଣ୍ଢେଇ । ତା ପାଦ ଧୂଳି ପାଇଁ ମୁଁ ଟାକି ବସିଥାଏ । ମୁଁ ମୋର ଭକ୍ତର ମଧ୍ୟ ଭକ୍ତ !!'

ପ୍ରଶ୍ନ-୮୯. ଯଦି ଉଚ୍ଚ କୁଳରେ ଜନ୍ମ, ବିଦ୍ୟା, ଐଶ୍ୱର୍ଯ୍ୟ ଆଦି ହରିଭଜନର ବାଧକ ତେବେ ଏ ସବୁ ଭଗବାନ ତାକୁ ଦିଅନ୍ତି କାହିଁକି ଓ ଦେଇ ପୁଣି ଛଡ଼ାଇ ନେଇ ତାକୁ ହାଇରାଣ ହରକତ କରି କନ୍ଦାନ୍ତି କାହିଁକି ?

**ମାନ ସ୍ତମ୍ଭ ନିମିତ୍ତାନାଂ ଜନ୍ମ-ଆଦୀନାଂ ସମନ୍ତତଃ ।**
**ସର୍ବ ଶ୍ରେୟଃ ପ୍ରତୀପାନାଂ ହନ୍ତ ମୁହ୍ୟେତ୍ ନ ମତ୍ ପରଃ ॥୨୭॥**

ଉ. ମିଥ୍ୟା ଅଭିମାନ (ମାନ), ଧୃଷ୍ଟତା(ସ୍ତମ୍ଭ) ଏ ସବୁ ନିଶ୍ଚୟ ଉଚ୍ଚକୁଳରେ ଜନ୍ମ ଇତ୍ୟାଦି ଅତ୍ୟଧିକ ଐଶ୍ୱର୍ଯ୍ୟ ହେତୁ ହୁଏ ସତ । ଏମାନେ ହରିଭଜନର ସାଧକ ନୁହନ୍ତି ବାଧକ ନିଶ୍ଚୟ (ଶ୍ରେୟ ପ୍ରତୀପାନାଂ) । ସବୁଠୁ ମଜା କଥା କହିଲେ, 'ହେ ବ୍ରହ୍ମଦେବ ! ଏ ସବୁ ଏକା ଏକା ବା ସମସ୍ତଙ୍କ ମିଳିତ ଆକ୍ରମଣରେ ମୋ ଭକ୍ତ (ମତ୍ପର) ଆଦୌ ବିଚଳିତ ହୁଏ ନାହିଁ (ନ ମୁହ୍ୟେତ୍) ଧ୍ରୁବ-ପ୍ରହ୍ଲାଦ-ରନ୍ତୀ ଦେବ-ଋଷଭ- ଅମ୍ବରୀଷ ଆଦି ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।'

ପ୍ରଶ୍ନ-୯୦. ଏ ସବୁ ଦୃଷ୍ଟାନ୍ତ ଅନେକ ଅତୀତର ଇତିହାସ । ସହଜରେ ମନୁଷ୍ୟର ମନ ଏ ସବୁକୁ ଗ୍ରହଣ କରିବାକୁ କୁଣ୍ଠିତ ହୁଏ । ହାତ ପାଆନ୍ତାରେ ଥିବା କିଛି ଦୃଷ୍ଟାନ୍ତ ଭଗବାନ ବ୍ରହ୍ମାଜୀଙ୍କୁ ଦେଖେଇ ପାରିଲେ କି ?

**ଏଷ ଦାନବ ଦୈତ୍ୟାନାଂ ଅଗ୍ରଣୀଃ କୀର୍ତ୍ତିବର୍ଦ୍ଧନଃ ।**
**ଅଜୈଷୀତ୍ ଅଜୟାଂ ମାୟାଂ ସୀଦନ୍ ଅପି ନ ମୁହ୍ୟତି ॥୨୮॥**

ଉ. ଭଗବାନ କହିଲେ, 'ହେ' ବ୍ରାହ୍ମଜୀ ! ଆପଣ ନିଜ ସମ୍ମୁଖରେ ଦେଖୁଛନ୍ତି ମୋର ଜଣେ ଭକ୍ତ ବଳିକୁ । ସେ ଦାନବ-ଦୈତ୍ୟ ଉଭୟ କୁଳର ଯଶ ବର୍ଦ୍ଧନ କଲେ । ମୁଁ ତାଙ୍କର ପ୍ରଥମେ ସର୍ବ ଓ ପରେ ସ୍ୱ ଏପରି ସର୍ବସ୍ୱ ହରଣ କଲାପରେ ମଧ୍ୟ ସେ ମୋ

ଭକ୍ତିରେ ଅଚଳ, ଅଟଳ, ଦୃଢ଼ ପ୍ରତିଜ୍ଞ । ଏହା କ'ଣ ସଂସାରୀ ଧନ-ଦୌଲତ ମାୟାକୁ ଜିଣିବାର ପ୍ରକୃଷ୍ଟ ପ୍ରମାଣ ନୁହେଁ କି ? ଧନୀ -ଜ୍ଞାନୀ -ମାନୀ-ଯୋଗୀ-ଭୋଗୀ-ରୋଗୀ ସମସ୍ତଙ୍କୁ ମୋ ଦୈବୀ ମାୟା ଡ଼ରାଏ । ହେଲେ ମୋ ଭକ୍ତକୁ ଦେଖିଲେ ମୁଣ୍ଡରେ ଓଢ଼ଣା ଟାଣି ନମସ୍କାର କରି ଦୂରକୁ ପଳାୟନ କରିଥାଏ । ସକଳ ଦୁଃଖ ସହି (ସୀଦନ୍ ଅପି) ମଧ ବଳି କେବଳ ମୋର ଭକ୍ତ । ମୁଁ ତାର ଘର, ଦ୍ୱାର, ଧନ ସଂପତ୍ତିର ଜଗୁଆଳ ହୋଇ ପାରିଲେ ନିଜକୁ ଧନ୍ୟ ମଣିବି, ବ୍ରହ୍ମାଜୀ ! ! !'

ପ୍ରଶ୍ନ-୯୧. ଭଗବାନ ଘୋଷଣା କଲେ ବଳି ମୋର ସମସ୍ତ ପରୀକ୍ଷାରେ ଉତୀର୍ଣ୍ଣ ହୋଇଛନ୍ତି । ଏଥିପାଇଁ ସେ ବଳିଙ୍କୁ କି ପୁରସ୍କାରରେ ପ୍ରସନ୍ନ କଲେ ?

**ଏଷ ମେ ପ୍ରାପିତଃ ସ୍ଥାନଂ ଦୁଷ୍ପ୍ରାପ୍ୟଂ ଅମରୈଃ ଅପି ।**
**ସାବର୍ଣ୍ଣେଃ ଅନ୍ତରସ୍ୟ- ଅୟଂ ଭବିତା-ଇନ୍ଦ୍ରୋ ମଦ୍ ଆଶ୍ରୟଃ ॥୩୧॥**

ଉ. ଦେବତାଙ୍କ ସ୍ୱର୍ଗ ରାଜ୍ୟରେ ଯୁଦ୍ଧ, ହଙ୍ଗାମା ,ଅଶାନ୍ତି ଲାଗି ରହିଥାଏ କିନ୍ତୁ ସୁତଳ ଲୋକ ଏ ବିପଦରୁ ସଦାମୁକ୍ତ । ବଳିଙ୍କୁ ସେ ସେଠାରେ ସପରିବାର ରଖାଇବାର ବନ୍ଦୋବସ୍ତ କଲେ । ପୁଣି କହିଲେ,'ଚଳିତ ବୈବସ୍ୱତ ମନ୍ୱନ୍ତର ପରେ ସାବର୍ଣ୍ଣ ମନ୍ୱନ୍ତର ଆରମ୍ଭ ହେବ । ସେତେବେଳେ ବଳି ମୋ ଭକ୍ତ ହୋଇ ଇନ୍ଦ୍ରାସନ ଅଳଂକୃତ କରିବେ । ସେ ପର୍ଯ୍ୟନ୍ତ ସେ ସୁତଳ ଲୋକରେ ରହିବେ । ମୁଁ ତାଙ୍କର ରାଜ୍ୟରେ ରହିବି ଗଦାଧର ହୋଇ । ତାଙ୍କ ଧନ, ଜୀବନ, ପରିବାର, ସୁରକ୍ଷା ଦାୟିତ୍ୱ ନେଇ ଚୌକିଦାରୀ କରିବି । ଦେବ-ଦେବୀ-ମୁନି ଗଣ କ'ଣ ଲୋକ ପାଳମାନଙ୍କର ମଧ ସମ୍ମାନର ପାତ୍ର ହେବେ ବଳି । ବଳିଙ୍କ ଇଚ୍ଛା ବିରୁଦ୍ଧରେ କେହି ଗଲେ ମୋ ସୁଦର୍ଶନ ଚକ୍ର ଦ୍ୱାରା ଦଣ୍ଡନୀୟ ହେବେ ।'

ପ୍ରଶ୍ନ-୯୨. ବୈଷ୍ଣବମାନେ ସର୍ବଦା ସତ୍‌ସଙ୍ଗ ଅଭିଳାଷୀ । ଏଥିପାଇଁ ଭଗବାନ କି ବନ୍ଦୋବସ୍ତ କରିଥିଲେ ?

**ରକ୍ଷିଷ୍ୟେ ସର୍ବତୋଽହଂ ତ୍ୱାଂ ସାନୁଗଂ ସପରିଚ୍ଛଦମ୍ ।**
**ସଦା ସନ୍ନିହିତଂ ବୀର ତତ୍ର ମା ଦ୍ରକ୍ଷତେ ଭବାନ୍ ॥୩୫॥**

ଉ.ରାଜା ବଳିଙ୍କ ଧନ-ଜୀବନ-ପରିବାର ରକ୍ଷଣ ଦାୟିତ୍ୱ ସ୍ୱୟଂ ଭଗବାନ ଦାୟିତ୍ୱ ଗ୍ରହଣ କରୁଥିବାରୁ ଆପେ ଆପେ ବଳିଙ୍କୁ ସତ୍ ସଙ୍ଗ ମିଳିବ । ପ୍ରବେଶ ଦ୍ୱାରରେ ଭଗବାନ ସଦା ଦଣ୍ଡାୟମାନ ରହୁଥିବାରୁ ରାଜମହଲ ପ୍ରବେଶ -ପ୍ରସ୍ଥାନ ଉଭୟ ସମୟରେ ସେ ଭଗବତ୍ ଦର୍ଶନର ସୌଭାଗ୍ୟ ପ୍ରାପ୍ତ ହେବେ ।

# ଅଥ ୨୩ଶ ଅଧ୍ୟାୟଃ

## (ବଳିଙ୍କୁ ସୁତଳ ଲୋକ ଓ ଇନ୍ଦ୍ରଙ୍କୁ ସ୍ୱର୍ଗଲୋକ ପ୍ରାପ୍ତି)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୯୩.ଭଗବାନଙ୍କ ଘୋଷଣା ଶୁଣି ରାଜା ବଳି ଭଗବାନଙ୍କଠାରେ. ତାଙ୍କର କୃତଜ୍ଞତା ଜ୍ଞାପନ କରିବାକୁ ଯାଇ କହିଲେ, 'ହେ' ଭଗବାନ ! ମୁଁ ଆପଣଙ୍କ ଜିନିଷ, ଜମି ଆପଣଙ୍କୁ କେବଳ ପ୍ରତ୍ୟର୍ପଣ କରିଛି । ନିଜ ଜିନିଷ କିଛି ଦେଇ ନଥିଲେ ମଧ୍ୟ ମୋ ଭଳି ଅଯୋଗ୍ୟ ଅସୁର ବଂଶୀକୁ ଅବର୍ଣ୍ଣନୀୟ କୃପା କରିଛନ୍ତି ମୋର ବିଷୟ ଆସକ୍ତି ହରଣ କରାଇ । ଆପଣଙ୍କୁ କୋଟି ନମସ୍କାର କରୁଛି ।'ଭଗବାନଙ୍କ ଆଜ୍ଞାପାଳନ କରିବାକୁ ଯାଇ ବଳିରାଜା କି ପରବର୍ତ୍ତୀ ପଦକ୍ଷେପ ଗ୍ରହଣ କଲେ ?

**ଇତି-ଉକ୍ତ୍ୱା ହରିଂ ଆନତ୍ୟ ବ୍ରାହ୍ମଣଂ ସ ଭବଂ ତତଃ ।**
**ବିବେଶ ସୁତଳଂ ପ୍ରୀତୋ ବଳିଃ ମୁକ୍ତଃ ସହ-ଅସୁରୈଃ ॥୩॥**

ଉ. ଏଠାରେ ଏକ ଅତ୍ୟନ୍ତ ଚମକ୍‌ପ୍ରଦ ଘଟଣା ଘଟିଲା । ଭଗବାନଙ୍କ ଇଛାରେ ନିତ୍ୟ ବଦ୍ଧ ଜୀବ ବଳି ବନ୍ଧନ ମୁକ୍ତ ହେଲେ । ପୁଣି ନିତ୍ୟ ମୁକ୍ତ ଭଗବାନ ବଳିଙ୍କ ସେବକତ୍ୱ ସ୍ୱୀକାର କରି ଦୀର୍ଘଦିନ ଧରି ବନ୍ଧନରେ ପଡ଼ିଗଲେ । ତାହା ପୁଣି ଭଗବାନଙ୍କ ସହର୍ଷ, ପ୍ରସନ୍ନତାର ନିଦର୍ଶନ । ସତରେ ବଡ଼ ଅଦ୍ଭୁତ ଅଟେ ଏହି ହରି ପ୍ରେମର କରିସ୍ମା । ଭକ୍ତ ଯେତିକି ପାଗଳ ଭଗବାନ ତତୋଧିକ ପାଗଳ । ଭକ୍ତ-ଭକ୍ତି-ଭଗବାନଙ୍କର ଜୟ ଜୟକାର କଲେ ପ୍ରହ୍ଲାଦ ଆଦି ଦେବଗଣ ।

ବଳି ଭଗବାନ ବିଷ୍ଣୁ, ଶଙ୍କର,ବ୍ରହ୍ମାଜୀ, ନାରଦ ଆଦିଙ୍କୁ ସାଦର ନମସ୍କାର କରି (ଆନତ୍ୟ)ସପରିବାର ସୁତଳ ଲୋକରେ ପ୍ରବେଶ କଲେ ।

ପ୍ରଶ୍ନ-୯୪. ଭକ୍ତ ପ୍ରହ୍ଲାଦ ମଧ୍ୟ ଜଣେ ପାଗଳ ହରି ଭକ୍ତ ଭାବରେ ଗଣା ଯାଆନ୍ତି । ସେ ସେଠାରେ ତାଙ୍କର କିଛି ପ୍ରଗଲ୍‌ଭତା ପ୍ରଦର୍ଶନ କଲେ କି ?

ପ୍ରହ୍ଲାଦ ଉବାଚ

**ନ-ଇମଂ ବିରିଞ୍ଚୋ ଲଭତେ ପ୍ରସାଦଂ**
**ନ ଶ୍ରୀଃ ନ ଶର୍ବଃ କିଂ ଉତ-ଅପରେଽନ୍ୟେ ।**
**ଯତ୍ ନୋଽସୁରାଣାଂ ଅସି ଦୁର୍ଗପାଳୋ**
**ବିଶ୍ୱ-ଅଭିବନ୍ଦ୍ୟୈଃ ଅପି ବନ୍ଦିତ-ଅଙ୍ଘ୍ରି ॥୬॥**

ଉ. ପ୍ରହ୍ଲାଦ ମହାରାଜ ଏ ହୃଦୟ ଆହ୍ଲାଦକ ହରିଲୀଳା ଦର୍ଶନ କରି ବାକ୍ ଗଦ୍ ଗଦ୍ କ'ଣ୍ଠରେ କହିଲେ, ଜଗତ୍ ବନ୍ଦ୍ୟ ଠାକୁର-ଠାକୁରାଣୀ ବ୍ରହ୍ମା-ଶଙ୍କର-ମହାଲକ୍ଷ୍ମୀ ଆଦି ଯେଉଁ ଭଗବାନଙ୍କର ଚରଣ ପୂଜନ କରି ନିଜକୁ ଧନ୍ୟ ମନେ କରନ୍ତି ସେଇ ଭଗବାନ ଆଜି ବଳିଦ୍ୱାରେ ବାମନ ହୋଇ ଆମ ଅସୁର କୁଳକୁ ଅହୈତୁକୀ କୃପା ପ୍ରଦର୍ଶନ କରିଛନ୍ତି । ଏ ଭଳି ଚିନ୍ମୟ କୃପାର ସର୍ବଥା ଅଯୋଗ୍ୟ ଆମେମାନେ । ଏବେ ଯୋଡ଼ ହସ୍ତରେ ଆମେ ତାଙ୍କ ଆଦେଶ ମାନି ନେଉଛୁ । ଏ ଲୀଳାରେ ଭକ୍ତ ବଳି ହାରିଲେ ଭଗବାନ ବାମନ ଦେବ ମଧ୍ୟ ହାରିଲେ । ବିଜୟ ହେଲା ଭକ୍ତି ମହାରଣୀଙ୍କର । ଭଗବାନଙ୍କର ବାଞ୍ଛା କଳ୍ପତରୁ ନାମ ସାର୍ଥକ ହେଲା ଏ ଲୀଳାରେ ।

ପ୍ରଶ୍ନ-୯୫. ଭକ୍ତ ରାଜା ପ୍ରହ୍ଲାଦ ଓ ବଳିଙ୍କ ସ୍ତୁତି ଶ୍ରବଣ କରି ପରମ ଆନନ୍ଦ ଲାଭ କଲେ ବାମନ ଭଗବାନ । ଲୀଳା ଉପସଂହାର ଉଦ୍ଦେଶ୍ୟରେ ସେ ବଳିଙ୍କୁ କି ପରାମର୍ଶ ଦେଲେ ?

ଶ୍ରୀ ଭଗବାନ ଉବାଚ

**ବସ୍ତ ପ୍ରହ୍ଲାଦ ଭଦ୍ରଂ ତେ ପ୍ରଯାହି ସୁତଳ-ଆଳୟମ୍ ।**
**ମୋଦମାନଃ ସ୍ୱପୌତ୍ରେଣ ଜ୍ଞାତୀନାଂ ସୁଖଂ ଆବହ ॥୯॥**

ଉ. କହିଲେ, 'ହେ' ମୋର ପ୍ରିୟ ପୁତ୍ର ପ୍ରହ୍ଲାଦ ! ପିଲାମାନଙ୍କୁ ଧରି ବାଜା ବଜାଇ ଏବେ ସୁତଳକୁ ଯାଅ । ଖୁସୀରେ ଦିନ ଗଣ ତୁମ ପୌତ୍ର ବଳି ଜଣେ ହରି ଭକ୍ତ ଇନ୍ଦ୍ର ହେବ । ତୁମେ ହରି ଭକ୍ତ ରାଜା ହୋଇ ଯେଉଁ ଆଦର୍ଶ ସ୍ଥାପନ କରିଛ ତାହା ଲୋକେ ଆଜି ବି ଝୁରୁଛନ୍ତି ଭବିଷ୍ୟତରେ ଝୁରୁଥିବେ ମଧ୍ୟ ।'

ପ୍ରଶ୍ନ-୯୬. ଭଗବାନ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ କି ଆଦେଶ ଦେଲେ ବଳିଙ୍କର ଅସଂପୂର୍ଣ୍ଣ ଶତକ୍ରତୁ ସଂକଳ୍ପକୁ ପୂର୍ଣ୍ଣ କରିବାକୁ ?

**ବ୍ରହ୍ମନ୍ ସଂତନୁ ଶିଷ୍ୟସ୍ୟ କର୍ମଛିଦ୍ରଂ ବିତନ୍ୱତଃ ।**
**ଯତ୍ ତତ୍ କର୍ମସୁ ବୈଷମ୍ୟଂ ବ୍ରହ୍ମଦୃଷ୍ଟଂ ସମଂ ଭବେତ୍ ॥୧୪॥**

ଉ. କହିଲେ, 'ହେ' ଆଚାର୍ଯ୍ୟ ଦେବ (ବ୍ରହ୍ମନ୍)! ଯଜ୍ଞାଦି ଶୁଭ କର୍ମ କଲାବେଳେ କିଛି ନା କିଛି ଦୋଷ, ତ୍ରୁଟି (କର୍ମଛିଦ୍ରଂ) ଅବଶ୍ୟ ରହେ । କହନ୍ତୁ (ସଂତନୁ) ଆପଣଙ୍କ ଶିଷ୍ୟଙ୍କର କ'ଣ ତ୍ରୁଟି ଦେଖି ଆପଣ ତାଙ୍କୁ ଶାପ ଦେଇ ବସିଲେ। ବେଦଦୃଷ୍ଟିରେ (ବ୍ରହ୍ମଦୃଷ୍ଟଂ) ବିଚାର କରି ତାକୁ ଏବେ ସୁଧାରି (ସମଂଭବେତ୍) ନିଅନ୍ତୁ।'

ପ୍ରଶ୍ନ-୯୭. ଭଗବାନଙ୍କ ଶାଣିତ ବ୍ୟଙ୍ଗ ବୁଝିପାରି ଦୈତ୍ୟାଚାର୍ଯ୍ୟ ଲଜ୍ଜିତ ହେଲେ । ତଥାପି ଭଗବାନଙ୍କୁ କି ଉତ୍ତର ଦେଲେ ଦୋଷ-ତ୍ରୁଟି ମନ୍ତବ୍ୟ ଉପରେ ?

ଶୁକ୍ର ଉବାଚ

**କୁତଃ ତତ୍ କର୍ମ ବୈଷମ୍ୟଂ ଯସ୍ୟ କର୍ମ-ଈଶ୍ୱରୋ ଭବାନ୍ ।**
**ଯଜ୍ଞେଶୋ ଯଜ୍ଞପୁରୁଷଃ ସର୍ବ ଭାବେନ ପୂଜିତଃ ॥୧୫॥**

ଉ. କହିଲେ, 'ହେ' ଭଗବାନ୍ ! ଆପଣ ଯଜ୍ଞ କରିବା ବାଲା, କରାଇବା ବାଲା ଓ ଯଜ୍ଞ ଫଳ ଦାତା- ଯଜ୍ଞ ଫଳ ଭୋକ୍ତା ଉଭୟ । ଆପଣ ଯେତେବେଳେ ପ୍ରସନ୍ନ ହୋଇ ସ୍ୱୟଂ ଯଜ୍ଞ ସ୍ଥଳରେ ଉପସ୍ଥିତ ସେ ସ୍ଥଳରେ ଯଜ୍ଞରେ ଦ୍ରୋଷ ତ୍ରୁଟି ଆଉ ରହିଲା କେଉଁଠି ?' ଅର୍ଥାତ୍ ବଳିକଂର ଶତକ୍ରତୁ ସଂକଳ୍ପ ପରିପୂର୍ଣ୍ଣ ହୋଇଛି ।

ପ୍ରଶ୍ନ-୯୮. ବୈଦିକ ମନ୍ତ୍ରଦ୍ୱାରା ବା ତନ୍ତ୍ର ପୂଜନ ପ୍ରଣାଳୀରେ କରାଯାଉଥିବା ଯଜ୍ଞ, ଦାନ, ତପ ଅନ୍ୟାନ୍ୟ ଶୁଭକର୍ମରେ ଦେଶ, କାଳ, ପାତ୍ର ଓ ବସ୍ତୁ ଆଦିର ଅଙ୍ଗହାନି ଆଦି ଦୋଷ କିପରି ସୁଧାରିବାକୁ ହୁଏ ବୋଲି ଆଚାର୍ଯ୍ୟ ପ୍ରକାଶ କଲେ ?

**ମନ୍ତ୍ରତଃ ତନ୍ତ୍ରତଃ ଛିଦ୍ରଂ ଦେଶ କାଳ-ଅର୍ହ ବସ୍ତୁତଃ ।**
**ସର୍ବଂ କରୋତି ନିଶ୍ଛିଦ୍ରଂ ନାମସଂକୀର୍ତ୍ତନଂ ତବ ॥୧୬॥**

ଉ. ଆଚାର୍ଯ୍ୟ ଦେବ ବାମନ ଦେବଙ୍କୁ କହିଲେ- 'ହେ' ପ୍ରଭୋ ! ଆପଣଙ୍କ ନାମ (ଓଁ କିମ୍ବା ରାମ କୃଷ୍ଣ, ଗୋବିନ୍ଦ ଆଦି) ସ୍ମରଣରେ କର୍ମର ଦୋଷ ତ୍ରୁଟି ସୁଧୁରିଯାଏ । ଆପଣ ଏବେ ସ୍ୱୟଂ ଦିବ୍ୟ ଦେହରେ ବିରାଜମାନ ପରା । ଅତଏବ ଦୋଷ ତ୍ରୁଟିର ଅବକାଶ କାହିଁ ?'

ପ୍ରଶ୍ନ-୯୯. ତଥାପି ଭଗବାନଙ୍କ ଆଦେଶ ପାଳନ କରିବାକୁ ତ ହେବ । ସୁତରାଂ ଶୁକ୍ରାଚାର୍ଯ୍ୟ ପୁଣି କହିଲେ, 'ହେ' ପ୍ରଭୋ! ତ୍ରୁଟି ବା ଦୋଷ ବଳିଙ୍କର ନ ଥିଲା । ଦୋଷ ଥିଲା ମୋର । ମୁଁ ଯଜ୍ଞ କରାଇବା ବେଳେ ଆପଣଙ୍କ ନାମ ଜପ ଭୁଲି

ଯାଇଥିଲି । ଆପଣ ମୋର ଗୋଟିଏ ଚକ୍ଷୁ ନେଇଯାଇ ମୋତେ ଉଚିତ ମାର୍ଗ ଦର୍ଶନ କରାଇଛନ୍ତି । ଏଣିକି ମୁଁ ସତର୍କ ରହିବି ।'

ଯଜ୍ଞ ସମାପ୍ତି ଘୋଷଣା ପରେ ଭଗବାନ ପୁଣି କି ଲୀଳା କଲେ ?

**ଏବଂ ବଲେଃ ମହୀଂ ରାଜନ୍ ଭିକ୍ଷିତ୍ୱା ବାମନୋ ହରିଃ ।**
**ଦଦୌ ଭ୍ରାତ୍ରେ ମହେନ୍ଦ୍ରାୟ ତ୍ରିଦିବଂ ଯତ୍ ପରୈଃ ହୃତମ୍ ॥୧୯॥**

ଉ. 'ହେ' ରାଜା ପରୀକ୍ଷିତ ! ଭଗବାନ ବାମନ ଦେବ ବଳି ରାଜାଙ୍କଠାରୁ ମାଗି ନେଇଥିବା (ଭିକ୍ଷିତ୍ୱା) ସ୍ୱର୍ଗ ରାଜକୁ (ତ୍ରିଦିବଂ)ବଳିଙ୍କର ବଡ଼ ଭାଇ ଅଦିତି ପୁତ୍ର ଇନ୍ଦ୍ରଙ୍କ ହସ୍ତରେ ଅର୍ପଣ କଲେ ଯାହା ବଳି (ଇନ୍ଦ୍ର ଶତ୍ରୁ) ଛଡ଼ାଇ ନେଇଥିଲେ ଈଶ୍ୱରଙ୍କ ଇଚ୍ଛାରେ ।'

ଶେଷରେ ବ୍ରହ୍ମା,ଶଙ୍କର, ନାରଦ, ଚତୁଃସନ ଆଦି ମିଶି ବାମନ ଭଗବାନଙ୍କ ଚରଣ ପୂଜନ କଲେ । ସମସ୍ତେ ବାମନ ଦେବଙ୍କ ଜୟ ଜୟକାର କଲେ । ଇନ୍ଦ୍ର ବାମନ ଦେବଙ୍କୁ ନିଜ ବିମାନରେ ବସାଇ ଇନ୍ଦ୍ରଲୋକ ନେଇଗଲେ । ଭଗବାନଙ୍କ କୃପାରୁ ଭୟଶୂନ୍ୟ ହୋଇ ଐଶ୍ୱର୍ଯ୍ୟ ଯୁକ୍ତ ହୋଇ ମହା ଆନନ୍ଦରେ ସ୍ୱର୍ଗରେ ଇନ୍ଦ୍ରସିଂହାସନ ସମ୍ଭାଳିଲେ ।

ବିବାହ ବେଳେ, ସନ୍ତାନ ଜନ୍ମ ଉତ୍ସବ କାଳରେ, ପିତୃପୁରୁଷଙ୍କୁ ଶ୍ରାଦ୍ଧ ତର୍ପଣ କରିବା ବେଳେ, ଯଜ୍ଞ ବା ନାମ ସଂକୀର୍ତ୍ତନ,ପୂଜନ ବନ୍ଦନ କରିବା ବେଳେ ଏ ବଳି-ବାମନ ଲୀଳା ଶ୍ରବଣ କୀର୍ତ୍ତନ କଲେ କର୍ମାନୁଷ୍ଠାନ ଜନିତ ସକଳଦୋଷ ତ୍ରୁଟି ଦୂର ହୋଇଥାଏ । ସେ ସବୁ କର୍ମଫଳ ସର୍ବଦା ପରମ କଲ୍ୟାଣ କାରକ ହୋଇଥାଏ ।'

## ୨୩.ଦାନ ପ୍ରକରଣ-ବଳି ବାମନ ଲୀଳା(ଦାନର ଅହଂକାର ତ୍ୟାଗ)

### ଅଧ୍ୟାୟ ୧୬ଶ-୨୩ଶ

ପୂର୍ବ ଦୁଇ ପ୍ରକରଣରେ କାମ, କ୍ରୋଧ ଉପରେ ହରି ଶରଣାଗତି ଦ୍ୱାରା ବିଜୟପ୍ରାପ୍ତି କଥା କୁହାଯାଇଛି । ଏବେ ୧୫ଶ-୨୩ଶ ଏହି ନଅ ଅଧ୍ୟାୟରେ ଲୋଭ ଉପରେ ବିଜୟ ଉପାୟ କୁହାଯିବ । ଜୀବର ମୂଳ ଶତ୍ରୁ କାମନା । କ୍ରୋଧ ଓ ଲୋଭ ଏ ଦୁହେଁ କାମନାରୁ ଜାତ । କାମନା ପୂରଣ ନ ହେଲେ କ୍ରୋଧ ଜନ୍ମେ । ପୁଣି ପୂରଣ ହେଲେ ଲୋଭ ଜାତ ହୁଏ । ରାଜାମାନେ ଇନ୍ଦ୍ର ପଦ ଲୋଭରେ ଦାନଯଜ୍ଞ ଆଦି କରନ୍ତି । ଶହେ ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ କଲେ ଇନ୍ଦ୍ର ପଦ (ଶତକ୍ରତୁ) ମିଳେ । ରାଜା ବଳି ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ସେବା ଦ୍ୱାରା ପ୍ରସନ୍ନ କରେଇ ଅନେଶ୍ୱତ ଯଜ୍ଞ କରି ସାରିଥାନ୍ତି । ଶେଷ ଯଜ୍ଞ ବେଳକୁ ଭଗବାନ ବାମନ ଅବତାର ହେଲେ । ଏହା ଏକ ବିଲକ୍ଷଣ ଓ ବିଚିତ୍ର ଅବତାର । ଆଦର୍ଶ ଭିକାରୀ ଅବତାର । ଅସୁର ରାଜ ବଳିଙ୍କର ଯଜ୍ଞର ନାମ ବିଶ୍ୱଜିତ୍ ଯଜ୍ଞ ।

ସକଳ ଆଶ୍ରମ ମଧ୍ୟରେ ଗୃହସ୍ଥ ଆଶ୍ରମ ଶ୍ରେଷ୍ଠ । ଅଦିତି କଶ୍ୟପଙ୍କ ଗୃହସ୍ଥାଶ୍ରମ ଆଦର୍ଶ ସ୍ଥାନୀୟ । ତେଣୁ ଦୈବୀଗୁଣ ସମ୍ପନ୍ନ ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର ଆଦି ସବୁ ଦେବତାମାନେ ସନ୍ତାନରୂପେ ଆସିଛନ୍ତି । ଶେଷରେ ଭଗବାନ ବି ବାମନ ବେଶରେ । ଗୃହସ୍ଥ ସିନା ଦଣ୍ଡ ବୈଠକ ପ୍ରାଣାୟାମ ଆଦି ଯୋଗ୍ୟାଭ୍ୟାସ କରେ ନାହିଁ, ଜଣେ ସାଧାରଣ ଗୃହସ୍ଥ ଭକ୍ତିଯୁକ୍ତ ହୋଇ ପାରିଲେ ସକଳ ସିଦ୍ଧିର ଫଳ ତା ପାଖରେ ପହଞ୍ଚି ଯାଆନ୍ତି ଆପେ ଆପେ । କୁହାଯାଏ ଯେ ଗୃହସ୍ଥ ଧର୍ମର ଲକ୍ଷ୍ୟ ଧର୍ମ ମାର୍ଗରେ ଜୀବନ କଟାଇ ଅର୍ଥ ଉପାର୍ଜନ କରି ବିଷୟ ଭୋଗ ସଂଗ୍ରହ କାମନାର ବିଷଦାନ୍ତ ଉପାଡିବା । ସେଇ ତ ଲୋଭ ଉପରେ ଅସଲି ବିଜୟ । ଯାହାର ଅନ୍ୟ ନାମ ଦାନ କରି ଦାନ କରିବାର ଅହଂକାର ନ କରିବା, ଅନ୍ୟ ଶବ୍ଦରେ ଈଶ୍ୱରୀୟ ଶରଣାଗତି, ମୁକ୍ତି ବା ପ୍ରେମପ୍ରାପ୍ତି ।

ସାବଧାନ ହୋଇ କରି ଜାଣିଲେ ଗୃହସ୍ଥାଶ୍ରମ ଭକ୍ତିର ବାଧକ ଆଦୌ ନୁହେଁ । ବରଂ ଭକ୍ତିର ସାଧକ । ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ତିଥିରେ ବାମନ ଦେବ କଶ୍ୟପ ଅଦିତିଙ୍କ କୋଳରେ ପ୍ରକଟ ହେଲେ । ଜନ୍ମ ହେଉ ହେଉ ଆଠ ବର୍ଷର ବଟୁ ବାମନ ରୂପ ଧରିଲେ । ସଙ୍ଗେ ସଙ୍ଗେ ପହଞ୍ଚିଗଲେ ସକଳ ଦେବୀ ଦେବତା । ସମସ୍ତଙ୍କର ହାତରେ କିଛି କିଛି ଉପହାର । ଅଭିନନ୍ଦନ କଲେ ବାମନ ଦେବଙ୍କୁ । ପ୍ରଥମେ ମାତା

ଅଦିତି ଦେଲେ କୌପୀନ। ଧରିତ୍ରୀ ଦେଲେ ଆସନ। ବ୍ରହ୍ମା କମଣ୍ଡଳୁ ଓ ମା' ସରସ୍ୱତୀ ଦେଲେ ହାତରେ ଜପା ମାଳି। କୁବେର ଦେଲେ ଭିକ୍ଷା ପାତ୍ର। ଦେବଗୁରୁ ବୃହସ୍ପତି ଦେଲେ ମନ୍ତ୍ର ଦୀକ୍ଷା। ଉପଦେଶ ଦେଲେ, ଯାଅ ଭିକ୍ଷା ମାଗିବାକୁ।

ନର୍ମଦା ନଦୀ କୂଳରେ ଆଜିର ଭାରୁଚ୍ (ଭୃଗୁ କଚ୍ଛ)ଠାରେ ବଳି ରାଜା ଯଜ୍ଞ କରୁଥାନ୍ତି। କଶ୍ୟପ ଆଶ୍ରମଠାରୁ ବାମନ ଦେବ କ୍ଷଣକ ମଧ୍ୟରେ ପହଞ୍ଚି ଗଲେ ସେଠାରେ। ବଳିରାଜାଙ୍କୁ ପ୍ରଶଂସା କରିବା ସହିତ ତାଙ୍କ ପୂର୍ବ ପିତୃ ପୁରୁଷ ପ୍ରହ୍ଲାଦ ଓ ବିରୋଚନଙ୍କ ଯଶ ଗାନ କରି ଗଲେ। ଆଜି କାଲି ଓ ଦାତାଙ୍କ ପତ୍ନୀଙ୍କୁ ପ୍ରଶଂସା କଲେ ଢେର ଦାନ ମିଳୁଛି !! ଭାଗବତ କହନ୍ତି ପ୍ରାପ୍ତ ସମ୍ପତ୍ତିର ଏକ ପଞ୍ଚମାଂଶ ଦାନ କର। ମନୁ ସଂହିତା କହନ୍ତି, ଏକ ଦଶମାଂଶ ଦାନ କଲେ ଧନ ଶୁଦ୍ଧ ହୁଏ। ସେଇ ଶୁଦ୍ଧ ଧନରେ ବିଷ୍ଣୁ ବୈଷ୍ଣବଙ୍କ ସେବା କରିବା କଥା। କଳିଯୁଗରେ ଧନୀ ଲୋକେ ଧନ ସମ୍ପତ୍ତି, ମଟରକାର କୁକୁର ସେବା କରିବାରେ ମନ ଦିଅନ୍ତି। ପିତା, ମାତା, ପରମ ପିତାଙ୍କ ସେବାରେ ନୁହେଁ। ପିତା, ମାତାଙ୍କ ସେବା ପାଇଁ ଚାକର ନୌକର ରଖନ୍ତି। ପରମ ପିତାଙ୍କ ସେବା କରାନ୍ତି ଦରମା ନିଆ ପୂଜାରି ହାତରେ।

ରାଜା ବଳି ସଂକଳ୍ପ କଲେ ଦାନ ଦେବାକୁ। ଭଗବାନ ନିଜ ପାଦ ମାପରେ ତିନି ପାଦ ଭୂମି ଯାଚନା କଲେ। ଉଦ୍ଦେଶ୍ୟ ଆଶ୍ରମଟିଏ କରିବେ। ରାଜା ପରିହାସ କଲେ। ମାଗି ଜାଣିନାହାନ୍ତି ପିଲା ବ୍ରାହ୍ମଣ ବୋଲି କହି। ଭଗବାନ କହିଲେ, ଯେ ସେ ବର୍ଣ୍ଣରେ ବ୍ରାହ୍ମଣ। ଆବଶ୍ୟକତାଠାରୁ ଅଧିକ ପାଇଁ ଲୋଭ କଲେ ବ୍ରହ୍ମଚର୍ଯ୍ୟ ଧର୍ମର ହାନୀ ହେବ। ଗୁରୁ ଶୁକ୍ରାଚାର୍ଯ୍ୟ ଜାଣି ପାରିଲେ ଭଗବାନଙ୍କ ତିନି ପାଦ ଭୂମି ମାଗିବାର ରହସ୍ୟ। ସେ ବଳିଙ୍କର ଦାନ କାର୍ଯ୍ୟରେ ବିଘ୍ନ କଲେ। ପ୍ରବର୍ତ୍ତାଇଲେ ଯଯମାନଙ୍କୁ ଦାନ ଦେବାକୁ ମନା କରିବାକୁ। କେତେ ଶାସ୍ତ୍ରୀୟ ଅକାଟ୍ୟ ଯୁକ୍ତି ବାଢିଲେ। ରାଜା କିନ୍ତୁ ନ ଛୋଡ଼ ବନ୍ଧା। ସେ କହିଲେ ଦାନ ନେବାର ଏ ଜଣେ ଉପଯୁକ୍ତ ସତ୍ ପାତ୍ର। ଯାହା ମାଗିଲେ ସେ ଦେବେ। ସଂକଳ୍ପ ବେଳେ ବିଘ୍ନ କରିବାକୁ ଶଙ୍ଖ ମଧ୍ୟରେ ଗୁରୁ ଶୁକ୍ରାଚାର୍ଯ୍ୟ ମାଛିଟିଏ ହୋଇ ସଂକଳ୍ପ ଜଳ ଅଟକେଇଲେ। ଭଗବାନ କୁଶଟିଏ ଗଳାଇ ଗୋଟିଏ ଚକ୍ଷୁ କଣା କରିଦେଲେ। ସଂସାରକୁ ଉପଦେଶ ମିଳିଲା ଯଯମାନର ପରମାର୍ଥିକ କଲ୍ୟାଣରେ ବାଧା ସୃଷ୍ଟି କରିବା ଲୋକ ଦଣ୍ଡନୀୟ। ଏଥର ବଳିଙ୍କ ସତ୍ ସଂକଳ୍ପ ବୁଦ୍ଧିମତ୍ତାର କାମ ଦେଖାଇଲା।

ମସ୍ତକ ବୁଦ୍ଧି ପ୍ରଧାନ। ସେଥିରେ କାମ, କ୍ରୋଧ ଓ ଲୋଭ ତିନିଜଣଙ୍କର

ବାସ । ମସ୍ତକରେ ଭଗବାନଙ୍କ କରକମଳ କିମ୍ବା ପଦ କମଳ ସ୍ପର୍ଶ ହେଲେ ମନୁଷ୍ୟର ଶରଣାଗତି ଭଗବାନ ସ୍ୱୀକାର କଲେ ବୋଲି ମୋହର ବାଜେ । ପ୍ରଥମ ଦୁଇପାଦ ଦାନରେ ରାଜା ତ୍ରିଭୁବନ ଦାନ ଦେଲେ । ୩ୟ ପାଦ ବେଳକୁ ସ୍ୱ ମସ୍ତକ ଦେଖାଇଦେଲେ ଭଗବାନଙ୍କୁ ପାଦ ରଖିବାକୁ । ତିନି ପାଦ ଦାନରେ ବଳିଙ୍କର ତନ, ମନ, ଧନ ସହିତ ଅହଂକାର ମଧ୍ୟ ଭଗବାନ ଗ୍ରହଣ କଲେ । ଅନ୍ୟ ଅର୍ଥରେ ସ୍ଥୁଳ, ସୂକ୍ଷ୍ମ, କାରଣ ତିନି ଦେହ ଭଗବତ୍ ଅର୍ପିତ ହେଲା । ବଳିଙ୍କ ଭଳି ଗୁରୁସେବା କରି ସଦାଚାର ପାଳନ ରୂପ ଯଜ୍ଞ କରି ଦାନ ଦେଇପାରିଲେ ଅଭିମାନ ଦୂର କରିବା ଦାୟିତ୍ୱ ସ୍ୱୟଂ ଭଗବାନ ନିଅନ୍ତି । ଗୁରୁ ଭୁଲ ବାଟ ଦେଖାଇଲେ ମଧ୍ୟ ପ୍ରଭୁ ସୁଧାରି ନିଅନ୍ତି ।

ବଳି ଧନ ଦାନ କରନ୍ତେ ଭଗବାନ ବଟୁବାମନ ହୋଇ ଦୌଡି ଆସିଲେ । ମନ ଦାନ କରନ୍ତେ ବିଶ୍ୱରୂପ ଦର୍ଶନ କରାଇଲେ । ତନ (ମସ୍ତିଷ୍କସ୍ଥିତ) ଅହଂକାର ଦାନ କରନ୍ତେ ନିଜର ପଦ କମଳ ସ୍ପର୍ଶ କରାଇ ସୁତଳ ଲୋକରେ ବଳିଙ୍କର ଚୌକିଦାର ହୋଇଗଲେ । ଆଦର୍ଶଦାତା ଓ ଆଦର୍ଶ ଗ୍ରହୀତା ଭିକାରୀ ଉଭୟଙ୍କର ବିଜୟ ପତାକା ଉଡ଼ିଲା । ସୁତଳ ଲୋକରେ ବଳି ଦ୍ୱାରରେ ବାମନ ଦେବ ବିରାଜମାନ କରନ୍ତେ ସମସ୍ତେ ଖୁସୀ ହେଲେ । ଜଣେ କେବଳ ଦୁଃଖିନୀ ହେଲେ । ସେ ଜଣକ ମହାଲକ୍ଷ୍ମୀ । ଶେଷରେ ବିନା ଆମନ୍ତ୍ରଣରେ ଲକ୍ଷ୍ମୀଙ୍କୁ ଯିବାକୁ ପଡ଼ିଲା ବଳିଙ୍କ ଗୃହକୁ । ନାରାୟଣଙ୍କୁ ଛାଡି ଲକ୍ଷ୍ମୀ ରହନ୍ତେ କେମିତି ? ଗୋପନରେ ଲୁଚି ଲୁଚି ବଳିଙ୍କ ଗୃହ ମାର୍ଜନ ସେବାରେ ଲାଗି ପଡିଲେ । ବଳି ତାଙ୍କୁ ଭିକାରୁଣୀ ନୌକରାଣୀ ବନେଇଦେଲେ । ଲକ୍ଷ୍ମୀଦେବୀ ଅନେକ ଦିନ ଧରି ଧର୍ମ-ଭଉଣୀ ହୋଇ ରହିଲେ । ବଳିଙ୍କୁ ସେବାଦ୍ୱାରା ପ୍ରସନ୍ନ କଲେ । ରାକ୍ଷୀ ପୂର୍ଣ୍ଣିମା ଦିନ ବଳିଙ୍କ ହାତରେ ରାକ୍ଷୀ ବାନ୍ଧି ପତିଦେବ ନାରାୟଣଙ୍କୁ ମାଗି ନେଲେ । ପୂର୍ବରୁ ତ ବଳି ନାରାୟଣଙ୍କୁ ଭିକାରୀ ବନାଇ ସାରିଥିଲେ । ଏ ପ୍ରସଙ୍ଗର ତତ୍ତ୍ୱ କଥାଟି ହେଲା - ଜୀବ ଯଦି ତନ, ମନ ଓ ଧନ ସର୍ବସ୍ୱ ଦେଇ ଈଶ୍ୱରଙ୍କ ସେବା ପାଇଁ ଅଣ୍ଟା ଭିଡ଼ିବ ତେବେ ଲକ୍ଷ୍ମୀ-ନାରାୟଣ ମଧ୍ୟ ମାଗିବାକୁ ଅଣ୍ଟି ପଡେଇବେ । ଦାନ ଦେବାର ଅହଂକାରରୁ ଦାତା ମୁକ୍ତ ହେବାର ଏହା ଏକ ଯୁଗାନ୍ତକାରୀ ଦୃଷ୍ଟାନ୍ତ ବା ପ୍ରକରଣ ।

-୦-

# ପ୍ରକରଣ-୨୪

## ସ୍ୱଧର୍ମ ବା ସତ୍‌ଧର୍ମ ପାଳନ ଯଜ୍ଞ (ଅଧ୍ୟାୟ-୨୪)

## ଅଥ ୨୪ଶ ଅଧ୍ୟାୟଃ

(ଭଗବାନଙ୍କର ମତ୍ସ୍ୟ ଅବତାର ଲୀଳା)

ପ୍ରଶ୍ନ-୧୦୦. ଭଗବାନ ସର୍ବ ଶକ୍ତିମାନ । ତଥାପି ମାଛଟିଏ ହେବାର କାରଣ ଆମର ଅବୋଧ । ଲୋକେ ମାଛ ରୂପକୁ ତୁଚ୍ଛ ଭାବନ୍ତି । ତାକୁ ଭୋଜନ କରନ୍ତି ମଧ । ରାଜା ପରୀକ୍ଷିତଙ୍କ ସଂଶୟ ନିବାରଣ ନିମିତ୍ତ ଶୁକଦେବ ପରମହଂସ ଭଗବାନଙ୍କର ମତ୍ସ୍ୟ ଅବତାରର କାରଣ କ'ଣ ବୋଲି ପ୍ରକାଶ କଲେ ?

ଶ୍ରୀଶୁକ ଉବାଚ

**ଗୋ ବିପ୍ର ସୁର ସାଧୂନାଂ ଛନ୍ଦସାଂ ଅପି ଚ-ଈଶ୍ୱରଃ ।**
**ରକ୍ଷାଂ ଇଚ୍ଛନ୍ ତନୂଃ ଧତ୍ତେ ଧର୍ମସ୍ୟ-ଅର୍ଥସ୍ୟ ଚ-ଏବ ହି ॥୫॥**

ଉ. ପରମେଶ୍ୱର ସକଳ ଜୀବମାନଙ୍କର ଶାସନ କର୍ତ୍ତା ଓ ସର୍ବୋଚ୍ଚ ରକ୍ଷା କର୍ତ୍ତା । ତଥାପି ଗୋ, ବିପ୍ର, ଦେବତା, ଭକ୍ତ, ବେଦ ବାଣୀ ରକ୍ଷା କରି ଜୀବକୁ ସର୍ବୋଚ୍ଚ ଧର୍ମ-ଅର୍ଥ-କାମ-ମୋକ୍ଷ ଲକ୍ଷ୍ୟର ମାର୍ଗ ଦର୍ଶନ କରାଇବାକୁ ଯୁଗେ ଯୁଗେ ନାନା ରୂପ (ଅବତାର) ଧାରଣ କରିଥାନ୍ତି ।

ଅବଶ୍ୟ ଭଗବାନ ସାନ ବଡ଼ ରୂପ ଧାରଣ କରନ୍ତି କିନ୍ତୁ ତା ଦ୍ୱାରା ସେ ସାନ କିମ୍ବା ବଡ଼ ହୋଇ ଯାଆନ୍ତି ନାହିଁ । ତାଙ୍କ ରୂପ ଯାହା ହେଉ ନା କାହିଁକି ସ୍ୱଭାବ ସର୍ବଦା ସୁନ୍ଦର । ପୂର୍ବ କଳ୍ପର ନୈମିତ୍ତିକ ପ୍ରଳୟ ହେଲାବେଳେ ବ୍ରହ୍ମାଜୀ କ୍ଲାନ୍ତ ହୋଇ ଘୁମେଇ ପଡ଼ିଲେ । ତଥାପି ତାଙ୍କ ମୁଖରୁ ବେଦ ମନ୍ତ୍ର ଉଚାରିତ ହେଉଥିଲା । ହୟଗ୍ରୀବ ନାମକ ଜଣେ ରାକ୍ଷସ ବୈଦିକ ଜ୍ଞାନର ଅପାତ୍ର ହୋଇ ମଧ ବେଦ ବିଦ୍ୟା ହାସଲ କରିଥିଲେ । ସୁତରାଂ ଭଗବାନ ସେତେବେଳେ ମତ୍ସ୍ୟ ଅବତାର ହୋଇ ହୟଗ୍ରୀବଙ୍କୁ ବଧ କରି ବୈଦିକ ଜ୍ଞାନର ଅପାତ୍ର ହାତରୁ ରକ୍ଷା କରିଥିଲେ ।

ପ୍ରଶ୍ନ-୧୦୧. ଏବେ ଦ୍ୱିତୀୟଥର କ'ଣ ପାଇଁ ଭଗବାନଙ୍କୁ ପୁଣି ମତ୍ସ୍ୟ ଅବତାର ହେବାକୁ ପଡ଼ିଲା ?

**ଏକଦା କୃତ ମାଳାୟାଂ କୁର୍ବତୋ ଜଳ ତର୍ପଣମ୍**
**ତସ୍ୟ ଅଞ୍ଜଳି-ଉଦକେ କାଚିତ୍ ଶଫରୀ ଏକା-ଅଭ୍ୟପଦ୍ୟତ ।।୧୨।।**

ଉ. ଏହି କଳ୍ପରେ ଚାକ୍ଷୁଷ ମନ୍ୱନ୍ତରରେ ସତ୍ୟବ୍ରତ ବୋଲି ଜଣେ ରାଜର୍ଷି ଥିଲେ । ସେ ପରଜନ୍ମରେ ବିବସ୍ୱାନ (ସୂର୍ଯ୍ୟଦେବ)ଙ୍କ ପୁତ୍ର ଶ୍ରାଦ୍ଧଦେବ ହୋଇ ଜନ୍ମନେଲେ । ଭଗବାନ ତାଙ୍କ ତପସ୍ୟାରେ ଖୁସୀ ହୋଇ ତାକୁ ବୈବସ୍ୱତ ମନ୍ୱନ୍ତରରେ ମନୁ ପଦରେ ଅବସ୍ଥାପନ କରିବାକୁ ଇଚ୍ଛା କଲେ ।

ସୁତରାଂ ସେ କୃତମାଳା ନାମକ ଏକ ନଦୀ କୂଳରେ ରାଜା ଜଳ ତର୍ପଣ କଲାବେଳେ ସ୍ୱୟଂ ଭଗବାନ ଏକ କ୍ଷୁଦ୍ର ମୀନ, ମାଛଟିଏ ହୋଇ ତାଙ୍କ ଅଞ୍ଜଳି ମଧ୍ୟରେ ଦର୍ଶନ ଦେଲେ । ସେ ମାଛଟିକୁ ପୁଣି ଜଳରେ ଛାଡ଼ି ଦେଲେ । ମାଛଟି ମନୁଷ୍ୟ ଭଳି ବିନତି କରି କହିଲା, 'ମୋତେ ବଡ଼ ମାଛ ମାନେ ଖାଇଦେବେ । ମୋତେ ରକ୍ଷା କରନ୍ତୁ ।' ରାଜା ଏତିକିରେ ମାଛକୁ ଭଗବାନ ବୋଲି ଜାଣି ନ ପାରି ତାକୁ ରକ୍ଷା କରିବାକୁ ସ୍ଥିର କଲେ । ରାଜପ୍ରାସାଦକୁ ଧରି ଆଣିଲେ । ଦେଖିଲେ କ୍ଷୁଦ୍ର ପାତ୍ରରେ ମାଛକୁ ରହିବାକୁ ଅସୁବିଧା ହେଉଛି । ଗୋଟିଏ ବଡ଼ ପାତ୍ରରେ ରଖିଲେ । ତଥାପି ସ୍ଥାନ ନିଅଣ୍ଟ ପଡ଼ିଲା । ମାଛକୁ ଏକ ବଡ଼ ପୁଷ୍କରିଣୀରେ ରଖିଲେ । ମାଛ ପୁଣି ଅଦ୍ଭୁତ ଭାବରେ ବଢ଼ି ପୁଷ୍କରିଣୀ ଆକାର ହୋଇଗଲା । ଶେଷରେ ସମୁଦ୍ରରେ ତାଙ୍କୁ ଛଡ଼ା ଗଲା । ମାଛଟି ପୁଣି ରାଜାଙ୍କୁ ନିବେଦନ କଲା, 'ମୋତେ ବଡ଼ ମାଛ ଖାଇଯିବେ । ରକ୍ଷା କରନ୍ତୁ ମୋତେ ।'

ପ୍ରଶ୍ନ-୧୦୨. ମତ୍ସ୍ୟ ଅବତାରଧାରୀ ଭଗବାନଙ୍କ ଅତ୍ୟନ୍ତ ମଧୁର (ବଲ୍‌ଗୁ) ବାଣୀରେ ହୋସ ଆସିଲା ଶ୍ରାଦ୍ଧଦେବଙ୍କର । ସେ ମତ୍ସ୍ୟକୁ କ'ଣ ବୋଲି ଭାବିଲେ ?

**ଏବଂ ବିମୋହିତଃ ତେନ ବଦତା ବଲ୍‌ଗୁ ଭାରତୀମ୍ ।**
**ତଂ ଆହ କୋ ଭବାନ୍ ଅସ୍ମାନ୍ ମତ୍ସ୍ୟରୂପେଣ ମୋହୟନ୍ ।।୨୫।।**

ଉ. ସେ ଜାଣିପାରିଲେ ମୁଁ ଏକ କ୍ଷୁଦ୍ର ଜୀବ । ଏ ମତ୍ସ୍ୟରୂପଧାରୀ ଆଦୌ ଜୀବ କୋଟିକ ହୋଇ ନ ପାରନ୍ତି । ହୁଏତ ଏ କୌଣସି ଆଲୌକିକ ଶକ୍ତିଧାରୀ ମହାପୁରୁଷ କିମ୍ବା ସ୍ୱୟଂ ପୁରୁଷୋତ୍ତମ ଭଗବାନ ନାରାୟଣ । ସୁତରାଂ ସେ ତାଙ୍କ ପରିଚୟ ଜିଜ୍ଞାସା କରିଛନ୍ତି । ସପ୍ରେମ ନମସ୍କାର ମଧ୍ୟ କରିଛନ୍ତି ।

ପ୍ରଶ୍ନ-୧୦୩. ଯଦି ମତ୍ସ୍ୟ ରୂପଧାରୀ ଭଗବାନ ନାରାୟଣଙ୍କୁ ସେ ଚିହ୍ନିପାରିଛନ୍ତି ତାଙ୍କ ଠାରୁ କ'ଣ ଜାଣିବାକୁ ଚାହିଁଛନ୍ତି ?

**ସର୍ବେ ଲୀଳା-ଅବତାରାଃତେ ଭୂତାନାଂ ଭୂତ ହେତବଃ ।**
**ଜ୍ଞାତୁଂ ଇଚ୍ଛାମି -ଅଦୋ ରୂପଂ ଯତ୍ ଅର୍ଥଂ ଭବତା ଧୃତମ୍ ॥୨୯॥**

ଉ. ପଚାରିଛନ୍ତି, 'ହେ' ଭଗବାନ ! ଆପଣଙ୍କ ସକଳ ଲୀଳାବତାର ସମଗ୍ର ଜଗତ୍‌ର ଜୀବ ସମୂହଙ୍କର ପରମ କଲ୍ୟାଣ ନିମିତ୍ତ ପ୍ରକଟ ହୋଇଥାଏ । ସୁତରାଂ କେଉଁ ସନ୍ଦେଶ, ପ୍ରେମ ପ୍ରଚାର କରିବାକୁ ଏବେ ଆପଣ ଏ ଦିବ୍ୟ ମତ୍ସ୍ୟ ବିଗ୍ରହ ଧାରଣ କରିଛନ୍ତି । ହେ' ଭକ୍ତ ବତ୍ସଳ ଭଗବାନ ଦୟାକରି ମୋତେ ଏ ବିଷୟରେ ମାର୍ଗ ଦର୍ଶନ କରନ୍ତୁ ।'

ପ୍ରଶ୍ନ-୧୦୪. ଭଗବାନ ନିଜର ପରିଚୟ ଦେବାକୁ ଯାଇ ଶ୍ରାଦ୍ଧଦେବ ମନୁଙ୍କୁ କ'ଣ କହିଲେ ?

ଶ୍ରୀ ଭଗବାନ ଉବାଚ

**ସପ୍ତମେଽଦ୍ୟତନାତ୍ ଉର୍ଦ୍ଧ୍ୱଂ ଅହନି-ଏତତ୍ ଅରିନ୍ଦମ ।**
**ନିମଙ୍କ୍ଷ୍ୟତି-ଅପ୍ୟୟ-ଅମ୍ଭୋଧୌ ତ୍ରୈ ଲୋକ୍ୟଂ ଭୂଃ ଭୁବ-ଆଦିକମ୍ ॥୩୨॥**

ଉ. କହିଲେ 'ହେ' ଶତ୍ରୁଦମନ କାରୀ ରାଜା( ଅରିନ୍ଦମ) ! ଆଜି ଠାରୁ ସାତ ଦିନ ପରେ ମନ୍ୱନ୍ତର ପ୍ରଳୟ ହେବ । ଏଥିରେ ଭୂଃ-ଭୁବଃ-ସ୍ୱଃ ଏଇ ତିନି ଲୋକ ସଂହାର ହୋଇ ଅଦୃଶ୍ୟ ହୋଇଯିବ ।

ଏ ପ୍ରଳୟରୁ (ଅପ୍ୟୟ) ରକ୍ଷା ପାଇବା ପାଇଁ ମୁଁ ତୁମ ପାଖକୁ ଏକ ଦିବ୍ୟ ନାବଟିଏ ପଠାଇବି । ତୁମେ ବୃକ୍ଷ, ଲତା, ବନସ୍ପତି ଇତ୍ୟାଦିର ବୀଜ,ଉଚ୍ଚ-ନୀଚ ଅନ୍ୟ ଜୀବମାନଙ୍କର ସୂକ୍ଷ୍ମ ଶରୀମାନଙ୍କୁ ନିଜ ଯୋଗ ଶକ୍ତି ବଳରେ ଏକତ୍ରିତ କରି ସପ୍ତର୍ଷିଙ୍କ ସହିତ ଏ ନାବରେ ଆଶ୍ରୟ ନେବ । ସେତେବେଳେ ସୂର୍ଯ୍ୟ-ଚନ୍ଦ୍ରଙ୍କର ଆଲୋକ ମଧ୍ୟ ରହିବ ନାହିଁ । ସେହି ସପ୍ତର୍ଷି ମାନଙ୍କ ତେଜରେ ତୁମେ ନାବରେ ବସି ସକଳ କର୍ମ କରିପାରୁଥିବ । ପ୍ରବଳ ବାୟୁରେ ଡ଼ଙ୍ଗା ହଲିବ । ତୁମେ ଆଦୌ ଭୟ କରିବନି । ମୁଁ ଏକ ବୃହତ ସିଙ୍ଗ ଥିବା ମାଛ ରୂପରେ ବାସୁକୀ ସର୍ପ ସହିତ ତୁମ ଡ଼ଙ୍ଗା ପାଖରେ ଦେଖା ଦେବି । ତୁମେ ସେ ସର୍ପ ଦ୍ୱାରା ତୁମ ଯୋଗ ଶକ୍ତି ବଳରେ ଡ଼ଙ୍ଗାକୁ ମୋ ଦିବ୍ୟ ସିଙ୍ଗରେ ବାନ୍ଧିଦେବ । ମୁଁ ସେ ଡ଼ଙ୍ଗାକୁ ଧରି ପ୍ରଳୟ ଜଳରେ ବୁଲିବି ।

ହେ' ରାଜା ଶ୍ରାଦ୍ଧଦେବ! ମୁଁ ତୁମ ହୃଦୟରେ ବିରାଜମାନ କରିବି। ସେତେବେଳେ ତୁମେ ମୋର-ମାହାତ୍ମ୍ୟ ଜାଣି ପାରିବ। ସେଇ ଧର୍ମ ଜ୍ଞାନ ବଳରେ ତୁମେ ବୈବସ୍ୱତ ମନ୍ୱନ୍ତର କାଳରେ ଶାସନ କର୍ତ୍ତା ହେବ।' ଏହା କହି ଭଗବାନ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ।

ପ୍ରଶ୍ନ-୧୦୫. ଭଗବାନ ସତ୍ୟ ସଂକଳ୍ପ। ତାଙ୍କ କହିବା କଥା ସବୁ ଠିକ ଠିକ୍ ଘଟିଗଲା। ପ୍ରଳୟ ଜଳରେ ସପ୍ତଋଷି ସହିତ ସକଳ ଜୀବମାନଙ୍କ ସୂକ୍ଷ୍ମ ଶରୀର ସମୂହ ଓ ବୃକ୍ଷ ଲତାଦିଙ୍କ ବୀଜକୁ ଡ଼ଙ୍ଗାରେ ସାଇତି ରାଜା ଭାସିବୁଲିଲେ। ପରେ ପରେ ଭଗବାନ ତାଙ୍କ ହୃଦୟ କମଳରେ ପ୍ରକଟ ହେଲେ। ରାଜା ତାଙ୍କୁ ପୁରୁଷ ସୂକ୍ତରେ ସ୍ତୁତି କଲେ। ଭଗବାନ ସେତେବେଳେ ଶ୍ରାଦ୍ଧଦେବଙ୍କୁ କି କି ବୈଦିକ ଜ୍ଞାନର ଶିକ୍ଷା ପ୍ରଦାନ କଲେ ଯାହାକୁ ମତ୍ସ୍ୟ ପୁରାଣ କୁହାଯାଏ ?

**ପୁରାଣଂ ସଂହିତାଂ ଦିବ୍ୟାଂ ସାଂଖ୍ୟ ଯୋଗ କ୍ରିୟା ବତୀମ୍।**
**ସତ୍ୟବ୍ରତସ୍ୟ ରାଜର୍ଷେଃ ଆତ୍ମଗୁହ୍ୟଂ ଅଶେଷତଃ ॥୫୫॥**

ଉ. ଭଗବାନ ବିସ୍ତୃତ ଭାବରେ (ଅଶେଷତଃ) ରାଜାଙ୍କୁ ଜଡ଼-ଚେତନ ଦେହ-ଆତ୍ମା ପାର୍ଥକ୍ୟ, ସାଂଖ୍ୟଜ୍ଞାନ ସହିତ ଆତ୍ମ ତତ୍ତ୍ୱ, ପରମାତ୍ମ ତତ୍ତ୍ୱ-ଜ୍ଞାନର ଉପଦେଶ ପ୍ରଦାନ କଲେ ଯାହା ସବୁ ପୁରାଣ ସଂହିତା, ଦର୍ଶନ ଶାସ୍ତ୍ର, କର୍ମ ଯୋଗ, ଜ୍ଞାନଯୋଗ ଓ ଭକ୍ତି ଯୋଗ ଆକାରରେ ଭିନ୍ନ ଭିନ୍ନ ନାମରେ ବିଖ୍ୟାତ ହୋଇଥିଲେ।

ପ୍ରଶ୍ନ-୧୦୬. ସେତେବେଳେ ଏ ଜ୍ଞାନକୁ ସେ କେବଳ ଶ୍ରାଦ୍ଧଦେବ ମନୁଙ୍କୁ ଶୁଣାଇ ଥିଲେ (ଅଶ୍ରୌଷୀତ୍) ନା ଆଉ କେହି କେହି ମଧ୍ୟ ଏହା ଜାଣିବାରେ ସମର୍ଥ ହୋଇଥିଲେ ?

**ଅଶ୍ରୌଷୀତ୍ ଋଷିଭିଃ ସାକଂ ଆତ୍ମତତ୍ତ୍ୱଂ ଅସଂଶୟମ୍।**
**ନାବି-ଆସୀନୋ ଭଗବତା ପ୍ରୋକ୍ତଂ ବ୍ରହ୍ମ ସନାତନମ୍ ॥୫୬॥**

ଉ. ଏ ଶାଶ୍ୱତ (ସନାତନ) ବ୍ରହ୍ମ ବିଦ୍ୟା। ବୈଦିକ ଜ୍ଞାନକୁ ସେତେବେଳେ ସେଠାରେ ଉପସ୍ଥିତ ସପ୍ତ ଋଷି ମାନେ ମଧ୍ୟ ନିଜ ନିଜ ହୃଦୟରେ ଧାରଣ କରିନେଲେ। ସୁତରାଂ ମନୁଦେବଙ୍କ ଲାଗି ସୃଷ୍ଟି ସଂଚାଳନ ଓ ଧର୍ମର ପ୍ରଚାର ପ୍ରସାର ଲାଗି ଅତ୍ୟନ୍ତ ସୁବିଧାଜନକ ମନେ ହେଲା। ପରେ ଏହା ମତ୍ସ୍ୟ ପୁରାଣ ନାମରେ ବିଖ୍ୟାତ ହେଲା।

ପ୍ରଶ୍ନ-୧୦୭. ଏହି ରାଜା ସତ୍ୟବ୍ରତ କ'ଣ ଆମର ସପ୍ତମମନ୍ୱନ୍ତରର ବିବସ୍ୱାନ( ସୂର୍ଯ୍ୟ ଦେବ) ଙ୍କ ପୁତ୍ର ଶ୍ରାଦ୍ଧଦେବ ମନୁ ଏକା ଲୋକ ?

**ସ ତୁ ସତ୍ୟବ୍ରତୋ ରାଜା ଜ୍ଞାନ ବିଜ୍ଞାନ ସଂଯୁତଃ ।**
**ବିଷ୍ଣୋ ପ୍ରସାଦାତ୍ କଳ୍ପେ-ସ୍ମିନ୍ ଆସୀତ୍ ବୈବସ୍ୱତୋ ମନୁଃ ।।୫୮।।**

ଉ. ହିଁ, ହଁ ସେ ଦୁହେଁ ଏକା ଲୋକ । କେବଳ ନାମ ବଦଳିଛି ମନୁ ପଦରେ ଅଧିଷ୍ଠିତ ହେବାପରେ । ଭଗବାନଙ୍କ କୃପାରୁ ସେ କର୍ମ-ଜ୍ଞାନ-ଭକ୍ତି ରହସ୍ୟ ଜାଣିବାର ଅଧିକାରୀ ହୋଇ ପାରିଥିଲେ ।

ପ୍ରଶ୍ନ-୧୦୮. ଏହି ମାୟା ମତ୍ସ୍ୟ ପୁରାଣ ବର୍ଣ୍ଣିତ ଭକ୍ତ-ଭଗବାନଙ୍କ ସଂବାଦ ଶ୍ରବଣ-କୀର୍ତ୍ତନର ମାହାତ୍ମ୍ୟ କ'ଣ ?

**ସତ୍ୟବ୍ରତସ୍ୟ ରାଜର୍ଷେଃ ମାୟା ମତ୍ସ୍ୟସ୍ୟ ଶାର୍ଙ୍ଗିଣଃ ।**
**ସମ୍ବାଦଂ ମହତ୍ ଆଖ୍ୟାନଂ ଶ୍ରୁତ୍ୱା ମୁଚ୍ୟତେ କିଲ୍‌ବିଷାତ୍ ।।୫୯।।**

ଉ. ମାୟା ମତ୍ସ୍ୟ ଦେହରେ ଶୃଙ୍ଗ ଥିବା କାରଣରୁ ଭଗବାନଙ୍କର ଏ ଅବତାରର ନାମ ଶାର୍ଙ୍ଗି ବୋଲି ବିଖ୍ୟାତ ହେଲା । ଏହି ସତ୍ୟବ୍ରତ ମନୁ ଏବଂ ମତ୍ସ୍ୟ ଅବତାର ଲୀଳା ଶ୍ରବଣରେ ଜୀବର ପାପ (କଲୁଷ) ନାଶ ହୁଏ ଓ ଭଗବତ୍ ପ୍ରେମ ପ୍ରାପ୍ତି ସଂକଳ୍ପ ମଧ୍ୟ ପୂରଣ ହୋଇଥାଏ ।

# ୨୪.ଯଜ୍ଞ ପ୍ରକରଣ ସାର (ରାଜାଙ୍କର ରକ୍ଷାକର୍ତ୍ତା ଅହଂକାର ତ୍ୟାଗ)

## ଅଧ୍ୟାୟ ୨୪ଶ

ପୂର୍ବ ପ୍ରକରଣରେ ବର୍ଣ୍ଣିତ ହୋଇଛି ବଳିଙ୍କ ଯଜ୍ଞ ଚରିତ । ସେ କରିଥିଲେ ଦ୍ରବ୍ୟ ସମର୍ପଣ । ଦେବାର ଅହଂକାରକୁ ନଷ୍ଟ କରିବାକୁ । ଭଗବାନ ଦୌଡ଼ି ଆସିଲେ । ହୋଇଥିଲା ବାମନ ଅବତାର । ଏ ପ୍ରକରଣରେ ସୂର୍ଯ୍ୟ (ବିବସ୍ୱାନ)ଙ୍କ ପୁତ୍ର ଶ୍ରାଦ୍ଧଦେବ ମନୁ ଜପ ଓ ଧ୍ୟାନ ଦ୍ୱାରା ନିଜ ମନ ସମର୍ପଣ ଯଜ୍ଞ କରିଥିଲେ । ପରମାତ୍ମାଙ୍କୁ ମତ୍ସ୍ୟ ଅବତାର ହେବାକୁ ପଡ଼ିଲା । ମନୁ ବିଖ୍ୟାତ ହେଲେ ବୈବସ୍ୱତ (ବିବସ୍ୱାନ ପୁତ୍ର) ମନୁ ଭାବରେ । ଶାସନ କାଳ ଏକସ୍ତରୀ ଚତୁର୍ଯ୍ୟୁଗ । ଗୋଟିଏ ଗୋଟିଏ ଚତୁର୍ଯ୍ୟୁଗ କାଳ ତେୟାଳିଶି ଲକ୍ଷ କୋଡିଏ ହଜାର ବର୍ଷ । ଏବେ ମନୁଙ୍କ ଆୟୁଷ ସତେଇଶ ଚତୁର୍ଯ୍ୟୁଗ ସରିଗଲାଣି । ଅଠେଇଶ ତମ ଚତୁର୍ଯ୍ୟୁଗରୁ ତିନିଯୁଗ ସରି ଚତୁର୍ଥ ଯୁଗ କଳି ଭୋଗ ହେଉଛି ।

କୂର୍ମ, ମତ୍ସ୍ୟ, ବରାହ ରୂପ ଧାରଣ କଲେ ମଧ ପରାମାତ୍ମାଙ୍କର ମାହାତ୍ମ୍ୟରେ କିଛି ହାନି ହୁଏନା । ସେ ଏକକ ନାମ ରୂପରେ ସଦା ସର୍ବଦା ଦିବ୍ୟ ଚିନ୍ମୟ ରହିଥାନ୍ତି । ଏ ମନୁ ଓ ମତ୍ସ୍ୟ ଅବତାର ମାନବ ଧର୍ମ, ତତ୍ତ୍ୱଜ୍ଞାନ ଚରିତକୁ ଆଧାର କରି ଅଷ୍ଟାଦଶ ପୁରାଣ ମଧ୍ୟରୁ ଏକ ପୁରାଣ ମତ୍ସ୍ୟପୁରାଣ ରଚିତ ହୋଇଛି । ମନୁଷ୍ୟର ମନ ହିଁ ଏକ ଚଞ୍ଚଳ ମୀନ ବା ମତ୍ସ୍ୟ ଅଟେ । ମନ ବା ମୀନ ଏକ କ୍ଷୁଦ୍ର ଦେହ, ଗୃହ, ଟିକି ସଂସାରରେ ରହିପାରେ ନାହିଁ । ଛଟ ପଟ ହୁଏ ବଡ ହେବାକୁ କାରଣ ସେ ଅନନ୍ତର ଅଂଶ ପରା । ସୁତରାଂ ମନକୁ ଅନନ୍ତ ବା ବ୍ରହ୍ମାକାର ରୂପ ଦରକାର । କୃତମାଳା ନଦୀ ହେଲା ମନୁଷ୍ୟର ସତ୍‌କର୍ମ କରି ଜୀବନ ନିର୍ବାହ କରିବା । ମନୁଙ୍କ ପିତୃଦତ୍ତ ନାମ ସତ୍ୟବ୍ରତ । ମନୁଷ୍ୟ ସତ୍ୟପାଳନ ବ୍ରତ କଲେ ପରମାତ୍ମାଙ୍କ କୃପା ପ୍ରାପ୍ତିର ଅଧିକାରୀ ହୁଏ । ଏ ପ୍ରକରଣରେ ସଂସାରକୁ ସମୁଦ୍ର ,ମନୁଷ୍ୟ ଦେହକୁ ନୌକା, ସପ୍ତଋଷିଙ୍କୁ ଗୁରୁ ବୈଷ୍ଣବଙ୍କ ସତ୍‌ସଙ୍ଗ ବୋଲି କୁହାଯାଇଛି । ମତ୍ସ୍ୟର ସିଙ୍ଗ କୁହାଯାଇଛି ପ୍ରଭୁଙ୍କ ଚରଣ କମଳ ଧ୍ୟାନକୁ । ସ୍ୱୟ ଭଗବାନ ହିଁ ସଦ୍‌ଗୁରୁ ରୂପରେ ଜୀବକୁ ଉଦ୍ଧାର ହେବାର ମାର୍ଗ ଦର୍ଶନ କରାନ୍ତି ଯୁଗେ ଯୁଗେ ଜନ୍ମେ ଜନ୍ମେ । ଏଠାରେ ତାହା ହିଁ ହୋଇଛି ।

ବର୍ତ୍ତମାନ ଦେଖାଯାଉ ଶ୍ରାଦ୍ଧଦେବ ମନୁଙ୍କଠାରେ ଅହଂକାର କେଉଁଠି କିପରି ଲୁଚି ରହିଥିଲା । ମନୁଙ୍କ ଭଗବାନ ସତ୍ ଧର୍ମର ମହାନ୍ ଶିକ୍ଷା ଦେଲେ କେମିତି ? ନଚେତ୍ ମନୁ ଏତେ ଦୀର୍ଘକାଳ ପାଇଁ ମନ୍ୱନ୍ତର ଅଧିପତି ହେବେ କେଉଁ ବଳରେ ?

ସନ୍ଧ୍ୟା ତର୍ପଣ କାଳରେ ସ୍ୱୟଂ ଭଗବାନ ରାଜାଙ୍କ ଅଞ୍ଜଳିରେ ମୀନ ରୂପରେ ଦର୍ଶନ ଦେଇଛନ୍ତି । ପ୍ରାର୍ଥନା କରିଛନ୍ତି ରାଜାଙ୍କୁ ରକ୍ଷା କରିବାକୁ । ରାଜା କିନ୍ତୁ କଥାଟି ବୁଝିଲେ ସିନା କଥାର ମର୍ମକୁ ବୁଝିପାରିଲେନି । ମୀନଟିକୁ କମଣ୍ଡଳୁରେ ଆଶ୍ରୟ ଦେଲେ । ଭାବିଲେ ମୁଁ କ୍ଷୁଦ୍ର ମୀନ ଜୀବଟିର ପ୍ରାଣ ରକ୍ଷା କଲି । ଜଡ଼ ଭରତ ନିଜକୁ ମୃଗ ଶିଶୁର ରକ୍ଷା କର୍ତ୍ତା ମାନନ୍ତେ ଏହି ମାୟାଜାଲରେ ପଡି ଯାଇଥିଲେ । ଏଠାରେ କିନ୍ତୁ ସତ୍ୟବ୍ରତଙ୍କୁ ଭଗବାନ ଅହୈତୁକ କୃପା କରିଛନ୍ତି । ରାଜାଙ୍କୁ କହି କମଣ୍ଡଳରୁ କୁଣ୍ଡ, କୁଣ୍ଡରୁ ସରୋବର ଓ ଶେଷରେ ସରାବରରୁ ସମୁଦ୍ରକୁ ଯାଇଛନ୍ତି । ସମୁଦ୍ର ଜଳ ତାଙ୍କ ରହିବା ପାଇଁ ନିଅଣ୍ଟ ପଡନ୍ତେ ରାଜାଙ୍କ ବିବେକ କପାଟ ଫିଟିଛି । ସେ ଦିବ୍ୟ ମତ୍ସ୍ୟ ଭଗବାନଙ୍କୁ ତାଙ୍କର ପରିଚୟ ପଚାରିଛନ୍ତି । ଏହି ତ ବ୍ରହ୍ମଜିଜ୍ଞାସା ।

ଭଗବାନ ନିଷ୍କପଟ ହୃଦୟ ବାଲା ସାଧକର ସଦା ସହାୟକ । ମୁଁ ମତ୍ସ୍ୟର ରକ୍ଷା କର୍ତ୍ତା ସ୍ୱୟଂ ନୁହେଁ ବରଂ ପରମାତ୍ମା । ଏ ରହସ୍ୟଟି ଭଗବାନ ଶ୍ରାଦ୍ଧଦେବ ମନୁଙ୍କୁ ବୁଝାଇ ଦେଇଛନ୍ତି । ଏହି କାହାଣୀ ସହିତ ଜୀବ, ମାୟା, ବ୍ରହ୍ମ ତିନି ତତ୍ତ୍ୱର ପରିବେଷଣ ହେଉଛି ମତ୍ସ୍ୟ ପୁରାଣର କଥାବସ୍ତୁ । ପ୍ରଳୟ କାଳରେ ସକଳ ପ୍ରାଣୀ, ଔଷଧୀ, ବନସ୍ପତି ସହିତ ସମଗ୍ର ସୃଷ୍ଟିର ରକ୍ଷାକର୍ତ୍ତା ଅନ୍ୟ କେହି ହୋଇନପାରନ୍ତି । ପ୍ରତ୍ୟେକ ଜୀବ ହୃଦୟରେ ଯେ ଆତ୍ମା ରୂପଧାରୀ ସେହି ପରମାତ୍ମାଙ୍କ ହାତରେ ସୃଜନ, ପାଳନ ଓ ସଂହାର ଦାୟିତ୍ୱ ଯୁଗେ ଯୁଗେ ଥାଏ । ଜଣେ ରାଜା ରାଜ୍ୟ ଶାସନ କଲେ ମଧ ପରମାତ୍ମାଙ୍କ କାଠ କଣ୍ଢେଇ ।

ମତ୍ସ୍ୟ ଅବତାର ପ୍ରତ୍ୟେକ୍ଷ ଦର୍ଶନ ଦ୍ୱାରା ସତ୍ୟବ୍ରତମନୁ ସାଧକ ପଦବୀରୁ ଉତ୍ତୀର୍ଣ୍ଣ ହୋଇ ସିଦ୍ଧ ଭକ୍ତପଦବୀ ଧାରଣ କଲେ । ସମଗ୍ର ମାନବ ଜାତି ପାଇଁ ଭକ୍ତ ହେବାର ଉପାୟ ବତାଇଲେ । ଆତ୍ମ ସମର୍ପଣ, ଈଶ୍ୱରୀୟ ଶରଣାଗତି ହିଁ ଏକମାତ୍ର ଉପାୟ ବୋଲି ସେ ଅଙ୍ଗୁଳି ନିର୍ଦ୍ଦେଶ କରି ଯାଇଛନ୍ତି ଏହି ପ୍ରକରଣ ମାଧ୍ୟମରେ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ତ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଅଷ୍ଟମସ୍କନ୍ଧେ ଚର୍ତୁବିଂଶୋଽଧ୍ୟାୟଃ ।

॥ ହରିଃ ଓଁ ତତ୍‌ସତ୍ ॥

ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।

–୦–

### ଅଷ୍ଟାଦଶ ନକ୍ଷତ୍ର-ଜ୍ୟେଷ୍ଠା

## ନବମ ସ୍କନ୍ଧଃ

(ଅଧ୍ୟାୟ-୨୪,ଶ୍ଲୋକ-୯୬୧)

### ସପ୍ତମ ଲକ୍ଷଣ-ଈଶ ଅନୁକଥା । (ଭକ୍ତ ଚରିତ)

## ପ୍ରକରଣ-୨୫, ସୂର୍ଯ୍ୟବଂଶ ପ୍ରସଙ୍ଗ (ଅଧ୍ୟାୟ ୧ମ-୧୩ଶ)

## ଅଥ ପ୍ରଥମ ଅଧ୍ୟାୟଃ

### (ବୈବସ୍ୱତ ମନୁଙ୍କ ପୁତ୍ର ମାସେ ପୁରୁଷ (ସୁଦ୍ୟୁମ୍ନ) ପୁଣି ମାସେ ସ୍ତ୍ରୀ(ଇଳା)

**ରାଜା ଉବାଚ**

ପ୍ରଶ୍ନ-୧. ରାଜା ପରୀକ୍ଷିତ କହିଲେ, 'ହେ' ବ୍ରହ୍ମନ! ଆପଣ ଏକ କଳ୍ପରେ ଚଉଦ ମନ୍ୱନ୍ତର ହେବା କଥା କହିଛନ୍ତି । ଷଷ୍ଠ ମନ୍ୱନ୍ତର/ଚାକ୍ଷୁଷ ମନୁଙ୍କ ଶାସନ କାଳରେ ଦ୍ରବିଡ଼ ଦେଶର ସାଧୁ ରାଜା ସତ୍ୟବ୍ରତ ଜଣେ ରାଜର୍ଷି ଥିଲେ । ସେ ଏକାଧାରରେ ରାଜା ଓ ଋଷି ହୋଇ ପ୍ରକାଣ୍ଡ ଅଧ୍ୟାତ୍ମଜ୍ଞାନର ଅଧିକାରୀ ହୋଇଥିଲେ । ସେ ପରବର୍ତ୍ତୀ ଜନ୍ମରେ ବିବସ୍ୱାନ(ସୂର୍ଯ୍ୟ ଦେବଙ୍କ) ପୁତ୍ର ହୋଇଥିଲେ । ସପ୍ତମ ମନ୍ୱନ୍ତରରେ ବୈବସ୍ୱତ ମନୁ ଭାବରେ ସେ କାର୍ଯ୍ୟଭାର ଗ୍ରହଣ କଲେ । ପ୍ରତ୍ୟେକ ମନ୍ୱନ୍ତରରେ ଗୋଟିଏ ଗୋଟିଏ ନୂଆ ମନୁ ବଂଶ ଚାଲୁ ହୁଏ । ତେବେ ଏ ମନ୍ୱନ୍ତରର ବଂଶାବଳୀର ବିଶେଷତ୍ୱ କ'ଣ ?

**ତେଷାଂ ବଂଶଂ ପୃଥକ୍ ବ୍ରହ୍ମନ୍ ବଂଶ-ଅନୁଚରିତାନି ଚ ।**
**କୀର୍ତ୍ତୟସ୍ୱ ମହାଭାଗ ନିତ୍ୟଂ ଶୁଶ୍ରୁଷତାଂ ହି ନଃ ॥୪॥**

ଉ. ଏହି ବଂଶ ପ୍ରସିଦ୍ଧ ସୂର୍ଯ୍ୟବଂଶ ନାମରେ ବିଖ୍ୟାତ ଯେଉଁଥିରେ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ରାମଙ୍କ ପ୍ରାକଟ୍ୟ ହୋଇଥିଲା । ଏ ବଂଶରୁ ଶାଖା ମେଲିଥିଲା ଚନ୍ଦ୍ରବଂଶ ଯେଉଁ ଥିରେ ପ୍ରକଟ ହେଲେ ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ । ସେଇ ଦୁଇ ବଂଶ ଅଜସ୍ର କୀର୍ତ୍ତୀ/ଯଶ/ମାହାତ୍ମ୍ୟ ଶ୍ରବଣ ଲାଗି ରାଜା ଅତ୍ୟନ୍ତ ଉତ୍ସୁକ ହୋଇ ପଚାରିଛନ୍ତି ଏ ସମ୍ବନ୍ଧୀୟ ସୁନ୍ଦର ପ୍ରଶ୍ନ ।

**ଶ୍ରୀ ଶୁକ ଉବାଚ**

ପ୍ରଶ୍ନ-୨. ମହାଜ୍ଞାନୀ ଶୁକଦେବ ପରମହଂସ ଏହି ଦୁଇ ବଂଶର ଚରିତ ବିସ୍ତୃତ ଭାବରେ ନ କହି ସଂକ୍ଷେପରେ ଶୁଣାଇବାକୁ କାହିଁକି କହିଲେ ?

**ଶ୍ରୂୟତାଂ ମାନବୋ ବଂଶଃ ପ୍ରାଚୁର୍ଯ୍ୟେଣ ପରନ୍ତପ ।**
**ନ ଶକ୍ୟତେ ବିସ୍ତରତୋ ବକ୍ତୁଂ ବର୍ଷ ଶତୈଃ ଅପି ||୭||**

ଉ. ଏ ମନୁବଂଶର ଯଶ ବା ମାହାତ୍ମ୍ୟ ଏତେ ବ୍ୟାପକ ଓ ମହାନ୍ ଯେ ବିସ୍ତୃତ ଭାବରେ କହିଲେ ତାଙ୍କ ପାଇଁ ଏକ ଶତ ବର୍ଷ ସମୟ ମଧ୍ୟ ଯଥେଷ୍ଟ ହେବ ନାହିଁ । ଅଥଚ ରାଜାଙ୍କ ଅବଶିଷ୍ଟ ଜୀବନ ବା ଆୟୁଷ ମାତ୍ର ଆଉ ତିନିଦିନ । ସେହି ସ୍ୱଳ୍ପ କାଳରେ ରାମକଥା କୃଷ୍ଣ କଥାକୁ ବିଶ୍ରାମ ଦେବାକୁ ପଡ଼ିବ ତାଙ୍କୁ ।

କଳ୍ପାନ୍ତ ବେଳେ ଏ ଦୃଶ୍ୟମାନ ସୃଷ୍ଟି ପ୍ରକଟ ନଥିଲା । କାରଣ ଅର୍ଣ୍ଣବରେ ଅଦୃଶ୍ୟ ହୋଇସାରିଥିଲା । ସର୍ବ ପ୍ରଥମେ ଭଗବାନ ନାରାୟଣଙ୍କ ନାଭି କମଳରୁ ବ୍ରହ୍ମାଜୀ ପ୍ରକଟ ହେଲେ । ତାଙ୍କ ମନରୁ ଋଷି ମରୀଚି ଆଦି ସପ୍ତ ଋଷି ପ୍ରକଟ ହେଲେ । ଏହି ମରୀଚିଙ୍କ ପୁତ୍ର ହେଲେ ପ୍ରଖ୍ୟାତଯଶା କଶ୍ୟପ ମୁନି । ଯେ ଶୂନ୍ୟରେ-ଅତ୍ର-ତତ୍ର ବ୍ରହ୍ମ ଦର୍ଶନ(ପଶ୍ୟତି) କରି ପାରୁଥିଲେ । ତାଙ୍କର ତେର ପତ୍ନୀଙ୍କ ମଧ୍ୟରେ ଦେବମାତା ଅଦିତି ଥିଲେ ଅନ୍ୟତମ । ତାଙ୍କରି ପୁତ୍ରଙ୍କ ନାମ ଆଦିତ୍ୟ ବା ସୂର୍ଯ୍ୟ ବିବସ୍ୱାନ । ବିବସ୍ୱାନଙ୍କର ସଂଜ୍ଞାନାମକ ପତ୍ନୀଙ୍କ ଗର୍ଭରୁ ଜନ୍ମ ନେଲେ ରାଜର୍ଷି ଶ୍ରାଦ୍ଧଦେବ ମନୁ । ସେ ଶ୍ରଦ୍ଧାଦେବୀଙ୍କୁ ପତ୍ନୀରୂପେ ଗ୍ରହଣ କରିଥିଲେ ।

ପ୍ରଶ୍ନ-୩. ଶ୍ରାଦ୍ଧଦେବଙ୍କ ଅନେକ କାଳ ଧରି ପୁତ୍ର ସନ୍ତାନ ନ ହେବାରୁ (ଅପ୍ରଜସ୍ୟ) ରାଜା ବଂଶରକ୍ଷା ଲାଗି କି ଉପାୟ କଲେ ?

**ଅପ୍ରଜସ୍ୟ ମନୋଃ ପୂର୍ବଂ ବଶିଷ୍ଠୋ ଭଗବାନ୍ କିଲ ।**
**ମିତ୍ରାବରୁଣୟୋଃ ଇଷ୍ଟିଂ ପ୍ରଜା-ଅର୍ଥଂ ଅକରୋତ୍ ବିଭୁଃ ||୧୩||**

ଉ. ପୁତ୍ର ପ୍ରାପ୍ତିଲାଗି ରାଜା କୁଳଗୁରୁ ବିଶିଷ୍ଠ ଋଷିଙ୍କ ଦ୍ୱାରା ମିତ୍ରା ବରୁଣ ଦେବଙ୍କୁ ପ୍ରସନ୍ନ କରିବାକୁ ପୁତ୍ରେ୍ୟଷ୍ଟି ଯଜ୍ଞ କଲେ ।

ଏଣେ ରାଣୀ ଶ୍ରଦ୍ଧା ପୁରୋହିତମାନଙ୍କୁ କନ୍ୟା ରତ୍ନଟିଏ ପ୍ରାପ୍ତି ନିମିତ୍ତ ଯଜ୍ଞରେ ଆହୂତି ଦେବାକୁ ନିର୍ଦ୍ଦେଶ ଦେଲେ । ଏକଥା ଜଣା ନଥିଲା ରାଜାଙ୍କୁ । ଯଥା ସମୟରେ କନ୍ୟା ଇଳା ଜନ୍ମ ନେଲେ । ରାଜା ପୁତ୍ର ନ ହେବାର କାରଣ ପଚାରିଲେ ଗୁରୁ

ବଶିଷ୍ଠଙ୍କୁ । ମୁନି ସବୁକଥା ବର୍ଣ୍ଣନ କରନ୍ତେ ରାଜା ବଂଶରକ୍ଷା ପାଇଁ ପୁତ୍ର ନିମିତ୍ତ ଉଦ୍‌ବିଗ୍ନ ହେଲେ ।

ପ୍ରଶ୍ନ-୪. ଶ୍ରାଦ୍ଧଦେବଙ୍କର ଚିନ୍ତା ଦୂର କରିବାକୁ ମହାମୁନି ବଶିଷ୍ଠ କି ଉପାୟ ବତାଇଲେ ?

**ତସ୍ମୈ କାମବରଂ ତୁଷ୍ଟୋ ଭଗବାନ୍ ହରିଃଈଶ୍ୱରଃ ।**
**ଦଦୌ ଈଳା ଅଭବତ୍ ତେନ ସୁଦ୍ୟୁମ୍ନଃ ପୁରୁଷ-ଋଷଭଃ ।।୨୨।।**

ଉ. ସୂର୍ଯ୍ୟବଂଶ ପୁରୋହିତ ବଶିଷ୍ଠ ନିଜ ତପ ଶକ୍ତି ବଳରେ ଶ୍ରୀହରି ବିଷ୍ଣୁଙ୍କୁ ପ୍ରସନ୍ନ କଲେ । ଭଗବାନଙ୍କ ଇଚ୍ଛାରୁ ସେଇ ଈଳା କନ୍ୟା ସୁଦ୍ୟୁମ୍ନ ନାମରେ ପୁଅଟିଏ ହୋଇଗଲେ । ସୁଦ୍ୟୁମ୍ନ ସମୟ କ୍ରମେ ଏକ-ସୁନ୍ଦର ଯୁବକରେ ପରିଣତ ହେଲେ । ଥରେ ସେ ଦୁର୍ଲ୍ଲଭ ଶ୍ୟାମକର୍ଣ୍ଣ ଅଶ୍ୱ ଚଢ଼ି ମୃଗୟାରେ ବାହାରିଲେ । ଦୈବ ଇଚ୍ଛାରେ ସେ ସୁକୁମାର(କାମ୍ୟକ) ବନରେ ପହଞ୍ଚିଗଲେ । ସେ ଏକ ବିଚିତ୍ର ବନ । ସେ ବନରେ କେବଳ ଭଗବାନ ଶ୍ରୀଶଙ୍କର ମା' ଉମାଙ୍କ ସହିତ ଏକାନ୍ତ ବାସ କରନ୍ତି । ସେ ବନରେ କୌଣସି ମନୁଷ୍ୟ, ଦେବତା, ରାକ୍ଷସ, ଜୀବ ଜନ୍ତୁ ପୁରୁଷ ହୋଇ ରହି ପାରେନା । ପ୍ରବେଶ କରୁ କରୁ ସ୍ତ୍ରୀ ରୂପ ଗ୍ରହଣ କରେ ।

ପ୍ରଶ୍ନ-୫. ପୁରୁଷ ନିଷିଦ୍ଧ ସୁକୁମାର ବନରେ ପ୍ରବେଶ କରି ରାଜ କୁମାର ସୁଦ୍ୟୁମ୍ନ ତାଙ୍କ ସେନାପତି, ସୈନ୍ୟ, ଅଶ୍ୱ, ହସ୍ତୀ ସମସ୍ତେ ସ୍ତ୍ରୀ ଲିଙ୍ଗି ହୋଇଗଲେ । ରାଜକୁମାର ବ୍ୟାକୁଳ ହୋଇ ଏଣେ ତେଣେ ବୁଲୁ ବୁଲୁ ପୁଣି (ଚରନ୍ତୀଂ) କେଉଁ ଅଘଟଣ ଘଟିଲା ?

**ଅଥ ତାଂ ଆଶ୍ରମ-ଅଭ୍ୟାଶେ ଚରନ୍ତୀଂ ପ୍ରମଦା-ଉତ୍ତମାମ୍ ।**
**ସ୍ତ୍ରୀଭିଃ ପରିବୃତ୍ତାଂ ବୀକ୍ଷ୍ୟ ଚକମେ ଭଗବାନ୍ ବୁଧଃ ।।୩୪।।**

ଉ. ସେମାନେ ହଠାତ୍ ପହଞ୍ଚିଗଲେ ବୁଧଙ୍କ ଆଶ୍ରମରେ । ବୁଧ ଚନ୍ଦ୍ରଦେବଙ୍କ ପୁତ୍ର ହୋଇଥିବାରୁ ଅତ୍ୟନ୍ତ ସୁନ୍ଦର, ଆକର୍ଷଣୀୟ, ନାରୀ ମନଲୋଭା ରୂପ ଧାରଣ କରିଥିଲେ । ସୁନ୍ଦରୀ ନାରୀର (ସୁଦ୍ୟୁମ୍ନ)ଙ୍କ ସହିତ ତାଙ୍କର ଚାରି ଚକ୍ଷୁ ମିଳନରେ ଉଭୟେ ପରସ୍ପର ପ୍ରତି କାମ-ଇଚ୍ଛା ପ୍ରକଟ କଲେ (ଅଭ୍ୟାଶେ) । ଉଭୟେ ଥିଲେ ଦୈବ ପ୍ରକୃତି ଯୁକ୍ତ ଅସାମାନ୍ୟ ଜୀବ । ଫଳରେ ସେମାନଙ୍କ ମିଳନ ସଂଯୋଗରୁ ପ୍ରକଟ ହେଲେ ସୂର୍ଯ୍ୟ ବଂଶୀୟ ରାଜା ପୁରୁରବା ।

ପ୍ରଶ୍ନ-୬. ସୁଦ୍ୟୁମ୍ନ ଫେରି ଆସିଲେ ନିଜ ରାଜ୍ୟର ରାଜଧାନୀକୁ । କୁଳଗୁରୁ ବଶିଷ୍ଠ ଯଯମାନଙ୍କ ପୁତ୍ରର ଅବସ୍ଥା ଦେଖି ବଡ଼ ଅଡୁଆରେ ପଡ଼ିଲେ । ଧ୍ୟାନ କଲେ ଶଙ୍କର ଭଗବାନଙ୍କୁ । ଶଙ୍କରଜୀ ବଶିଷ୍ଠଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ଶାପର ଆଂଶିକ ନିରାକଣ କରିଦେଲେ । ଯାହାଫଳରେ ସୁଦ୍ୟୁମ୍ନ ଗୋଟିଏ ମାସ ପୁରୁଷ (ସୁଦ୍ୟୁମ୍ନ) ରହିଲେ ତାର ପର ମାସରେ ସ୍ତ୍ରୀ (ଇଳା ହୋଇ) ତା ପରମାସରେ ପୁଣି ପୁରୁଷ (ସୁଦ୍ୟୁମ୍ନ) ରହିପାରିବେ । ମାସେ ମାସେ ପୁରୁଷ-ସ୍ତ୍ରୀ ହୋଇ ସୁଦ୍ୟୁମ୍ନ ରାଜ କାର୍ଯ୍ୟ କିପରି ଚଳେଇଲେ ?

**ଆଚାର୍ଯ୍ୟ-ଅନୁଗ୍ରହାତ୍ କାମଂ      ଲବ୍ଧ୍ୱାଂ ପୁଂସ୍ତ୍ୱଂ ବ୍ୟବସ୍ଥୟା ।**
**ପାଳୟାମାସ ଜଗତୀଂ      ନ-ଅଭ୍ୟନନ୍ଦତ୍ ସ୍ମ ତଂ ପ୍ରଜାଃ ||୪୦||**

ଉ. ଗୁରୁ ବଶିଷ୍ଠ(ଆଚାର୍ଯ୍ୟ)ଙ୍କ ନିର୍ଦ୍ଦେଶରେ ସେ ପୁରୁଷ ରୂପରେ ରାଜ କାର୍ଯ୍ୟ ଚଳାନ୍ତି । ପରବର୍ତ୍ତୀ ମାସରେ ନାରୀ ରୂପରେ ରାଣୀ ହଂସ ପୁରରେ ଶାଢ଼ୀ ଅଳଙ୍କାର ପିନ୍ଧି ଲୁଚି ରହନ୍ତି । ଫଳରେ ରାଜ୍ୟର ପ୍ରଜାଗଣ ସୁଦ୍ୟୁମ୍ନଙ୍କ ରାଜ୍ୟ ଶାସନ କାଳରେ ନିରବଚ୍ଛିନ୍ନ ସୁଶାସନ ଜନିତ ଆନନ୍ଦ ପ୍ରାପ୍ତିରୁ ବଂଚିତ ରହୁଥିଲେ । ପୁରୁଷ (ସୁଦ୍ୟୁମ୍ନ) ଭାବରେ ତାଙ୍କର ତିନି ସନ୍ତାନ ହେଲେ-ଉତ୍କଳ, ଗୟ ଓ ବତ୍ସର (ବିମଳ) ଯେଉଁମାନଙ୍କୁ ସେ ଦକ୍ଷିଣ ଭାରତର ଶାସନ ଭାର ଅର୍ପଣ କଲେ ।

ନିଜର ସ୍ତ୍ରୀ (ଇଳା) ରୂପରେ ଜନ୍ମିତ ସନ୍ତାନ ପୁରୁରବା ପ୍ରତି ସେ ଅତ୍ୟନ୍ତ ଗଭୀର ପ୍ରେମ ପ୍ରକଟ କରୁଥିଲେ । ସୁତରାଂ ନିଜର ପରିଣତ ବୃଦ୍ଧ ଅବସ୍ଥା ଉପସ୍ଥିତ ହୁଅନ୍ତେ ସେ ରାଜ୍ୟଭାର ପୁରୁରବାଙ୍କୁ ସମର୍ପଣ କରି ଏକାନ୍ତ ହରିଭଜନ ଲାଗି ବାନପ୍ରସ୍ଥାଶ୍ରମରେ ଚାଲିଗଲେ ।

# ଅଥ ଦ୍ୱିତୀୟ ଅଧ୍ୟାୟଃ

## (ବୈବସ୍ୱତମନୁଙ୍କ ପୁତ୍ରମାନଙ୍କ ବଂଶାବଳୀର ବର୍ଣ୍ଣନ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୭. ବୈବସ୍ୱତ ମନୁ ସୂର୍ଯ୍ୟ (ବିବସ୍ୱାନ)ଙ୍କ ପୁତ୍ର ହୋଇଥିବାରୁ ତାଙ୍କ ବଂଶକୁ ସୂର୍ଯ୍ୟ ବଂଶ କୁହାଯାଏ । ଇକ୍ଷ୍ୱାକୁ ବଂଶକୁ କାହିଁକି ସୂର୍ଯ୍ୟବଂଶ କୁହାଯାଏ ?

**ତତୋଽଜନୟଜ୍ ମନୁଃ ଦେବଂ      ଅପତ୍ୟ-ଅର୍ଥଂ ହରିଂ ପ୍ରଭୁମ୍ ।**
**ଇକ୍ଷ୍ୱାକୁ-ପୂର୍ବଜାନ୍ ପୁତ୍ରାନ୍      ଲେଭେ ସ୍ୱ ସଦୃଶାନ୍ ଦଶ ||୨||**

ଉ.ରାଜା ମନୁ ପୁତ୍ର କାମନା କରି ଶ୍ରୀହରି ବିଷ୍ଣୁଙ୍କୁ ତପସ୍ୟା କଲେ । ଫଳରେ ନିଜ ସଦୃଶ ଦଶ ତେଜୀୟାନ୍ ପୁତ୍ର ଜାତ କରାଇଥିଲେ ପତ୍ନୀ ଶ୍ରଦ୍ଧାଙ୍କ ଗର୍ଭରେ । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠତମ ଇକ୍ଷ୍ୱାକୁ, କନିଷ୍ଠତମ କବିଙ୍କ ସହିତ ପୃଷଧ୍ର,କରୁଷ, ଧୃଷ୍ଟ ନୃଗ, ନରିଷ୍ୟନ୍ତ ଓ ଦିଷ୍ଟ ଆଦି ସ୍ୱଧନାଧନ୍ୟ ପୁତ୍ର ଥିଲେ । ଏହି ଦିଷ୍ଟଙ୍କ ବଂଶରେ ରାଜା ରନ୍ତିଦେବ ଓ ମରୁତ ରାଜା ଜନ୍ମ ଲାଭକରି ସୂର୍ଯ୍ୟ ବଂଶର କୀର୍ତ୍ତିକୁ ସମୁଜ୍ଜ୍ୱଳ କରିଥିଲେ ।

ପ୍ରଶ୍ନ-୮. ରାଜା ମରୁତ କେଉଁ କାର୍ଯ୍ୟ କରି ସୂର୍ଯ୍ୟ ବଂଶର ଯଶ ବୃଦ୍ଧି କରିପାରିଥିଲେ ?

**ମରୁତସ୍ୟ ଯଥା ଯଜ୍ଞୋ ନ ତଥା-ଅନ୍ୟୋ-ସ୍ତି କଶ୍ଚନ ।**
**ସର୍ବଂ ହିରଣ୍ମୟଂ ତୁ ଆସୀଦ୍ ଯତ୍ କିଂଚିତ୍ ଚ-ଅସ୍ୟ ଶୋଭନମ୍ ॥୨୭॥**

ଉ. ଅତ୍ୟନ୍ତ ଆଡ଼ମ୍ବର ପୂର୍ଣ୍ଣ ଯଜ୍ଞ ରାଜା ମରୁତଙ୍କ ପୂର୍ବରୁ କେହି କରିପାରି ନଥିଲେ କିମ୍ବା ଭବିଷ୍ୟତରେ କାହାରି କରିବାର ମଧ୍ୟ ସମ୍ଭବନା ନଥିଲା । ତାଙ୍କ ଯଜ୍ଞରେ ବ୍ୟବହୃତ ସାନ, ବଡ଼ ସକଳ ଯଜ୍ଞ ପାତ୍ର ଅତ୍ୟନ୍ତ ମନୋହର ଓ ସ୍ୱର୍ଣ୍ଣ (ହିରଣ୍ମୟଂ) ନିର୍ମିତ ଥିଲା । ସେ ଯଜ୍ଞ ଶେଷରେ ବ୍ରାହ୍ମଣ, ଯାଚକ ମାନଙ୍କୁ ଅପର୍ଯ୍ୟାପ୍ତ ସ୍ୱର୍ଣ୍ଣ ଦାନ କରିଥିଲେ । ଦାନ ଦେବା ପରେ ଉଦ୍‌ବୃତ୍ତ ସ୍ୱର୍ଣ୍ଣ ସବୁକୁ ଉତ୍ତର ଦିଗସ୍ଥିତ ହିମାଳୟର ପବିତ୍ର ଭୂମିରେ ଫିଙ୍ଗି ଦେଇଥିଲେ । ଯାହାକୁ ଶ୍ରୀକୃଷ୍ଣଙ୍କ ଆଦେଶରେ ଦ୍ୱାପର ଯୁଗ ଶେଷରେ ରାଜା ଯୁଦ୍ଧିଷ୍ଠିର ସଂଗ୍ରହ କରି ସେଥିରେ ସେ ନିଜର ରାଜସୂୟ ଯଜ୍ଞ ସଂପନ୍ନ କରିଥିଲେ । ଏହି ମରୁତଙ୍କ ଯଜ୍ଞ, କଥା ବୈଦିକ ଗ୍ରନ୍ଥ ମାନଙ୍କରେ ବର୍ଣ୍ଣିତ ହୋଇଛି ।

ରାଜାମରୁତଙ୍କ ବଂଶରେ ତୃଣ ବିନ୍ଦୁ ନାମରେ ଜଣେ ରାଜା ଜନ୍ମ ହୋଇଥିଲେ । ସେ ଅଲମ୍ବୁଷା ବୋଲି ଜଣେ ଅପ୍‌ସରାଙ୍କ ଗର୍ଭରେ ଇଳାବିଳା ବା ଇଡ଼ାବିଡ଼ା କନ୍ୟାକୁ ଜନ୍ମ ଦେଇଥିଲେ । ଏହି ଇଡ଼ାବିଡ଼ା ଓ ବିଶ୍ରବା ଋଷିଙ୍କ ଗର୍ଭରୁ ଯକ୍ଷମାନଙ୍କ ରାଜା କୁବେର ଜନ୍ମ ହୋଇଥିଲେ । ପୁଣି ବିଶ୍ରବାଙ୍କ ସହିତ କୈକେସୀ ରାକ୍ଷସୀଙ୍କ ମିଳନରୁ ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣଙ୍କ ସହିତ ସୂର୍ପଣଖା ଏହି ଚାରି ସନ୍ତାନ ଜନ୍ମ ହୋଇଥିଲେ ।

# ଅଥ ତୃତୀୟ ଅଧ୍ୟାୟଃ

## (ଶର୍ଯ୍ୟାତି କନ୍ୟା ସୁକନ୍ୟାଙ୍କ ସହିତ ଚ୍ୟବନ ମୁନିଙ୍କ ଗୃହସଂସାର)

ପ୍ରଶ୍ନ-୯. ବୈବସ୍ୱତ ମନୁଙ୍କ ପୁତ୍ରମାନଙ୍କ ମଧ୍ୟରେ ଜଣେ ଅତ୍ୟନ୍ତ ବେଦଜ୍ଞ ପଣ୍ଡିତ(ବ୍ରହ୍ମିଷ୍ଠଃ) ଥିଲେ । ଯାହାଙ୍କ ନାମ ରଖାଯାଇଥିଲା ଶର୍ଯାତି । ସେ ଜଣେ ପ୍ରକାଣ୍ଡ ବେଦବେତ୍ତା ଥିଲେ ବୋଲି କେଉଁ କଥାରୁ ପ୍ରମାଣ ମିଳେ ?

ଶ୍ରୀ ଶୁକ ଉବାଚ

**ଶର୍ଯାତିଃ ମାନବୋ ରାଜା ବ୍ରହ୍ମିଷ୍ଠଃ ସ ବଭୂବ ହ ।**
**ଯୋ ବା ଅଙ୍ଗିରସାଂ ସତ୍ରେ ଦ୍ୱିତୀୟଂ ଅହ ଉଚିବାନ୍ ॥୧॥**

ଉ.ଏକଦା ତାଙ୍କ ରାଜ୍ୟରେ ଅଙ୍ଗିରସ ଗୋତ୍ରୀୟ ବ୍ରାହ୍ମଣ ମାନେ ଏକ ଯଜ୍ଞ କରୁଥିଲେ । ସେମାନଙ୍କୁ ସେହି ଯଜ୍ଞର ଦ୍ୱିତୀୟ ଦିନର କର୍ମକାଣ୍ଡ ବିଷୟରେ ସେ ଠିକଣା ମାର୍ଗଦର୍ଶନ କରାଇଥିଲେ (ଉଚିବାନ୍) ।

ସେଇ ଶର୍ଯାତି ରାଜାଙ୍କର ଗୋଟିଏ ଅତ୍ୟନ୍ତ ସୁନ୍ଦରୀ କନ୍ୟା ଥିଲା । ନାମ ତାର ସୁକନ୍ୟା । ଏକଦା ସୁକନ୍ୟାକୁ ସଙ୍ଗରେ ଧରି ରାଜା ସୈନ୍ୟ ସାମନ୍ତ ଓ ସୁକନ୍ୟାଙ୍କ ସଖୀମାନଙ୍କ ସହିତ ଚ୍ୟବନ ମୁନିଙ୍କ ଆଶ୍ରମକୁ ବୁଲି ଯାଇଥିଲେ ।

ପ୍ରଶ୍ନ-୧୦ ସେଇ ଆଶ୍ରମ ପରିସରରେ ସୁକନ୍ୟା ସଖୀମାନଙ୍କ ସହ ବୁଲୁବୁଲୁ କେଉଁ ଅଘଟଣ ଘଟାଇ ବସିଲେ ?

**ସେ ଦୈବ ଚୋଦିତା ବାଳା ଜ୍ୟୋତିଷୀ କଣ୍ଟକେନ ବୈ ।**
**ଅବିଧ୍ୟତ୍ ମୁଗ୍ଧ ଭାବେନ ସୁସ୍ରାବ- ଅସୃକ୍ ତତୋ ବହୁ ॥୪॥**

ଉ. ସୁକନ୍ୟା ଦେଖିଲେ- ଏକ ଉଇହୁଙ୍କା ମଧ୍ୟରେ ଦୁଇଟି ଚକ୍ ଚକ୍ କରୁଥିବା ଉଜ୍ଜ୍ୱଳ ବସ୍ତୁ । ଦୈବ ଯୋଗେ ସେ ଗୋଟିଏ ମୁନିଆଁ କଣ୍ଟାଦ୍ୱାରା ଉଦ୍ଦେଶ୍ୟ ହୀନ ଭାବରେ ସେ ସେହି ଢ଼ଳ ଢ଼ଳ ବସ୍ତୁକୁ (ଜ୍ୟୋତିଷୀ) ଫୋଡ଼ି ଦେଲେ । ଫଳରେ ସେ ଦୁଇଟି କଣା ହୋଇ ସେଥିରୁ ରକ୍ତ ଝରି (ସୁସ୍ରାବ-ଅସୃକ୍) ଆସିଲା ।

ସଙ୍ଗେ ସଙ୍ଗେ ରାଜା ଶର୍ଯାତି ଲକ୍ଷ୍ୟ କଲେ ସେ ବନ ମଧ୍ୟସ୍ଥ ସକଳ ସୈନ୍ୟ ସାମନ୍ତ ଆଦିଙ୍କର ମଳମୂତ୍ରର ବେଗ ରୁଦ୍ଧ ହୋଇଯାଇଛି । ସମସ୍ତେ ଅତ୍ୟନ୍ତ କଷ୍ଟରେ ଛଟ ପଟ ହେଉଛନ୍ତି । ରାଜା ଅଘଟଣର କାରଣ ଜିଜ୍ଞାସା କରି ବୁଝିଲେ ରାଜ କୁମାରୀ ଚପଳତା ହେତୁ ମୁନି ଚ୍ୟବନଙ୍କ ଚକ୍ଷୁ ଦୁଇଟି ଫୁଟାଇ ଦେବାରୁ ଏ ଭଳି ପରିସ୍ଥିତି

ଉପୁଜିଛି !! ଶର୍ଯାତି ବ୍ୟସ୍ତ ହୋଇ ନିଜର ଭାଗ୍ୟର ନିନ୍ଦା କରି ପ୍ରମାଦ ଗଣିଲେ । ନିଜେ ମୁନିଙ୍କର ସେବା ଲାଗି ରାଜାକୁମାରୀ ସୁକନ୍ୟାକୁ ମୁନିଙ୍କ ହସ୍ତରେ କନ୍ୟାଦାନ କରି ସେବା ଯତ୍ନର ବ୍ୟବସ୍ଥା କଲେ । ସ୍ୱୟଂ ରାଜଧାନୀକୁ ଫେରି ଆସିଲେ ।

ସୁକନ୍ୟା ପତ୍ନୀ ହିସାବରେ ଚ୍ୟବନଙ୍କଂ ସେବା କରୁଥାନ୍ତି । ଏକଦା ସ୍ୱର୍ଗରୁ ଅଶ୍ୱିନୀ କୁମାର ଦ୍ୱୟ ତାଙ୍କ ଆଶ୍ରମକୁ ଆସିଥିଲେ । କୃପା କରି ସେ ମୁନିଙ୍କୁ ଅନ୍ଧତ୍ୱରୁ ମୁକ୍ତ କରିଦେଲେ । ପୁଣି ନିଜ ଯୋଗ ବିଦ୍ୟା ବଳରେ ଋଷିଙ୍କୁ ତାଙ୍କ ଯୌବନ ଫେରାଇ ଦେଲେ । ପ୍ରତିବଦଳରେ ଚ୍ୟବନ ତାଙ୍କୁ ଯଜ୍ଞ କରି ଯଜ୍ଞ ଭାଗ ଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ସୁକନ୍ୟା ଚ୍ୟବନଙ୍କ ଗୃହସ୍ଥ ଜୀବନ ଆନନ୍ଦରେ କଟୁଥାଏ । ତାଙ୍କର ଆନର୍ତ୍ତ ନାମରେ ପୁତ୍ର ହୋଇଥିଲା, ଯାହାଙ୍କର ପୁତ୍ରଙ୍କ ନାମ ରେବତ । ଏହି ରେବତଙ୍କର ଶହେ ସନ୍ତାନ ହେଲେ ଯାହାଙ୍କ ମଧ୍ୟରେ ଜ୍ୟେଷ୍ଠ ପୁତ୍ର ଥିଲେ କୁକୁଦ୍ମୀ ।

ପ୍ରଶ୍ନ-୧୧.କକୁଦ୍ମୀଙ୍କୁ ଭାରତ ଇତିହାସରେ କାହିଁକି ଏତେ ଉଚ୍ଚସ୍ଥାନ ପ୍ରାପ୍ତ ହେଲା ?

**କକୁଦ୍ମୀ ରେବତୀଂ କନ୍ୟାଂ ସ୍ୱାଂ ଆଦାୟ ବିଭୁଂ ଗତଃ ।**
**ପୁତ୍ର୍ୟା ବରଂ ପରିପ୍ରଷ୍ଟୁଂ ବ୍ରହ୍ମଲୋକଂ ଅପାବୃତମ୍ ॥୨୯॥**

ଉ.କକୁଦ୍ମୀ ରାଜାଙ୍କ କନ୍ୟା ରେବତୀ ତ୍ରିଗୁଣାତୀତା ଥିଲେ । କନ୍ୟାପାଇଁ ଉପଯୁକ୍ତ ବର ବିଷୟରେ ପଚାରିବା ପାଇଁ ସେ କନ୍ୟାକୁ ଧରି ଯୋଗବଳରେ ପହଞ୍ଚିଲେ ବ୍ରହ୍ମଲୋକ । ତାଙ୍କ ଅଲୌକିକ କନ୍ୟା ପାଇଁ ଲୋଡ଼ା ଅଲୌକିକ ବର !!

ପ୍ରଶ୍ନ-୧୨. ବ୍ରହ୍ମାଜୀ ସେତେବେଳକୁ ଏକ ବ୍ରହ୍ମଜ୍ଞାନ ସଭାରେ ବ୍ୟସ୍ତ ଥାଆନ୍ତି । ପରେ ସଭା ସମାପ୍ତ ହୁଅନ୍ତେ ରାଜାଙ୍କଠାରୁ ସକଳ ବୃତ୍ତାନ୍ତ ଶ୍ରବଣ କରି ସୃଷ୍ଟି କର୍ତ୍ତା ବ୍ରହ୍ମଦେବ କ'ଣ ଉପଯୁକ୍ତ ଜାମାତାଟିଏ ଯୋଗାଡ଼ କରି ପାରିଲେ ?

**ତତ୍ଶ୍ରୁତ୍ୱା ଭଗବାନ୍ ବ୍ରହ୍ମା ପ୍ରହସ୍ୟ ତଂ ଉବାଚ ହ ।**
**ଅହୋ ରାଜନ୍ ନିରୁଦ୍ଧାଃ ତେ କାଳେନ ହୃଦି ଯେ କୃତାଃ ॥୩୧॥**

ଉ. ଜାମାତାର ଠିକଣା ବତାଇବେ କ'ଣ ? ସେ ହସି ହସି କହିଲେ, 'ହେ' ରାଜା ! କକୁଦ୍ମୀ ତୁମର ଏହି ବ୍ରହ୍ମଲୋକରୁ ଫେରି ତୁମ ରାଜ୍ୟରେ ପହଞ୍ଚିଲା ବେଳକୁ ତୁମ ବଂଶଜ ସନ୍ତାନ ପୁତ୍ର, ପୌତ୍ର, ପ୍ରପୌତ୍ର ଆଦି କାଳ ମୁଖରେ ପଶି

ସାରିବେଣି । ୨୭ ଚତୁର୍ଯୁଗ ବିତି ସାରିବଣି ମର୍ତ୍ତ୍ୟ ଲୋକରେ । ତୁମର ଏ ତ୍ରିଗୁଣାତୀତ ଦିବ୍ୟ କନ୍ୟା ଲାଗି ମୁଁ ଆଉ ଜଣେ ତ୍ରିଗୁଣାତୀତ ମହାପୁରୁଷଙ୍କ ଉପଯୁକ୍ତ ବରରୂପରେ ବ୍ୟବସ୍ଥା କରି ସାରିଛି । ଏବେ ଶ୍ରୀ କୃଷ୍ଣ ଲୀଳାରେ ସାହାଯ୍ୟ କରିବାପାଇଁ ସେ ବଳରାମ ରୂପରେ ଜନ୍ମ ନେଇ ସାରିଛନ୍ତି । ତୁରନ୍ତ ଯାଇ ତାଙ୍କ ହସ୍ତରେ କନ୍ୟାଦାନ କରି ଚିନ୍ତାମୁକ୍ତ ହୁଅ ।

ପ୍ରଶ୍ନ-୧୩. ବ୍ରହ୍ମାଜୀଙ୍କ ଆଦେଶ କକୁଦ୍ମୀ ପାଳନ କରି ପାରିଲେ କି ?

**ସୁତାଂ ଦତ୍ତ୍ୱା-ଅନବଦ୍ୟ-ଅଙ୍ଗୀଂ ବଳାୟ ବଳଶାଳିନେ ।**
**ବଦର୍ଯ୍ୟାଖ୍ୟଂ ଗତୋ ରାଜା ତପ୍ତୁଂ ନାରାୟଣ ଆଶ୍ରମମ୍ ॥୩୬॥**

ଉ. କକୁଦ୍ମୀ ମର୍ତ୍ତ୍ୟ ଲୋକକୁ ଫେରି ଆସିଲେ । କନ୍ୟା ରେବତୀଙ୍କୁ ମହାବଳବାନ ବଳରାମଙ୍କ (ବଳାୟ)ହସ୍ତରେ ଅର୍ପଣ କଲେ । ନିଜର ଦେହତ୍ୟାଗ ଲାଗି ରାଜା ବଦ୍ରୀ ବିଶାଳ (ବଦର୍ଯ୍ୟାଖ୍ୟଂ) ଯାଇ ନାରାୟଣ ଆଶ୍ରମରେ ତପସ୍ୟା ମଗ୍ନ ହୋଇଗଲେ ।

# ଅଥ ଚତୁର୍ଥ ଅଧ୍ୟାୟଃ

## (ମହାନ୍ ଭକ୍ତ ଅମ୍ବରୀଷ ଓ ମହାନ୍ ତପସ୍ୱୀ ଦୁର୍ବାସାଙ୍କ ଚରିତ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୧୪. ପିତାଙ୍କ ସମ୍ପତ୍ତିରେ ପୁତ୍ରର ଦାବୀ (ଦାୟଂ) ଥାଏ । ମନୁପୁତ୍ର ନଭଗଙ୍କ ସନ୍ତାନ ନାଭାଗଙ୍କୁ କାହିଁକି ପିତା ନଭଗଙ୍କ ସଂପତ୍ତି ମିଳିଲାନି ?

**ନାଭାଗୋ ନଭଗ-ଅପତ୍ୟଂ ଯଂ ତତଂ ଭ୍ରାତରଃ କବିମ୍ ।**
**ଯବିଷ୍ଠଂ ବ୍ୟଭଜନ୍ ଦାୟଂ ବ୍ରହ୍ମଚାରିଣଂ ଆଗତମ୍ ॥୧॥**

ଉ. ଗୁରୁ ଗୃହରୁ ବେଦ ବିଦ୍ୟାଶିକ୍ଷା କରି ଫେରିବାରେ ବିଳମ୍ବ ଘଟିଲା ନାଭାଗଙ୍କର । ଇକ୍ଷ୍ୱାକୁ, ପୃଷଧ୍ର ଆଦି ଅନ୍ୟ ନଅ ଭାଇ କପଟ କରି ପିତାଙ୍କର ସବୁ ସଂପତ୍ତିକୁ ନଅ ଭାଗ କରି ବାଣ୍ଟି ନେଲେ । ନାଭାଗ ବିଦ୍ୟା ସମାପ୍ତି ପରେ ଗୃହ ପହଞ୍ଚି ନିଜ ଭାଗ ବିଷୟରେ ପଚାରିଲେ । ଭାଇମାନେ ତାଙ୍କୁ ସ୍ୱୟଂ ବୃଦ୍ଧ ପିତାଙ୍କୁ ତାଙ୍କ ଭାଗ ସ୍ୱରୂପ ଦେଇଛନ୍ତି ବୋଲି କହିଲେ ।

ଏ କଥା ଶୁଣି ପରମ ଜ୍ଞାନୀ (କବିଂ) ପିତାଙ୍କୁ ନ୍ଯଭାଗ ଏ କଥା ସାଦର ପ୍ରଣାମପୂର୍ବକ ଜଣାଇଲେ । ପିତା ନାଭାଗ ବୃତ୍ତି ରକ୍ଷା ଲାଗି ଏକ ସୁନ୍ଦର ଉପାୟ ତାଙ୍କୁ ବତାଇଦେଲେ । ଯୋଗକୁ ସେତେବେଳେ ଅଙ୍ଗିରସ ଗୋତ୍ରର ବ୍ରାହ୍ମଣ ମାନେ ଏକ ମହାଆଡ଼ମ୍ବରପୂର୍ଣ୍ଣ ଯଜ୍ଞ କରୁଥାନ୍ତି । ସେ ଯଜ୍ଞରେ ପୂର୍ଣ୍ଣାହୂତି ପାଇଁ ଦୁଇ ଟି ବେଦମନ୍ତର ଶୁଦ୍ଧ ଉଚାରଣ ଦରକାର ପଡୁଥାଏ । ସେ କଥା କେବଳ ନଭଗଙ୍କୁ ଜଣା ଥିଲା । ସେ ପୁତ୍ରକୁ ସେ ମନ୍ତ୍ର ଦୁଇଟି ସେଠାରେ ଉଚାରଣ କରି ଯଜ୍ଞ ପୂର୍ଣ୍ଣାହୂତି କରାଇବାକୁ କହିଲେ । ନାଭାଗ ସେହି ଯଜ୍ଞରେ ପୂର୍ଣ୍ଣାହୂତି ଦେଲେ ଶୁଦ୍ଧ ମନ୍ତ୍ରୋଚାରଣ କରି । ବ୍ରାହ୍ମଣମାନେ ଅଜସ୍ର ସଂପତ୍ତି ଅଜାଡ଼ି ଦେଲେ ଖୁସିରେ ନାଭାଗଙ୍କୁ ଦକ୍ଷିଣା ସ୍ୱରୂପ । ପୁତ୍ର ପୌତ୍ରାଦି କ୍ରମେ ଜୀବନ ନିର୍ବାହ କରିବାପାଇଁ ଯଥେଷ୍ଟ ହେଲା ସେ ସମ୍ପତ୍ତି ନାଭାଗଙ୍କ ନିମିତ୍ତ । ଏଇତ ଜଣେ ବିଦ୍ୱାନ ପାଇଁ ପିତୃଭକ୍ତିର ଫଳ ।

ପ୍ରଶ୍ନ-୧୫. ମହାନ୍ ପିତୃଭକ୍ତ ନାଭାଗଙ୍କ ପୁତ୍ର ରୂପେ ଅମ୍ବରୀଷ ମହାରାଜା କିପରି ଓ କାହିଁକି ଭାରତ ଇତିହାସରେ ଏତେ ଉଚ୍ଚସ୍ଥାନ ପ୍ରାପ୍ତ ହେଲେ ?

**ନାଭାଗାତ୍ ଅମ୍ବରୀଷୋଽଭୂତ୍ ମହାଭାଗବତଃ କୃତୀ ।**
**ନ-ଅସ୍ପୃଶତ୍ ବ୍ରହ୍ମଶାପୋଽପି ଯଂ ନ ପ୍ରତିହତଃ କ୍ୱଚିତ୍ ॥୧୩॥**

ଉ. କାରଣ ସେ ଏତେ ବଡ଼ ବିଖ୍ୟାତ(କୃତୀ) ମହାନ ହରିଭକ୍ତ (ମହାଭାଗବତଃ) ଥିଲେ ଯେ ତାଙ୍କ ଭକ୍ତି ପାଖରେ ମହାକ୍ରୋଧୀ ମହାନ୍ ତପସ୍ୱୀ ଦୁର୍ବାସା ଋଷିଙ୍କର ବ୍ରହ୍ମଶାପ ମଧ କିଛି କ୍ଷତି ପାରିଲାନି (ନ ପ୍ରତିହତଃ) ।

ପ୍ରଶ୍ନ-୧୬. ସପ୍ତଦ୍ୱୀପା ମହିମଣ୍ଡଳର ଏକଛତ୍ରାଧିପତି ରାଜା ହୋଇ ମଧ ମହାରାଜ ଅମ୍ବରୀଷ ସଂପୂର୍ଣ୍ଣ ସଂସାର ଅନାସକ୍ତ ଥିଲେ । ସକଳ ରାଜ୍ୟ ରାଜକୀୟ ଐଶ୍ୱର୍ଯ୍ୟକୁ ସେ ସାମାନ୍ୟ ମାଟିଟେଳାଏ (ଲୋଷ୍ଟବତ୍) ବୋଲି କିପରି ଭାବୁଥିଲେ ?

**ବାସୁଦେବେ ଭଗବତି ତତ୍ ଭକ୍ତେଷୁ ଚ ସାଧୁଷୁ ।**
**ପ୍ରାପ୍ତୋ ଭାବଂ ପରଂ ବିଶ୍ୱଂ ଯେନ-ଇଦଂ ଲୋଷ୍ଟବତ୍ ସ୍ମୃତମ୍ ॥୧୭॥**

ଉ. ରାଜା ଅମ୍ବରୀଷ ଭକ୍ତ ହିସାବରେ ଅତି ଉଚ୍ଚ ଅନୁଭବ ସଂପନ୍ନ (ଅନ୍ୟମାନଙ୍କର ଅପହୁଞ୍ଚ) ସାଧକ ଥିଲେ । ଭାବରାଜ୍ୟର ସେ ଜଣେ ବିଦଗ୍ଧ ରସିକ, ଭାବୁକ ଭକ୍ତ ଥିଲେ । ସେ ବିଶ୍ୱ ଓ ବିଶ୍ୱାତ୍ମା ଉଭୟକୁ ଭିନ୍ନ ଓ ଅଭିନ୍ନ ରୂପରେ ନିଜ ଅନୁଭବରେ ଆଣି ପାରି ଥିଲେ । ସେଥିପାଇଁ ବୈଦିକ ଜ୍ଞାନୀମାନେ ତାଙ୍କୁ ପଶ୍ୟତି ଅମ୍ବରେ (ଶୂନ୍ୟରେ) ଈଶଂ ଇତି ଅମ୍ବରୀଷଂ ବୋଲି ନାମରେ ସମ୍ମାନିତ କରୁଥିଲେ ।

ବ୍ରହ୍ମଠାରୁ କୀଟ ପର୍ଯ୍ୟନ୍ତ ସକଳ ଜୀବକୁ ଈଶ୍ୱରଙ୍କ ମୂର୍ତ୍ତି 'ବିଗ୍ରହ' ରୂପରେ ସେ ଭାବନା କରୁଥିଲେ । ତତ୍ ସହିତ୍ ସକଳ ଜଡ଼ ପଦାର୍ଥ ମଧ୍ୟ ଈଶ୍ୱରଙ୍କ ବାସ ସ୍ଥାନ ବୋଲି ସେ ଅନୁଭବ କରି ପାରିଥିଲେ ।

ସୁତରାଂ ରାଜ୍ୟର ସକଳ ସଂପତ୍ତିର ମାଲିକ ପରମେଶ୍ୱର ବୋଲି କହି ନିଜକୁ ସେ ସଂପତ୍ତିର ରକ୍ଷୁଆଳ, ଜଗୁଆଳ, ଇମାନ୍‌ଦାର ଚୌକିଦାର ବା ବଗିଚାର ମାଳି ବୋଲି ମନେ କରୁଥିଲେ । ଅତଏବ ତାଙ୍କ ବ୍ୟବହାର ଉପଭୋଗ ଦୃଷ୍ଟିରେ ସେ ସବୁ ଜିନିଷ କାଣି କଉଡ଼ିକର ମୂଲ୍ୟ ନ ଥିବା ମାଟିଟେଳାଏ ପରି ତାଙ୍କୁ ମନେ ହେଉଥିଲା ।

ପ୍ରଶ୍ନ-୧୭. ସଂସାରକୁ ଏଭଳି ବୈରାଗ୍ୟ ଦୃଷ୍ଟିରେ ଦେଖୁଥିବା ଅମ୍ବରୀଷ ନିଜ ଶରୀରର ଅଙ୍ଗ ପ୍ରତ୍ୟଙ୍ଗକୁ କ'ଣ ବୋଲି ମନେ କରୁଥିଲେ ?

**ସ ବୈ ମନଃ କୃଷ୍ଣପଦ-ଅରବିନ୍ଦୟୋଃ**
**ବଚାଂସି ବୈକୁଣ୍ଠ ଗୁଣ-ଅନୁବର୍ଣ୍ଣନେ ।**
**କରୌ ହରେଃ ମନ୍ଦିର ମାର୍ଜନ -ଆଦିଷୁ**
**ଶ୍ରୁତିଂ ଚକାର-ଅଚ୍ୟୁତ ସତ୍‌କଥା-ଉଦୟେ ||୧୮||**

ଉ. ରାଜା ଅମ୍ବରୀଷ ଅନୁଭବ କରିଥିଲେ-ଜୀବର ଅସଲ ମନ ତ ସେଇ ଯେ ସର୍ବଦା ହରିଚରଣ କମଳ ଚିନ୍ତନ କରୁଥାଏ । ଅସଲ ବଚନ ବା କଥା ତ ସେଇ ଯେଉଁଥିରେ ହରିଗୁଣ, ଲୀଳା ଆଦି ବର୍ଣ୍ଣିତ ହୁଏ । ହାତ ପଦବାଚ୍ୟ ସେଇ ଯେ ହରିସେବାରେ ଲାଗିଥାଏ । ତାକୁ କେବଳ କର୍ଣ୍ଣ କହିବା ଉଚିତ୍ ଯେ ହରିକଥା ଶ୍ରବଣ ଉତ୍ସୁକ ଏବଂ ଗ୍ରାମ୍ୟ କଥା ଶ୍ରବଣ ଆଗ୍ରହୀ ନୁହେଁ ।

ପ୍ରଶ୍ନ-୧୮. ଚକ୍ଷୁ,ଦେହ, ଘ୍ରାଣ ଓ ରସନା ଇନ୍ଦ୍ରିୟଙ୍କର ସାର୍ଥକତା ବିଷୟରେ ରାଜା ଅମ୍ବରୀଷ କି ମତ ପୋଷଣ କରୁଥିଲେ ?

**ମୁକୁନ୍ଦ ଲିଙ୍ଗ-ଆଳୟ ଦର୍ଶନେ ଦୃଶୌ**
**ତଦ୍‌ଭୃତ୍ୟ ଗାତ୍ର ସ୍ପର୍ଶେଽଙ୍ଗ ସଙ୍ଗମମ୍ ।**
**ଘ୍ରାଣଂ ଚ ତତ୍ ପାଦ ସରୋଜ ସୌରଭେ**
**ଶ୍ରୀମତ୍ ତୁଳସ୍ୟା ରସନାଂ ତତ୍ ଅର୍ପିତେ ||୧୯||**

ଉ. ରାଜାଙ୍କ ମତରେ ଶ୍ରୀ ହରିଙ୍କ ବିଗ୍ରହ ଦର୍ଶନ କେବଳ ଚକ୍ଷୁର ସାର୍ଥକତା । ଜଣେ ବୈଷ୍ଣବର ଶରୀର ଆଲିଙ୍ଗନ କେବଳ ସ୍ପର୍ଶଇନ୍ଦ୍ରିୟ ବା ତ୍ୱକ୍‌ର ସାର୍ଥକତା ।

ନାସିକା ଧନ୍ୟ ହୁଏ ଶ୍ରୀବିଷ୍ଣୁଙ୍କ ପାଦ ପଦ୍ମରେ ଅର୍ପିତ ପୁଷ୍ପର ସୁଗନ୍ଧ ପ୍ରାପ୍ତିରେ । ସେହିଭଳି ଭକ୍ତର ରସନା ଇନ୍ଦ୍ରିୟ ଧନ୍ୟ ହୁଏ ଶ୍ରୀହରି ବିଷ୍ଣୁଙ୍କ ମହାପ୍ରସାଦ କଣିକାଏ ପାଇ ଗଲେ !!

ପ୍ରଶ୍ନ- ୧ ୯ .ଜଣେ ହରିଭକ୍ତ ପକ୍ଷରେ ନିଜ ପାଦ ଓ ମସ୍ତକର ଗୌରବ ବୃଦ୍ଧି ସହିତ ତାଙ୍କ କାମନା (କାମଂ) ଓ ଆସକ୍ତି (ରତିଂ) ଉଭୟଙ୍କର ଉଚିତ୍ ସଦୁପଯୋଗ କି ଭଳି ହୋଇଥାଏ ?

**ପାଦୌ ହରେଃ କ୍ଷେତ୍ର ପଦ-ଅନୁସର୍ପଣେ**
**ଶିରୋ ହୃଷିକେଶ ପଦ-ଅଭିବନ୍ଦନେ ।**
**କାମଂଚ ଦାସ୍ୟେ ନ ତୁ କାମ କାମ୍ୟୟା**
**ଯଥା-ଉତ୍ତମ ଶ୍ଳୋକ ଜନ-ଆଶ୍ରୟା ରତିଃ ।।୨୦।।**

ଉ.ପାଦର ଗୌରବ ବଢ଼େ ଶ୍ରୀହରିଙ୍କ ତୀର୍ଥ ଗମନ କଲେ ଓ ମସ୍ତକର ଗୌରବ ବଢ଼େ ମନ୍ଦିରରେ ଅଚଳ ବିଗ୍ରହ ଓ ସଂସାରରେ ଚଳନ୍ତି ବିଗ୍ରହ ସାଧୁ ଚରଣ କମଳରେ ସଶ୍ରଦ୍ଧ ସାଦର ଅବନତ ହେଲେ ।

ସେହିପରି ଜୀବନରେ ଓ ଜୀବନାନ୍ତରେ ଜନ୍ମେ ଜନ୍ମେ ହରିଦାସ ହେବା କାମନା ହିଁ ଜୀବର ସର୍ବଶ୍ରେଷ୍ଠ କାମନା । ହରିଦାସ (ଉତ୍ତମ ଶ୍ଳୋକ ଜନ-ଆଶ୍ରୟ) ଙ୍କର ସେବା ଅଭିଳାଷ ହିଁ ହରି ଭକ୍ତର ବନ୍ଦନୀୟ ଆସକ୍ତି ଅଟେ ।

ପରମେଶ୍ୱରଙ୍କୁ ସମସ୍ତ କର୍ମଫଳ ଅର୍ପଣ କରି ରାଜା ରାଜ୍ୟ ଶାସନ କାର୍ଯ୍ୟ ଚଳାଇଲେ । ରାଜ ସ୍ଥାନର ମରୁଭୂମିରେ ମଧ୍ୟ ଅଶ୍ୱମେଧ ଯଜ୍ଞ କରି ଶ୍ରୀହରିଙ୍କୁ ପ୍ରସନ୍ନ କରି ପାରିଥିଲେ । ସେ ଯଜ୍ଞରେ ପୁରୋହିତ, ଅତିଥି, ନିମନ୍ତ୍ରିତ ରାଜା ଓ ରାଜନ୍ୟ ବର୍ଗ ମହାର୍ଘ ବସ୍ତ୍ର ଆଭୂଷଣ ପିନ୍ଧି ଜଣେ ଜଣେ ଦେବତା ଭଳି ଦିଶୁଥିଲେ । ପ୍ରଜାଗଣ ପରମ ଆନନ୍ଦରେ ରହି ସ୍ୱର୍ଗ ସୁଖକୁ ମଧ୍ୟ ତୁଚ୍ଛମନେ କରୁଥିଲେ । ସ୍ୱହୃଦୟ କମଳରେ ନିତ୍ୟ ଶ୍ରୀହରିଙ୍କୁ ଦର୍ଶନ କରି ଯୋଗୀ ଦୁର୍ଲ୍ଲଭ ଅଣିମାଦି ସିଦ୍ଧିକୁ ଆଡ଼ ଆଖିରେ ଚାହୁଁ ନଥିଲେ ।

ପ୍ରଶ୍ନ-୨୦. ପ୍ରଥମେ ବର୍ଣ୍ଣାଶ୍ରମ ଧର୍ମ ପାଳନ କରି ପରେ ପୁଣି ତ୍ୟାଗ କରିବାକୁ ପଡ଼ିଥାଏ । ରାଜା ଭକ୍ତ ହେଲା ପରେ କ'ଣ ସ୍ୱଧର୍ମ ତ୍ୟାଗ କରିଦେଲେ ?

**ସ ଇତ୍ଥଂ ଭକ୍ତି ଯୋଗେନ ତୟା-ଉପଯୁକ୍ତେନ ପାର୍ଥିବଃ ।**
**ସ୍ୱଧର୍ମୋ ହରିଂ ପ୍ରୀଣନ୍ ସର୍ବାନ୍ କାମାନ୍ ଶନୈ ଜହୌ ।।୨୧।।**

ଉ. ନା ନା, ସ୍ୱଧର୍ମ ତ୍ୟାଗ କରିବା ଦରକାର ପଡ଼ି ନଥିଲା । କାରଣ ରାଜାଙ୍କର (ପାର୍ଥିବଃ) ସକଳ ବୈଦିକ ଲୌକିକ କର୍ମ ଭକ୍ତିରେ ରୂପାନ୍ତରିତ ହୋଇଯାଉଥିଲା । ସକଳ ଭୌତିକ କାମନା ଧୀରେ ଧୀରେ (ଶନୈ)ତାଙ୍କ ମନ-ବୁଦ୍ଧି-ଅହଂକାର ସାମ୍ରାଜ୍ୟରୁ ସମୂଳେ ବିଦାୟ ନେଇସାରିଥିଲେ (ଜହୌ) ।

ପ୍ରଶ୍ନ- ୨ ୧. ସପ୍ତଦ୍ୱୀପା ମହୀମଣ୍ଡଳର ଅଧୀଶ୍ୱର ରୂପେ ସେ ଅମାପ ଐଶ୍ୱର୍ଯ୍ୟର ସତ ସତିକା ମାଲିକ ତ ଥିଲେ । ସେ ସବୁ ଭୌତିକ ଭୋଗ୍ୟବସ୍ତୁର ଭୋଗ ବିମୁଖ ହେଲେ କାହିଁକି ?

**ଗୃହେଷୁ ଦାରେଷୁ ସୁତେଷୁ ବନ୍ଧୁଷୁ**
**ଦ୍ୱୀପ-ଉତ୍ତମ ସ୍ୟନ୍ଦନ ବାଜି ବସ୍ତୁଷୁ ।**
**ଅକ୍ଷୟ ରତ୍ନ-ଆଭରଣ-ଅମ୍ବର ଆଦିଷୁ**
**ଅନନ୍ତ କୋଶେଷୁ-ଅକରୋତ୍ ଅସତ୍ ମତିମ୍ ||୨୭||**

ଉ. ସେ ନିଜର ଗୃହ, ପତ୍ନୀ, ପୁତ୍ର, ସ୍ୱଜନ, ହସ୍ତୀ, ଘୋଡ଼ା ଧନ ରତ୍ନ, ମହାର୍ଘ ଅଳଂକାର,ବସ୍ତ୍ର ଇତ୍ୟାଦି ସକଳ ଭୌତିକ ବସ୍ତୁକୁ ନଶ୍ୱର ଓ ତୁଚ୍ଛାତିତୁଚ୍ଛ ଭାବି ସେ ସବୁକୁ ଦେହ, ଗୃହ ସଜାଇବାରେ ଆଦୌ ଉପଯୋଗ କରୁନଥିଲେ ।

ରାଜାଙ୍କ ଭକ୍ତିରେ ପ୍ରସନ୍ନ ହୋଇ ନାରାୟଣ ନିଜର ସୁଦର୍ଶନ ଚକ୍ରଙ୍କୁ ତାଙ୍କର ଶତ୍ରୁ ହାତରୁ ରକ୍ଷା ଲାଗି ନିଯୁକ୍ତି କରିଥିଲେ । ଥରେ ରାଜା ବର୍ଷକ ଲାଗି ଚବିଶ ଏକାଦଶୀ ବ୍ରତ ପାଳନ କରୁଥାନ୍ତି । ବୃନ୍ଦାବନରେ ଏକାଦଶୀ ପାଳନ କରି ରାଜଧାନୀକୁ ଫେରି ଆସି ଦ୍ୱାଦଶୀ ପାରଣା ପାଇଁ ଆୟୋଜନ କରୁଥାନ୍ତି । ଯୋଗକୁ ମହର୍ଷି ଦୁର୍ବାସା ସେଦିନ ତାଙ୍କର ଅତିଥି ହୋଇ ପାରଣାରେ ଯୋଗଦେବାକୁ ସମ୍ମତ ହେଲେ । ମହର୍ଷି ଯମୁନା ସ୍ନାନ କରିବାକୁ ଯାଇ ଫେରିବାରେ ବିଳମ୍ବ କଲେ ।

ପାରଣା ସମୟ ଗଡ଼ିଯିବାକୁ ବସିଲା । ରାଜା ଅଡୁଆ ପରିସ୍ଥିତିରେ ପଡ଼ି କୁଳ ପୁରୋହିତଙ୍କ ପରାମର୍ଶରେ ଜଳ ତୁଳସୀ ସେବନ କଲେ । ଶାସ୍ତ୍ରାନୁସାରେ ଜଳ ତୁଳସି ଖାଇବା- ନ ଖାଇବାରେ ଗଣାଯାଏ । ଦୁର୍ବାସା ଋଷି ସ୍ନାନରୁ ଫେରି ଅତ୍ୟନ୍ତ ରୁଷ୍ଟ ହୋଇ ରାଜାଙ୍କୁ ଦଣ୍ଡଦେବାକୁ ଉଦ୍ୟତ ହେଲେ । ଜଟା ଉପାଡ଼ି ତଳେ କଚାଡ଼ି କୃତ୍ୟା ଉତ୍ପନ୍ନ କଲେ । ଆଦେଶ ଦେଲେ ରାଜା ଅମ୍ବରୀଷଙ୍କୁ ହତ୍ୟା କରିବା ନିମିତ୍ତ । ଏଣେ ଜଗିଥିବା ସୁଦର୍ଶନ ଚକ୍ର ପ୍ରକଟ ହୋଇ କୃତ୍ୟାକୁ ଭସ୍ମ କରିଦେଇ ଦୁର୍ବାସା ଋଷିକୁ ମାରି ଗୋଡ଼ାଇଲେ ।

ପ୍ରଶ୍ନ-୨୨. ଏଭଳି ଅଡୁଆ ପରିସ୍ଥିତିରେ ମହାତପସ୍ୱୀ ଦୁର୍ବାସା କି ଅସ୍ତ୍ର ବ. ଯୋଗଶକ୍ତି ପ୍ରୟୋଗ କରି ଚକ୍ରରାଜ ସୁଦର୍ଶନଙ୍କୁ ପ୍ରତିହତ କଲେ ?

**ତତ୍ ଅଭିଦ୍ରବତ୍ ଉତ୍‌ବୀକ୍ଷ୍ୟ ସ୍ୱ ପ୍ରୟାସଂ ଚ ନିଷ୍ଫଳମ୍ ।**
**ଦୁର୍ବାସା ଦୁଦ୍ରୁବେ ଭୀତଃ ଦିକ୍ଷୁ ପ୍ରାଣ ପରୀପ୍‌ସୟା ॥୪୯॥**

ଉ. ସୁଦର୍ଶନ ଚକ୍ର ଆକ୍ରମଣ ପ୍ରତିରୋଧ କରିବାକୁ (ପରୀପ୍‌ସୟା) ତପସ୍ୟା ବଳ କାହିଁ ଦୁର୍ବାସାଜୀଙ୍କର ? ସୁଦର୍ଶନଙ୍କ ଅସହ୍ୟ ତେଜରେ ଋଷିଙ୍କର ଦେହ ମୁଣ୍ଡ ଜଳିବାକୁ ଆରମ୍ଭ କରନ୍ତେ ସେ ନିଜ ପ୍ରାଣରକ୍ଷା ଲାଗି ଦୌଡ଼ି ଶରଣ ପଶିଲେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପାଶରେ । ବ୍ରହ୍ମାଜୀ କହିଲେ, 'ମୁଁ ସୁଦର୍ଶନଙ୍କ ଆକ୍ରମଣରୁ ଆପଣଙ୍କୁ ରକ୍ଷା କରିବାରେ ଅସମର୍ଥ ।' ଏଥର ଦୁର୍ବାସା ଋଷି ଦୌଡ଼ିଲେ କୈଳାସ ଧାମ । ଭଗବାନ ଶଙ୍କର ମଧ୍ୟ ତାଙ୍କୁ ନିରାଶାବାଣୀ ଶୁଣାଇଲେ । ସୁଦର୍ଶନ ଚକ୍ର ବିଷ୍ଣୁ ଆୟୁଧ । ଏହା କେନ୍ଦ୍ର ସରକାରଙ୍କ ବ୍ୟାପାର । ତାଙ୍କ କ୍ରୋଧରୁ କାହାକୁ ରକ୍ଷା କରିବା ଶଙ୍କରାଜୀଙ୍କ ମସ୍ତିଷ୍କ ବୁଦ୍ଧିର ଅତୀତ । ସେ ପରାମର୍ଶ ଦେଲେ, 'ହେ' ମହର୍ଷି ! ତୁମେ ଶ୍ରୀସୁଦର୍ଶନଙ୍କର ଶରଣ ପଶ । ନଚେତ ତୁମର ଆତ୍ମରକ୍ଷା ଅସମ୍ଭବ ହେବ ।'

ପ୍ରଶ୍ନ-୨୩. ଭଗବାନ ଶଙ୍କରଜୀଙ୍କ ନାସ୍ତିବାଣୀ ଶ୍ରବଣରେ ଦୁର୍ବାସା ମହର୍ଷି କ'ଣ ଶ୍ରୀ ସୁଦର୍ଶନଙ୍କ ଶରଣ ଭିକ୍ଷା କଲେ ?

**ତତୋ ନିରାଶୋ ଦୁର୍ବାସାଃ ପଦଂ ଭଗବତୋ ଯଯୌ ।**
**ବୈକୁଣ୍ଠ-ଆଖ୍ୟଂ ଯତ୍ ଅଧାସ୍ତେ ଶ୍ରୀନିବାସଃ ଶ୍ରିୟା ସହ ॥୬୦॥**

ଉ. ନା,ନା ତଥାପି ଦୁର୍ବାସାଜୀ ଟାଣ ପଣ ଛାଡୁ ନାହାନ୍ତି । ଦୌଡ଼ିଲେ ବୈକୁଣ୍ଠ ଲୋକ । ଶରଣ ମାଗିଲେ ଲକ୍ଷ୍ମୀ-ନାରାୟଣଙ୍କୁ (ଶ୍ରିୟା-ଶ୍ରୀନିବାସଃ) ।

### ଶ୍ରୀ ଭଗବାନ ଉବାଚ

ପ୍ରଶ୍ନ-୨୪. ଦୁର୍ବାସା ମହାମୁନିଙ୍କୁ ସର୍ବ ଆଶ୍ରୟ ଶ୍ରୀମନ୍ ନାରାୟଣ କ'ଣ କହିଲେ ?

**ଅହଂ ଭକ୍ତ ପରାଧୀନୋ ହି-ଅସ୍ୱତନ୍ତ୍ର ଇବ ଦ୍ୱିଜ ।**
**ସାଧୁଭିଃ ଗ୍ରସ୍ତ ହୃଦୟୋ ଭକ୍ତୈଃ ଭକ୍ତଜନ ପ୍ରିୟଃ ॥୬୩॥**

ଉ. କୋଟି ବ୍ରହ୍ମାଣ୍ଡ ଠାକୁର ନାରାୟଣ ଶରଣ ଦେବେ କ'ଣ ନିରାଶାବାଣୀ ଶୁଣାଇଲେ । କହିଲେ, 'ଶ୍ରୀସୁଦର୍ଶନ ମୋର ଭକ୍ତ ଅମ୍ବରୀଷଙ୍କର ମଧ୍ୟ ଭକ୍ତ । ବ୍ରହ୍ମା-ଶଙ୍କର ଆଦି ସାରା ସଂସାର ମୋର ଅଧୀନ । ମୁଁ ସ୍ୱୟଂ କିନ୍ତୁ ଭକ୍ତାଧୀନ । ସାଧୁ,ସନ୍ଥ

ଭକ୍ତମାନେ ମୋର ଅତୀବ ପ୍ରିୟ । ସେମାନେ ମିଳି ମିଶି ମୋର, କଲିଜାକୁ ଖାଇ ଯାଇଛନ୍ତି (ଗ୍ରସ୍ତ) । ସେଇଟା ମୋ ପାଖରେ ଥିଲେ ସିନା ହେ' ଦୁର୍ବାସା (ଦ୍ୱିଜ) ମୁଁ ତୁମକୁ ଲୁଚେଇ ରଖି ଦେଇଥାନ୍ତି !!!'

ପ୍ରଶ୍ନ-୨୫.ସାଧୁ ସନ୍ଥ ମାନେ କ'ଣ ଇମିତି ଉପକାର କଲେ ଭଗବାନଙ୍କର ଯାହା ଫଳରେ ଶ୍ରୀହରି ବିଷ୍ଣୁ ତାଙ୍କ ଅମୂଲ୍ୟ ହୃଦୟକୁ ଦାନ କରିଦେଲେ ସେମାନଙ୍କୁ କବ୍‌ଜା କରିନେବାକୁ ?

**ଯେ ଦାର-ଆଗାର ପୁତ୍ର ଆପ୍ତାନ୍ ପ୍ରାଣାନ୍ ବିତ୍ତଂ ଇମଂ ପରମ୍ ।**
**ହିତ୍ୱା ମାଂ ଶରଣଂ ଯାତାଃ କଥଂ ତାଂ ତ୍ୟକ୍ତୁଂ ଉସ୍ହେ ॥୬୫॥**

ଉ.ସେମାନେ ଜନ-ଜନ୍ମାନ୍ତର ଲାଗି ପତ୍ନୀ, ପୁତ୍ର, ଗୃହ, ଧନ ସଂପତ୍ତି, ସ୍ୱର୍ଗ ସୁଖ, ପାଞ୍ଚ ମୁକ୍ତି ଏପରିକି ନିଜ ନିଜର ପ୍ରିୟ ପ୍ରାଣ ଆସକ୍ତି ତ୍ୟାଗ କରି ଯେତେବେଳେ ଭଗବାନଙ୍କ ଶରଣ ପଶିଛନ୍ତି । ସେ ପରିସ୍ଥିତିରେ ଭଗବାନ ସେମାନଙ୍କୁ ନିଜକୁ ନ ଦେଇ ଆଉ କ'ଣ ଦେଇ ସନ୍ତୁଷ୍ଟ କରି ଥାଆନ୍ତେ !!

ପ୍ରଶ୍ନ-୨୬. ଭଗବାନ କେଉଁଠାରେ ହାରନ୍ତି ନାହିଁ ବୋଲି ତାଙ୍କ ନାମ ଅଜିତ । ଭକ୍ତମାନେ ଯଦି ତାଙ୍କ ହୃଦୟ କମଳକୁ ନିଜ ଅକ୍ତିଆରରେ ରଖିନେଇ ଅଧିକାର ଭୁକ୍ତ କରିନେଲେ, ଭଗବାନ ପୁଣି ନିଜେ ରହିଲେ କେଉଁଠି ?

**ସାଧବୋ ହୃଦୟଂ ମହ୍ୟଂ ସାଧୂନାଂ ହୃଦୟଂ ତୁ-ଅହମ୍ ।**
**ମଦ୍-ଅନ୍ୟତ୍ ତେ ନ ଜାନନ୍ତି ନ-ଅହଂତେଭ୍ୟୋ ମନାକ୍ ଅପି ॥୬୮॥**

ଉ. କେଉଁଠି ଆଉ ରହନ୍ତେ ଭଗବାନ !! ଭକ୍ତମାନଙ୍କ ହୃଦୟରେ ଗୋପୀମାନଙ୍କ ହୃଦୟରେ ଯାଇ ବସି ପଡ଼ିଲେ । ଶେଷରେ ଫଳ ଏଇଆ ହେଲା- ଭକ୍ତମାନେ ହେଲେ ଭଗବାନ ପାଗଳ । ଭଗବାନ ହେଲେ ଭକ୍ତ ପାଗଳ । ଭକ୍ତ ସଂସାର ଭାର ଭଗବାନଙ୍କ ହସ୍ତରେ ସମର୍ପଣ କରି ନିଶ୍ଚିନ୍ତ । ତେବେ ଶ୍ରୀମନ୍ ନାରାୟଣ ତାଙ୍କ ସଂସାର ସୃଜନ୍, ପାଳନ, ସଂସାର ଦାୟିତ୍ୱ ଯଥାକ୍ରମେ ବ୍ରହ୍ମାଜୀ, ବିଷ୍ଣୁଜୀ ଓ ଶଙ୍କରଜୀଙ୍କୁ ଦେଇ ଚିନ୍ତାଶୂନ୍ୟ । ଭଗବାନ ବିଷ୍ଣୁ ଦୁର୍ବାସାକୁ ସିଧା ବାଟ ଦେଖାଇ ଦେଇ କହିଲେ, 'ଯାଅ ମୁନିବର! ଅମ୍ବରୀଷଙ୍କ ଶରଣ ପଶ । ସେ ଚାହିଁଲେ କେବଳ ସୁଦର୍ଶନ ଚକ୍ରର କୋପକୁ ଶାନ୍ତ କରି ତୁମକୁ ଅଭୟ ଦେଇପାରିବେ ।'

# ଅଥ ପଞ୍ଚମ ଅଧ୍ୟାୟଃ

## (ଅମ୍ବରୀଷଙ୍କ ଦ୍ୱାରା ଦୁର୍ବାସାଙ୍କୁ ଜୀବନ ଦାନ)

### ଶ୍ରୀଶୁକ ଉବାଚ

ପ୍ରଶ୍ନ-୨୭. ଅନ୍ୟନ୍ୟୋପାୟ ହୋଇ ମୁନି ଶ୍ରୀସୁଦର୍ଶନ ଚକ୍ରଙ୍କ ମରଣାନ୍ତକ ଆକ୍ରମଣରୁ କପରି ରକ୍ଷା ପାଇଲେ ?

**ଏବଂ ଭଗବତା-ଆଦିଷ୍ଟୋ ଦୁର୍ବାସାଃ ଚକ୍ର ତାପିତଃ ।**
**ଅମ୍ବରୀଷଂ ଉପାବୃତ୍ୟ ତତ୍ପାଦୌ ଦୁଃଖିତୋଽଗ୍ରହୀତ୍ ॥୧॥**

ଉ. ଭଗବାନ ନାରାୟଣଙ୍କ ଆଦେଶ ମାନିବାକୁ ଦୁର୍ବସା ମୁନି ଶେଷରେ ବାଧ୍ୟ ହେଲେ । ଅମ୍ବରୀଷଙ୍କ ନିକଟରେ ପହଞ୍ଚି (ଉପାବୃତ୍ୟ) ସେ ଅତ୍ୟନ୍ତ ବ୍ୟାକୁଳିତ ଚିତ୍ତରେ ତାଙ୍କ ଚରଣ ଯୁଗଳରେ ଶରଣ ପଶିଲେ ।

ଏହି ଅଦ୍ଭୁତ କାଣ୍ଡ ଦେଖି ରାଜା ସଙ୍ଗେ ସଙ୍ଗେ ସୁଦର୍ଶନଜୀଙ୍କୁ ବିନମ୍ର ସ୍ତୁତି କରି ଶାନ୍ତ କଲେ । ରାଜା ଅର୍ପଣ କଲେ ନିଜର ଓ ନିଜ ବଂଶର ଜନ୍ମ-ଜନ୍ମାନ୍ତର ଦାନ-ପୁଣ୍ୟ- ସେବାର ଫଳ ସକଳ । ଭକ୍ତି ପାଖରେ ତପସ୍ୟା ଶକ୍ତି ହାର ମାନିଲା ।

ପ୍ରଶ୍ନ-୨୮. ନିଜର ପୈତୃକ ପ୍ରାଣ ରକ୍ଷା ହୋଇ ଯାଆନ୍ତେ ଦୁର୍ବାସା ମୁନି ଆଶ୍ୱସ୍ତ ହୋଇ ପୁଣି କ'ଣ କଲେ ?

### ଦୁର୍ବାସା ଉବାଚ

**ଅହୋ ଅନନ୍ତ ଦାସାନାଂ ମହତ୍ତ୍ୱଂ ଦୃଷ୍ଟଂ ଅଦ୍ୟ ମେ ।**
**କୃତ-ଆଗସୋଽପି ଯତ୍ ରାଜନ୍ ମଙ୍ଗଳାନି ସମୀହସେ ॥୧୪॥**

ଉ. ମୁନିଶ୍ରେଷ୍ଠ ଦୁର୍ବାସା ରାଜାଙ୍କ ଠାରେ କୃତଜ୍ଞତା ପ୍ରକାଶ କରି କହିଲେ, 'ହେ' ରଜାନ୍ ! ମୁଁ ଏବେ ସ୍ୱଚକ୍ଷୁରେ ଦେଖିଲି ବୈଷ୍ଣବ ମାହାତ୍ମ୍ୟ । ମୁଁ ତୁମକୁ ମୃତ୍ୟୁ ଦଣ୍ଡ ଦେବାକୁ ଚେଷ୍ଟାକରି ତୁମଠାରେ ଅପରାଧୀ (ଆଗସୋଽପି) ହେଲି । ତଥାପି ତୁମେ ମୋର ଜୀବନ ରକ୍ଷା ନିମିତ୍ତ ଭଗବତ୍ ଆୟୁଧଙ୍କୁ ପ୍ରାର୍ଥନା କରିପାରିଲ !!!

ମୁଁ ବୁଝିପାରିଲି ବୈଷ୍ଣବ ମାନଙ୍କ ପକ୍ଷରେ କୃପା ପ୍ରୟୋଗରେ ଅସମ୍ଭବ ବୋଲି କିଛି ନଥାଏ । ସେମାନେ କ'ଣ ବା ନ କରିପାରନ୍ତି !!! ଯେଉଁ ଭଗବାନ ନାରାୟଣଙ୍କ ନାମ ସ୍ମରଣ କଲେ ମନୁଷ୍ୟ ସକଳ ପାପରୁ ମୁକ୍ତ ହୋଇପାରେ ତାଙ୍କ ଭକ୍ତ ପାଇଁ କିଛି ବା ଅଲଭ୍ୟ, ଅପ୍ରାପ୍ୟ ଦୁଷ୍କର ରହିପାରେନା ।'

ପ୍ରଶ୍ନ-୨୯. ମହାମୁନି ଦୁର୍ବାସା କି ଭଳି ବାକ୍ୟରେ ଭକ୍ତ ଶ୍ରେଷ୍ଠ ଅମ୍ବରୀଷଙ୍କର ଗୁଣଗାନ କରିବାକୁ ପସନ୍ଦ କଲେ ?

**ରାଜନ୍ ଅନୁଗୃହୀତୋଽହଂ ତ୍ୱୟା-ଅତି କରୁଣ-ଆତ୍ମନା ।**
**ମତ୍ ଅଘଂ ପୃଷ୍ଠତଃ କୃତ୍ୱା ପ୍ରାଣାଃ ଯତ୍ ମେଽଭିରକ୍ଷିତାଃ ॥୧୭॥**

ଉ. କହିଲେ, 'ହେ' ରାଜା ! ମୋ ଧୃଷ୍ଟତା, ପାପକୁ (ଅଘଂ) ଦେଖି ମଧ ନ ଦେଖିଲା ଭଳି କରିଦେଇଛ । କରୁଣାପୂର୍ଣ୍ଣ ହୃଦୟରେ ମୋତେ ପ୍ରାଣ ଦାନ କରିଛ । ମୁଁ ଜୀବନର ଅବଶିଷ୍ଟ କାଳ ପାଇଁ ତୁମ ପାଖରେ କୃତଜ୍ଞ ରହିଗଲି ।

ପ୍ରଶ୍ନ-୩୦. ରାଜା କିନ୍ତୁ ଦୁର୍ବାସାଙ୍କର ପ୍ରଶଂସା ବାକ୍ୟ ପ୍ରତି ଧ୍ୟାନ ନ ଦେଇ ତାଙ୍କୁ ସମାଦର ପୂର୍ବକ ଭୂରି ଭୋଜନ କରାଇଥିଲେ । ମହାମୁନି ଦୁର୍ବାସା ନିଜ ଆଶ୍ରମକୁ ଯିବା ପୂର୍ବରୁ ରାଜାଙ୍କୁ କି ଭଳି ବ୍ରାହ୍ମଣ ଆଶୀର୍ବାଦ କଲେ ?

**କର୍ମ-ଅବଦାତଂ ଏତତ୍ ତେ ଗାୟନ୍ତି ସ୍ୱଃ ସ୍ତ୍ରିୟୋ ମୁହୁଃ ।**
**କୀର୍ତ୍ତିଂ ପରମ ପୁଣ୍ୟାଂ ଚ କୀର୍ତ୍ତୟିଷ୍ୟତି ଭୂରିୟମ୍ ॥୨୧॥**

ଉ. ଋଷି କହିଲେ, 'ହେ' ରାଜନ୍ ! ତୁମର ଏ ନିଷ୍ପାପ (ଅବଦାତଂ) କର୍ମର କୀର୍ତ୍ତିସ୍ତମ୍ଭ ସ୍ୱର୍ଗରେ (ସ୍ୱଃ) ଅପସ୍ୱରା (ସ୍ତ୍ରିୟୋ) ଓ କିନ୍ନରମାନେ ଓ ମର୍ତ୍ତ୍ୟ ଲୋକରେ ସାଧୁ-ସନ୍ଥଗଣ ମୁକ୍ତ କଣ୍ଠରେ ଗାନ କରି ନିଜକୁ ଓ ତୁମ ସୂର୍ଯ୍ୟବଂଶକୁ ଧନ୍ୟ କରିବେ (ଭୂରିୟମ୍)।'

ରାଜା ବର୍ଷେ ହେଲା ଉପବାସ ଥିଲେ କାରଣ ଦୁର୍ବାସା ବ୍ରହ୍ମଲୋକ-ଶିବ ଲୋକ ଯାଇ ଫେରିବା ବେଳକୁ ମର୍ତ୍ତ୍ୟ ଲୋକରେ ବର୍ଷେ ସମୟ ବିତି ସାରିଥିଲା । ଋଷିଙ୍କୁ ସାଶ୍ରୁଳ ବିଦାୟ ଦେଇ ରାଜା ଭୋଜନ କଲେ । ଏକାଦଶୀବ୍ରତ ଉଦ୍‌ଯାପନ କଲେ ।

# ଅଥ ଷଷ୍ଠ ଅଧ୍ୟାୟଃ

## (ରାଜା ମାନ୍ଧାତା ଓ ମୁନି ସୌଭରିଙ୍କ ଚରିତ)

ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୩୧. ମହାରାଜା ଇକ୍ଷାକୁ କ'ଣ ବୈବସ୍ୱତ ମନୁଙ୍କର ଔରସ ପୁତ୍ର ଥିଲେ କି ?

**କ୍ଷୁବତଃ ତୁ ମନୋଃ ଜଜ୍ଞେ ଇକ୍ଷ୍ୱାକୁଃ ଘ୍ରାଣତଃ ସୁତଃ ।**
**ତସ୍ୟ ପୁତ୍ର ଶତ ଜ୍ୟେଷ୍ଠା ବିକୁକ୍ଷି ନିମି ଦଣ୍ଡକାଃ ॥୪॥**

ଉ.ମହାରାଜା ମନୁଙ୍କ ଛିଙ୍କରୁ (କ୍ଷୁବତଃ) ନାସାରନ୍ଧ୍ର (ଘ୍ରାଣତଃ) ଦେଇ ଇକ୍ଷ୍ୱାକୁ ପ୍ରକଟ (ଜଜ୍ଞେ ) ହୋଇଥିଲେ । ଏହି ଇକ୍ଷ୍ୱାକୁଙ୍କର ଶହେ ପୁତ୍ର ଥିଲେ ଯାହାଙ୍କ ମଧ୍ୟରେ ବିକୁକ୍ଷି, ନିମି ଓ ଦଣ୍ଡକ ତିନି ଜଣ ପ୍ରମୁଖ ଥିଲେ ।

ବିକୁକ୍ଷିଙ୍କ ବଂଶରେ ଯୁବନାଶ୍ୱ ବୋଲି ଜଣେ ରାଜା ରାଜପଣ କରୁଥିଲେ । ତାଙ୍କର ଶହେ ରାଣୀ ଥାଇ ମଧ୍ୟ ସେ ଅପୁତ୍ରିକ ରହିଗଲେ । ସେ ଜଙ୍ଗଲକୁ ଯାଇ ସେଠାରେ ଏକ ପୁତ୍ରେଷ୍ଟି ଯଜ୍ଞ କଲେ । ବ୍ରାହ୍ମଣମାନେ ଅଭିମନ୍ତ୍ରିତ ଜଳକୁ ଯଜ୍ଞଶାଳାରେ ରଖିଥାନ୍ତି । ଥରେ ରାତିରେ ରାଜା ଯୁବନାଶ୍ୱ ତୃଷାର୍ତ୍ତ ହୋଇ ସେଇ ଜଳକୁ ପାନ କରିଦେଲେ । ଫଳରେ ସେ ଗର୍ଭଧାରଣ କଲେ । ତାଙ୍କର ଦକ୍ଷିଣ କୁକ୍ଷିକୁ ଚିରି ପୁତ୍ରକୁ ବାହାର କରାଗଲା । ସେଇ ପୁତ୍ରଙ୍କର ନାମ ରଖାଗଲା ପିତାର ନାଁ (ମାନ) ରଖିବା ପୁତ୍ର (ଧର୍ତ୍ତା) ମାନ୍‌ଧାତା ବା ମାନ୍ଧାତା ।

ପ୍ରଶ୍ନ-୩୨. ମାନ୍ଧାତା ସପ୍ତଦ୍ୱୀପା ପୃଥିବୀର ରାଜା ହେଲେ ବୋଲି ଇତିହାସ କିପରି ଶବ୍ଦରେ ଘୋଷଣା କରିଥାନ୍ତି ?

**ଯାବତ୍ ସୂର୍ଯ୍ୟ ଉଦେତି ସ୍ମ ଯାବତ୍ ଚ ପ୍ରତିତିଷ୍ଠତି ।**
**ତତ୍ ସର୍ବଂ ଯୌବନାଶ୍ୱସ୍ୟ ମାନ୍ଧାତୁଃ କ୍ଷେତ୍ରଂ ଉଚ୍ୟତେ ॥୩୭॥**

ଉ. ସୂର୍ଯ୍ୟଦେବ ଯେଉଁ ରାଜ୍ୟରେ ଉଦୟ ହୋଇ କିରଣ ଦାନ କରନ୍ତି ପୁଣି ଯେଉଁ ଠାରେ ଅସ୍ତ ହୁଅନ୍ତି ସେ ସକଳ ଭୂଭାଗର (କ୍ଷେତ୍ରଂ) ଅଧିକାରୀ ଯୁବନାଶ୍ୱଙ୍କ ପୁତ୍ର ମାନ୍ଧାତା ହିଁ ଥିଲେ । ରାଜା ମାନ୍ଧାତାଙ୍କ ତିନିପୁତ୍ର ପୁରୁକୁତ୍ସ , ଅମ୍ବରୀଷ (ଅନ୍ୟଜଣେ ରାଜପୁତ୍ର, ନାଭାଗ ପୁତ୍ର ନୁହନ୍ତି ) ଓ ଯୋଗୀ ମୁଚୁକୁନ୍ଦ ଅତ୍ୟନ୍ତ ବିଖ୍ୟାତ ଥିଲେ । କନ୍ୟାର ସଂଖ୍ୟା ମଧ୍ୟ ତିନି ପାଞ୍ଚ ନୁହନ୍ତି ପୁରା ପଚାଶ ଥିଲା । ଗୋଟିଏ ଜୋଇଁ ସୌଭରିଙ୍କ ହାତରେ ପଚାଶ କନ୍ୟାଙ୍କୁ ମାନ୍ଧାତା ଦେଇଥିଲେ ।

ପ୍ରଶ୍ନ-୩୩. ସୌଭରି ମୁନି ଜଣେ ସିଦ୍ଧ ତପସ୍ୱୀ ଥିଲେ । ସେ ଜଳ ମଧ୍ୟରେ ସଂପୂର୍ଣ୍ଣ ବୁଡ଼ି ରହି ତପ ଆଚରଣ କରିବା ବାଲା । ସୌଭରି ମୁନିଙ୍କର କିପରି ସ୍ଖଳନ ହେଲା ଯେ-ସେ ମୈଥୁନ ଲାଗି ପଚାଶ କନ୍ୟା ଆବଶ୍ୟକ ମଣିଲେ ?

**ଯମୁନା-ଅନ୍ତର୍ଜଳେ ମଗ୍ନଃ ତପ୍ୟମାନଃ ପରଂ ତପଃ ।**
**ନିବୃତ୍ତିଂ ମୀନରାଜସ୍ୟ ଦୃଷ୍ଟ୍ବା ମୈଥୁନ ଧର୍ମିଣଃ ॥୩୯॥**

ଉ. ମୁନୀଶ୍ୱର ସ୍ୱୟଂ ଅବଶ୍ୟ ନିବୃତ୍ତି ପରାୟଣ ଥିଲେ । ଦାର ପରିଗ୍ରହ ମୁକ୍ତ ଥିଲେ । ଦୁର୍ଭାଗ୍ୟକୁ ଦିନେ ସେ ତପସ୍ୟା ସମୟରେ ଦେଖିଲେ ଗୋଟିଏ ବୃହତ୍ ମୀନ ମତ୍ସ୍ୟ ତା ପତ୍ନୀଙ୍କ ଗହଣରେ ବଢ଼ିଆ ଦାମ୍ପତ୍ୟ ଜୀବନ ନିର୍ବାହ କରୁଛି । ସେ ସିନା ବୁଝି ଥିଲେ ସଂସାର ନାରୀ ମାୟା ନିର୍ମିତ । ଜାଣି ନ ଥିଲେ ମତ୍ସ୍ୟ ଦମ୍ପତି ମଧ୍ୟ ନିର୍ମିତ ବୋଲି । ମୁନୀଶ୍ୱରଙ୍କର କେଉଁ ଜନ୍ମର ସଂଚିତ କାମ ଭାବନା ଜାଗି ଉଠିଲା । ଋଷି ନିକଟସ୍ଥ ରାଜ୍ୟର ରାଜା ମାନ୍ଧାତାଙ୍କୁ କନ୍ୟା ରତ୍ନଟିଏ ମାଗିଲେ ପତ୍ନୀ କରିବାକୁ ।

ମାନ୍ଧାତା ଋଷିଙ୍କ ଗୁଣ ସିନା ଜାଣିଥିଲେ । ହେଲେ ମୁନିଙ୍କର ଜଟାଜୁଟ ମଣ୍ଡିତ ଚମ ଧୁଡୁ ଧୁଡୁ ଶରୀର କୋଟରଗତ ଚକ୍ଷୁ, ବିଗତ ଯୌବନ ଅବସ୍ଥା ବିଚାର କରି ଧର୍ମ ସଂକଟରେ ପଡ଼ିଲେ । ଚାଲାକି କରି ରାଜା କହିଲେ ମୋର ପଚାଶ କନ୍ୟା ଅଛନ୍ତି । ଯେ ଆପଣଙ୍କୁ ସ୍ୱୟମ୍ବରରେ ବରିବ ତାଙ୍କୁ ଆପଣ ନେଇ ପାରନ୍ତି ।

ଋଷି ବୁଝିଲେ ରାଜାଙ୍କ ଅଭିପ୍ରାୟ । ନିଜ ଯୋଗ ଶକ୍ତି ବଳରେ ଭୁବନ ମୋହନଙ୍କ ଦିବ୍ୟଦେହ ଚିନ୍ତନ କରି ତାଙ୍କ ଭଳି ଆକର୍ଷଣୀୟ ଦିବ୍ୟ ଦେହରେ ସ୍ୱୟମ୍ବରରେ ବସିଗଲେ । ରାଜା ଦେଖିଲେ- ଆଶ୍ଚର୍ଯ୍ୟ ଘଟଣା । ଗୋଟିଏ ଦୁଇଟି କନ୍ୟା ନୁହନ୍ତି, ପଚାଶଟିଯାକ କନ୍ୟା ସମସ୍ତେ ବିନା ବିଚାରରେ ମୁନିଙ୍କ ଗଳାରେ ବରଣମାଳା ଦେଇ ଦେଲେ ।

ପ୍ରଶ୍ନ-୩୪. ରାଜା ମାନ୍ଧାତା ପଚାଶଟି କନ୍ୟାଙ୍କ ନିମିତ୍ତ ପଚାଶଟି ବିଳାସ ଭବନ ଯୌତୁକ ରୂପରେ ପ୍ରଦାନ କଲେ । ସୌଭରି ମୁନି ନିଜ ଯୋଗ ଶକ୍ତି ବଳରେ ଏକକାଳୀନ ପଚାଶ ରୂପ ଧାରଣ କରି ନିଜ ଦୁର୍ଜୟ କାମ ବାସନା ପୂର୍ତ୍ତିରେ ଲାଗିଲେ । ସୌଭରି ମୁନି କ'ଣ ସବୁଦିନ ଲାଗି କାମ ଜାଲ ପାଶରେ ବନ୍ଧା ହୋଇଗଲେ କି ?

**ସ କଦାଚିତ୍ ଉପ-ଆସୀନ ଆତ୍ମ ଅପହ୍ନଂ ଆତ୍ମନଃ ।**
**ଦଦର୍ଶ ବହୁ-ଋଚ-ଆଚାର୍ଯ୍ୟୋ ମୀନ ସଙ୍ଗ-ଉତ୍ଥିତମ ॥୪୯॥**

ଉ. ସୌଭରି ମୁନି ଋକ୍ ବେଦର ଆଚାର୍ଯ୍ୟ ଥିଲେ । ଗୃହ ସଂସାର କରି ପଚାଶ ପତ୍ନୀଙ୍କ ଗର୍ଭରୁ ଶହେ ଶହେ ପୁରା ପାଞ୍ଚ ହଜାର ପୁତ୍ରଙ୍କ ସଂସାର ଏବେ ଚଳାଇବାକୁ ପଡୁଛି ତାଙ୍କୁ ଧ୍ୟାନରେ ବସି ଆତ୍ମୋଦ୍ଧାର ଉପାୟ ଖୋଜିଲେ ।

ଦିନେ ଋଷିଙ୍କ ଚୈତନ୍ୟ ଉଦୟ ହେଲା । ସେ ବୁଝିପାରିଲେ ମୋକ୍ଷ ଅଭିଳାଷୀ ସାଧକ ଗୃହସ୍ଥାଶ୍ରମୀ (ମତ୍ସ୍ୟ ଯୁଗଳ) ଦମ୍ପତିଙ୍କ ଜୀବନ ଚର୍ଯ୍ୟା ଦେଖିଲେ ବିପଦ ଅବଶ୍ୟମ୍ଭାବୀ । ଯେଉଁଥିପାଇଁ ସେ ଆଜି ଗଭୀର ଅନୁତପ୍ତ । ପଚାଶ ଜଣ ଯାକ ପତ୍ନୀ ମଧ୍ୟ ମହାତପସ୍ୱୀଙ୍କ ବନ ଅନୁଗମନ କଲେ । ଋଷି ଯୋଗ ବଳରେ ଦେହ ତ୍ୟାଗ କରି ଆତ୍ମଲୀନ ହେଲେ । ପତ୍ନୀ ମାନେ ମଧ୍ୟ ତାଙ୍କ ଚିତାରେ ସତୀ ହୋଇ ସହମରଣ ଆଦରି ନେଇ ଜୀବନକୁ ଧନ୍ୟ କରିଥିଲେ । ସଂସାରକୁ ଏକ ମହାନ୍ ଶିକ୍ଷା ଦେଇଗଲେ ମୁନି ସୌଭରି । ମୁମୁକ୍ଷୁ ସାଧକ ଏକାନ୍ତ ସ୍ଥାନରେ ତପସ୍ୟା କରିବା ଉଚିତ୍ ଅନ୍ୟଥା ତାଙ୍କ ଭଳି ଦୁରବସ୍ଥା ଭୋଗିବାକୁ ବାଧ୍ୟ ।

# ଅଥ ସପ୍ତମ ଅଧ୍ୟାୟଃ

## (ରାଜା ମାନ୍ଧାତାଙ୍କ ବଂଶରେ ପ୍ରକଟ ତ୍ରିଶଙ୍କୁ-ହରିଶ୍ଚନ୍ଦ୍ର ଚରିତ)

### ଶ୍ରୀଶୁକ ଉବାଚ

ପ୍ରଶ୍ନ-୩୧୫.ରାଜା ମାନ୍ଧାତାଙ୍କ ବଂଶରେ ତ୍ରିବନ୍ଧ ନାମରେ ଏକ ପୁତ୍ର ଜନ୍ମନେଇ ରାଜାହେଲେ । ତ୍ରିବନ୍ଧଙ୍କ ଶୁଶୀଳ ପୁତ୍ରଙ୍କ ନାମ ରଖାଗଲା ସତ୍ୟବ୍ରତ । ଏଭଳି ଗୁଣବାନ ପୁତ୍ରଟିଏ କିପରି ଶାପ ଗ୍ରସ୍ତ ହୋଇ ଚାଣ୍ଡାଳ ହୋଇଗଲେ ?

**ତସ୍ୟ ସତ୍ୟବ୍ରତଃ ପୁତ୍ରଃ ତ୍ରିଶଙ୍କୁଃ ଇତି ବିଶ୍ରୁତଃ ।**
**ପ୍ରାପ୍ତଃ ଚାଣ୍ଡାଳତାଂ ଶାପାତ୍ ଗୁରୋଃ କୌଶିକ ତେଜସା ॥୫॥**

ଉ. ସତ୍ୟବ୍ରତ ହିଁ ନିଜର ନ ଯଯୌ ନ ତସ୍ଥୌ ଅବସ୍ଥା ହେତୁ ତ୍ରିଶଙ୍କୁ ନାମରେ ବିଖ୍ୟାତ ହେଲେ । ସେ ବର୍ଣ୍ଣରେ କ୍ଷତ୍ରିୟ ଥିଲେ । ଏକଦା ପ୍ରେମରେ ପଡ଼ି ଗୋଟିଏ ବ୍ରାହ୍ମଣ କନ୍ୟାକୁ ବିବାହ ବେଦୀରୁ ଅପହରଣ କରନ୍ତେ ନିଜ ପିତାଙ୍କ ଅଭିଶାପ ଗ୍ରସ୍ତ ହୋଇ ଶୂଦ୍ରଠାରୁ ହୀନ ଚାଣ୍ଡାଳ ହୋଇଗଲେ । ପରେ ଗୁରୁ ବିଶ୍ୱାମିତ୍ର (କୌଶିକ)ଙ୍କ କୃପାରୁ ସ୍ୱର୍ଗ ଯିବାକୁ ସାହସ କଲେ ।

ପ୍ରଶ୍ନ-୩୬. ମଲାପରେ ଏକ ପ୍ରାକୃତ ଦେହ ତ୍ୟାଗ କରି ଲୋକେ ଅଗ୍ନିମୟ ଦେହରେ ସ୍ୱର୍ଗକୁ ଯାଆନ୍ତି । ତ୍ରିଶଙ୍କୁ କି ତପସ୍ୟା ବଳରେ ସ୍ୱଦେହରେ ସ୍ୱର୍ଗକୁ ଯାଇପାରିଲେ ?

**ସଶରୀରୋ ଗତଃ ସ୍ୱର୍ଗଂ ଅଦ୍ୟ-ଅପି ଦିବି ଦୃଶ୍ୟତେ ।**
**ପତିତୋଽବାକ୍ ଶିରା ଦେବୈଃ ତେନ-ଏବ ସ୍ତମ୍ଭିତ ବଳାତ୍ ||୬||**

ଉ. ନା, ନା ଏହା ତ୍ରିଶଙ୍କୁଙ୍କର ତପସ୍ୟାର ଫଳ ନୁହେଁ । ବରଂ ଏହାକୁ ଜଣେ ଅନଧିକାରୀ ଶିଷ୍ୟର ସ୍ୱର୍ଗକୁ ଯିବାର ଯିଦ୍ ଓ ଜଣେ ଅନଧିକାରୀ ଗୁରୁ ବିଶ୍ୱର ଅମିତ୍ର ବିଶ୍ୱାମିତ୍ରଙ୍କର କଷ୍ଟଲବ୍ଧ ତପସ୍ୟା ଫଳର ଅସତ୍ ଉପଯୋଗର କୁଫଳ ଅଟେ । ଯେଉଁଥିପାଇଁ ଆଜି ମଧ (ଅଦ୍ୟ-ଅପି) ନା ସ୍ୱର୍ଗରେ -ନା ମୃତ୍ୟୁ ଲୋକରେ ରହି ଅନ୍ତରୀକ୍ଷରେ ସେ ଲଟ୍‌କି ରହିଛନ୍ତି (ଦିବି ଦୃଶ୍ୟତେ) । ଦେବତାମାନେ ସ୍ୱର୍ଗର ନିୟମ ପାଳନକରି ତାକୁ ତଳମୁହଁକରି ଠେଲି ଦେଲେ (ପତିତୋ ଅବାକ୍ ଶିରା) ତ୍ରିଶଙ୍କୁ ଗୁରୁଙ୍କୁ ସ୍ମରଣ କରନ୍ତେ ଗୁରୁ ମଧ ତାଙ୍କ ଜିଦ୍ ରକ୍ଷା ଲାଗି ନିଜର ସମସ୍ତ ତପୋବଳ ବଦଖର୍ଚ୍ଚ କରି ତ୍ରିଶଙ୍କୁଙ୍କୁ ସ୍ତମ୍ଭନ ବିଦ୍ୟାବଳରେ ସ୍ତମ୍ଭିତ କରି ସେଇଠି ଲଟ୍‌କାଇ ଦେଲେ (ସ୍ତମ୍ଭିତ ବଳାତ୍) । ନାମ ରହିଗଲା ତ୍ରିଶଙ୍କୁ ।

ସଂସାରକୁ ଏ ଚରିତରୁ ଏକ ମହାନ୍ ଶିକ୍ଷା ମିଳିଲା ଯେ-ଦୁରାଗ୍ରହ କଲେ ଗୁରୁ-ସାଧକ ଉଭୟେ ଦଣ୍ଡ ଭୋଗନ୍ତି । ଧୋବିକା କୁତ୍ତା ନା ଘରକା-ନା ଘାଟକା ।

ପ୍ରଶ୍ନ-୩୭. ବିଶ୍ୱାମିତ୍ର-ବଶିଷ୍ଠ ଉଭୟେ ସିଦ୍ଧ ତପସ୍ୱୀ । ତ୍ରିଶଙ୍କୁ ପୁତ୍ର ହରିଶ୍ଚନ୍ଦ୍ର ନିମନ୍ତେ ସେମାନେ କାହିଁକି ପରସ୍ପରକୁ ଶାପଦେଇ ଚଢ଼େଇ ରୂପ ଧାରଣ କରି ବର୍ଷ ବର୍ଷ ଧରି (ବହୁ ବାର୍ଷିକମ୍ ) ଲଢ଼େଇରେ ମାତିଲେ ?

**ତ୍ରିଶଙ୍କବୋ ହରିଶ୍ଚନ୍ଦ୍ରୋ ବିଶ୍ୱାମିତ୍ର ବଶିଷ୍ଠୟୋଃ ।**
**ଯତ୍ ନିମିତ୍ତଂ ଅଭୂତ୍ ଯୁଦ୍ଧଂ ପକ୍ଷିଣୋଃ ବହୁ ବାର୍ଷିକମ୍ ||୭||**

ଉ.ବିଶ୍ୱାମିତ୍ର କ୍ଷତ୍ରିୟ କୁଳରେ ଜନ୍ମ ହୋଇଥିଲେ । ସାଧନ କରି ବ୍ରାହ୍ମଣ ହେବାକୁ ଚେଷ୍ଟା କରୁଥିଲେ ବ୍ରହ୍ମର୍ଷିପଦ ପ୍ରାପ୍ତି ଲାଗି । ବଶିଷ୍ଠଜୀ ଏହାର ବିରୋଧ କରୁଥିଲେ । ଦୁହିଁଙ୍କର ଜିଦ୍ ବୃଦ୍ଧି ପାଇଲା । ହରିଶ୍ଚନ୍ଦ୍ରଙ୍କର ସର୍ବସ୍ୱ ଅପହରଣ କଲେ ବିଶ୍ୱାମିତ୍ର । ବଶିଷ୍ଠଜୀ ଘୋର ପ୍ରତିବାଦ କଲେ ଏହାର । ଫଳରେ ଦୁହେଁ ଅନେକ ବର୍ଷ ଧରି ଚଢ଼େଇ ଦେହ ଧରି ଲଢ଼େଇଲେ ମାତିଲେ । ସେଥିପାଇଁ ଭଗବାନ ଗୀତାରେ

କହିଲେ,'ଆବ୍ରହ୍ମ ଭୁବନାତ୍ ଲୋକାତ୍  ପୁନଃ ଆବର୍ତ୍ତିନୋଽର୍ଜୁନ । ଜଣେ ସାଧକର ଖାଲି ଏହି ଭୁବନ କଅଣ  ମହଜନତପ ସତ୍ୟ ଲୋକ ପର୍ଯ୍ୟନ୍ତ ଲୋକରୁ ମଧ ଖସି ପଡ଼ିବାର ସମ୍ଭାବନା ରହିବ ଅର୍ଜୁନ ।' ଏକଥା ପ୍ରମାଣିତ ହୁଏ ଏହି ଦୁଇ ମହାତପସ୍ୱୀଙ୍କ ଅଯଥା ବିବାଦରୁ । କେତେ ବଡ ତପସ୍ୱୀ, ସାଧକ, ଗୁଣବାନ ଲୋକ ହେଲେ ମଧ ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି କବଳରେ ପଡ଼ିବ ମଣିଷ ।

ରାଜା ହରିଶ୍ଚନ୍ଦ୍ର ପ୍ରଥମେ ଅପୁତ୍ରିକ ଥିଲେ । ନାରଦଜୀଙ୍କ ଉପଦେଶରେ ବରୁଣଙ୍କୁ ପୂଜନ କରି ପୁତ୍ର ପ୍ରାପ୍ତ ହେଲେ । ବରୁଣ ସର୍ତ୍ତ ରଖିଥିଲେ ପୁତ୍ର ତୁମେ ପାଇବ କିନ୍ତୁ ସେ ପୁତ୍ରକୁ ତୁମେ ଯଜ୍ଞ କରି ବଳିରୂପେ ସମର୍ପଣ କରିବ । ହରିଶ୍ଚନ୍ଦ୍ର ରାଜି ହେଲେ  କିନ୍ତୁ ପୁତ୍ର ଜନ୍ମ ପରେ ଯଜ୍ଞ କରିବାକୁ ଦିନ ଗଡ଼ାଇ ଚାଲିଲେ କିଛି ନା କିଛି ବାହାନା କରି ।

ପ୍ରଶ୍ନ-୩୮ . ବଡ଼ ହୋଇ ପୁତ୍ର ରୋହିତ ଜାଣି ପାରିଲେ ପିତାଙ୍କର ହରିଶ୍ଚନ୍ଦ୍ରଙ୍କ ପୁତ୍ର ପ୍ରାପ୍ତି ଏବଂ ପୁତ୍ରକୁ ଯଜ୍ଞରେ ବଳି ଚଢ଼ାଇବା ସର୍ତ୍ତ (ଚିକୀର୍ଷିତମ୍) ରହସ୍ୟ । ରୋହିତ ତାଙ୍କ ଜନ୍ମ ସର୍ତ୍ତମୂଳକ ଜାଣିବାପରେ କ'ଣ ଯଜ୍ଞରେ ବଳି ପଡ଼ିବାକୁ ରାଜି ହୋଇଗଲେ ?

**ରୋହିତଃତତ୍ ଅଭିଜ୍ଞାୟ ପିତୁଃ କର୍ମ ଚିକୀର୍ଷିତମ୍ ।**
**ପ୍ରାଣ ପ୍ରେପ୍ସୁଃ ଧନୁଷ୍ପାଣିଃ ଅରଣ୍ୟଂ ପ୍ରତ୍ୟପଦ୍ୟତ ॥୧୬॥**

ଉ. ଆଦୌ ରାଜି ହେଲେନି । ନିଜକୁ ବଂଚାଇବା ପାଇଁ ସେ ଗୃହତ୍ୟାଗ କରି ବନ ବନାନ୍ତର ବୁଲିଲେ (ପ୍ରତ୍ୟପଦ୍ୟତ) କିଛି ପ୍ରାଣରକ୍ଷା ଉପାୟ ଜାଣିବା ପାଇଁ ।

ବରୁଣଙ୍କ ଯଜ୍ଞ କର୍ମ ନ କରିବାରୁ ରାଜା ହରିଶ୍ଚନ୍ଦ୍ର ଜଳୋଦରୀ ବ୍ୟାଧିରେ ପୀଡ଼ିତ ହେଲେ । ଏକଥା ଜାଣି ପାରି ପୁତ୍ର ରୋହିତ ଯଜ୍ଞପଶୁ ହେବାକୁ ଶ୍ରେୟ ମଣିଲେ । ଗୃହକୁ ଫେରିବାକୁ ଯିବା ବେଳେ ସ୍ୱର୍ଗ ସମ୍ରାଟ ଇନ୍ଦ୍ର ତାଙ୍କୁ ରୋକି ଦେଲେ । କହିଲେ,'ତୀର୍ଥ ଯାତ୍ରା କର । କିଛି ଉପାୟ ମିଳିପାରେ ।' ବର୍ଷେ ଦୁଇବର୍ଷ ନୁହେଁ ପାଞ୍ଚ ବର୍ଷ ବିତିଗଲା । ଇନ୍ଦ୍ର ବ୍ରାହ୍ମଣ ବେଶରେ ରୋହିତଙ୍କୁ ଅଟକାଉ ଥାନ୍ତି । ଶେଷରେ ଷଷ୍ଠ ବର୍ଷରେ ଅଜୀଗର୍ତ୍ତ ବୋଲି ଜଣେ ଗରିବ ବ୍ରାହ୍ମଣଙ୍କର ମଧମ ପୁତ୍ରକୁ କିଣି ଆଣି ଯଜ୍ଞପଶୁ ହେବାକୁ ପିତାଙ୍କୁ ଦେଲେ ।

ଶେଷରେ ଏକ ମନୁଷ୍ୟ ବଳି ଯଜ୍ଞ କରି ରାଜା ହରିଶ୍ଚନ୍ଦ୍ର ଇନ୍ଦ୍ରାଦି ଦେବତାମାନଙ୍କୁ ପ୍ରସନ୍ନ କରିଥିଲେ । ଇନ୍ଦ୍ରଦେବ ପ୍ରସନ୍ନ ହୋଇ ରାଜାଙ୍କୁ ଏକ ସୁବର୍ଣ୍ଣ ଦିବ୍ୟ ରଥ ଉପହାର ଦେଇଥିଲେ । ରାଜା ଜଳୋଦରୀ ବ୍ୟାଧି ମୁକ୍ତ ହେଲେ ।

ପ୍ରଶ୍ନ-୩୯. ମଣିଷ ବଳି ଯଜ୍ଞ କରି ସତ୍ୟବାଦୀ ସୂର୍ଯ୍ୟବଂଶୀ ରାଜା କ'ଣ ନର୍କଦଣ୍ଡ ଭୋଗ କଲେ ?

**ସତ୍ୟଂ ସାରାଂ ଧୃତିଂ ଦୃଷ୍ଟ୍ୱା ସଭାର୍ଯ୍ୟସ୍ୟ ଚ ଭୂପତେଃ ।**
**ବିଶ୍ୱାମିତ୍ରୋ ଭୃଶଂ ପ୍ରୀତୋ ଦଦୌ -ଅବିହତାଂ ଗତିମ୍ ||୨୪||**

ଉ. ସତ୍ୟବାଦୀ ହରିଶ୍ଚନ୍ଦ୍ର ନିଜ ପତ୍ନୀ ସହିତ ଗୁରୁ ବିଶ୍ୱାମିତ୍ରଙ୍କଠାରୁ ଅଧ୍ୟାତ୍ମଜ୍ଞାନ ପ୍ରାପ୍ତ ହେଲେ । ଶେଷରେ କଠିନ ସାଧନା କରି ପାପମୁକ୍ତ ହୋଇ ଦେହତ୍ୟାଗ କରି ନିର୍ବାଣ ମୁକ୍ତି ପାଇ ପାରିଥିଲେ ।

# ଅଥ ଅଷ୍ଟମ ଅଧ୍ୟାୟଃ

## (ସୂର୍ଯ୍ୟବଂଶୀ ସଗର-ସଗରପୁତ୍ର-କପିଳ ମୁନି ଚରିତ)

ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୪୦. ହରିଶ୍ଚନ୍ଦ୍ରଙ୍କ ବଂଶରେ ଆଉ ଜଣେ ସ୍ୱନାମଧନ୍ୟ ରାଜା ଜନ୍ମନେଲେ । ନାମ ତାଙ୍କର ବାହୁକ । ସେ ଯୁଦ୍ଧରେ ରାଜ୍ୟ ହରାଇ ବଣରେ ପଶି ଆତ୍ମାହୂତି ଦେଲେ । ତାଙ୍କ ପତ୍ନୀ ସତୀ ହେବାକୁ ଉଦ୍ୟତ ହେଲେ । ନିକଟରେ ଥିବା ଜଣେ ଋଷି 'ଔର୍ବ' ଯୋଗବଳରେ ଜାଣି ପାରିଲେ ମହିଷୀ ସନ୍ତାନ ସମ୍ଭବା । ସେ ଅଟକାଇ ଦେଲେ ରାଣୀଙ୍କୁ ଏବଂ ଫେରାଇ ଦେଲେ ନିଜ ଗୃହକୁ । ଅନ୍ୟରାଣୀମାନେ ଈର୍ଷାରେ ବିଷ ଦେଲେ ରାଣୀଙ୍କୁ କିନ୍ତୁ ଋଷିଙ୍କ ଆଶୀର୍ବାଦରୁ ସେ ସନ୍ତାନ ଗର୍ଭରେ ନ ମରି ଗର(ବିଷ) ସହିତ ଜନ୍ମ ନେଲା । ସୁତରାଂ ତାଙ୍କ ନାମ ରଖାଗଲା ସଗର ।

ରାଜା ସଗର ଜଣେ ଅତ୍ୟନ୍ତ ତେଜସ୍ୱୀ ରାଜା ହେଲେ । ସେ ଏକ ଅଶ୍ୱମେଧ ଯଜ୍ଞ କଲାବେଳେ ଇନ୍ଦ୍ର ଈର୍ଷାରେ ତାଙ୍କ ଯଜ୍ଞ ଅଶ୍ୱକୁ ଚୋରାଇ ନେଇ କପିଳ ମୁନିଙ୍କ ଆଶ୍ରମରେ ରଖି ଦେଲେ । ସଗରଙ୍କର ଷାଠିଏ ହଜାର ପୁତ୍ର ଥିଲେ । ସେମାନେ ତାଙ୍କ ତପ ଶକ୍ତି ବଳରେ ମାଟି ଖୋଳି ଖୋଳି ଶେଷରେ ଗଙ୍ଗାସାଗର ସଙ୍ଗମ ଠାରେ କପିଳଙ୍କ ଆଶ୍ରମରେ ପହଞ୍ଚି ସେ ଯଜ୍ଞ ଅଶ୍ୱକୁ ପାଇଲେ । ସଗରଙ୍କ ପୁତ୍ରମାନେ କ'ଣ ଚୁପ୍ ଚାପ ଅଶ୍ୱଧରି ରାଜଧାନୀକୁ ଫେରିଆସିଲେ ?

**ହନ୍ୟତାଂ ହନ୍ୟତାଂ ପାପ ଇତି ଷଷ୍ଟି ସହସ୍ରିଣଃ ।**
**ଉଦାୟୁଧା ଅଭିଯୟୁଃ ଉନ୍ମିମେଷ ତଦା ମୁନିଃ ||୧୦||**

ଉ.ସେମାନେ ସଂଖ୍ୟାରେ ଷାଠିଏ ହଜାର । ହତିଆର ଉଠେଇ ମାର ମାର ଶବ୍ଦ କରି ମୁନିଙ୍କୁ ଆକ୍ରମଣ କଲେ । ଗଭୀର ସମାଧିରୁ ଉତ୍‌ଥିତ ହୋଇ ମୁନି ଚକ୍ଷୁ ଖୋଲି ଦିଅନ୍ତେ ସକଳ ସଗର ସନ୍ତାନ ଭସ୍ମ ଗଦାଟିଏରେ ପରିଣତ ହୋଇଗଲେ ।

ପ୍ରଶ୍ନ-୪୧. କେହି କେହି ଭୁଲରେ କହନ୍ତି ଯେ -କପିଳ ମୁନିଙ୍କ କ୍ରୋଧ ଅଗ୍ନିରେ ସଗର ପୁତ୍ରମାନେ ଧ୍ୱଂସ ହେଲେ ବୋଲି କିନ୍ତୁ ତାହା ବିଲ୍‌କୁଲ୍ ମିଥ୍ୟା । କପିଳ ମୁନି ଅତ୍ୟନ୍ତ ଶୁଦ୍ଧ ସତ୍ତ୍ୱଗୁଣୀ ଭଗବାନ ବିଷ୍ଣୁଙ୍କର ଅବତାର । କପିଳ ମୁନିଙ୍କଠାରେ କ୍ରୋଧ ଉତ୍ପନ୍ନ ହେବା ଅସମ୍ଭବ ହେବ କାହିଁକି ?

**ଯସ୍ୟ-ଈରିତା ସାଂଖ୍ୟମୟୀ ଦୃଢ଼ା-ଇହ ନୌଃ**

**ଯୟା ମୁମୁକ୍ଷୁଃ ତରତେ ଦୁରତ୍ୟୟମ୍ ।**

**ଭବ-ଅର୍ଣ୍ଣବଂ ମୃତ୍ୟୁ ପଥଂ ବିପଶ୍ଚିତଃ**

**ପରାତ୍ମ ଭୂତସ୍ୟ କଥଂ ପୃଥକ୍ ମତିଃ ।।୧୩।।**

ଉ. ଭଗବତ୍ ପ୍ରାପ୍ତି ପାଇଁ ଯେଉଁ ଛଅଟି ଦର୍ଶନ ଶାସ୍ତ୍ର ପ୍ରଣୀତ ହୋଇଛି ସାଂଖ୍ୟ ଦର୍ଶନ ତନ୍ମଧ୍ୟରୁ ଅନ୍ୟତମ । ଏହା ମୁମୁକ୍ଷୁମାନଙ୍କ ପାଇଁ ଦୁସ୍ତର ସଂସାର ସାଗର ପାରହେବା ଲାଗି ଅତ୍ୟନ୍ତ ଦୃଢ଼ ନୌକା ସ୍ୱରୂପ । ଏହା ମନୁଷ୍ୟର ବିବେକକୁ ଜାଗ୍ରତ କରି ମରଣଶୀଳ (ମୁଁ ଦେହ ଭାବ) ଅବସ୍ଥାରୁ ନେଇ ଆତ୍ମଭାବ(ମୁଁ ଆତ୍ମା)ରେ ପହଞ୍ଚାଇ ଦିଏ । ଏହି ଅଲୌକିକ ବିରଳ ଦର୍ଶନର ପ୍ରଣେତା କପିଳ ମୁନି ଯେ' ସ୍ୱୟଂ ଭଗବାନଙ୍କ ଚିନ୍ମୟ ବିଗ୍ରହ (ପରାତ୍ମଭୂତ) । ସୁତରାଂ ତାଙ୍କ ବୁଦ୍ଧି/ମନରେ ଶତ୍ରୁ-ମିତ୍ର ଭାବ ଉତ୍ପନ୍ନ ହେବ କିପରି ଯାହା କ୍ରୋଧ / ତମୋଗୁଣ ସୃଷ୍ଟି କରି ମନୁଷ୍ୟକୁ ଚାଣ୍ଡାଳ ପଦାବାଚ୍ୟ କରିପକାଏ !!! ସୁତରାଂ ମହାତ୍ମାମାନଙ୍କ ମତରେ ମହାତେଜସ୍ୱୀ ମହାପୁରୁଷଙ୍କଠାରେ ଅପରାଧ କରନ୍ତେ ସଗର ପୁତ୍ର ମାନଙ୍କ ନିଜ ଦେହରେ ଛପି ଥିବା ଅଗ୍ନି, ସ୍ୱୟଂ ପ୍ରକଟ ହୋଇ ସେମାନଙ୍କୁ ଜାଳି ପାଉଁଶ କରିଦେଲେ ।

ପ୍ରଶ୍ନ-୪୨. ସଗରଙ୍କ ପୁତ୍ର ଅସମଞ୍ଜସ । ଅସମଞ୍ଜଙ୍କ ପୁତ୍ର ଅଂଶୁମାନ ମହାତ୍ମା କପିଳଙ୍କ ଆଶ୍ରମକୁ ଯାଇ ତାଙ୍କୁ ସ୍ତୁତି ଦ୍ୱାରା ପ୍ରସନ୍ନ କରି ଥିଲେ । କପିଳମୁନି ପ୍ରସନ୍ନ ହୋଇ ସଗର ପୁତ୍ର ମାନଙ୍କର ଉଦ୍ଧାର ହେବା ଲାଗି କି ଉପାୟ ବତେଇଲେ ?

**ଶ୍ରୀ ଭଗବାନ୍ ଉବାଚ**

**ଅଶ୍ୱୋଽୟଂ ନୀୟତାଂ ବସ୍ତ ପିତାମହ ପଶୁଃ ତବ ।**

**ଇମେ ଚ ପିତରୋ ଦଗ୍‌ଧା ଗଙ୍ଗାମ୍ଭୋଽର୍ହନ୍ତି ନ-ଇତରତ୍ ।।୨୮।।**

ଉ. ମୁନିଶ୍ରେଷ୍ଠ କପିଳ କହିଲେ, 'ହେ ପ୍ରିୟ ଅଂଶୁମାନ । ନିଅ ତୁମ ପିତାମହଙ୍କ ଯଜ୍ଞ ଅଶ୍ୱ । ଯଜ୍ଞରପୂର୍ଣ୍ଣାହୂତି କରାଅ । ତୁମର ଏ ଭସ୍ମିଭୂତ ପିତୃପୁରୁଷଙ୍କ ଉଦ୍ଧାର କର ସ୍ୱର୍ଗ ଲୋକର ଗଙ୍ଗାଦେବୀଙ୍କୁ ଅବତରଣ କରାଇ । ପବିତ୍ର ଗଙ୍ଗାଜଳ ବ୍ୟତୀତ ଅନ୍ୟ କୌଣସି ଉପାୟରେ ସେମାନଙ୍କର କଲ୍ୟାଣ ହୋଇ ନ ପାରେ ।

ମୁନୀଶ୍ୱରଙ୍କ ଆଦେଶ ପାଳନ କଲେ ଅଂଶୁମାନ । ପିତାମହଙ୍କ ଯଜ୍ଞର ପୂର୍ଣ୍ଣାହୂତି ହେଲା । ଔର୍ବମୁନିଙ୍କ କୃପାରୁ କଠୋର ତପସ୍ୟା କରି ସଗର ରାଜା ନିଜେ ନିଜେ ଭବ ବନ୍ଧନରୁ ମୁକ୍ତ ହୋଇପାରିଥିଲେ ।

# ଅଥ ନବମ ଅଧ୍ୟାୟଃ

## (ସୂର୍ଯ୍ୟବଂଶୀଙ୍କ ତିନି ପୁରୁଷ ତପସ୍ୟାରେ ଗଙ୍ଗାଙ୍କ ଧରା ଅବତରଣ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୪୩. ପୂର୍ବ ପୁରୁଷଙ୍କର ଉଦ୍ଧାର ଲାଗି ରାଜା ଅଂଶୁମାନ ସାରା ଜୀବନ ତପସ୍ୟାରେ ବିତାଇଲେ । ଅଂଶୁମାନଙ୍କ ପରେ ତାଙ୍କ ପୁତ୍ର ଦିଲ୍ଲୀପ କ'ଣ ତପସ୍ୟା କରି ଗଙ୍ଗାମାତାଙ୍କୁ ପୃଥିବୀକୁ ଆଣି ପାରିଲେ ?

**ଦିଲ୍ଲୀପଃ ତସ୍ସୁତଃ ତଦ୍ୱତ୍ ଅଶକ୍ତଃ କାଳଂ ଏୟିବାନ୍ ।**
**ଭଗୀରଥଃ ତସ୍ୟ ସୁତଃ ତେପେ ସ ସୁମହତ୍ ତପଃ ॥୨॥**

ଉ. ଦିଲ୍ଲୀପ ମଧ ତାଙ୍କ ଜୀବନ ବ୍ୟାପୀ ତପସ୍ୟା କରି ଅସଫଳ ହେଲେ (ଅଶକ୍ତଃ) କିନ୍ତୁ ଦିଲ୍ଲୀପଙ୍କ ପୁତ୍ର ଭଗୀରରଥଙ୍କ ତପସ୍ୟା ଫଳବତୀ ହେଲା ।

ପ୍ରଶ୍ନ-୪୪. ଗଙ୍ଗାଦେବୀ, ଭଗୀରଥଙ୍କ ତପସ୍ୟାରେ ପ୍ରସନ୍ନ ହେଲେ । ପ୍ରଶ୍ନ କଲେ, 'ଭଗୀରଥଙ୍କୁ ଶୁଣ ବତ୍ସ ମୁଁ ପୃଥିବୀକୁ ଯିବାକୁ ପ୍ରସ୍ତୁତ କିନ୍ତୁ ମୋର ବେଗକୁ ଧାରଣ କରିବ କିଏ ? ଦ୍ୱିତୀୟତଃ ପାପୀମାନେ ମୋ ଜଳରେ ସ୍ନାନ କରି ଯେଉଁ ପାପ ଛାଡ଼ି ଚାଲିଯିବେ ସେ ପାପରୁ ମୁଁ ନିଜେ କିପରି ମୁକ୍ତ ହେବି ?' ଗଙ୍ଗାମାତାଙ୍କ ପ୍ରଶ୍ନର କି ଉତ୍ତର ଦେଇଥିଲେ ଭଗୀରଥଙ୍କୀ ?

### ଭଗୀରଥ ଉବାଚ

**ସାଧବୋ ନ୍ୟାସିନଃ ଶାନ୍ତା ବ୍ରହ୍ମିଷ୍ଠା ଲୋକପାବନାଃ ।**
**ହରନ୍ତି-ଅଘଂ ତେଽଙ୍ଗ ସଙ୍ଗାତ୍ ତେଷ୍ୱ ଆସ୍ତେ ହି-ଅଘଭିତ୍ ହରିଃ ॥୬॥**

ଉ. ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ ଭଗୀରଥଜୀ କହିଲେ, 'ହେ' ମାତେଶ୍ୱରୀ ତୁମ କୂଳରେ ବାସ କରୁଥିବା ସଂସାର ବିରକ୍ତ ସାଧୁ-ସନ୍ଥ-ସନ୍ନ୍ୟାସୀଗଣ ତୁମ ଜଳରେ ସ୍ନାନ କରନ୍ତେ ତୁମ ପାପ ନାଶ ହୋଇଯିବ ଅକ୍ଲେଶରେ । କାରଣ ସେମାନେ ତାଙ୍କ ହୃଦୟ କମଳରେ ଅଘନାଶକ ଶ୍ରୀମନ୍ ନାରାୟଣଙ୍କ ପବିତ୍ର ଚରଣ କମଳକୁ ନିତ୍ୟ ଧାରଣ କରିଥାନ୍ତି ।'

ପ୍ରଶ୍ନ-୪୫. ଏଥର ଗଙ୍ଗାଦେବୀଙ୍କ ପ୍ରଥମ ପ୍ରଶ୍ନର ସମାଧାନ ଭଗୀରଥଜୀ କଲେ ତାଙ୍କୁ କ'ଣ କହି ?

**ଧାରୟିଷ୍ୟତି ତେ ବେଗଂ ରୁଦ୍ରଃ ତୁ-ଆତ୍ମା ଶରୀରିଣାମ୍ ।**
**ଯସ୍ମିନ୍ ଓତଂ ଇଦଂ ପ୍ରୋତଂ ବିଶ୍ୱଂ ଶାଟୀ-ଇବ ତନ୍ତୁଷୁ ॥୭॥**

ଉ. କହିଲେ, 'ହେ' ମାତେ ! ସମସ୍ତ ପ୍ରାଣୀଙ୍କର ଆତ୍ମା ରୁଦ୍ରଦେବ ତାଙ୍କ ଦିବ୍ୟ ଜଟାରେ ତୁମର ବେଗକୁ ସମ୍ଭାଳି ନେଇ ପାରିବେ । ଶାଢ଼ୀ (ବସ୍ତ୍ରରେ) ସୂତା ଖିଅ ଯେପରି ଲମ୍ବ ଭାବରେ (ଓତଃ) ଓ ଓସାର ଦିଗରେ(ପ୍ରୋତଃ) ରହି ଶାଢ଼ୀ ନାମକୁ ସାର୍ଥକ କରିଥାଏ ଠିକ୍ ସେହିଭଳି ଭଗବାନ ରୁଦ୍ରଦେବ ଏ ସାରା ସୃଷ୍ଟିରେ ଆତ୍ମାରୂପରେ ଭଗବାନ ନାରାୟଣଙ୍କ ପ୍ରତିନିଧିତ୍ୱ କରୁଛନ୍ତି । ସୁତରାଂ ଆପଣ ସେଥିଲାଗି ନିଶ୍ଚିତ ରହନ୍ତୁ ।' ଏଣେ ଭଗୀରଥ ଧ୍ୟାନ କଲେ ଶଙ୍କରଜୀଙ୍କୁ ।

ଶଙ୍କର ଭଗବାନଙ୍କୁ ତପସ୍ୟା କରି ପ୍ରସନ୍ନ କଲେ । ଶଙ୍କରଜୀ ମସ୍ତକରେ ଧାରଣ କଲେ ଗଙ୍ଗାଜୀଙ୍କୁ । ଗଙ୍ଗା ହିମାଳୟରେ ଆବିର୍ଭୂତ ହୋଇ ବହିବାରେ ଲାଗିଲେ । ରଥ ଚଢ଼ି ଭଗୀରଥ ଆଗେ ଆଗେ ବାଟ କଢ଼ାଉଥାନ୍ତି । ପଛେ ପଛେ ଗଙ୍ଗା ବହି ଚାଲିଲେ । ଗଙ୍ଗାସାଗର ସଙ୍ଗମରେ ଗଙ୍ଗାଜଳ ସ୍ପର୍ଶ ପ୍ରାପ୍ତ ହୋଇ ମୁକ୍ତ ହେଲେ ଷାଠିଏ ହଜାର ସଗର ପୁତ୍ର ।

ପ୍ରଶ୍ନ-୪୬. ଗଙ୍ଗାଜଳଙ୍କ ସ୍ପର୍ଶରେ ବ୍ରହ୍ମ ଅପରାଧୀ ସଗର ପୁତ୍ରଙ୍କ ମୁକ୍ତିରୁ କି ଶିକ୍ଷା ମିଳିଲା ସଂସାରକୁ ?

**ଭସ୍ମିଭୂତ-ଅଙ୍ଗସଙ୍ଗେନ ସ୍ୱଃ ଯାତାଃ ସଗର-ଆତ୍ମଜାଃ ।**
**କିଂ ପୁନଃ ଶ୍ରଦ୍ଧୟା ଦେବୀଂ ସେବନ୍ତେ ଯେ ଧୃତବ୍ରତାଃ ॥୧୩॥**

ଉ. ଗଙ୍ଗାଙ୍କ ଜଳର ସ୍ପର୍ଶରେ ଯଦି ପାଉଁଶ ହୋଇଥିବା ପାପୀମାନଙ୍କ ଉଦ୍ଧାର ହୋଇପାରିଲା । ତେବେ ଦେହଧାରୀ ମଣିଷ ଯଦି ଶ୍ରଦ୍ଧାସହକାରେ ତାଙ୍କ ପୂଜନ କରି

ତାଙ୍କ ଜଳରେ ସ୍ନାନ -ଆଚମନ ଆଦି କରିବ ତେବେ ତାର ମୁକ୍ତି ବିଷୟରେ ଆଉ କ'ଣ କୁହାଯାଇପାରେ !! ସେତ ନିଶ୍ଚୟ ମୁକ୍ତ ହେବ ।

ପ୍ରଶ୍ନ-୪୭. ନିଆଁ ପାଉଁଶ ହୋଇସାରିଥିବା ଜୀବର ଅସ୍ଥି ଆଦି ଗଙ୍ଗାଜଳରେ ବୁଡ଼ାଇଦେଲେ ଜଣେ ଜୀବ ଉଦ୍ଧାର ପାଇବା କ'ଣ କମ୍ ଆଶ୍ଚର୍ଯ୍ୟର କଥା ?

**ନ ହି-ଏତତ୍ ପରମ-ଆଶ୍ଚର୍ଯ୍ୟଂ ସ୍ୱର୍ଧୁନ୍ୟା ଯତ୍ ଇହ-ଉଦିତମ୍ ।**
**ଅନନ୍ତ ଚରଣ-ଅମ୍ଭୋଜ ପ୍ରସୂତାୟା ଭବଚ୍ଛିଦଃ ॥୧୪॥**

ଉ.ନା,ନା ଏହି ଘଟଣାକୁ (ଯତ୍- ଇହ- ଉଦିତଂ) ଗଙ୍ଗାଙ୍କର (ସ୍ୱର୍ଧୁନ୍ୟା) ମାହାତ୍ମବୋଲି ନ ମାନି ବରଂ ଭଗବାନଙ୍କର ପଦ କମଳର କରିସ୍ମା ମାନି ନେଲେ ଆମ ଅନ୍ତଃକରଣ ଆହୁରି ଶୁଦ୍ଧ ହୋଇଯିବ । ସଂସାର ଆସକ୍ତି ଛେଦନ କରିବାକୁ ଏହି କରୁଣାମୟୀ ଗଙ୍ଗାନଦୀ ବିଷ୍ଣୁଙ୍କ ପଦରୁ ଜନ୍ମ ନେଇଥିବାରୁ ତାଙ୍କୁ ଶାସ୍ତ୍ରମାନେ ବିଷ୍ଣୁପଦୀ ନାମରେ ସମ୍ବୋଧନ କରିଥାନ୍ତି ।

ଏହି ପବିତ୍ର ସୂର୍ଯ୍ୟବଂଶରେ ନିଷଧ ରାଜା ନଳ ଓ ଋତୁପର୍ଣ୍ଣ ଆଦି ରାଜା ଜନ୍ମ ଗ୍ରହଣ କରି ମହାନ୍ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଛନ୍ତି । ଆଜି ବି ହିନ୍ଦୁ ବିବାହରେ ନଳ-ଦମୟନ୍ତୀ ଓ ସୌଦାସ୍-ମଦୟନ୍ତୀଙ୍କ ଦାମ୍ପତ୍ୟ ଜୀବନର ଅଦର୍ଶ ନାମ ନିଆଯାଏ ବେଦି ଉପରେ ବର-କନ୍ୟାଙ୍କର ମନ ପବିତ୍ର କରିବାକୁ ।

ଏହି ବଂଶର ରାଜା ସୁଦାସଙ୍କ ପୁତ୍ରଙ୍କ ନାମ ସୌଦାସ । ସେ ଥରେ ବଣରେ ମୃଗୟା କଲାବେଳେ ଗୋଟିଏ ରାକ୍ଷସକୁ ମାରିଦେଇଥିଲେ । ସେ ରାକ୍ଷସର ଭାଇ ପ୍ରତିହିଂସା ପରାୟଣ ହୋଇ ଛଦ୍ମବେଶରେ ରାଜାଙ୍କ ରୋଷେଇ ଶାଳାରେ ନିଯୁକ୍ତି ପାଇଥାଏ । ଦିନେ ରାଜା ସୌଦାସ ବଶିଷ୍ଠ ଋଷିଙ୍କୁ ବ୍ରାହ୍ମଣ ଭୋଜନ ପାଇଁ ଡ଼ାକି ଭୋଜନ ବ୍ୟବସ୍ଥା କରିଥିଲେ । ପରଷି ଥିବା ଖାଦ୍ୟରେ ନରମାଂସ ଗନ୍ଧ ଥିବା ଜାଣି ପାରି ବଶିଷ୍ଠ ଋଷି ସୌଦାସଙ୍କୁ ବାର ବର୍ଷ ପାଇଁ ରାକ୍ଷସ ହୋଇ ଜିଅନ୍ତା ମଣିଷ ଖାଇ ବଂଚିବାକୁ ଅଭିଶାପ ଦେଲେ । ପରେ କିନ୍ତୁ ମୁନିଶ୍ରେଷ୍ଠ ବୁଝିଲେ ଏହା ରାଜାଙ୍କର ଦୋଷ ନୁହେଁ ବରଂ ତାଙ୍କ ରୋଷେଇଆର ଦୁରଭିସନ୍ଧି । ଋଷିଙ୍କୁ ମଧ୍ୟ ପାପ ଲାଗିଲା । ସେ ବାରବର୍ଷ ଅତ୍ୟନ୍ତ କଠିନ ତପସ୍ୟା କରି ପାପ ମୁକ୍ତ ହେଲେ ।

ଅନ୍ୟପକ୍ଷରେ ରାଜାଙ୍କ ଅବସ୍ଥା ମଧ୍ୟ ବ୍ରହ୍ମଶାପରେ ଗୁରୁତର ହେଲା । ସେ ପରମ ବିଷ୍ଣୁଭକ୍ତ ରାଜା । ସେ ଜଳ ଅଭିମନ୍ତ୍ରିତ କରି ବଶିଷ୍ଠଙ୍କୁ ଶାପଦେବାକୁ ବସିଲେ । ମାତ୍ର ଧର୍ମପତ୍ନୀ ମଦୟନ୍ତୀ ତାଙ୍କୁ ଏଥିରୁ ନିବୃତ୍ତ କରିଦେଲେ । ସୌଦାସ ସେ ଜଳକୁ

କାହାଉପରେ ଫିଙ୍ଗିବେ ? ବ୍ରହ୍ମଦୃଷ୍ଟି ଯୁକ୍ତ ରାଜା ଦେଖିଲେ ଜଳ- ସ୍ଥଳ-ଆକାଶରେ ବିଷ୍ଣୁ ହିଁ ଜୀବ ରୂପରେ ବିଦ୍ୟମାନ । ଉପାୟ ନ ପାଇ ରାଜା ସେ ଜଳକୁ ନିଜ ପାଦରେ ପକାଇଦେଲେ । ସେ ପାପ (କଲ୍ମଷ) ପାଦରେ ଧାରଣ କରିଥିବାରୁ ତାଙ୍କ ନାମ କଲ୍ମଷପାଦ ହେଲା ।

ରାଜା ସୌଦାସ ବ୍ରହ୍ମଶାପ କାଳ ବାର ବର୍ଷ ଜଙ୍ଗଲରେ ବୁଲି କଟାଇଲେ । କ୍ଷୁଧାର୍ତ୍ତ ହୋଇ ଧାଇଁଲେ ଏକ ବ୍ରାହ୍ମଣକୁ ଖାଇବାକୁ । କିନ୍ତୁ ବ୍ରାହଣଙ୍କ ସାଙ୍ଗରେ ଥିବା ବ୍ରାହ୍ମଣ ପତ୍ନୀ ତାଙ୍କୁ ଅଟକାଇବାକୁ ଚେଷ୍ଟା କଲେ ଶାପ ଦେବା ଭୟ ଦେଖାଇ । କ୍ଷୁଧାର୍ତ୍ତ ଶାପଗ୍ରସ୍ତ ରାଜା କିନ୍ତୁ ବ୍ରାହ୍ମଣଙ୍କୁ ଖାଇଗଲେ । ପୁଣି ଥରେ ବ୍ରାହ୍ମଣୀ ଶାପରେ ଅପୁତ୍ରିକ ହେବା କଳଙ୍କ ମୁଣ୍ଡାଇ ବାରବର୍ଷ ପରେ ରାଜ୍ୟକୁ ଫେରିଲେ ।

ପ୍ରଶ୍ନ-୪୮. ବଂଶରକ୍ଷା ପାଇଁ ସୌଦାସ ବଶିଷ୍ଠକୁ ସବିନୟ ଅନୁରୋଧ କଲେ । ବଶିଷ୍ଠ ଯୋଗ ବଳରେ ମଦୟନ୍ତୀଙ୍କ ଗର୍ଭରେ ପୁତ୍ର ଉତ୍ପାଦନ ତ କଲେ । ହେଲେ ପୁତ୍ର ରାଣୀଙ୍କ ଗର୍ଭରୁ ବାହାରକୁ ଆସୁ ନ ଥାଏ (ନ ବ୍ୟଜାୟତ) । ସାତବର୍ଷ (ସପ୍ତ ସମା) କଟିଗଲା । ରାଜା ସୌଦାସ-ଋଷି ବଶିଷ୍ଠ କି ଉପାୟରେ ଗର୍ଭସ୍ଥ ସନ୍ତାନକୁ ପ୍ରସବ କରାଇଲେ ?

**ସା ବୈ ସପ୍ତ ସମା ଗର୍ଭଂ ଅବିଭ୍ରତ-ନ ବ୍ୟଜାୟତ ।**
**ଜଘ୍ନେଽଶ୍ମନା-ଉଦରଂ ତସ୍ୟା ସୋଽଶ୍ମକଃ ତେନ କଥ୍ୟତେ ॥୩୯॥**

ଉ. ଅନ୍ୟ ଉପାୟ ନ ଦେଖି ଋଷି ବଶିଷ୍ଠ ମନ୍ତ୍ରପଢ଼ି ପଥର ମାରିଲେ ରାଣୀଙ୍କ ପେଟକୁ । ସଂସ୍କୃତରେ ଅଶ୍ମକ କୁହାଯାଏ ପଥରକୁ । ଏଣୁ ସେହି ଜନ୍ମିତ ସନ୍ତାନର ନାମ ରଖାଗଲା ଅଶ୍ମକ । ଏହି ଅଶ୍ମକଙ୍କର ପୁତ୍ର-ପୌତ୍ରାଦି କ୍ରମେ ଜନ୍ମ ନେଲେ ଜଣେ ଅତ୍ୟନ୍ତ ଅଧ୍ୟାତ୍ମ ତେଜଯୁକ୍ତ ସନ୍ତାନ ଖଟ୍ୱାଙ୍ଗ । ସେ ହେଲେ ସପ୍ତଦ୍ୱୀପ ସମନ୍ୱିତ ମହିମଣ୍ଡଳର ଚକ୍ରବର୍ତ୍ତୀ ସମ୍ରାଟ୍ । ସ୍ୱର୍ଗରେ ଦେବତାଙ୍କୁ ଅସୁର ଆକ୍ରମଣ ବିପଦ ପଡ଼ନ୍ତେ ସେମାନେ ରାଜା ଖଟ୍ୱାଙ୍ଗଙ୍କୁ ସାହାଯ୍ୟ ଲାଗି ପ୍ରାର୍ଥନା କରିଥିଲେ । ରାଜା ସେମାନଙ୍କୁ ଯୁଦ୍ଧରେ ବିଜୟ ପ୍ରଦାନ କଲା ପରେ ଦେବତାମାନେ ପ୍ରସନ୍ନ ହୋଇ ଖଟ୍ୱାଙ୍ଗଙ୍କୁ ବର ଯାଚିଲେ । ରାଜା ବରରୂପରେ ନିଜର ଅବଶିଷ୍ଟ ଆୟୁଷ କେତେ ପଚାରିଲେ । ରାଜା ଦେବତାମାନଙ୍କଠାରୁ ଜାଣିଲେ ମାତ୍ର ଏକ ମୁହୂର୍ତ୍ତ ମାତ୍ର ତାଙ୍କ ଆୟୁଷ ବାକୀ ଅଛି ।

ପ୍ରଶ୍ନ-୪୯. ରାଜା ଖଟ୍ୱାଙ୍ଗ ଏତେ ଅଳ୍ପ ଆୟୁଷ ବାକୀ ଥିବା ଜାଣି କାମିନୀ -କାଞ୍ଚନ ଭୋଗରେ ନିଶ୍ଚୟ ମାତି ଯାଇଥିବେ ?

**ନ ମେ ବ୍ରହ୍ମକୁଳାତ୍ ପ୍ରାଣାଃ କୁଳଦୈବାତ୍ ନ ଚ-ଆତ୍ମଜାଃ ।**
**ନ ଶ୍ରିୟୋ ନ ମହୀ ରାଜ୍ୟଂ ନ ଦାରାଃ ଚ-ଅତିବଲ୍ଲଭାଃ ||୪୩||**

ଉ. ନା,ନା ରାଜା କିନ୍ତୁ ଓଲଟ କାମ କଲେ । ନିଜ ମନକୁ ଅନ୍ତର୍ମୁଖୀ କରିବାକୁ ନିଶ୍ଚୟ କଲେ । ଭାବିଲେ ମୁଁ ବ୍ରାହ୍ମଣ ସେବକ କୁଳରେ ଜନ୍ମ ନେଇଛି । ବ୍ରାହ୍ମଣ -ବୈଷ୍ଣବ ମୋ ସ୍ୱ ପ୍ରାଣ ଠାରୁ ମଧ ଅଧିକ ପ୍ରିୟ । ଧନ ସଂପତ୍ତି- ରାଜ୍ୟ -ପତ୍ନୀ- ଐଶ୍ୱର୍ଯ୍ୟ ଭୋଗ-ଆସକ୍ତି ଆଦି ମୋ ପାଇଁ ପ୍ରିୟ ହେବେ ବା କିପରି (ନ-ଅତି-ବଲ୍ଲଭାଃ) ?

ପ୍ରଶ୍ନ-୫୦. ରାଜା ନିଜ ସୁନ୍ଦର ବିବେକରେ ବିଚାର କଲେ । ସମଗ୍ର ସଂସାର ମାୟା ରଚିତ । ସତ୍ତ୍ୱଗୁଣୀ ଦେବତାମାନେ ଭୋଗରେ ମାତି ନିଜ ହୃଦୟକମଳ ସ୍ଥିତ ନାରାୟଣଙ୍କ ମାହତ୍ମ୍ୟ ଜାଣି ନ ପାରିବା ବେଳେ ରଜୋ-ତମୋ ଗୁଣି ମଣିଷ-ରାକ୍ଷସ ଭଗବାନଙ୍କୁ ଭୁଲି ଭୋଗରେ ମାତିବା ମଧ କିଛି ବିଚିତ୍ର ନୁହେଁ । ସୁତରାଂ ରାଜା ଖଟ୍ୱାଙ୍ଗ ଗଭୀର ସମାଧିସ୍ଥ ହୋଇ ସଗୁଣ ବ୍ରହ୍ମଙ୍କ ଧ୍ୟାନ କଲେ ନା ନିର୍ଗୁଣ ବ୍ର୍ଙ୍କ ଧ୍ୟାନ କରି ଭଗବତ ପ୍ରାପ୍ତ ହେଲେ ?

**ଯତ୍ ତତ୍ ବ୍ରହ୍ମ ପରଂ ସୂକ୍ଷ୍ମଂ ଅଶୂନ୍ୟଂ ଶୂନ୍ୟ କଳ୍ପିତମ୍ ।**
**ଭଗବାନ୍ ବାସୁଦେବ-ଇତି ଯଂ ଗୃଣନ୍ତି ହି ସାତ୍ତ୍ୱତାଃ ||୪୯||**

ଉ. ସେ ସଦ୍‌ଗୁରୁଙ୍କ କୃପାରୁ ବୁଝିପାରିଥିଲେ ବ୍ରହ୍ମ(ଓଁ) ସିନା ନିର୍ଗୁଣ -ନିରାକାର-ଶୂନ୍ୟ । ହେଲେ ପରବ୍ରହ୍ମ କିନ୍ତୁ ସଗୁଣ ପରମାତ୍ମା ନାରାୟଣ । ଭଗବାନ ସଗୁଣ ସାକାର ପରମ ସତ୍ୟ(ଭାଗବତରେ), ପୁରୁଷୋତ୍ତମ (ମହାଭାରତ ସ୍ଥିତ ଗୀତାରେ) ଓ ଅଷ୍ଟାଦଶ ପୁରାଣରେ ଖାଣ୍ଟି, ଗୋଟା ସୁଦ୍ଧା ରାଧା-କୃଷ୍ଣ ବିଗ୍ରହ । ଏହି ଭଗବାନ ହିଁ ଭକ୍ତ ସେବ୍ୟ (ଗୃଣନ୍ତି ହି ସାତ୍ତ୍ୱତାଃ )।

ସୁତରାଂ ରାଜା ଖଟ୍ୱାଙ୍ଗ ରାଧା-କୃଷ୍ଣଙ୍କ ଦିବ୍ୟ ଚରଣ କମଳ ଧ୍ୟାନ କରି ନିଜ ଭକ୍ତ ଜୀବନକୁ ଧନ୍ୟ କଲେ ସେହି ମୁହୂର୍ତ୍ତକ ସମୟ ଧ୍ୟାନ କରି ।

# ଅଥ ଦଶମ ଅଧ୍ୟାୟଃ

## (ସୂର୍ଯ୍ୟବଂଶରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କ ପ୍ରାକଟ୍ୟ)

### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୫୧. ସୂର୍ଯ୍ୟବଂଶର ଶ୍ରେଷ୍ଠତମ ରାଜା ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ବୃଦ୍ଧ ପ୍ରପିତାମହ, ପ୍ରପିତାମହ, ପିତାମହ ଓ ପିତା କେଉଁ କ୍ରମରେ ସେ ବଂଶରେ ଜନ୍ମଲାଭ କରିଥିଲେ ?

**ଖଟ୍ୱାଙ୍ଗାତ୍ ଦୀର୍ଘବାହୁଃ ଚ ରଘୁଃ ତସ୍ମାତ୍ ପୃଥୁଶ୍ରବାଃ ।**
**ଅଜଃ ତତୋ ମହାରାଜଃ ତସ୍ମାଦ୍ ଦଶରଥୋଽଭବତ୍ ॥୧॥**

ଉ. ମହାରାଜା ଖଟ୍ୱାଙ୍ଗଙ୍କ ପୁତ୍ର ଦୀର୍ଘବାହୁ । ଦୀର୍ଘବାହୁଙ୍କ ବିଖ୍ୟାତ ଭକ୍ତ ପୁତ୍ର (ପୃଥୁଶ୍ରବାଃ) ରଘୁ ହେଲେ । ରଘୁଙ୍କ ପୁତ୍ର ଅଜ ଓ ଅଜଙ୍କ ପୁତ୍ର ଦଶରଥ । ଏହି ଦଶରଥ ନନ୍ଦନଙ୍କୁ ଦାଶରଥୀ ରାମ କୁହାଯାଏ ।

ଏହି ବିଗ୍ରହବାନ ଧର୍ମ ଆଚରଣକାରୀ ଆଦର୍ଶ ମାନବ ଶ୍ରୀରାମ ବଶିଷ୍ଠ ଋଷିଙ୍କ ଠାରୁ ବେଦବିଦ୍ୟା ଓ ବିଶ୍ୱାମିତ୍ର ମୁନିଙ୍କ ଠାରୁ ଧନୁର୍ବିଦ୍ୟା ଶିକ୍ଷା ଲାଭ କରିଥିଲେ । ବିଶ୍ୱାମିତ୍ରଙ୍କ ଯଜ୍ଞ ରକ୍ଷା ଅର୍ଥେ ତାଡ଼କା ରାକ୍ଷସୀ ବଧ କରି ସୁବାହୁ ମାରୀଚଙ୍କୁ ଦଣ୍ଡିତ କରିଥିଲେ । ଗୃହକୁ ଫେରିବା ବାଟରେ ଗୌତମ ପତ୍ନୀ ଅହଲ୍ୟାଙ୍କୁ ଉଦ୍ଧାର କରି ମିଥିଳାରେ ଜନକ ସୁତା ଜଗତ୍ ଜନନୀ ମା' ସୀତାଙ୍କୁ ବିବାହ କରିଥିଲେ ।

ରାଜା ଦଶରଥ ବାର୍ଦ୍ଧକ୍ୟ ଅବସ୍ଥାରେ ରାମଙ୍କୁ ରାଜ ସିଂହାସନ ଦେବାକୁ ବସିଲେ । ମାତ୍ର ବିଧିର ବିଧାନ ବିଚିତ୍ର । ରାଣୀ କୈକେୟୀ ଦାସୀ ମନ୍ଥରା ବୋଲରେ ରାଜାଙ୍କୁ ଦୁଇ ବରମାଗି ନିଜ ପୁତ୍ର ଭରତକୁ ରାଜା କରାଇବା ଉଦେଶ୍ୟ ପ୍ରକଟ କଲେ । ରାମ ପିତୃସତ୍ୟ ପାଳନ ଉଦ୍ଦେଶ୍ୟରେ ବନ ଗମନ କଲେ । ବନ ମଧ୍ୟରେ ଅନେକ ମୁନି ଋଷିଙ୍କ ସତ୍ ସଙ୍ଗ କରି ସାଙ୍ଗରେ ନେଇଥିବା ପତ୍ନୀ ସୀତା ଓ ଅନୁଜ ଲକ୍ଷ୍ମଣଙ୍କୁ ସତ୍‌ସଙ୍ଗର ମାହାତ୍ମ୍ୟ ଅନୁଭବ କରାଇଲେ ।

ଦଣ୍ଡକାରଣ୍ୟରେ ରାକ୍ଷସୀ ସୂର୍ପଣଖାଙ୍କର ନାସିକା କର୍ଣ୍ଣ ଛେଦନ କରାନ୍ତେ ତାର ଭାଇ ରାବଣ ମାରୀଚକୁ ସ୍ୱର୍ଣ୍ଣ ମୃଗରେ ପରିଣତ କଲା । ସେଇ ସ୍ୱର୍ଣ୍ଣମୃଗ ରୂପ ଲୋଭ ଦେଖାଇଲା ସୀତା ରାମଙ୍କୁ । ମା' ସୀତାଙ୍କ ଅନୁରୋଧରେ ଭଗବାନ ମାରୀଚକୁ ଶିକାର କରି ଫେରି ଦେଖନ୍ତି, ମା' ସୀତା ଆଶ୍ରମରୁ ବଳାତ୍କାରେ ଅପହୃତା ।

ସତ୍ୟସନ୍ଧ ବୀର ଶ୍ରୀ ରାମ ସମଦୁଃଖୀ ସୁଗ୍ରୀବଙ୍କ ସହିତ ମିତ୍ରତା କରି ଅତ୍ୟାଚାରୀ ବାନର ରାଜା ବାଳିଙ୍କୁ ଉଦ୍ଧାର କଲେ । ସୁଗ୍ରୀବଙ୍କ ସେନା ଭଲ୍ଲୁକ ମର୍କଟଙ୍କ ସହିତ ସେନାପତି ହନୁମାନଙ୍କ ଦ୍ୱାରା ସୀତାଙ୍କ ସନ୍ଧାନ ପ୍ରାପ୍ତ ହେଲେ । ରାକ୍ଷସ ରାଜା ରାବଣ ସୀତା ଫେରାଇବାକୁ ରାଜି ନ ହୁଅନ୍ତେ ରାବଣ ଶରଣାଗତ ବିଭୀଷଣଙ୍କ ସାହାଯ୍ୟରେ ରାବଣଙ୍କୁ ଉଦ୍ଧାର କଲେ । ବିଭୀଷଣଙ୍କୁ ଲଙ୍କାର ରାଜ ସିଂହାସନରେ ଅଭିଷିକ୍ତ କଲେ ।

ପ୍ରଶ୍ନ-୫୨. ରାଜା ବିଭୀଷଣ ରାବଣଙ୍କ ଅନ୍ତେଷ୍ଟି କ୍ରିୟା କଲେ । ଭଗବାନ ଶ୍ରୀରାମ ଦେବତାମାନଙ୍କ କାର୍ଯ୍ୟ ସିଦ୍ଧ କଲେ ରାବଣ ଦୌରାତ୍ମ୍ୟରୁ ମୁକ୍ତ କରାଇ । ଭଗବାନ ରାମ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲାବେଳେ ଦେବତାମାନେ ଆକାଶ ପଥରେ (ପଥି) ତାଙ୍କୁ କିପରି ଅଭିନନ୍ଦନ ଜଣାଇ କୃତଜ୍ଞତା ଜ୍ଞାପନ କରିଥିଲେ ?

**ଅବିକୀର୍ଯ୍ୟମାଣଃ କୁସୁମୈଃ ଲୋକପାଳ-ଅର୍ପିତୈଃ ପଥି ।**
**ଉପଗୀୟମାନ ଚରିତଃ ଶତଧୃତି-ଆଦିଭିଃ ମୁଦା ।।୩୪।।**

ଉ. ଇନ୍ଦ୍ର ଆଦି ଲୋକପାଳମାନେ ଶ୍ରୀରାମଙ୍କ ପୁଷ୍ପକ ବିମାନ ଉପରେ ସ୍ୱର୍ଗ ସୁମନ ବୃଷ୍ଟି କରି (ଅବକୀର୍ଯ୍ୟମାଣଃ) ଓ ଶ୍ରୀରାମଙ୍କ ଦିବ୍ୟ ଲୀଳା ଚରିତ ଗାନ କରି କରି (ଉପଗୀୟମାନ ଚରିତଃ) ମହାଆନନ୍ଦରେ (ମୁଦା) ବ୍ରହ୍ମାଜୀ-ଶଙ୍କରଜୀ ଆଦି (ଶତଧୃତି ଆଦିଭିଃ)ଙ୍କ ସହିତ ସମ୍ମିଳିତ ହୋଇ ଉତ୍ସବ ମନାଇଲେ ।

ପ୍ରଶ୍ନ-୫୩. ଭଗବାନ ଶ୍ରୀରାମ ଅଯୋଧ୍ୟାରେ ପହଞ୍ଚି କିଭଳି ଆଡ଼ମ୍ବର ପୂର୍ଣ୍ଣ ମହୋତ୍ସବରେ ସିଂହାସନରେ ଅଭିଷିକ୍ତ ହେଲେ ?

**ଜଟା ନିର୍ମୁଚ୍ୟ ବିଧିବତ୍ କୁଳବୃଦ୍ଧୈଃ ସମଂ ଗୁରୁଃ ।**
**ଅଭ୍ୟଷିଂଚତ୍ ଯଥା-ଏବ-ଇନ୍ଦ୍ରଂ ଚତୁଃସିନ୍ଧୁ ଜଳ-ଆଦିଭିଃ ।।୪୯।।**

ଉ. ସ୍ୱର୍ଗଲୋକରେ ଇନ୍ଦ୍ରଙ୍କୁ ଯେପରି ଗୁରୁ ବୃହସ୍ପତି ଅଭିଷେକ କରନ୍ତି ସେହିପରି କୁଳଗୁରୁ ବଶିଷ୍ଠ ଅନ୍ୟାନ୍ୟ ମୁନି ଋଷି ଓ ରାଜନ୍ୟବର୍ଗଙ୍କ ସହିତ (ସମଂ) ମିଶି ଶ୍ରୀରାମଙ୍କ ଜଟା ମୁଣ୍ଡନ କରାଇଲେ । ଆରବ ସାଗର-ବଙ୍ଗୋପ ସାଗର-ଭାରତ ମହାସାଗର, ସହିତ ପବିତ୍ର ଗଙ୍ଗାଜଳ ମିଶାଇ (ଚତୁଃସିନ୍ଧୁଃ) ରାଜକୁମାରଙ୍କୁ ସ୍ନାନ ଶୌଚ କରାଇ, ବସ୍ତ୍ରାଳଂକାରରେ ସଜାଇଲେ । ବେଦ ମନ୍ତ୍ରଗାନ କରି ରାଜ ମୁକୁଟ ପିନ୍ଧାଇ ସିଂହାସନରେ ଅଭିଷେକ କଲେ ।

ପ୍ରଶ୍ନ-୫୪. ଇତିହାସରେ ଅଦୃଷ୍ଟ ପୂର୍ବ ଓ ଅଶ୍ରୁତପୂର୍ବ ରାମ ରାଜ୍ୟର ସ୍ଥାପନ

ହେଲା । ତ୍ରେତୟା ଯୁଗରେ ସତେ ଯେପରି ସତ୍ୟଯୁଗର (କୃତସମୋ) ପୁନଃ ଅବିର୍ଭାବ ହେଲା । ପ୍ରଜା (ମନୁଷ୍ୟ) ମାନେ ବାଧ୍ୟ ବାଧକ ଭାବରେ ନ କରି ଖୁସୀରେ ସ୍ୱଧର୍ମ ପାଳନ କରି ବନ୍ଧନ ମୁକ୍ତ ହୋଇ ଯାଇଥିଲେ କି ରାମ ରାଜ୍ୟରେ ?

**ତ୍ରେତାୟାଂ ବର୍ତ୍ତମାନାୟାଂ କାଳଃ କୃତସମୋଽଭବତ୍ ।**
**ରାମେ ରାଜନି ଧର୍ମଜ୍ଞେ ସର୍ବଭୂତ ସୁଖାବହେ ।।୫୨।।**

ଉ. ପ୍ରଜା କହିଲେ ରାଜ୍ୟରେ ଥିବା କେବଳ ମନୁଷ୍ୟକୁ ବୁଝାଇ ନ ଥାଏ । ବୁଝାଏ ମନୁଷ୍ୟ-ପଶୁ-ପକ୍ଷୀ-ବୃକ୍ଷ-ଲତା ସକଳ ଚର-ଅଚର ଜୀବକଙ୍କ ସହିତ ଜଡ ପଦାର୍ଥ କ୍ଷିତି-ଅପ୍-ତେଜ-ମରୁତ-ଆକାଶ ସହିତ ସେମାନଙ୍କ ଅଧିଷ୍ଠିତ ଦେବୀ ଦେବତା ସକଳଙ୍କୁ ମଧ୍ୟ । ଶ୍ରୀରାମଙ୍କ ରାମ ରାଜ୍ୟରେ ଏମାନେ ସମସ୍ତେ ସ୍ୱ ସ୍ୱ ବର୍ଣ୍ଣ-ଆଶ୍ରମ ଧର୍ମ ପାଳନ କରି ଜୀବନ୍ମୁକ୍ତ ହୋଇ ଭବସାଗର ପାର ହୋଇ ରାମ ପ୍ରେମ ସମୁଦ୍ରରେ ଉବେଇ ଟୁବେଇ ହେଉଥିଲେ ।

ପ୍ରଶ୍ନ-୫୫. ମନୁଷ୍ୟମାନେ ବିନା ସ୍ୱଧର୍ମ ପାଳନର ଅଧିକାରୀ ନଦ, ନଦୀ, ବନ, ପର୍ବତ, ଭୂମି, ଅକାଶ, ସିନ୍ଧୁ ଏମାନେ କିପରି ସ୍ୱଧର୍ମ ପାଳନ କରି ଆନନ୍ଦିତ ହୋଇପାରିଲେ ?

**ବନାନି ନଦ୍ୟୋ ଗିରୟୋ ବର୍ଷାଣି ଦ୍ୱୀପ ସିନ୍ଧବଃ ।**
**ସର୍ବେ କାମଦୁଘା ଆସନ୍ ପ୍ରଜାନାଂ ଭରତର୍ଷଭ ।।୫୩।।**

ଉ. ସ୍ଥୂଳ ଦୃଷ୍ଟିରେ ସେମାନେ ଜଡ଼ ମନେ ହେଉଥିଲେ ମଧ୍ୟ ଭକ୍ତି-ବିବେକ ଦୃଷ୍ଟିରେ ସେମାନେ ସମସ୍ତେ ବିଭିନ୍ନ ଅସଂଖ୍ୟ ଦେବୀ-ଦେବତାଙ୍କ ଶରୀର ମାତ୍ର । ସେମାନେ ରାଜା-ପ୍ରଜାମାନଙ୍କ ଦ୍ୱାରା ଅନୁଷ୍ଠିତ ଅଶ୍ୱମେଧ-ବାଜପେୟ-ଦର୍ଶ-ପୌର୍ଣ୍ଣମାସ ହୋମ ଯଜ୍ଞାଦିରେ ଆହୁତି ପ୍ରାପ୍ତ ହୋଇ ରାଜ୍ୟରେ ବାଞ୍ଛାକଳ୍ପତରୁ (କାମଦୁଘା) ଭଳି ଯଜ୍ଞ ସାମଗ୍ରୀ ସକଳ ମନୁଷ୍ୟର ଆବଶ୍ୟକତା ମୁତାବକ ନ ମାଗିଲେ ମଧ୍ୟ ଯୋଗାଇ ଦେଇ ନିଜ ଜୀବନ କୃତାର୍ଥ କରୁଥିଲେ ।

ପ୍ରଶ୍ନ-୫୬. ଭଗବାନ (ଅଧୋକ୍ଷଜେ) ରାମ ରାଜ୍ୟର ସର୍ବୋଚ୍ଚ ମାହାତ୍ମ୍ୟ ବୋଲି କାହାକୁ ଗଣନା କରାଯାଏ ?

**ନ-ଆଧି ବ୍ୟାଧି ଜରା ଗ୍ଲାନି ଦୁଃଖ ଶୋକ ଭୟ କ୍ଲମାଃ ।**
**ମୃତ୍ୟୁଃ ଚ-ଅନିଚ୍ଛତାଂ ନ-ଆସୀତ୍ ରାମେ ରାଜନି-ଅଧୋକ୍ଷଜେ।।୫୪।।**

ଉ.ମାନସିକ ଦୁଃଖ(ଆଧି),ରୋଗ (ବ୍ୟାଧି), ବାର୍ଦ୍ଧକ୍ୟ, ଦୁର୍ବଳତା(ଗ୍ଲାନି) ଦୁଃଖ, ଶୋକ, ଭୟ ଓ ଥକାବଟ (କ୍ଲମାଃ) କୌଣସି ପ୍ରଜାଙ୍କୁ ହେଉ ନ ଥାଏ । ପୁଣି ସମସ୍ତେ ଇଚ୍ଛାମୃତ୍ୟୁ ବରପ୍ରାପ୍ତ ଥିଲେ ଅର୍ଥାତ୍ ଅକାଳ ମୃତ୍ୟୁ କାହାକୁ ହେଲେ ହେଉ ନ ଥାଏ । କାରଣ ସେ ସଂପୂର୍ଣ୍ଣ ନିଷ୍ପାପ ଜୀବନ ନିର୍ବାହ କରୁଥିଲେ ।

ରାମ ରାଜ୍ୟରେ (ରାମେ ରାଜନି) ପୋଲିସ, ବିଚାର ପତି, ଜେଲ୍ ଖାନା, ଡ଼ାକ୍ତର, ଡ଼ାକ୍ତରଖାନା, ଔଷଧ, ଆଦିର ଆବଶ୍ୟକତା ପଡୁନଥିଲା । ରାଜା ଖୁସ୍, ପ୍ରଜା ଖୁସ୍ ଓ ରାଜ୍ୟ ମଧ୍ୟ ଖୁସ୍ ।

## ଅଥ ଏକାଦଶ ଅଧ୍ୟାୟଃ

### (ପ୍ରଜାବତ୍ସଳ ରାଜା ଶ୍ରୀରାମଙ୍କ ରାମ ରାଜ୍ୟ ପରିଚାଳନା)

ପ୍ରଶ୍ନ-୫୭.ଶ୍ରୀରାମ ସ୍ୱୟଂ ଭଗବାନ ଥିଲେ । ସେ କାହିଁକି ଅଶ୍ୱମେଧାଦି ଯଜ୍ଞ କରିବାରେ (ମଖୈଃ) ଆଗ୍ରହୀ ହେଲେ ?

ଶ୍ରୀଶୁକ ଉବାଚ

**ଭଗବାନ୍ ଆତ୍ମନା-ଆତ୍ମାନଂ ରାମ ଉତ୍ତମ କଳ୍ପକୈଃ ।**
**ସର୍ବବେଦ ମୟଂଦେବଂ ଇଜେଽଥ-ଆଚାର୍ଯ୍ୟବାନ୍ ମଖୈଃ ॥୧॥**

ଉ. ବିଧିବିଧାନ ପୂର୍ବକ (ଉତ୍ତମ କଳ୍ପକୈଃ)ଶ୍ରଦ୍ଧା ସହିତ ସ୍ୱଧର୍ମ ପାଳନ ଆଦି ଆଦର୍ଶ ସ୍ଥାପନ କରିବା ଥିଲା ତାଙ୍କର ଲକ୍ଷ୍ୟ । **ଆପନି ଆଚରି ଧର୍ମ ପରକେ ଶିଖାୟ**-ନ୍ୟାୟରେ ସେ ସ୍ୱୟଂ ଯଜ୍ଞ କରୁଥିଲେ ଓ ଅନ୍ୟକୁ ଯଜ୍ଞ କରିବାକୁ ପ୍ରେରଣା ଦେଉଥିଲେ । ଦେବାଃ ନାରାୟଣ -ଅଙ୍ଗଜା-ଦେବୀ ଦେବତାଙ୍କୁ ଯଜ୍ଞରେ ପ୍ରସନ୍ନ କରି ସେ ବୁଝାଇ ଥିଲେ ପ୍ରଜାମାନଙ୍କୁ ଦେବ(ନାରାୟଣ) ଓ ଦେବତା ଶକ୍ତି ବିଚାରରେ ଭିନ୍ନ ତତ୍ତ୍ୱ ପୁଣି ଶକ୍ତିମାନ୍ ବିଚାରରେ ଅଭିନ୍ନ ତତ୍ତ୍ୱ । ଜୀବ-ବ୍ରହ୍ମ ଏକ ସମୟରେ ଶକ୍ତିର ତାରତମ୍ୟ ହେତୁ ଭିନ୍ନ ତତ୍ତ୍ୱ କିନ୍ତୁ ସ୍ୱଭାବ ଗୁଣ ବିଚାରରେ ଉଭୟେ ସଚ୍ଚିଦାନନ୍ଦମୟ ହେତୁ ଅଭିନ୍ନ ମଧ୍ୟ ।

ଅନ୍ୟବାକ୍ୟରେ ସେ ନିଜେ ନିଜର ପୂଜନ କରି ନିଜକୁ ଆନନ୍ଦଦେବା କଥା ପ୍ରଜାମାନଙ୍କୁ ଶିକ୍ଷାଦେଲେ । ଭଗବାନ ଶ୍ରୀରାମ ବ୍ରାହ୍ମଣ-ବୈଷ୍ଣବଙ୍କୁ ଅକୁଣ୍ଠ ସମ୍ମାନ

ପ୍ରଦାନ କରୁଥିଲେ । ଧର୍ମ ତାଙ୍କର ପ୍ରଜାନୁରଞ୍ଜନ । ରାଜା -ପ୍ରଜାକଂ ମଧ୍ୟରେ ସେ ଶାସକ-ଶାସିତ ସଂପର୍କକୁ ପିତା-ପୁତ୍ର ସଂପର୍କରେ ରୂପାନ୍ତରଣ କରିପାରିଥିଲେ ।

ଏକଦା ସେ ଗୁପ୍ତ ଭ୍ରମଣ କାଳରେ ଶୁଣିଲେ ମା' ସୀତାଙ୍କ ବିଷୟରେ ଏକ ଅବାଞ୍ଛିତ ଟିପ୍‌ପଣୀ । ସେତେବେଳେ ସୀତା ଥାଆନ୍ତି ସନ୍ତାନ ସମ୍ଭବା । ସୁତରାଂ ସେ ଅନୁଜ ଲକ୍ଷ୍ମଣଙ୍କ ଦ୍ୱାରା ତାଙ୍କୁ ବାଲ୍ମିକୀ ଆଶ୍ରମରେ ସଂରକ୍ଷଣ କରାଇବାର ବନ୍ଦୋବସ୍ତ କରିଥିଲେ । ଆଶ୍ରମରେ ତାଙ୍କର ଦୁଇ ପୁତ୍ର ଲବ-କୁଶ ଜନ୍ମନେଇ ବାଲ୍ମିକୀଙ୍କ ଲିଖିତ ରାମାୟଣ ଗାନ ଶିକ୍ଷଣ କଲେ ।

ପ୍ରଶ୍ନ-୫୮. ଥରେ ଭଗବାନ ଶ୍ରୀରାମ ଅଯୋଧ୍ୟାରେ ଲବ-କୁଶଙ୍କ ମୁଖରୁ ରାମଲୀଳା ଗାନ ଶ୍ରବଣ କରି ମୁଗ୍ଧ ହୋଇଥିଲେ । ରାମ ଲୀଳା ଅଭିନୟ ଶେଷ ହୋଇ ଆସିଲା । ମା' ସୀତା ପୁତ୍ର ଦ୍ୱୟଙ୍କୁ ବାଲ୍ମିକୀଙ୍କ ସଂରକ୍ଷଣରେ ଛାଡ଼ି କେଉଁ ଚରମ ପଦକ୍ଷେପ ନେବାକୁ ପସନ୍ଦ କରିଥିଲେ ?

**ମୁନୌ ନିକ୍ଷିପ୍ୟ ତନୟୌ ସୀତା ଭର୍ତ୍ତା ବିବାସିତା ।**
**ଧ୍ୟାୟନ୍ତୀ ରାମ ଚରଣୌ ବିବରଂ ପ୍ରବିବେଶ ହ ॥୧୫॥**

ଉ. ପତିଦେବ ଶ୍ରୀରାମଙ୍କ ଦ୍ୱାରା ନିର୍ବାସିତା ହୋଇ ଶ୍ରୀରାମ ବିରହରେ ସେ ଅଶେଷ ଦୁଃଖିନୀ ଥିଲେ । ପରବର୍ତ୍ତୀ ଜନ୍ମରେ ପୁଣି ତାଙ୍କ ସହିତ ରାମ ଲୀଳାରେ ଅଭିନୟ କରିବାକୁ କାମନା କରି ଭଗବନାଙ୍କ ଦିବ୍ୟ ଚରଣ କମଳ ଚିନ୍ତନ କରି ମାତା ଭୂଗର୍ଭରେ ପ୍ରବେଶ କରିଗଲେ । ଆଜି ଉତ୍ତର ପ୍ରଦେଶର ନୈମିଷାରଣ୍ୟରେ ସେ ସ୍ଥାନ ଓ ସୀତାଙ୍କ ମନ୍ଦିର ଦ୍ରଷ୍ଟବ୍ୟ ।

ପ୍ରଶ୍ନ-୫୯. ମା' ସୀତାଙ୍କର ଦେହ ତ୍ୟାଗ ବାର୍ତ୍ତା ଶୁଣିବା ପରେ ପ୍ରଭୁ ଶ୍ରୀରାମ କଅଣ କରିବାରେ ଆଗ୍ରହୀ ହେଲେ ?

**ସ ଯୈଃ ସ୍ପୃଷ୍ଟୋଽଭିଦୃଷ୍ଟୋ ବା ସଂବିଷ୍ଟୋଽନୁଗତୋଽପିବା ।**
**କୋସଲାଃ ତେ ଯଯୁଃ ସ୍ଥାନଂ ଯତ୍ର ଗଚ୍ଛନ୍ତି ଯୋଗିନଃ ॥୨୨॥**

- ଉ. ଶ୍ରୀରାମ ଲୀଳା ଅଭିନୟର ଅନ୍ତିମ ଦୃଶ୍ୟର ଆୟୋଜନ କଲେ ପ୍ରଭୁ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରରାମ । ସକଳ ଅଯୋଧ୍ୟା ବାସୀଏ ତାଙ୍କର ଲୀଳାରେ ଅଭିନୟ କଲାବେଳେ ତାଙ୍କ ପ୍ରତ୍ୟକ୍ଷ ସେବା ସୁଯୋଗ ପାଇଥିଲେ । ପ୍ରଜାମାନଙ୍କ ମଧ୍ୟରୁ କେହି ଦର୍ଶନ, କେହି ସ୍ପର୍ଶ, ସେବା, ଅନୁଗମନ ଆଦି କରିଥିବା ସକଳ ମନୁଷ୍ୟ, ପଶୁ, ପକ୍ଷୀ,

ଜୀବ ଜନ୍ତୁ, ସରଜୁ ନଦୀକୂଳରେ ଶ୍ରୀରାମ ଚରଣ କମଳ ଧ୍ୟାନ କରି ସ୍ନାନ ମଜ୍ଜନ କଲେ । ପ୍ରଭୁଙ୍କ କୃପାରେ ସମସ୍ତେ ମର୍ତ୍ତ୍ୟ ଦେହ ତ୍ୟାଗ କରି ଦିବ୍ୟ ଦେହ ଧରି ବୈକୁଣ୍ଠ ବିମାନ ଆରୋହଣ କରି ସାକେତ ଧାମକୁ(ଯଯୁଃ ସ୍ଥାନଂ) ପ୍ରତ୍ୟାଗମନ କଲେ ଯେଉଁ ବୈକୁଣ୍ଠକୁ ଯିବାକୁ ଯୋଗୀମାନେ ଅନେକ ତପ କରନ୍ତି ।

ପ୍ରଶ୍ନ-୬୦. ଶ୍ରୀରାମଙ୍କ ଲୀଳା ସମାପ୍ତିରେ କ'ଣ ଶ୍ରୀରାମଙ୍କ ମାହାତ୍ମ୍ୟର ମଧ୍ୟ ପରିସମାପ୍ତି ଘଟିଲା ?

**ପୁରୁଷୋ ରାମ ଚରିତଂ          ଶ୍ରବଣୈଃ ଉପଧାରୟନ୍ ।**
**ଆନୃଶଂସ୍ୟ ପରୋ ରାଜନ୍          କର୍ମବନ୍ଧୈଃ ବିମୁଚ୍ୟତେ ||୨୩||**

ଉ. ନା,ନା ସେ କଥା ଆଦୌ ସତ୍ୟ ନୁହେଁ । ସେତେବେଳେ ସିନା ସୀମିତ କୋଶଳ ଅଧିବାସୀ ମୁକ୍ତି ପାଇଲେ, ଏବେ ପରା ଜଗତର ଅଗଣିତ ରାମ ଭକ୍ତ ରାମ ନାମ, ରାମଙ୍କ ଲୀଳା ଶ୍ରବଣ, କୀର୍ତ୍ତନ ଅଭିନୟ ଆଦି କରି ତାଙ୍କ ଅଯୋଧ୍ୟା ଓ ଚିତ୍ରକୂଟ ଧାମରେ ବାସ କରି,ରାମ ଭକ୍ତ ହନୁମାନଜୀଙ୍କ ସେବା ପୂଜାକରି ଭୁକ୍ତି ମୁକ୍ତିର ଅଧିକାରୀ ହେଉଛନ୍ତି । ଶ୍ରୀରାମଙ୍କ ମାହାତ୍ମ୍ୟ ସମାପ୍ତି ହେଲା କେତେବେଳେ ?ସଂସାର ଘୋଷଣା କଲା ରାମଙ୍କଠାରୁ ରାମ ନାମ ବଡ଼ !

# ଅଥ ଦ୍ୱାଦଶ ଅଧ୍ୟାୟଃ

## (ଇକ୍ଷ୍ୱାକୁ ବଂଶୀୟ ରାଜାମାନଙ୍କ ଚରିତ ସଂକ୍ଷିପ୍ତ ବର୍ଣ୍ଣନ )

### ଶ୍ରୀଶୁକ ଉବାଚ

ପ୍ରଶ୍ନ-୬୧. ଇକ୍ଷ୍ୱାକୁ ବଂଶୀୟ ରାଜା ଶ୍ରୀରାମଙ୍କ ପୁତ୍ର କୁଶଙ୍କ ପୁତ୍ର-ପୌତ୍ରାଦି କ୍ରମେ ବୃହଦ୍‌ବଳ ଜନ୍ମହୋଇ ଥିଲେ । ଏହି ବୃହଦ୍‌ବଳଙ୍କୁ ତୁମ ପିତା ଅଭିମନ୍ୟୁ ମହାଭାରତ ଯୁଦ୍ଧରେ ମାରିଥିଲେ । ଏହି ବଂଶର ରାଜା ମରୁ ଯୋଗ ବିଦ୍ୟାରେ ସିଦ୍ଧି ପ୍ରାପ୍ତ ହୋଇ ସ୍ୱସ୍ଥ ଶରୀରରେ କଳାପ ନାମକ ଗ୍ରାମରେ ରହିଛନ୍ତି । ଏହି ପବିତ୍ର ଇକ୍ଷ୍ୱାକୁବଂଶ ଏହିଭଳି ଚାଲିଥିବ ନା କେଉଁଠାରେ ଏହାର ପରିସମାପ୍ତି ଘଟିବ ?

**ଇକ୍ଷ୍ୱାକୂଣାଂ ଅୟଂ ବଂଶଃ          ସୁମିତ୍ର-ଅନ୍ତେ ଭବିଷ୍ୟତି ।**
**ଯତଃତଂ ପ୍ରାପ୍ୟ ରାଜାନଂ          ସଂସ୍ଥାଂ ପ୍ରାପ୍‌ସ୍ୟତି ବୈ କଲୌ ||୧୬||**

ଉ. ଇକ୍ଷ୍ୱାକୁ ବଂଶର ଶେଷ ରାଜା ହେବେ ସୁମିତ୍ର । ତାଙ୍କ ପରେ ସୂର୍ଯ୍ୟବଂଶର ଇକ୍ଷ୍ୱାକୁ ଉପବଂଶ ଅଦୃଶ୍ୟ ହେବ । ଏ ଘଟଣା କଳିଯୁଗ (କଳୌ) କାଳରେ ଘଟିବ । ତ୍ରେତୟା ଯୁଗରେ ଏ ବଂଶରେ ଜଣେ ରାଜାହେଲେ ନିମି । ରାଜା ନିମି ଥରେ କୁଳଗୁରୁ ବଶିଷ୍ଠଙ୍କୁ ଯଜ୍ଞ କରିବାକୁ ଅନୁରୋଧ କଲେ ।

## ଅଥ ତ୍ରୟୋଦଶ ଅଧ୍ୟାୟଃ

### (ଇକ୍ଷ୍ୱାକୁ ବଂଶୀ ରାଜା ନିମିଙ୍କ ବଂଶାବଳୀ ବର୍ଣ୍ଣନ)

ପ୍ରଶ୍ନ-୬୨.ଇକ୍ଷ୍ୱାକୁ ତନୟ ନିମି ବଶିଷ୍ଠ ମହର୍ଷିଙ୍କୁ ତାଙ୍କ ଯଜ୍ଞରେ ପୁରୋହିତ ହେବାକୁ ନିମନ୍ତ୍ରଣ କଲେ । ବଶିଷ୍ଠ କାହିଁକି ନିମିଙ୍କ ଯଜ୍ଞକୁ କିଛି ଦିନ ଘୁଞ୍ଚାଇ ଦେବାକୁ ଉପଦେଶ ଦେଲେ ?

ଶ୍ରୀଶୁକ ଉବାଚ

**ନିମିଃଇକ୍ଷ୍ୱାକୁ ତନୟୋ ବଶିଷ୍ଠଂ ଅବୃତ-ରତ୍ୱିଜମ୍ ।**
**ଆରଭ୍ୟ ସତ୍ରଂ ସୋଽପି-ଆହ ଶକ୍ରେଣ ପ୍ରାବୃତୋଽସି ଭୋ ॥ ୧ ॥**

ଉ. ବଶିଷ୍ଠ କହିଲେ,-'ହେ ରାଜନ୍ , ପୂର୍ବରୁ ମୁଁ ସ୍ୱର୍ଗ ସମ୍ରାଟ ଇନ୍ଦ୍ରଙ୍କ ଯଜ୍ଞ କରିବାକୁ ବଚନ ଦେଇ ସାରିଛି । ସୁତରାଂ ତୁମେ ଅପେକ୍ଷା କର । ମୁଁ ସେ କାମ କରିସାରି ଫେରିଲେ ଆପଣଙ୍କ ଯଜ୍ଞ କର୍ମ କରିପାରିବି ।'

ରାଜା ନିମି ବଶିଷ୍ଠଙ୍କୁ କିଛି ନ କହି ନୀରବ ରହିଲେ । ପରେ ଭାବିଲେ ଜୀବନ କ୍ଷଣ ଭଙ୍ଗୁର । ଶୁଭ କାର୍ଯ୍ୟରେ ଡେ଼ରି କରିବା ଅନୁଚିତ । ଅନ୍ୟ ଜଣେ ପୁରୋହିତଙ୍କୁ ବରଣ କରି ଯଜ୍ଞ ଆରମ୍ଭ କରିଦେଲେ । ବଶିଷ୍ଠ ସ୍ୱର୍ଗରୁ ଫେରି ଅତ୍ୟନ୍ତ ଅସନ୍ତୁଷ୍ଟ ଓ କ୍ରୁଦ୍ଧ ହେଲେ । ଶାପ ଦେଲେ ନିମି, ତୁମ ଦେହ ପାତ ହେଉ । ରାଜା ନିମି ମଧ୍ୟ ସାମର୍ଥ୍ୟବାନ୍ ବୈଷ୍ଣବ ରାଜା । ଏ ଭଳି ଅଧର୍ମ ଶାପ ସେ ସହନ୍ତେ କିପରି । ? ସେ ମଧ୍ୟ ଶାପ ଦେଲେ-ବଶିଷ୍ଠ,ତୁମର ମଧ୍ୟ ଦେହ ପାତ ହେଉ ।

ପ୍ରଶ୍ନ-୬୩. ଶାପ-ପ୍ରତିଶାପରେ ମହାରାଜା ନିମି ଓ ବଶିଷ୍ଠ ଋଷି ଉଭୟଙ୍କ ଦେହ ପ୍ରାଣହୀନ ହେଲା । ଋଷି ବଶିଷ୍ଠ ପୁଣି କିପରି ନୂତନ ଦେହ ଧାରଣ କଲେ ?

**ଇତି-ଉତ୍ସର୍ଜ୍ଜ ସ୍ୱଂ ଦେହଂ ନିମିଃ ଅଧ୍ୟାତ୍ମ କୋବିଦଃ ।**
**ମିତ୍ରା ବରୁଣୟୋଃ ଜଜ୍ଞେ ଉର୍ବଶ୍ୟାଂ ପ୍ରପିତାମହଃ ॥୬॥**

ଉ.ଶୁକଦେବ ପରମହଂସ କହିଲେ,'ହେ, ରାଜନ୍ ! ମୋ ପ୍ରପିତାମହ ବଶିଷ୍ଠ ଋଷି ପୁଣି ମିତ୍ରାବରୁଣଙ୍କ ବୀର୍ଯ୍ୟରେ ଜନ୍ମହେଲେ । ଏହି ଋଷି ଦ୍ୱୟ ଥରେ ଯଜ୍ଞ କାଳରେ ଉର୍ବଶୀଙ୍କ ଅପରୂପ ସୌନ୍ଦର୍ଯ୍ୟରେ ମୋହିତ ହୋଇ ବୀର୍ଯ୍ୟସ୍ଖଳନ କରାଇଥିଲେ । ଫଳତଃ ବଶିଷ୍ଠ ପୁଣି ଦ୍ୱିତୀୟ ଶରୀର ପ୍ରାପ୍ତ ହେଲେ । ଅନ୍ୟ ପକ୍ଷରେ ରାଜା ନିମି ଅଧ୍ୟାତ୍ମ ବିଦ୍ୟାରେ ଧୁରନ୍ଧର ପଣ୍ଡିତ ଥିଲେ । ସେତେବେଳକୁ ସେ ଯୋଗ ବଳରେ ଦେହ ତ୍ୟାଗ କରିସାରିଥାନ୍ତି ।'

ପ୍ରଶ୍ନ-୬୪. ରାଜା ନିମିଙ୍କ ଦେହ ପାତରେ ବ୍ରାହ୍ମଣମାନେ ଅତ୍ୟନ୍ତ ଦୁଃଖିତ ହେଲେ । ତାଙ୍କ ଦେହକୁ ରାସାୟନିକ ପଦାର୍ଥରେ ସଂରକ୍ଷଣ କରି ରଖିଲେ । ଯଜ୍ଞ ସମାପ୍ତିପରେ ଦେବତା ମାନଙ୍କୁ ରାଜାଙ୍କ ଦେହକୁ ପୁନର୍ଜୀବନ ଦେବାକୁ ପ୍ରାର୍ଥନା କଲେ କିନ୍ତୁ ଦେହକୁ ଜଗି ରହିଥିବା ନିମି ଦେହକୁ ପୁନଃ ଫେରିବାକୁ ମନା କଲେ । କାରଣ ଥରେ ଦେହ ଧାରଣ କଲେ ପୁଣି ତାର ମମତା ତ୍ୟାଗ କରିବା ଅତ୍ୟନ୍ତ କଷ୍ଟକର କଥା । ଦେବତାମାନେ ରାଜାଙ୍କ ପାଇଁ କି ସୁନ୍ଦର ବ୍ୟବସ୍ଥା କଲେ ?

ଦେବା ଊଚୁଃ

**ବିଦେହ ଉଷ୍ୟତାଂ କାମଂ ଲୋଚନେଷୁ ଶରୀରିଣାମ୍ ।**
**ଉନ୍ମେଷଣ ନିମେଷାଭ୍ୟାଂ ଲକ୍ଷିତୋଽଧ୍ୟାତ୍ମ ସଂସ୍ଥିତଃ ॥୧୧॥**

ଉ. ଦେବତାମାନେ ବରଦାନ କରି କହିଲେ, 'ରାଜା ନିମି ! ଏଣିକି ନିଜ ଦେହରେ ନ ରହି ସକଳ ଚକ୍ଷୁଷ୍ମାନ୍ ପ୍ରାଣୀଙ୍କ ଦେହରେ ଚକ୍ଷୁର ପଲକ ରୂପେ ରହିବେ । ସ୍ୱୟଂ ଅନ୍ତର୍ମୁଖୀ ହୋଇ ହରି ଚିନ୍ତନ କରନ୍ତୁ । ତାଙ୍କ ଇଚ୍ଛାରେ ସେ ଯେତେବେଳେ ଚାହିଁବେ ସଂସାରକୁ ଦେଖିପାରନ୍ତି ନ ଚାହିଁଲେ ଚକ୍ଷୁପଲକ ବନ୍ଦ କରି ଦେଇ ଦେଖି ନପାରନ୍ତି । ତାଙ୍କ ସଂସାର ଦେଖିବା ନ ଦେଖିବା ନିୟନ୍ତ୍ରଣ ତାଙ୍କ ହାତରେ ରହିବ ।'

ରାଜା ବିହୁନେ ରାଜ୍ୟ ଚଳିବ କିପରି ? ଅରାଜକତା ବଢ଼ିବ । ସ୍ୱଧର୍ମ ପାଳନ ବିମୁଖ ହୋଇଯିବ ସାରା ସାମ୍ରାଜ୍ୟ । ସୁତରାଂ ଯୋଗ ବଳରେ ନିମିଙ୍କ ଶରୀରକୁ ମନ୍ଥନ କରି ପ୍ରକଟ କଲେ ଏକ ଅତ୍ୟନ୍ତ ଧାର୍ମିକ ରାଜାଙ୍କୁ । ବିନା ପିତା-

ମାତାଙ୍କ ଦେହରୁ ଜନ୍ମ ନେବାରୁ ତାଙ୍କ ନାମ ବିଦେହ ହେଲା । ମନ୍ଥନରୁ ଉତ୍ପନ୍ନ ବୋଲି ଅନେକ ତାଙ୍କୁମିଥିଳ ବୋଲି ଡ଼ାକିଲେ । ପୁଣି ଅସାଧାରଣ ବ୍ରହ୍ମତେଜ (କ) ଧାରଣ କରି ଜନ୍ମ ହୋଇ ଥିବାରୁ ତାଙ୍କର ନାମ ରଖାଗଲା ଜନକ ।

ଜନକ ଜଣେ ଆଦର୍ଶ ରାଜାରୂପେ ଖ୍ୟାତି ଲାଭ କଲେ । ତାଙ୍କ ପୁରୀକୁ ଜନକପୁରୀ କୁହାଗଲା । ଜନକଙ୍କ ରାଜ ସଭାରେ ଅଷ୍ଟାବକ୍ର ମହାମୁନି, ଯାଜ୍ଞବଲକ୍ୟ ଆଦି ପ୍ରକାଣ୍ଡ ବ୍ରହ୍ମଜ୍ଞାନୀ ମାନେ ଉପସ୍ଥିତ ରହି ରାଜାଙ୍କ ଗୌରବ ବୃଦ୍ଧି କରାଇଥିଲେ । ସେହି ବଂଶର ସବୁ ରାଜାମାନଙ୍କୁ ଜନକ, ବିଦେହ ରାଜନ ପଦବୀରେ ସମ୍ମାନିତ କରାଯାଉଥିଲା । ଜଣେ ଜନକ ଲଙ୍ଗଳ(ସୀର) ଦ୍ୱାରା ନିଜ ଯଜ୍ଞ ଭୂମିକୁ ଚାଷ କରିବା ବେଳେ ଜଗତ୍‌ଜନନୀ ମା' ସୀତାଙ୍କୁ ପ୍ରାପ୍ତ ହୋଇଥିଲେ । ସେ ରାଜାଙ୍କୁ ସୀରଧ୍ୱଜ ଜନକ କୁହାଗଲା । ସେ ଭକ୍ତି ରୂପି ଦିବ୍ୟ କନ୍ୟାଙ୍କୁ ଭଗବାନ ମର୍ଯ୍ୟାଦା ପୁରୁଷୋତ୍ତମଙ୍କ ହସ୍ତରେ ଅର୍ପଣ କରି ନିଜକୁ ଓ ମିଥିଳା ରାଜ୍ୟକୁ ଧନ୍ୟ କରିପାରିଥିଲେ ।

ସେହି ବଂଶଜ ସକଳ ଜନକ ଆଦର୍ଶ ଗୃହସ୍ଥ ଜୀବନ ଯାପନ କରି ଅଧ୍ୟାତ୍ମ ରାଜ୍ୟରେ ନିଜ ନିଜର ମନକୁ ରଖି ଜୀବନ୍ମୁକ୍ତ ହୋଇପାରିଥିଲେ ।

## ୨୫.ସୂର୍ଯ୍ୟବଂଶ ପ୍ରକରଣ ସାର (ବୁଦ୍ଧି ନିର୍ମଳର ଉପାୟ)

### ଅଧ୍ୟାୟ ୧ମ-୧୩ଶ

ନବମ ସ୍କନ୍ଧ ଶେଷ ସୁଦ୍ଧା ଏକଶତ ଆଠଜଣ ଈଶଯୁକ୍ତ ଅନୁ ବା ଭକ୍ତଙ୍କ କଥା ବର୍ଣ୍ଣିତ ହୋଇଛି ଶ୍ରୀମଦ୍ ଭାଗବତ ଗ୍ରନ୍ଥରେ । ଏହା ପରେ ଆରମ୍ଭ ହେବ ସ୍ୱୟଂ ଷୋଳ କଳା ଭଗବାନ ଶ୍ରୀକୃଷ୍ଣଙ୍କ କଥା । ଏହା ବୁଝିବା ପାଇଁ ଆବଶ୍ୟକ ବୁଦ୍ଧି ଓ ମନର ଶୁଦ୍ଧିକରଣ । ବୁଦ୍ଧିର ଦେବତା ସୂର୍ଯ୍ୟ ଓ ମନର ଦେବତା ଚନ୍ଦ୍ର । ବୁଦ୍ଧିକୁ ଶୁଦ୍ଧ କରିବାକୁ ଭଗବାନଙ୍କୁ ରାମ ରୂପରେ ସୂର୍ଯ୍ୟ ବଂଶରେ ଆସିବାକୁ ହୋଇଛି । ରାମଙ୍କ ଚରିତ ରାମ ଭକ୍ତଙ୍କ କଥା ଏତେ ମଧୁର ଓ ଲୋଭନୀୟ ଯେ ଏହା ଶ୍ରବଣ, କୀର୍ତ୍ତନ କରୁ କରୁ ମନୁଷ୍ୟର ବୁଦ୍ଧି ସ୍ୱତଃ ନିର୍ମଳ ହୋଇଯାଏ । 'ଶ୍ରୀରାମ ଜୟରାମ ଜୟ ଜୟ ରାମ' ଏହି ତେର ଅକ୍ଷରୀ ମନ୍ତ୍ରର ବିସ୍ତାର ଏହି ସୂର୍ଯ୍ୟ ବଂଶ ପ୍ରକରଣର ତେର ଅଧ୍ୟାୟ ।

ଏହି ପ୍ରକରଣରେ ଏଭଳି ସ୍ୱନାମଧନ୍ୟ ରାଜାମାନଙ୍କ ଚରିତ, ବର୍ଣ୍ଣିତ ଯେ

ଏମାନେ ସମସ୍ତେ ଭଗବାନଙ୍କ ଭକ୍ତ । ଏମାନଙ୍କ ମଧ୍ୟରୁ କିଏ ସତ୍ୟ ଦ୍ୱାରା (ହରିଶ୍ଚନ୍ଦ୍ର), କିଏ ଭକ୍ତି ଦ୍ୱାରା (ଅମ୍ବରୀଶ), କିଏ ଗୁରୁ ସେବା ଦ୍ୱାରା (ବୈବସ୍ୱତ ମନୁ), କିଏ ନ୍ୟାୟ ଦ୍ୱାରା (ଶିବି) ଏଭଳି କିଛି ନା କିଛି ସଦ୍‌ଗୁଣ ଦ୍ୱାରା ଭଗବାନଙ୍କୁ ପ୍ରସନ୍ନ କରିଛନ୍ତି ଯେ ଏମାନେ ସମସ୍ତେ ଭଗବାନଙ୍କ କୃପା ପ୍ରାପ୍ତ ହୋଇପାରିଛନ୍ତି । ଏମାନଙ୍କ କଥା ଶ୍ରବଣ ମାତ୍ରକେ ମନୁଷ୍ୟର ବୁଦ୍ଧି ନିର୍ମଳ ହୋଇଯାଏ । ସଂସାର ବୈରାଗ୍ୟ ପୂର୍ଣ୍ଣତା ପ୍ରାପ୍ତ ହୁଏ । ଭକ୍ତି ପ୍ରେମର ସାଧକ ହୁଏ ମାଲାମାଲ । ସେଥିପାଇଁ ସୂର୍ଯ୍ୟ ବଂଶରେ ବର୍ଣ୍ଣିତ ଏତେ ରାଜାମାନଙ୍କ ମଧ୍ୟରେ କାହାରି ଜଣକର ହେଲେ ପତନ ବା ଅସଦ୍‌ଗତି ହୋଇନାହିଁ ।

ପ୍ରେମ ଭକ୍ତିର ସାର ଭଗବତ୍ ଜ୍ଞାନ ଏକଥା ସତ କିନ୍ତୁ ଚାବି କାଠି ତ ରହିଛି ବୈରାଗ୍ୟରେ । ନବମ ସ୍କନ୍ଧରେ ଏହି ବୈରାଗ୍ୟ ଭରପୁର ହୋଇ ସାଇତା ଯାଇଛି । ସୂର୍ଯ୍ୟବଂଶର ଚକ୍ରବର୍ତ୍ତୀ ସମ୍ରାଟ୍‌ମାନେ ସମସ୍ତେ ବୈରାଗ୍ୟବାନ ସାଧକ । ସେଥିରୁ କେତେକ ସଶରୀର ସ୍ୱର୍ଗ ଯାଇଛନ୍ତି । କେହି ନୂତନ ସ୍ୱର୍ଗ ନିର୍ମାଣ କରିଛନ୍ତି । କେହି ସ୍ୱର୍ଗରେ ଦେବତାମାନଙ୍କ ପକ୍ଷରେ ରହି ଅସୁରମାନଙ୍କ ଦ୍ୱାରା ଇନ୍ଦ୍ରପୁରୀ ଆକ୍ରମଣର ପ୍ରତିରୋଧ କରିଛନ୍ତି । ଜଣେ ରାଜା ଅପସରା ଉର୍ବଶୀଙ୍କୁ ମର୍ତ୍ତ୍ୟକୁ ଆଣି ନିଜର ରାଣୀ କରିଛନ୍ତି କିନ୍ତୁ ଶେଷରେ ବୈରାଗ୍ୟବାନ୍ ହୋଇ ସଦ୍‌ଗତି ପ୍ରାପ୍ତ । ଅଥଚ କେହି ଜଣେ ହେଲେ ରାଜାଙ୍କର ମୃଣ୍ମୟ ଶରୀର ମୃତ୍ୟୁ କବଳରୁ ଖସି ପାରିନି । ଏହା ମଧ୍ୟ ରାଜା ପରୀକ୍ଷିତଙ୍କ ପାଇଁ ଏକ ଚେତାବନୀର ସଂକେତ । କାରଣ ତାଙ୍କର ମଧ୍ୟ ଶରୀର ନଷ୍ଟ ହେବାକୁ ଯାଉଛି । କାଳ କବଳିତ ହୋଇ ନୁହେଁ ବ୍ରହ୍ମଶାପ ହେତୁ ।

ରାଜା ସୁଦ୍ୟୁମ୍ନ, ପୁରୁରବା, ଶର୍ଯ୍ୟାତି, ରୈବତ, ନାଭାଗ, ସୌଭରୀ ମାନ୍ଧାତା ଓ ଅମ୍ବରୀଷଙ୍କ ଭଳି ଆଦର୍ଶ ସ୍ୱନାମଧନ୍ୟ ରାଜା ମହାରାଜାଙ୍କ ପବିତ୍ର ଚରିତ ସ୍ଥାନ ପାଇଛନ୍ତି ଏହି ପ୍ରକରଣରେ । ପୁଣି ମହର୍ଷି ଚ୍ୟବନ ଓ ଦୁର୍ବାସାଙ୍କ ଭଳି ମୁନି ଋଷିଙ୍କ ଅଖଣ୍ଡ କ୍ଷମତା ଓ ଚରମ ଦୁର୍ବଳତା ଏଥିରେ ବର୍ଣ୍ଣିତ ହୋଇଛି । ପ୍ରଥମେ ରାଜା ପରେ ଋଷି ହୋଇଥିବା ବିଶ୍ୱାମିତ୍ରଙ୍କ ସହିତ ବଶିଷ୍ଠ ମହର୍ଷିଙ୍କ ଚରିତ କୀର୍ତ୍ତିତ ହୋଇଛି । ସଗର ରାଜା ଓ ଭଗୀରଥଙ୍କ ସୂର୍ଯ୍ୟବଂଶରେ ମର୍ଯ୍ୟାଦା ପୁରୁଷ ଶ୍ରୀରାମଙ୍କ ପ୍ରାକଟ୍ୟ ହୋଇଛି । ଅତ୍ୟନ୍ତ ସଂକ୍ଷେପରେ ମାତ୍ର ତିନୋଟି ଅଧ୍ୟାୟରେ ଶ୍ରୀରାମଙ୍କ ପବିତ୍ର ଚରିତ ବର୍ଣ୍ଣିତ ହୋଇଛି ସତ କିନ୍ତୁ ସେଇ ପବିତ୍ର ଲୀଳା କଥା ଶ୍ରବଣ, କୀର୍ତ୍ତନ, ମନନ, ଅଭିନୟ ଦ୍ୱାରା ଆଜି କଳି ଯୁଗରେ କୋଟି କୋଟି ଲୋକ ସେମାନଙ୍କ ବୁଦ୍ଧି ଶୁଦ୍ଧ କରିପାରୁଛନ୍ତି । ଏହା ସନାତନ ବୈଦିକ ଧର୍ମର ଏକ ଅମୂଲ୍ୟ ଦାନ ପୃଥିବୀ ସଭ୍ୟତାକୁ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଶ୍ରୀରାମଙ୍କ ନାମ ସରଳ, ଲୀଳା ସରଳ, କର୍ମ ପଦ୍ଧିତି ମଧ୍ୟ ତତୋଽଧିକ ସରଳ । ତାଙ୍କର ସକଳ କର୍ମ ମନୁଷ୍ୟର ଅନୁକରଣ ସାପେକ୍ଷ । କୃଷ୍ଣଙ୍କ ନାମ ଜଟିଳ, ଲୀଳା ଜଟିଳ, କର୍ମ ପଦ୍ଧତି ଆହୁରି ଦୁର୍ବୋଧ । ରାମଙ୍କ ଇଲାକା ମନୁଷ୍ୟର ବୁଦ୍ଧି ହେବା ବେଳେ କୃଷ୍ଣଙ୍କ ରାଇଜ ମନୁଷ୍ୟର ମନ । ମନକୁ ନିର୍ମଳ କରିବାକୁ ହେଲେ ପ୍ରଥମେ ବୁଦ୍ଧିକୁ ନିମଳ କରିବା ଦରକାର । ରାମଙ୍କୁ ବୁଝିଲେ କୃଷ୍ଣଙ୍କୁ ବୁଝିବା ସହଜ ହେବ । ରାମଙ୍କ ଜନ୍ମ ଦିନ ବାର ହେବା ବେଳେ କୃଷ୍ଣଙ୍କ ଜନ୍ମ ରାତି ବାର । ଜଣଙ୍କ ଜନ୍ମ ରାଜ ଉଆସରେ ହେବା ବେଳେ ଜଣକର ଜନ୍ମ ବନ୍ଦୀଶାଳାରେ । ସେଥିପାଇଁ ସିନା ଜଣକୁ ଚିହ୍ନିବା ଅତି ସହଜ । ଆଉ ଜଣକୁ ଚିହ୍ନିବା ଅତି କଠିନ । ରାମ ଯାହା କରିଛନ୍ତି ତାହା ଆମେ କରିବା ଦରକାର । କୃଷ୍ଣ ଯାହା କହିଛନ୍ତି, ତାହା ମାନିବା ଦରକାର । ତେବେ ଶୁଦ୍ଧ ବୁଦ୍ଧିର ପ୍ରଭାବ ମନ ଉପରେ ପଡିପାରିବ । ଆମ ଜୀବନ ଧନ୍ୟ ହେବ ।

ନୃସିଂହ ଅବତାର ପଢ଼ି କ୍ରୋଧ ନାଶ, ବାମନ ଅବତାର ପଢ଼ି ଲୋଭ ନାଶ ସହିତ ରାମ ଅବତାର ପଢ଼ି କାମ ନାଶ ହେଲେ ଜୀବର ଅନ୍ତଃକରଣ ଶୁଦ୍ଧ ହେବ । ଆମ ମନରେ ଭକ୍ତି ରାଧାଙ୍କ ସହିତ ପ୍ରେମିକ ଗୁରୁ କୃଷ୍ଣଙ୍କ ପ୍ରାକଟ୍ୟ ସମ୍ଭବ ହେବ । ଶ୍ରୀରାମ ସ୍ୱୟଂ ବିଗ୍ରହବାନ୍ ଧର୍ମ । ଜୀବନକୁ ଧର୍ମାନୁକୂଳ କରିବାକୁ ହେଲେ ବୁଦ୍ଧିକୁ ଏକ ପାତ୍ରରେ ସଙ୍କୁଚିତ ସଂଯମିତ କରିବାକୁ ହୁଏ । ଶ୍ରୀରାମ ମଧ୍ୟ ତାଙ୍କ ଜୀବନରେ ଏଥିପାଇଁ ଏକ ପତ୍ନୀବ୍ରତ ଧାରଣ କରିଥିଲେ । ସାଥିରେ ବୈରାଗ୍ୟବାନ ଲକ୍ଷ୍ମଣଙ୍କ ସହିତ ବୁଦ୍ଧି ସୀତାଙ୍କ ସହିତ ସେ ତାଙ୍କ ଦିବ୍ୟ ଲୀଳା କରିଯାଇଛନ୍ତି । ଶ୍ରୀରାମ ପିତାଙ୍କ ସକଳ ଆଦର୍ଶ ଗ୍ରହଣ କଲେ । କେବଳ ଗ୍ରହଣ କଲେ ନାହିଁ ପିତା ଦଶରଥଙ୍କର ବହୁ ପତ୍ନୀତ୍ୱ ଆଦର୍ଶକୁ ।

ମାୟା ମୃଗ ଅନୁଧାବନ ହିଁ ସୀତା ଚୋରୀର ଅସଲି କାରଣ । ଏ ସଂସାରରେ ଚାକଚକ୍ୟ ହିଁ ଏହିମାୟା ମୃଗ ବା ସୁନା ହରିଣ । ଆମ ବୁଦ୍ଧିକୁ ଶୁଦ୍ଧ କରିବାକୁ ଏକ୍‌ଥାଟି ରାମଲୀଳାରେ ଉପସ୍ଥାପିତ । ରାବଣ (ଅହଂକାର) ଆମ ସମସ୍ତଙ୍କ ମଧ୍ୟରେ ଲୁଚିଥିବା ଆସୁରିକ ପ୍ରବୃତ୍ତି ବା ଦୁର୍ବୁଦ୍ଧି । ତାର ସବଂଶ ବିନାଶ ହୋଇପାରିବ ଶ୍ରୀରାମ ଲକ୍ଷ୍ମଣ ସୀତାଙ୍କ ଲୀଳା କଥା ଶ୍ରବଣ, କୀର୍ତ୍ତନ ଓ ଅଭିନୟ ମାଧ୍ୟମରେ । ଶେଷରେ ଅଯୋଧ୍ୟା ରାଜ ସିଂହାସନ ପ୍ରାପ୍ତି; ରାମ ରାଜ୍ୟ, ଭକ୍ତି ପ୍ରାପ୍ତି ହାତପାଆନ୍ତାରେ । ପରବର୍ତ୍ତୀ ପ୍ରସଙ୍ଗରେ ଆସିବ ଚନ୍ଦ୍ରବଂଶ କଥା ।

–୦–

# ପ୍ରକରଣ ୨୬

## ଚନ୍ଦ୍ରବଂଶ ଏବଂ ଯଦୁବଂଶ ପ୍ରସଙ୍ଗ- ଅଧ୍ୟାୟ (୧୪ଶ-୨୪ଶ)

## ଅଥ ଚତୁର୍ଦ୍ଦଶ ଅଧ୍ୟାୟଃ

### (ଚନ୍ଦ୍ରବଂଶ ବର୍ଣ୍ଣନା)

ପ୍ରଶ୍ନ-୬୫. ଧରା ଧାମରେ ସ୍ୱର୍ଯ୍ୟବଂଶଙ୍କ ଭଳି ଅନେକ ବଂଶଙ୍କର ଉଦୟ ଓ ବିଲୟ ହୋଇଛି । ତେବେ ସୂର୍ଯ୍ୟବଂଶ କାହାଣୀ ପରେ ବିଶେଷ କରି ଚନ୍ଦ୍ରବଂଶର କାହାଣୀ କାହିଁକି ପରୀକ୍ଷିତ ମହାରାଜଙ୍କୁ ଶୁଣାଇଲେ ?

ଶ୍ରୀ ଶୁକ ଉବାଚ

**ଅଥ-ଅତଃ ଶ୍ରୂୟତାଂରାଜନ୍ ବଂଶଃ ସୋମସ୍ୟ ପାବନଃ ।**
**ଯସ୍ମିନ୍ ଐଳ-ଆଦୟୋ ଭୂପାଃ କୀର୍ତ୍ତ୍ୟନ୍ତେ ପୁଣ୍ୟ କୀର୍ତ୍ତୟଃ ॥୧॥**

ଉ.ଶୁଣାଇବାର ବିଶେଷ(ଖାସ୍) କାରଣ ଅଛି । ଚନ୍ଦ୍ର ବଂଶରେ ଈଳାଙ୍କ ସମ୍ବନ୍ଧୀୟ ଐଳ ଅନୁବଂଶର କଥା କୀର୍ତ୍ତିତ ହେବ । ଏ ବଂଶରେ ପୁରୁରବା,ଯଯାତି ଓ ରନ୍ତିଦେବଙ୍କ ଭଳି କୀର୍ତ୍ତିମାନ ରାଜା ମହାରାଜାଙ୍କ ପବିତ୍ର ଚରିତ କେବଳ ଶୁଣିଲେ ଶ୍ରବଣକାରୀର ମନ-ବୁଦ୍ଧି ମଧ୍ୟ ନିଷ୍ପାପ ହୋଇଯିବ । ସଂସାର ବନ୍ଧନରୁ ମନ ମୁକ୍ତ ହୋଇ ଶ୍ରୀହରି ଚରଣ କମଳରେ ଅନାୟାସରେ ଲାଗି ପାରିବ ।

ସୃଷ୍ଟି ଆରମ୍ଭରେ ଭଗବାନ ନାରାୟଣଙ୍କ ନାଭି କମଳରୁ ବ୍ରହ୍ମାଜୀ ପ୍ରକଟ ହେଲେ । ବ୍ରହ୍ମାଜୀଙ୍କ ମାନସ ପୁତ୍ର ଅତ୍ରି ମହାମୁନି । ଅତ୍ରିଙ୍କ ପୁତ୍ର ରୂପେ ପତ୍ନୀ ଅନସୂୟାଙ୍କ ଗର୍ଭରୁ ଚନ୍ଦ୍ରମା ପ୍ରକଟ ହୋଇଥିଲେ । ଚନ୍ଦ୍ରମା(ସୋମଦେବ) ସ୍ୱ କ୍ଷାତ୍ରତେଜ ବଳରେ ତିନି ଲୋକ ଜିଣି ଥରେ ରାଜସୂୟ ଯଜ୍ଞ କଲେ । ଅହଂକାରରେ ବଳପୂର୍ବକ ନିଜ ଗୁରୁ ବୃହସ୍ପତିଙ୍କ ଦିବ୍ୟ ସୁନ୍ଦରୀ ପତ୍ନୀ ତାରାଙ୍କୁ ଅପହରଣ କରିନେଲେ ।

ଦେବଗୁରୁ ବୃହସ୍ପତି ଇନ୍ଦ୍ରଙ୍କୁ ଧରି ଚନ୍ଦ୍ରମାଙ୍କୁ ଯୁଦ୍ଧ ଲାଗି ଆହ୍ୱାନ କଲେ । ଏଣେ ଦୈତ୍ୟମାନେ ଚନ୍ଦ୍ରଙ୍କ ପକ୍ଷ ସମର୍ଥନ କରି ଯୁଦ୍ଧରେ ଭିଡ଼ିଗଲେ । ଉଭୟ ପକ୍ଷର ଅନେକ ବଳବାନ୍ ଯୋଦ୍ଧାଙ୍କର ସର୍ବନାଶ ହେଲା । ବ୍ରହ୍ମାଜୀ ଆସି ମଧ୍ୟସ୍ଥିତା କଲେ । ଚନ୍ଦ୍ରମାଙ୍କୁ ଗାଳି ଗୁଲଜ ମଧ୍ୟ କଲେ । ତାରାଙ୍କୁ ଆଣି ବୃହସ୍ପତିଙ୍କ ହସ୍ତରେ ପ୍ରଦାନ କଲେ । ଦେବଗୁରୁ ଦେଖିଲେ ତାରା ଗର୍ଭବତୀ । ମହାଯୁଦ୍ଧ ପରେ ପରେ ପୁଣି ଉପସ୍ଥିତ ହେଲା ମହା ଅଡୁଆ ପରିସ୍ଥିତି । କାରଣ ବୃହସ୍ପତି ଓ ଚନ୍ଦ୍ର ଉଭୟେ ଦାବି

କଲେ ସନ୍ତାନକୁ । ବ୍ରହ୍ମାଜୀ ତାରାଦେବୀକୁ ଏକାନ୍ତକୁ ଡ଼ାକି ନେଇ ପରାଚିଲେ, 'ମା' ସତ କୁହ ଏ ସନ୍ତାନ କାହାର ?' ତାରା ସଂକୋଚ ପ୍ରକାଶ କରି କହିଲେ, 'ଚନ୍ଦ୍ରଙ୍କର' । ସୁନ୍ଦରୀ ପତ୍ନୀ ଲୋଭରେ ଏବେ ବୃହସ୍ପତି ପତ୍ନୀଙ୍କୁ ପୁନଃ ଗ୍ରହଣ କରିବାକୁ ରାଜିହେଲେ । ଏକ ସର୍ତ୍ତରେ-ଯଦି ସଙ୍ଗେ ସଙ୍ଗେ ତାରା ସନ୍ତାନ ପ୍ରସବ କରି ତ୍ୟାଗ କରିଦେଇ ପାରିବେ । ତାରା ମଧ୍ୟ ଯୋଗ ବଳରେ ସନ୍ତାନ ଜନ୍ମ ଦେଲେ ।

ପ୍ରଶ୍ନ-୬୬. ପୁତ୍ର ଜନ୍ମପରେ ପରେ ନୂଆ ବିବାଦ ଉଠିଲା ଚନ୍ଦ୍ରଦେବ ଓ ବୃହସ୍ପତିଙ୍କ ମଧ୍ୟରେ । ସନ୍ତାନ ଅତ୍ୟନ୍ତ ବିରଳ ବୁଦ୍ଧିମାନ୍ ବୁଧ (ବର୍ତ୍ତମାନର ବୁଧଗ୍ରହ) ଦେଖିବାକୁ ଏତେ ମନୋହର ବୁଦ୍ଧିମାନ- ସଦ୍‌ଗୁଣ ସଂପନ୍ନ ଥିଲେ ଯେ ଉଭୟ ଦାବୀ କଲେ ସେ ସନ୍ତାନ ନିଜର ବୋଲି । ଚନ୍ଦ୍ର କହିଲେ, 'ମୁଁ ବୀର୍ଯ୍ୟଦାନ କରିଛି ।' ବୃହସ୍ପତି କହିଲେ, 'ଏ ମୋର କ୍ଷେତ୍ରଜ ପୁତ୍ର । ପତ୍ନୀ ମୋର ସୁତରାଂ ପୁତ୍ର ମୋର ।' ବ୍ରହ୍ମଦେବ ପୁତ୍ର ବୁଧଙ୍କୁ କାହାକୁ ଦେଇ ସମସ୍ୟାର ସମାଧାନ କଲେ ?

**ତସ୍ୟ-ଆତ୍ମଯୋନିଃ ଅକୃତ ବୁଧ ଇତି ଅଭିଧାଂ ନୃପ ।**
**ବୁଦ୍ଧ୍ୟା ଗମ୍ଭୀରୟା ଯେନ ପୁତ୍ରେଣ-ଆପ-ଉଡୁରାଟ୍ ମୁଦମ୍ ॥୧୪॥**

ଉ. ବ୍ରହ୍ମାଜୀ (ଆତ୍ମଯୋନିଃ) ଦେଖିଲେ ଚନ୍ଦ୍ରଙ୍କ ସତେଇଶି ନକ୍ଷତ୍ର ପତ୍ନୀ ଥାଇ ମଧ୍ୟ ତାଙ୍କର ଲମ୍ପଟ ବୁଦ୍ଧି । ଚନ୍ଦ୍ର (ଉଡୁରାଟ୍ )ମନର ଦେବତା । ମନକୁ ବାଟକୁ ଆଣିବାକୁ ହେଲେ ବୁଦ୍ଧି(ବୁଧ)ଙ୍କର ସହଯୋଗ ସାନ୍ନିଧ୍ୟ ଲୋଡା । ବୃହସ୍ପତି ବୁଦ୍ଧିମାନ ବୋଲି ଦେବତାମାନଙ୍କ ଗୁରୁପଦରେ ଅଧିଷ୍ଠିତ । ସୁତରାଂ ସେ ଚନ୍ଦ୍ରଙ୍କ ହସ୍ତରେ ନବଜାତ ପୁତ୍ର ବୁଧଙ୍କୁ ଅର୍ପଣ କରି ଚନ୍ଦ୍ରଙ୍କୁ ଅତ୍ୟନ୍ତ ଖୁସି (ମୁଦମ୍) କରାଇଥିଲେ । ସୁନ୍ଦର ନିଷ୍ପତ୍ତିରେ ସକଳ ଦେବଗଣ ସାଧୁବାଦ ଦେଲେ ସୃଷ୍ଟିକର୍ତ୍ତାଙ୍କର ଉପସ୍ଥିତି ତୀକ୍ଷ୍ଣ ବିବେକ ବୁଦ୍ଧିରେ ।

ସୂର୍ଯ୍ୟବଂଶ ବର୍ଣ୍ଣନ ବେଳେ ସୁଦ୍ୟୁମ୍ନ ଇଳାଙ୍କ ପ୍ରସଙ୍ଗରେ କୁହାଯାଇଛି ବୁଧ ଓ ଇଳାଙ୍କର ମିଳନରୁ ଜନ୍ମନେଲେ ପୁରୁରବା । ପୁରୁରବା କ୍ଷାତ୍ରତେଜ ଯୁକ୍ତ ହୋଇ ମଧ୍ୟ ଅଧ୍ୟାତ୍ମ ବିଦ୍ୟାରେ ଅତ୍ୟନ୍ତ ଦରିଦ୍ର ଥିଲେ । ସେ ସଂସାରୀ ଭୋଗ ସୁଖରେ ମାତିଲେ । ମିତ୍ରା-ବରୁଣ ଋଷିଙ୍କ ଶାପରେ ଉର୍ବଶୀ ମର୍ତ୍ତ୍ୟଲୋକ ଆସିଲେ । ସେ ସ୍ୱର୍ଗରେ ଶୁଣିଥିଲେ ପୁରୁରବାଙ୍କ ରୂପଗୁଣ ଓ ପ୍ରବଳ କାମ ଭୋଗ ଲାଳସା କଥା । ଉର୍ବଶୀ ଆସି ଦେଖା କଲେ ରାଜା ପୁରୁରବାକୁ । ଦୁହେଁ ଭାବିଲେ ବିଧାତା କଲାଣି ମଣି କାଞ୍ଚନ ସଂଯୋଗ । ଉଭୟଙ୍କ ମିଳନ ହେଲା ।

ପ୍ରଶ୍ନ-୬୭. ଇତିମଧ୍ୟରେ ଅନେକ କାଳ ବିତିଗଲା । ରାଜାଙ୍କ ଆୟୁଷ ଅନେକ କ୍ଷୟ ହେଲା ଉର୍ବଶୀଙ୍କ ରୂପ ଯୌବନ ସମ୍ଭୋଗରେ । ଉର୍ବଶୀଙ୍କ ଶାପକାଳ ଶେଷ ହୁଅନ୍ତେ ସେ ବାହୁଡ଼ିଗଲେ ଇନ୍ଦ୍ରସଭାକୁ । ଏଣେ ପୁରୂରବା ଉର୍ବଶୀ ବିରହରେ ହେଲେ ପାଗଳ ପ୍ରାୟ । ଆତ୍ମକଲ୍ୟାଣ ଚାହୁଁଥିବା ମୁମୁକ୍ଷୁ କି ଭଳି ଦୃଷ୍ଟିରେ କାମୁକିନୀ ନାରୀକୁ ଦେଖିବା ଉଚିତ ବୋଲି ଉର୍ବଶୀ ରାଜାଙ୍କ ମାଧ୍ୟମରେ ଜଗତକୁ ଶିକ୍ଷା ଦେଲେ ?

ଉର୍ବଶୀ ଉବାଚ

**ମା ମୃଥାଃ ପୁରୁଷୋଽସି ତ୍ୱଂ ମା ସ୍ମ ତ୍ୱା-ଅଦ୍ୟୁଃ ବୃକା ଇମେ ।**
**କ୍ୱ-ଅପି ସଖ୍ୟଂ ନ ବୈ ସ୍ତ୍ରୀଣାଂ ବୃକାଣାଂ ହୃଦୟଂ ଯଥା ॥୩୬॥**

ଉ. ଉର୍ବଶୀ ରାଜାଙ୍କୁ ସତର୍କ କରାଇ କହିଲେ, 'ହେ' ରାଜନ୍! ହୋସ୍‌ରେ ଆସ । ତୁମେ ପୁରୁଷ ଲୋକ । ଭଗବାନଙ୍କୁ ଖୋଜିବା ତୁମର ଲକ୍ଷ୍ୟ । କାମ ଭୋଗ କରିବା ନୁହେଁ । ବୃଥାରେ ମୁଣ୍ଡ ପିଟି ନାରୀ ପାଇଁ ମରିବା ବୋକାମି କରନା । କାମ ପାଗଳ ହୋଇ ନାରୀ କାମନାର ଇନ୍ଧନ ହୁଅନା । ନାରୀ ହେଉଛି କାମୁକ ପୁରୁଷର ରକ୍ତ ପିପାସୁ ବାଘୁଣୀ । ଦିନରେ ନାଗୁଣୀ ରାତିରେ ବାଘୁଣୀ ପଲ୍ ପଲ୍‌କେ ଲହୁ (ରକ୍ତ) ଶୋଷିବା ତାର କାମ । ସେ ପୁରୁଷର ସର୍ବନାଶ କରିପାରେ । ବେଳ ଥାଉ ଥାଉ ବନ୍ଧ ବାନ୍ଧ ରାଜା ।'

ପ୍ରଶ୍ନ-୬୮. କାମୁକିନୀ ନାରୀ ସଂସାରରେ କାହାର ପତ୍ନୀ, କନ୍ୟା, ଭଗିନୀ ଓ ସଖୀ ଇତ୍ୟାଦି ହୋଇ ସମସ୍ତଙ୍କୁ ସୁଖରେ ଚଳାଏ ଓ ନିଜେ ଚଳେ କିପରି ?

**ସ୍ତ୍ରିୟୋ ହି-ଅକରୁଣାଃ କ୍ରୂରା ଦୁର୍ମର୍ଷାଃ ପ୍ରିୟସାହସାଃ ।**
**ଘ୍ନନ୍ତି-ଅଳ୍ପ-ଅର୍ଥେଽପି ବିଶ୍ରବ୍ଧଂ ପତିଂ ଭ୍ରାତରଂ ଅପି-ଉତ ॥୩୭॥**

ଉ. ଉର୍ବଶୀ କହିଲେ,'ସେ ସବୁ କେବଳ ଲୋକ ଦେଖାଣିଆ । **ବିଷ କୁମ୍ଭଂ ପୟୋ ମୁଖଂ ।** ଅସତ୍ୟ ସଂସାରର କପଟ ବ୍ୟବହାର ମାତ୍ର ରାଜନ୍ । ତାଙ୍କ ସ୍ୱାର୍ଥର ପ୍ରତିକୂଳ ହେଲେ ସେମାନେ ନିଜ ପିତା-ଭାଇ ପୁତ୍ର- କନ୍ୟା ପର୍ଯ୍ୟନ୍ତ ହତ୍ୟା କରିପାରନ୍ତି । କାମୁକିନୀ ନାରୀ ସ୍ୱଭାବତଃ ନିର୍ଦ୍ଦୟ-ନିଷ୍ଠୁର -ଅସହିଷ୍ଣୁ -ସ୍ୱାର୍ଥପର । ସେ ସବୁକୁ ସେ ଲୁଚେଇ ଥାଏ ତାର ରୂପ-ମଧୁର ବାଣୀ ଓ ଆକର୍ଷଣୀୟ ଶୃଙ୍ଗାର ଦ୍ୱାରା । ସେଥିପାଇଁ ସିନା ସେ ପତି-ପୁତ୍ର -ଭାଇକୁ ଆଜ୍ଞାକାରୀ(ବିଶ୍ରବ୍ଧଂ) କରି ସମସ୍ତଙ୍କୁ ବଶୀଭୂତ କରି କାଳେ କାଳେ ରଖିଥାଏ ।

କାମୁକିନୀ ନାରୀର ଅନ୍ୟ ଏକ ଅଡୁଆ ସ୍ୱଭାବ ପୁରୁଷକୁ ବିଚଳିତ କରେ । ସର୍ବଗୁଣ, ଦିବ୍ୟ ରୂପ ସମନ୍ୱିତ ପୁରୁଷ ପାଇଲେ ମଧ୍ୟ ସେ ଦିନକୁ ଦିନ ନୂଆ ନୂଆ କାମ ଭୋଗ ସାଥୀ ଖୋଜେ ।'

ପ୍ରଶ୍ନ-୬୯. ସୌଭାଗ୍ୟକୁ ସେତେବେଳେକୁ ସତ୍ୟଯୁଗ ଶେଷ ହୋଇ ତ୍ରେତୟାଯୁଗର ଶୁଭାରମ୍ଭ ହେଲା । ସ୍ୱର୍ଗ ସହିତ ଘନ ଘନ ସମ୍ବନ୍ଧରେ ଆସି ଉର୍ବଶୀଙ୍କ ଉପଦେଶରେ ରାଜା ପୁରୂରବା ଗନ୍ଧର୍ବ ମାନଙ୍କଠାରୁ ଯଜ୍ଞ କରି ସ୍ୱର୍ଗ ପ୍ରାପ୍ତ ହେବା ବିଧି ଶିକ୍ଷା କଲେ । ଅରଣୀ ଦ୍ୱୟ(ପିତା-ମାତା)ଙ୍କର ଘର୍ଷଣ କରି ଅଗ୍ନି ଜାତ କରିପାରିବା (ପୁତ୍ର ପ୍ରାପ୍ତି) ବିଦ୍ୟା ସେ ଜାଣି ପାରିଲେ । ବିବିଧ ଯଜ୍ଞ କରି ମନୁଷ୍ୟ ନିଜ ନିଜ ସଂସାରୀ ସୁଖ ପ୍ରାପ୍ତିର ବ୍ୟବସ୍ଥା ପ୍ରଚଳନ କଲେ ରାଜା ପୁରୂରବା । ସତ୍ୟଯୁଗରେ ଯଜ୍ଞ ବିଧି ବେଦମନ୍ତ୍ର, ଦେବୀ ଦେବତା ପୂଜନ ଏବଂ ବର୍ଣ୍ଣ-ଆଶ୍ରମ ବ୍ୟବସ୍ଥା କ'ଣ ଆଦୌ ନ ଥିଲା ?

**ଏକ ଏବ ପୁରା ବେଦଃ ପ୍ରଣବଃ ସର୍ବ ବାଙ୍ମୟଃ ।**
**ଦେବୋ ନାରାୟଣୋ ନ-ଅନ୍ୟ ଏକୋଽଗ୍ନିଃ ବର୍ଣ୍ଣ ଏବ ଚ ॥୪୮॥**

ଉ. ଚାରିବେଦ ମନ୍ତ୍ରମାନଙ୍କର ସାର ଓଁ (ପ୍ରଣବ) ଅଙ୍କୁର ରୂପେ ଥିଲେ । ତାଙ୍କର ବିସ୍ତାର ହେଲା ତ୍ରେତା ଯୁଗରେ ଅ-ଉ-ମ୍‌ରୁ ଋକ୍-ଯଜୁଃ -ସାମ ବେଦ ଭାବରେ । ସକଳ ଦେବୀ ଦେବତାଙ୍କ ମୂଳ ନାରାୟଣ କେବଳ ପୂଜିତ ହେଉଥିଲେ ସକଳ କାମନା ବାସନାର ପୂର୍ତ୍ତି ଲାଗି । ଗାର୍ହପତ୍ୟ, ଦକ୍ଷିଣ ଓ ଯଜ୍ଞ ଅଗ୍ନି ସ୍ଥାନରେ କେବଳ ମୂଳ ଗାର୍ହପତ୍ୟ ଅଗ୍ନି ଆକାରରେ ଥିଲେ । ଚାରି ବର୍ଣ୍ଣ-ଚାରି ଆଶ୍ରମ ବଦଳରେ କେବଳ ଏକ ଆଶ୍ରମ ଗୃହସ୍ଥ ଆଶ୍ରମ, ଏକ ବର୍ଣ୍ଣ ହଂସ ବର୍ଣ୍ଣ ବିଦ୍ୟମାନ ଥିଲେ ସତ୍ୟଯୁଗ କାଳରେ । ଶେଷରେ ପୁରୂରବା ସେଇ ଯଜ୍ଞ ଅନୁଷ୍ଠାନ କରି ଗନ୍ଧର୍ବଲୋକ ପ୍ରାପ୍ତ ହୋଇଥିଲେ ।

# ଅଥ ପଞ୍ଚଦଶ ଅଧ୍ୟାୟଃ

## (ଐଳ ବଂଶରେ ବ୍ରାହ୍ମଣ କୁଳରେ ମହାଯୋଦ୍ଧା ଭଗବାନ ପର୍ଶୁରାମ)

ଶ୍ରୀବାଦରାୟଣିଃ ଉବାଚ

ପ୍ରଶ୍ନ-୭୦.ବୁଧ-ଇଳାଙ୍କ ମିଳନରୁ ଜାତ ପୁରୂରବା ରାଜା ହୋଇ ଉର୍ବଶୀ ଅପ୍ସରାଙ୍କ ଗର୍ଭରେ କେତେଗୋଟି ପୁତ୍ର ଜାତ କରାଇଥିଲେ ?

**ଐଳସ୍ୟ ଚ-ଉର୍ବଶୀ ଗର୍ଭାତ୍ ଷଟ୍ ଆସନ୍ ଆତ୍ମଜାଃ ନୃପ ।**
**ଆୟୁଃ ଶ୍ରୁତାୟୁଃ ସତ୍ୟାୟୁ ରୟୋଽଥ ବିଜୟୋ ଜୟଃ ॥୧॥**

ଉ. ଶୁକଦେବ ଗୋସ୍ୱାମୀ କହିଲେ, 'ହେ' ରାଜନ୍! ଆୟୁ, ଶ୍ରୁତାୟୁ, ସତ୍ୟାୟୁ, ରୟ, ବିଜୟ ଓ ଜୟ ନାମରେ ଛଅ ପୁତ୍ର ଜାତ ହୋଇଥିଲେ ।'

ବିଜୟଙ୍କ ବଂଶରେ ଗାଧିନାମରେ ଜଣେ ରାଜା ହେଲେ । ତାଙ୍କର ସତ୍ୟବତୀ ନାମରେ ଗୁଣବତୀ ଝିଅଟିଏ ଥାଏ । ବ୍ରହ୍ମର୍ଷି ଋଚୀକ ବିବାହ କରିବାକୁ ଗାଧିଙ୍କୁ କନ୍ୟା ମାଗିଲେ । ରାଜା କିନ୍ତୁ ନିଜ କନ୍ୟାପାଇଁ ଅଯୋଗ୍ୟ ମଣିଲେ ଋଷିଙ୍କୁ । ସେ ଏକ ଅଦ୍ଭୁତ ସର୍ତ୍ତ ଅରୋପ କଲେ । ଏକ ହଜାର ଶ୍ୟାମ କର୍ଣ୍ଣ ଘୋଡ଼ା କନ୍ୟା ମୂଲ୍ୟରୂପେ ଦେବାକୁ କହିଲେ । ବରୁଣ ପୂଜନ କଲେ ଋଚୀକ । ବରୁଣ ଦେବତାଙ୍କୁ ପ୍ରସନ୍ନ କରି ହଜାରେ ଘୋଡ଼ା ଆଣି ଗାଧିଙ୍କୁ ଦେଇ ସତ୍ୟବତୀଙ୍କୁ ବିବାହ କଲେ ।

ଋଚୀକଙ୍କ ଅଦ୍ଭୁତ ଯୋଗ ଶକ୍ତି ଦେଖି ସତ୍ୟବତୀ ଓ ତାଙ୍କ ମା' ଦୁହେଁ ମନ୍ତ୍ର ଜାତ ପୁତ୍ର କାମନା କଲେ । ଋଷି ଦୁହିଁଙ୍କ ଲାଗି ଅଲଗା ଅଲଗା ମନ୍ତ୍ର ପଢ଼ି ଦୁଇ ପ୍ରକାର ଚରୁ ପ୍ରସ୍ତୁତ କରି ମା' ପାଇଁ କ୍ଷତ୍ରିୟ ଚରୁ ଓ ପତ୍ନୀ ପାଇଁ ବ୍ରାହ୍ମଣ ଚରୁ ଦେଇ ସ୍ନାନକରିବାକୁ ଗଲେ । ଶାଶୁ ଜାଣି ଶୁଣି ଚରୁ ବଦଳ କରି ସେବନ କଲେ । ମୁନିଶ୍ରେଷ୍ଠ ଏକଥା ଜାଣି ଅତ୍ୟନ୍ତ ଦୁଃଖିତ ହେଲେ । ପତ୍ନୀଙ୍କୁ କହିଲେ, 'ତୁମ ଗର୍ଭରୁ ଏକ ଅତ୍ୟନ୍ତ ଉଦ୍ଦଣ୍ଡ କ୍ଷତ୍ରିୟ ଜନ୍ମ ନେବ । ତୁମ ମାତାଙ୍କ ଗର୍ଭରୁ ଏକ ମହାନ୍ ଅଧ୍ୟାତ୍ମ ବ୍ରାହ୍ମଣ ପଣ୍ଡିତ ଜନ୍ମନେବ ।' ସତ୍ୟବତୀ ଅତ୍ୟନ୍ତ ବ୍ୟାକୁଳ ଚିତ୍ତରେ ପ୍ରାର୍ଥନା କରି କିଛି ପ୍ରତିକାର ଲୋଡ଼ିଲେ । ଋଚୀକ କହିଲେ, 'ତେବେ ତୁମ ପୌତ୍ର ହେବ ମହା ଉଗ୍ର କ୍ଷତ୍ରିୟ ।'

ପ୍ରଶ୍ନ-୭୧. ସତ୍ୟବତାଙ୍କ ଗର୍ଭରୁ ଜନ୍ମନେଲେ ଜମଦଗ୍ନି । ପତ୍ନୀ ରେଣୁକାଙ୍କ ଗର୍ଭରୁ ଜମଦଗ୍ନିଙ୍କ ପୁତ୍ରରୂପେ ଜନ୍ମନେଲେ ଭଗବାନଙ୍କ ଯୋଦ୍ଧା ଅବତାର ପର୍ଶୁରାମ । ବ୍ରାହ୍ମଣ କୁଳରେ ଜନ୍ମ ନେଇ ବାସୁଦେବଙ୍କ ଅବତାର ହୋଇ ପର୍ଶୁରାମ କ୍ଷତ୍ରିୟ ବଂଶ ସଂହାର କଲେ । ଏହା ବୈଦିକ ବର୍ଣ୍ଣ-ଆଶ୍ରମ ଧର୍ମ ପାଳନ ବିରୋଧୀ ହେଲା ନାହିଁ କି ?

**ଦୃପ୍ତ କ୍ଷତ୍ରଂ ଭୁବୋ ଭାରଂ ଅବ୍ରହ୍ମଣ୍ୟଂ ଅନୀଶନତ୍ ।**
**ରଜଃ ତମଃ ବୃତ୍ତଂ ଅହନ୍ ଫଲ୍‌ଗୁନି-ଅପି କୃତେଂଽର୍ହସି ।।୧୫।।**

ଉ.ବ୍ୟକ୍ତିଗତ ଭାବରେ କ୍ଷତ୍ରିୟମାନେ ତାଙ୍କର ଅଳ୍ପ (ଫଲ୍‌ଗୁନି) କ୍ଷତି କରିଥିଲେ ସତ । କିନ୍ତୁ ସାମୂହିକ ଭାବରେ କ୍ଷତ୍ରିୟ ରାଜାମାନେ ସେତେବେଳେ ଅହଂକାରୀ, ବ୍ରାହ୍ମଣ ବିରୋଧୀ (ଅବ୍ରହ୍ମଣ୍ୟଂ), ଅନୀଶ୍ୱରବାଦୀ ହୋଇ ରଜୋ ତମୋଗୁଣାବିଷ୍ଟ ପାପୀ(ଅର୍ହସ) ହୋଇ ପୃଥିବୀର ଗୁରୁ (ଭୁବୋ ଭାରଂ )ଭାର ଭଳି ହୋଇଯାଇଥିଲେ । ସୁତରାଂ ସେମାନଙ୍କୁ ସଂହାର କରିବା ସେ ପରିସ୍ଥିତିରେ ଦରକାର ପଡ଼ିଥିଲା । ଏହାକୁ ଧର୍ମ ବିରୋଧୀ କୁହାଯାଇପାରିବନି ।

ଜଣେ କ୍ଷତ୍ରିୟରାଜା କାର୍ତ୍ତବୀର୍ଯ୍ୟ ଅର୍ଜ୍ଜୁନ ଗୁରୁ ଦତ୍ତାତ୍ରେୟଙ୍କର ସେବାକରି ଅମାପ ଐଶ୍ୱର୍ଯ୍ୟର ଅଧିକାରୀ ହେଲେ । ସକଳ ଯୋଗ ସିଦ୍ଧି ସହିତ ହଜାରେ ହାତ ପ୍ରାପ୍ତ ହୋଇ ଧରାକୁ ସରା ମଣିଲେ । ଏକଦା ତାଙ୍କ ରାଣୀମାନଙ୍କ ସହ ସେ ନର୍ମଦା ନଦୀ ଜଳରେ କ୍ରୀଡ଼ା କରୁଥିଲେ । ସେ ତାଙ୍କର ହଜାରେ ହାତରେ ନର୍ମଦା ନଦୀର ଜଳ ପ୍ରବାହକୁ ରୋକି ଦେଲେ । ସେତେବେଳେ ନଦୀର ଉପର ମୁଣ୍ଡରେ ଲଙ୍କାର ରାଜା ରାବଣ ନଦୀଜଳରେ ଶିବ ପୂଜା କରୁଥିଲେ । ତାଙ୍କର ପୂଜା ସାମଗ୍ରି ଜଳରେ ଭାସିଗଲା । ରାଜା ରାବଣ ପୂଜାରେ ବିଘ୍ନ ଘଟିବାରୁ ପ୍ରତିବାଦ କଲେ । ସେ କ୍ଷମା ମାଗିବା ପରିବର୍ତ୍ତେ ରାବଣକୁ କଠିନ ଦଣ୍ଡ ଦେଇଥିଲେ ।

ଅନ୍ୟ ଏକ ଘଟଣାରେ ସେ ମୃଗୟାରେ ଯାଇ ବଣରେ ଜମଦଗ୍ନିଙ୍କ ଆଶ୍ରମରେ ଅତିଥି ହେଲେ । ଋଷିଙ୍କ ଲୋଭନୀୟ କାମ ଧେନୁ ଗାଭୀଟିକୁ ଆଶ୍ରମରୁ ବଳପୂର୍ବକ ଅପହରଣ କରିନେଲେ । ପର୍ଶୁରାମ ଆଶ୍ରମକୁ ଆସି ଦେଖିଲେ ପବିତ୍ର ଆଶ୍ରମର ସାଂଘାତିକ ଅବସ୍ଥା । ପର୍ଶୁରାମ ଅନ୍ୟାୟର ପ୍ରତିବାଦ ନ କରିବାକୁ କାପୁରୁଷତା ଓ ଅଧର୍ମ ବୋଲି ବିଚାର କଲେ । କାର୍ତ୍ତବୀର୍ଯ୍ୟ ଓ ତାଙ୍କର ସତର ଅକ୍ଷୌହିଣୀ ସନ୍ୟସହ ଏକାକୀ ଲଢ଼ି ନିଜ ଅଦ୍ଭୁତ ଯୋଗ ଶକ୍ତି ବଳରେ ସମଗ୍ର ରଣଭୂମିକୁ ତାଜା ରକ୍ତରେ କର୍ଦ୍ଦମାକ୍ତ କରି ପକାଇ ଥିଲେ ।

ପ୍ରଶ୍ନ-୭୨. କାର୍ତ୍ତବୀର୍ଯ୍ୟ ହଜାରେ ହାତରେ ପାଞ୍ଚଶହ ଧନୁ ଏକାବେଳକେ ଧରି ଯୁଦ୍ଧ କରୁଥିଲେ । ଭଗବାନ କୃପାକରି ତାଙ୍କର ମାତ୍ର ଦୁଇ ହାତ ରଖି ବାକୀ ହାତ କାଟି ଫିଙ୍ଗି ଦେଲେ । ପରେ ପରେ ତାଙ୍କ ପ୍ରାଣ ନାଶ କଲେ । ପର୍ଶୁରାମ କାମଧେନୁଙ୍କୁ ଛଡ଼ାଇ ଆଣି ପୁଣି ପିତା ଜମଦଗ୍ନିଙ୍କୁ ପ୍ରଦାନ କଲେ । ପୁତ୍ର ପର୍ଶୁରାମଙ୍କର ବୀରତ୍ୱ ଦେଖି ଜମଦଗ୍ନି ଋଷି କି ଆଶୀର୍ବାଦ କରିଥିଲେ ?

**ରାମ ରାମ ମହାବାହୋ ଭବାନ୍ ପାପଂ ଅକାରଷୀତ୍ ।**
**ଅବଧୀତ୍ ନରଦେବଂ ଯତ୍ ସର୍ବବେଦମୟଂ ବୃଥା ॥୩୮॥**

ଉ.ପିତା ପ୍ରସନ୍ନ ହେବେ କ'ଣ, ପର୍ଶୁରାମଙ୍କୁ ପାପୀ ବୋଲି କହି ତାଙ୍କର ନିନ୍ଦା କଲେ । କହିଲେ, 'ହେ' ପୁତ୍ର! କ୍ଷତ୍ରିୟ ରାଜା ବିଷ୍ଣୁ ଅଂଶୀ । ନର ଦେହରେ ପୂଜନୀୟ ବିଷ୍ଣୁ ସେ । ଆମର ଅବଧ୍ୟ ।

ଅନ୍ୟ ପକ୍ଷରେ ତୁମେ ବ୍ରାହ୍ମଣ କୁଳରେ ଜାତ । ତୁମଠାରେ ତପ ଶକ୍ତି କ୍ଷମା, ସହିଷ୍ଣୁତା, ଦୟା ଗୁଣରେ ଶୋଭାପାଏ । କ୍ରୋଧ ନୁହେଁ । ତୁମେ ବୃଥାରେ ସ୍ୱଧର୍ମ ପାଳନ ଧର୍ମ ଉଲଂଘନ କରିଛ । ଏବେ ପାପର ପ୍ରାୟଶ୍ଚିତ କର ।'

ପ୍ରଶ୍ନ-୭୩. ମହର୍ଷି ଜମଦଗ୍ନି ଭଗବାନ ପର୍ଶୁରାମଙ୍କୁ ପାପର ପ୍ରାୟଶ୍ଚିତ ପାଇଁ କି ଉପଦେଶ ଦେଲେ ?

**ରାଜ୍ଞୋ ମୂର୍ଦ୍ଧ-ଅଭିଷିକ୍ତସ୍ୟ ବଧୋ ବ୍ରହ୍ମବଧାତ୍ ଗୁରୁଃ ।**
**ତୀର୍ଥ ସଂସେବୟା ଚ-ଅଂହୋ ଜହି-ଅଙ୍ଗ-ଅଚ୍ୟୁତ ଚେତନଃ ॥୪୧॥**

ଉ. କହିଲେ, 'ହେ' ପ୍ରିୟ ପୁତ୍ର ରାମ ! ବ୍ରାହ୍ମଣ ବଧ ଅପେକ୍ଷା ରାଜା ପଣରେ ଅଭିଷିକ୍ତ କ୍ଷତ୍ରିୟ ବଧ ଅଧିକ ଗୁରୁତର ପାପ । ସେହି ଗୁରୁତର ପାପରୁ ମୁକ୍ତ ହେବାକୁ ତୁମେ ଭଗବାନ ବାସୁଦେବଙ୍କ ଶରଣାପନ୍ନ ହୋଇ ତାଙ୍କ ପବିତ୍ର ତୀର୍ଥମାନ ସେବନ କରି ପାପର ପ୍ରାୟଶ୍ଚିତ କର ।'

## ଅଥ ଷୋଡ଼ଶ ଅଧ୍ୟାୟଃ

### (ପର୍ଶୁରାମଜୀଙ୍କର କ୍ଷତ୍ରିୟ ସଂହାର ଓ ବିଶ୍ୱାମିତ୍ର ବଂଶ ଚରିତ)

**ଶ୍ରୀ ଶୁକ ଉବାଚ**

ପ୍ରଶ୍ନ-୭୪. ପିତା ଜମଦଗ୍ନିଙ୍କ ଆଦେଶରେ ପର୍ଶୁରାମଜୀ ଏକ ବର୍ଷକାଳ ତୀର୍ଥ ପର୍ଯ୍ୟଟନ କରି ଫେରିଲେ । ଋଷିଙ୍କ ଯଜ୍ଞ ଲାଗି ଜଳ ଆଣିବାକୁ ଯାଇ କେଉଁ ନ ଦେଖିବା ଦୃଶ୍ୟ ଦେଖି ପତ୍ନୀ ରେଣୁକା ଜଳ ଆଣିବାରେ ବିଳମ୍ବ କଲେ ?

**ବିଲୋକୟନ୍ତୀ କ୍ରୀଡ଼ନ୍ତଂ ଉଦକ-ଅର୍ଥଂ ନଦୀଂ ଗତା ।**
**ହୋମ ବେଳାଂ ନ ସସ୍ମାର କିଂଚିତ୍ ଚିତ୍ରରଥ ସ୍ପୃହା ॥୩॥**

ଉ. ଚିତ୍ରରଥ ଗନ୍ଧର୍ବମାନଙ୍କ ରାଜା ଅଟନ୍ତି । ସେ ଅପ୍‌ସରାମାନଙ୍କ ସହିତ ଗଙ୍ଗାଜଳରେ ଦାମ୍ପତ୍ୟ କେଳି କରୁଥିଲେ । ରୂପ ତାଙ୍କର ଦିବ୍ୟ ସୁନ୍ଦର । ଗଳାରେ ମନୋହର ସୁଗନ୍ଧ ପଦ୍ମପୁଷ୍ପର ମାଳା । ଦେବୀ ରେଣୁକା ମୋହିତ ହୋଇଗଲେ ଏ ଦୃଶ୍ୟରେ । ଭୁଲିଗଲେ ଋଷିବରଙ୍କର ହୋମ କଥା । ହୋମ ବେଳ ଗଡ଼ିଗଲା ।

ଋଷି ଜମଦଗ୍ନି ଯୋଗବଳରେ ଜାଣିଗଲେ ବିଳମ୍ବର କାରଣ । ପୁତ୍ରମାନଙ୍କୁ ଆଦେଶ ଦେଲେ ରେଣୁକାଙ୍କୁ ହତ୍ୟା କରିବାକୁ । ଅନ୍ୟପୁତ୍ର ମାନେ ଅମଙ୍ଗ ହେଲେ ମାତୃହତ୍ୟା ଦୋଷ ମୁଣ୍ଡାଇବାକୁ । ପର୍ଶୁରାମ କିନ୍ତୁ ତତ୍‌କ୍ଷଣାତ୍ ପାଳନ କଲେ ମାତୃହତ୍ୟା ଓ ଭାତୃହତ୍ୟା ରୂପକ ପିତୃ ଆଦେଶ । ପରେ ପରେ ମୁନି ପର୍ଶୁରାମଙ୍କ ଉପରେ ପ୍ରସନ୍ନ ହୋଇ ବର ଯାଚିଲେ । ପର୍ଶୁରାମଜୀ ମାଗିଲେ, ମା' ଓ ଭାଇମାନଙ୍କ ଅମୂଲ୍ୟ ଜୀବନ । ଋଷିଙ୍କ ଯୋଗ ଶକ୍ତିରେ ସମସ୍ତେ ନିଜ ନିଜ ପ୍ରାଣ ଫେରିପାଇଥିଲେ ।

ଦିନେ ପର୍ଶୁରାମଙ୍କ ଅନୁପସ୍ଥିତିରେ କାର୍ତ୍ତବୀର୍ଯ୍ୟଙ୍କର ପୁତ୍ରମାନେ ଜମଦଗ୍ନିଙ୍କ ସମାଧିସ୍ଥ ଅବସ୍ଥାରେ ମୁଣ୍ଡ କାଟିଦେଲେ । ମା' ରେଣୁକାଙ୍କ କରୁଣ ବିଳାପ ସତ୍ତ୍ୱେ ଋଷିଙ୍କ କଟାମୁଣ୍ଡ ନେଇ-ପଳାଇଲେ । ଋଷିପତ୍ନୀ ହା ରାମ ! ହା ରାମ ! ଏକୋଇଶ ଥର କହି ବକ୍ଷରେ ହାତ ପିଟିଥିଲେ । ପର୍ଶୁରାମଜୀ ଆଶ୍ରମକୁ ଫେରି ପିତାଙ୍କ ମସ୍ତକ ବିହୀନ ଶରୀର ଦେଖି ଏକୋଇଶ ବାର ପୃଥିବୀକୁ ନିକ୍ଷତ୍ରିୟ କରିବାର ଶପଥ ନେଲେ ।

ପ୍ରଶ୍ନ-୭୫. ସାରା ସଂସାର ଖୋଜି ଖୋଜି ଦୋଷୀ -ନିର୍ଦ୍ଦୋଷ ନିର୍ବିଚାରେ ପର୍ଶୁରାମଜୀ କ୍ଷତ୍ରିୟ ହତ୍ୟା କରି କରି କଟାମୁଣ୍ଡର ପର୍ବତ ଓ କ୍ଷତ୍ରିୟ ରକ୍ତର ନଦୀ ବୁହାଇଦେଲେ । ଜମା ହୋଇଥିବା ବାକୀ କ୍ଷତ୍ରିୟ ରକ୍ତର କି ଉପଯୋଗ କଲେ ପର୍ଶୁରାମଜୀ ସେତେବେଳେ ?

**ତ୍ରିଃ ସପ୍ତକୃତ୍ୱଃ ପୃଥିବୀଂ କୃତ୍ୱା ନିଃକ୍ଷତ୍ରିୟାଂ ପ୍ରଭୁଃ ।**
**ସମନ୍ତ ପଞ୍ଚକେ ଚକ୍ରେ ଶୋଣିତ-ଉଦାନ୍ ହ୍ରଦାନ୍ ନୃପ ॥୧୯॥**

ଉ. ଆଧୁନିକ ଦିଲ୍ଲୀ ସହର ନିକଟସ୍ଥ କୁରୁକ୍ଷେତ୍ରରେ ସମନ୍ତ ପଞ୍ଚକଠାରେ ନଅଟି ରକ୍ତ ହ୍ରଦ କରାଇ ପିତୃ ପୁରୁଷଙ୍କୁ ରକ୍ତ ତର୍ପଣ କରିଥିଲେ ସେଇ ରକ୍ତରେ । ନିଜ ଅଲୌକିକ ଯୋଗଶକ୍ତି ବଳରେ ପିତାଙ୍କ ଶରୀରରେ କଟା ମୁଣ୍ଡକୁ ଯୋଡ଼ି ପ୍ରାଣ ସଂଚାର କରାଇ ବାସୁଦେବଙ୍କୁ ପ୍ରସନ୍ନ କରିବାକୁ ଏକ ମହାନ୍ ଯଜ୍ଞାନୁଷ୍ଠାନ କରିଥିଲେ । ପୃଥିବୀର ପାପଭାରା ହରଣ କରି କଶ୍ୟପ ଆଦି ମୁନିମାନଙ୍କୁ ପୃଥିବୀକୁ ଦାନ କରି ଓଡ଼ିଶାର ମହେନ୍ଦ୍ରାଚଳକୁ ଚାଲିଗଲେ ତପସ୍ୟା କରିବାକୁ ।

ପ୍ରଶ୍ନ-୭୬. ଯଜ୍ଞ ଶେଷରେ ପର୍ଶୁରାମଜୀ ଅବଭୃତ ସ୍ନାନ କରି ପୁଣି ଦିବ୍ୟ ବ୍ରହ୍ମତେଜରେ ତେଜୀୟାନ୍ ଦେଖାଗଲେ । ପୁଣି ଥରେ ପ୍ରାଣ ପ୍ରାପ୍ତହୋଇ ଜମଦଗ୍ନି ଋଷି କ'ଣ କଲେ ?

**ସ୍ୱଦେହଂ ଜମଦଗ୍ନିଃ ତୁ ଲବ୍ଧ୍ୱା ସଂଜ୍ଞାନ ଲକ୍ଷଣମ୍ ।**
**ଋଷିଣାଂ ମଣ୍ଡଳେ ସୋଽଭୂତ୍ ସପ୍ତମୋ ରାମପୂଜିତଃ ॥୨୪॥**

ଉ. ଋଷି ଜମଦଗ୍ନିଙ୍କ ଶୁଭ ସଂକଳ୍ପ ପୁଣି ଜାଗରିତ ହେଲା । ଭଗବାନ ପର୍ଶୁରାମଙ୍କ ଦ୍ୱାରା ସେ ପୂଜିତ ହୋଇ ଏହି ବୈବସ୍ୱତ ମନ୍ୱନ୍ତରରେ ସପ୍ତର୍ଷି ମଣ୍ଡଳରେ ଶେଷ (ସପ୍ତମ) ନକ୍ଷତ୍ର ଭାବରେ ସ୍ଥାନ ପ୍ରାପ୍ତ ହେଲେ । ଅନ୍ୟ ଋଷି ମାନଙ୍କର ନାମ ହେଲା-କଶ୍ୟପ, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର, ଗୌତମ ଓ ଭରଦ୍ୱାଜ ।

ପ୍ରଶ୍ନ-୭୭. ପବିତ୍ର ଭୃଗୁ ବଂଶରେ ଉତ୍ପନ୍ନ ପରମ ଋଷି ପର୍ଶୁରାମ ଭୂ ଭାର ହରଣ କରିସାରି କେତେବେଳେ ଦେହ ତ୍ୟାଗ କରିଥିଲେ ?

**ଆସ୍ତେଽଦ୍ୟ-ଅପି ମହେନ୍ଦ୍ର-ଅଦ୍ରୌ ନ୍ୟସ୍ତଦଣ୍ଡଃ ପ୍ରଶାନ୍ତଧୀଃ ।**
**ଉପଗୀୟମାନ ଚରିତଃ ସିଦ୍ଧ ଗନ୍ଧର୍ବ ଚାରଣୈଃ ॥୨୬॥**

ଉ. ଶୁକଦେବ ପରମ ହଂସ କହିଲେ, 'ପର୍ଶୁରାମଜୀ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଓଡ଼ିଶାର ପାରଳାଖେମୁଣ୍ଡି ନିକଟସ୍ଥ ମହେନ୍ଦ୍ର ପର୍ବତରେ ସୂକ୍ଷ୍ମ ବ୍ରାହ୍ମଣ ଶରୀର ଧରି ତପସ୍ୟା ରତ ଅଛନ୍ତି । ହାତରେ ତାଙ୍କର ପର୍ଶୁ ନାହିଁ । ଅଛି ଅକ୍ଷମାଳା, ଦଣ୍ଡ ଓ କମଣ୍ଡଳୁ ବ୍ରାହ୍ମଣ ସନ୍ନ୍ୟାସୀର ଚିହ୍ନ ସମୂହ ।'

ଏହି ଐଳବଂଶରେ ଜନ୍ମନେଇଥିଲେ ଗାଧି ପୁତ୍ର ବିଶ୍ୱାମିତ୍ର । ସେ କ୍ଷତ୍ରିୟ କୁଳରେ ଜନ୍ମ ହେଲେ ମଧ୍ୟ ତପସ୍ୟା ବଳରେ ବ୍ରହ୍ମ ଦର୍ଶନ କରି ବ୍ରାହ୍ମଣ ହୋଇଥିଲେ । ତାଙ୍କର ଏକଶତ ଏକ ସନ୍ତାନ ଥିଲେ । ସେମାନଙ୍କ ମଧ୍ୟରେ ମଧୁଚ୍ଛନ୍ଦା ଏକାବନ ତମ ପୁତ୍ର ଥିଲେ । ପଚାଶ ପୁତ୍ର ତାଙ୍କଠାରୁ ବଡ଼ ଓ ଅନ୍ୟ ପଚାଶ ତାଙ୍କ ଠାରୁ ସାନ ଥିଲେ ।

ବିଶ୍ୱାମିତ୍ର ହରିଶ୍ଚନ୍ଦ୍ର ରାଜାଙ୍କ ମଣିଷ ଯଜ୍ଞରେ ନିଜ ଯୋଗ ଶକ୍ତି ପ୍ରୟୋଗ କରି ଶୁନଃଶେଫଙ୍କ ଜୀବନ ବଂଚାଇ ଦେଇଥିଲେ । ତାଙ୍କୁ ନିଜର ଜ୍ୟେଷ୍ଠ ପୁତ୍ର ଭାବରେ ଗ୍ରହଣ କରି ତାଙ୍କ ନାମ ଦେବରାତ ରଖିଲେ । ଏଥିରେ ବିଶ୍ୱାମିତ୍ରଙ୍କ ପଚାଶ ଜ୍ୟେଷ୍ଠ ପୁତ୍ର ପ୍ରତିବାଦ କରନ୍ତେ ସେମାନଙ୍କୁ ଅଭିଶାପ ଦେଇ ମ୍ଲେଚ୍ଛ ପର୍ଯ୍ୟାୟ ଭୁକ୍ତ କରିଥିଲେ । ମଧୁଚ୍ଛନ୍ଦା ସମେତ ଅନ୍ୟ କନିଷ୍ଠ ପଚାଶ ପୁତ୍ର ବ୍ରାହ୍ମଣ ହେଲେ । ସୁତରାଂ ବିଶ୍ୱାମିତ୍ର ଗୋତ୍ରରେ ବ୍ରାହ୍ମଣ, କ୍ଷତ୍ରିୟ, ଶୂଦ୍ର ଆଦି ସକଳ ବର୍ଣ୍ଣର ସନ୍ତାନ ଦେଖାଯାଆନ୍ତି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପୁଣି ଏହି ଐଳ ବଂଶରେ ପୁରୂରବାଙ୍କ ଅନ୍ୟତମ ପୁତ୍ର ଆୟୁଙ୍କ ପୁତ୍ର ହେଲେ ବିଖ୍ୟାତ ରାଜା ନହୂଷ । ଏହି ନହୂଷ କିଛି ଦିନ ଲାଗି ଖାଲି ପଡ଼ିଥିବା ସ୍ୱର୍ଗ ସମ୍ରାଟ୍ ଇନ୍ଦ୍ରଙ୍କ ଆସନରେ ବସିବାର ସୌଭାଗ୍ୟ ଲାଭ କରିଥିଲେ ।

## ଅଥ ସପ୍ତଦଶ ଅଧ୍ୟାୟଃ

## (ରାଜା ନହୂଷଙ୍କ ଚରିତ)

ଶ୍ରୀଶୁକ ଉବାଚ-

ପ୍ରଶ୍ନ-୭୮. ଶୁକଦେବ ପରମହଂସ କହିଲେ, 'ରାଜନ୍! ଐଳ ବଂଶରେ ପୁରୁରବାଙ୍କ ପୁତ୍ର ଆୟୁଙ୍କ ଔରଷରେ ନହୂଷ ଜନ୍ମ ହୋଇଥିଲେ । ନହୂଷଙ୍କ ବଂଶରେ ବିଖ୍ୟାତ ବୈଦ୍ୟ ଧନ୍ୱନ୍ତରୀ । ଗୃତ୍ସମଦଙ୍କ ପୁତ୍ର ଶୌନକ ଆଦି ଉତ୍ପନ୍ନ ହୋଇଥିଲେ । ନହୂଷଙ୍କ ବଂଶରେ ସବୁଠାରୁ ଦୀର୍ଘାୟୁ ରାଜା ବୋଲି କାହାକୁ କୁହାଯାଏ ?

**ଷଷ୍ଟି ବର୍ଷ ସହସ୍ରାଣି ଷଷ୍ଟି ବର୍ଷ ଶତାନି ଚ ।**
**ନ-ଅଲର୍କାତ୍ ଅପରୋ ରାଜନ୍ ବୁଭୁଜେ ମେଦିନୀଂ ଯୁବା ॥୭॥**

ଉ.ଅଲର୍କ ବୋଲି ଜଣେ ରାଜା ଦତ୍ତାତ୍ରେୟ ମୁନିଙ୍କ ଠାରୁ ଅଧ୍ୟାତ୍ମ ବିଦ୍ୟା ଶିକ୍ଷା କରିଥିଲେ । ମା' ତାଙ୍କର ମହାଜ୍ଞାନୀ ମଦାଳସା । ଗୃହିଣୀ ହୋଇ ଆତ୍ମବିଦ୍ୟାରେ ଅତ୍ୟନ୍ତ ପ୍ରବୀଣା ଥିଲେ ମା' ମଦାଳସା । ମା'ଙ୍କ ଆଶୀର୍ବାଦ ଓ ସଦ୍ ଗୁରୁ ଦତ୍ତାତ୍ରେୟଙ୍କ କୃପାରୁ ସେ ଛଅଷଠି ହଜାର ବର୍ଷ ରାଜ ପଣ କରିବା କଥା ଇତିହାସ ସାକ୍ଷୀ ଦିଅନ୍ତି । ନହୂଷଙ୍କ ପୁତ୍ର ଯଯାତି ଓ ତାଙ୍କ ପୁତ୍ର ପୁରୁ । ଯଯାତି ନାରୀ ଲମ୍ପଟ ହେତୁ ଅଭିଶାପ ଗ୍ରସ୍ତ ହୋଇ ଯୌବନ କାଳରେ ଜରାଗ୍ରସ୍ତ ହୋଇଥିଲେ । ତାଙ୍କର ପାଞ୍ଚ ପୁଅ ମଧ୍ୟରେ ସର୍ବ କନିଷ୍ଠ ପୁତ୍ର ପୁରୁ ସ୍ୱେଚ୍ଛାରେ ପିତାଙ୍କ ଜରା ବଦଳରେ ନିଜ ଯୌବନ ଦାନ କରି ଇତିହାସରେ ଅମର ହୋଇଗଲେ ।

# ଅଥ ଅଷ୍ଟାଦଶ ଅଧ୍ୟାୟଃ

## (ରାଜା ଯଯାତିଙ୍କର ପୁତ୍ର ପୁରୁଙ୍କ ଠାରୁ ଯୌବନ ଭିକ୍ଷା ଚରିତ)

ଶ୍ରୀଶୁକ ଉବାଚ

ପ୍ରଶ୍ନ-୭୯. ରାଜା ନହୂଷ ନିଜେ ରାଜ ସିଂହାସନରେ ନ ବସି, ନିଜ ଜ୍ୟେଷ୍ଠ ପୁତ୍ରକୁ ନ ବସାଇ ଦ୍ୱିତୀୟ ପୁତ୍ରକୁ କାହିଁକି ରାଜ ସିଂହାସନରେ ଅଭିଷେକ କଲେ ?

**ପିତରି ଭ୍ରଂଶିତେ ସ୍ଥାନାତ୍ ଇନ୍ଦ୍ରାଣ୍ୟା ଧର୍ଷଣାତ୍ ଦ୍ୱିଜୈଃ ।**
**ପ୍ରାପିତେଽଜରତ୍ୱଂ ବୈ ଯଯାତିଃ ଅଭବତ୍ ନୃପଃ ॥୩॥**

ଉ. ସେ ସମୟରେ ସ୍ୱର୍ଗ ସମ୍ରାଟ୍ ଇନ୍ଦ୍ରଦେବ ଶାପଗ୍ରସ୍ତ ହୋଇ ପଦ୍ମବଣରେ ପଶି ପଦ୍ମ ନାଳରେ ଲୁଚିଥାନ୍ତି । ଇନ୍ଦ୍ରଆସନ ଖାଲି ପଡ଼ିବାରୁ ଦେବତାମାନେ ନହୂଷଙ୍କୁ ଇନ୍ଦ୍ରାସନରେ ବସାଇଥିଲେ କିନ୍ତୁ ଭୋଗ ବିଳାସ ଉନ୍ମୁଖ ନହୂଷ ଇନ୍ଦ୍ରପତ୍ନୀ ଶଚିଦେବୀଙ୍କ ପ୍ରତି ଦୁର୍ଭାବନା କରିବାରୁ ଋଷି ଓ ଦେବତାଙ୍କ ଦ୍ୱାରା ଦଣ୍ଡିତ ହୋଇ ଅଜଗର ସର୍ପ ହେଲେ । ରାଜାଙ୍କର ଜ୍ୟେଷ୍ଠ ପୁତ୍ର ରାଜା ହେଲେ ଅଧ୍ୟାତ୍ମ ଜ୍ଞାନ ସାଧନରେ ବାଧା ଉପୁଜିପାରେ କହି ରାଜା ହେବାକୁ ଅସ୍ୱୀକାର କରିଥିଲେ । ତେଣୁ ଦ୍ୱିତୀୟ ପୁତ୍ର ରାଜା ହେଲେ ।

ପ୍ରଶ୍ନ-୮୦. ସେତେବେଳେ ଅସୁର ସମ୍ରାଟ୍ ବୃଷ ପର୍ବାଙ୍କ ରାଜ ପୁରୋହିତ ଓ ରାଜଗୁରୁ ପଦରେ ଥାଆନ୍ତି ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ । ରାଜାଙ୍କ କନ୍ୟା ଶର୍ମିଷ୍ଠା ଓ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ଅନ୍ତରଙ୍ଗ ସାଥୀ ଥିଲେ । ଦିନେ ଉଭୟେ ଏକତ୍ର ଜଳକ୍ରୀଡ଼ା କରୁଥିବା ବେଳେ ଭଗବାନ ଶଙ୍କର-ପାର୍ବତୀ ବୃଷଭ ପୃଷ୍ଠରେ ପ୍ରକଟ ହେଲେ । ତରବରରେ ଅଜାଣତରେ ଶର୍ମିଷ୍ଠା ପ୍ରଥମେ ଉପରକୁ ଆସି ଦେବଯାନୀଙ୍କ ବସନ ପିନ୍ଧିବାରୁ ଦେବଯାନୀ କ୍ରୁଦ୍ଧ ହୋଇ କ'ଣ କହିଲେ ?

**ଅହୋ ନିରୀକ୍ଷତାଂ ଅସ୍ୟା ଦାସ୍ୟାଃ କର୍ମ ହି-ଅସାମ୍ପ୍ରତମ୍ ।**
**ଅସ୍ମତ୍ ଧାର୍ଯ୍ୟଂ ଧୃତବତୀ ଶୁନି-ଇବ ହବିଃଅଧ୍ୱରେ॥୧୧॥**

ଉ. କହିଲେ, 'ଦେଖ, ଦେଖ କି ଅନୁଚିତ (ଅସାମ୍ପ୍ରତମ) ବ୍ୟବହାର !! ମୁଁ ବ୍ରାହ୍ମଣ କନ୍ୟା । ସାମାନ୍ୟ କ୍ଷତ୍ରିୟ କନ୍ୟା ହୋଇ ସେ ମୋ ବସନ ପିନ୍ଧି ପକାଇଲା । ସତେ କି ଯଜ୍ଞ ଘୃତଭାଣ୍ଡକୁ କୁକୁରୀଟେ (ଶୁନି-ଇବ) ଉଠେଇ ନେଇଗଲା!! ଶୂଦ୍ର ହୋଇ ବେଦ ଅଧିକାରୀ ହେବାକୁ ଚେଷ୍ଟା କଲା!!'

ଶର୍ମିଷ୍ଠା ମଧ୍ୟ କ୍ରୋଧରେ ଅସମ୍ଭାଳ ହେଲେ କହିଲେ, 'ମୁଁ ରାଜ କନ୍ୟା ଅଟେ । ବ୍ରାହ୍ମଣମାନେ ରାଜାଙ୍କ ପାଖରେ ହାତ ପତାଇ ଭିକ୍ଷାମାଗନ୍ତି । ଦେବଯାନୀ ଭିକାରୁଣୀ । ତାର ସାହସ କେତେ ଦେଖ ତ !!' କ୍ରୋଧରେ ଦେବଯାନୀଙ୍କୁ ନିକଟସ୍ଥ ଏକ କୂଅକୁ ଠେଲିଦେଲେ । ଦୈବଯୋଗେ ରାଜା ଯଯାତି ମୃଗୟା କରିବାବେଳେ ତାଙ୍କୁ ଦେଖି କୂଅରୁ ଉଦ୍ଧାର କରିଥିଲେ । ସେତେବେଳେ ଦେବଯାନୀ ନଗ୍ନ ଥିଲେ । ବସ୍ତ୍ର ଦେଲେ ଯଯାତି । ଦେବଯାନୀ କହିଲେ, 'ଆପଣ ମୋ ହସ୍ତ ଧରିଛନ୍ତି । ମୁଁ କୁମାରୀ କନ୍ୟା । ସୁତରାଂ ଆପଣ ମୋତେ ବିବାହ କରିବାକୁ ବାଧ୍ୟ । ବିଧିର ବିଧାନ ବିଚିତ୍ର । ଆପଣ ବର୍ଣ୍ଣରେ କ୍ଷତ୍ରିୟ ମୁଁ ବୃହସ୍ପତିଙ୍କ ପୁତ୍ର କଚଙ୍କ ଠାରୁ ଶାପ ପାଇଛି ବ୍ରାହ୍ମଣ ବର ପାଇ ପାରିବି ନାହିଁ ।'

ସେତେବେଳେ ପ୍ରତିଲୋମ ବିବାହ ନିଷିଦ୍ଧ ଥିଲା । ତଥାପି ସୌନ୍ଦର୍ଯ୍ୟ ଲୋଲୁପ ଯଯାତି ପତ୍ନୀରୂପେ ସ୍ୱୀକାର କଲେ ଦେବଯାନୀଙ୍କୁ । ଗୃହକୁ ଫେରି ଦେବଯାନୀ ସବୁ କଥା ନିବେଦନ କଲେ ପିତା ଶୁକ୍ରାଚାର୍ଯ୍ୟାଙ୍କୁ । ଶୁକ୍ରାଚାର୍ଯ୍ୟ ଅସନ୍ତୁଷ୍ଟ ହୋଇ ରାଜ୍ୟ ଛାଡ଼ି ପଳାଇଗଲେ । ସେତେବେଳେ ରାଜା ବୃଷପର୍ବା ଦୌଡ଼ି ଦୌଡ଼ି ଗଲେ । ପାଦତଳେ ପଡ଼ି କ୍ଷମା ମାଗିଲେ । ଦୈତ୍ୟଗୁରୁ କହିଲେ, 'ମୋ କନ୍ୟାକୁ ସନ୍ତୁଷ୍ଟ କର ।' ଦେବଯାନୀ ସର୍ତ୍ତ ରଖିଲେ, 'ମୁଁ ଯଯାତିଙ୍କ ପତ୍ନୀ ହୋଇ ଗଲା ବେଳେ ଶର୍ମିଷ୍ଠା ମୋ ସଙ୍ଗେ ଦାସୀ ହୋଇ ଯିବ ।' ରାଜା ସର୍ତ୍ତ ସ୍ୱୀକାର କଲେ ।

ପ୍ରଶ୍ନ-୮୧. ଅନନ୍ୟୋପାୟ ହୋଇ ରାଜା ବୃଷପର୍ବା ନିଜ କନ୍ୟା ସହିତ ଏକ ହଜାର ସୁନ୍ଦରୀ ଦାସୀ ପଠାଇଲେ ଦେବଯାନୀଙ୍କ ସେବା ଲାଗି । ଶୁକ୍ରାଚାର୍ଯ୍ୟ ସେତେବେଳେ ଶର୍ମିଷ୍ଠାଙ୍କ ପାଇଁ କି ସର୍ତ୍ତ ରଖିଲେ ?

**ନାହୁଷାୟ ସୁତାଂ ଦତ୍ତ୍ୱା ସହ ଶର୍ମିଷୟା-ଉଶନା ।**
**ତଂ ଆହ ରାଜନ୍ ଶର୍ମିଷ୍ଠାଂ ଆଧାଃ ତଳ୍ପେ ନ କର୍ହିଚିତ୍ ।।୩୦।।**

ଉ. ଶୁକ୍ରାଚାର୍ଯ୍ୟ (ଉଶନା) ନହୁଷ ପୁତ୍ର ଯଯାତିଙ୍କୁ (ନାହୁଷାୟ) କନ୍ୟା ପ୍ରଦାନ କଲାବେଳେ ସର୍ତ୍ତ ରଖିଥିଲେ (ଆଧାଃ) ଶର୍ମିଷ୍ଠା କେବଳ ଦାସୀ ହୋଇ ରହିବ । ଯଯାତିଙ୍କ ଶଯ୍ୟା ସଙ୍ଗିନୀ ହେଲେ (ତଳ୍ପେ) ଯଯାତିଙ୍କ ସହିତ ଦଣ୍ଡନୀୟ ହେବ ।

କାଳକ୍ରମେ ଦେବଯାନୀଙ୍କ ସନ୍ତାନ ହୁଅନ୍ତେ ଶର୍ମିଷ୍ଠା ମଧ୍ୟ ରାଜାଙ୍କ ଔରଷରୁ ପୁତ୍ର ଚାହିଁଲେ । ଉପଯୁକ୍ତ ବେଳ କାଳ ଉଣ୍ଡି ରାଜାଙ୍କୁ ପୁତ୍ର ପ୍ରାର୍ଥନା କଲେ । ଦାସୀକୁ

ପୁତ୍ର ଦେବା ରାଜ କର୍ତ୍ତବ୍ୟ ମନେ କଲେ । ସଙ୍ଗେ ସଙ୍ଗେ ଶ୍ୱଶୁରଙ୍କ କଠିନ ସର୍ତ୍ତ କଥା ମନେ ପଡ଼ିଲା । ତଥାପି ଏହାକୁ ବିଧିଙ୍କର ସଂଯୋଗ ଭାବି ଶର୍ମିଷ୍ଠାଙ୍କୁ ସମ୍ଭୋଗ କଲେ ଯଯାତି ।

ଦେବଯାନୀଙ୍କ ଦୁଇପୁତ୍ର ହେଲେ ଯଦୁ ଓ ତୁର୍ବସୁ । ଶର୍ମିଷ୍ଠାଙ୍କର ତିନି ପୁତ୍ରହେଲେ ଦ୍ରୁହ୍ୟୁ, ଅନୁ ଓ ପୁରୁ । କ୍ରୋଧରେ ଜଳିଗଲେ ଦେବଯାନୀ । ଚାଲିଲେ ବାପଘର । ପତ୍ନୀଙ୍କର ପାଦ ଧରି ମଧ୍ୟ ରାଜା ଯଯାତି ପ୍ରସନ୍ନ କରିପାରିଲେ ନି ପତ୍ନୀଙ୍କୁ । ଶୁକ୍ରାଚାର୍ଯ୍ୟ ମହାନ୍ କ୍ରୋଧୀ । ସବୁ ଶୁଣିଲେ କନ୍ୟା ମୁଖରୁ । ସର୍ତ୍ତ ଭଙ୍ଗ ଦେଖି ଅଭିଶାପ ଦେଲେ ଯଯାତିଙ୍କୁ, ଜରାଗ୍ରସ୍ତ ହୁଅ ରାଜନ୍ । ବ୍ୟାକୁଳ ହୋଇ ପ୍ରତିକାର ବିଧି ପ୍ରାର୍ଥନା କଲେ ଯଯାତି । ଦୈତ୍ୟଗୁରୁ କୋହଳ କଲେ ଶାପଦଣ୍ଡ । କହିଲେ, 'ତୁମେ ଅନ୍ୟ କୌଣସି ଯୁବକର ଯୌବନ ସହିତ ନିଜ ଜରାବସ୍ଥାକୁ ବଦଳ କରିପାର ।'

କାମୁକ ରାଜା ଯଯାତି ଯଦୁ,ତୁର୍ବସୁ,ଅନୁ, ଦ୍ରୁହ୍ୟୁ ସମସ୍ତଙ୍କୁ ଗୋଟି ଗୋଟି କରି ଜରା ଗ୍ରହଣ କରିବାକୁ ପ୍ରସ୍ତାବ ରଖିଲେ କିନ୍ତୁ ସମସ୍ତେ ନିରାଶ ବାଣୀ ଶୁଣାଇଲେ । ପୁତ୍ରମାନେ କହିଲେ, 'ନିଜ ସୁଖ ପାଇଁ ଅନ୍ୟକୁ ଜରା ଦଣ୍ଡ ଭୋଗାଇବା ଅଧର୍ମ, ଅନ୍ୟାୟ ।' ଯଯାତି ଯୁକ୍ତି କଲେ, 'ଏହା ମୋର ଅନ୍ୟାୟ ଶାପ ଜନିତ ଅକାଳ ବାର୍ଦ୍ଧକ୍ୟ । ବିନା ଭୋଗରେ ଆସକ୍ତି ତ୍ୟାଗ ହେବ କିପରି ?' ଶେଷରେ ଶର୍ମିଷ୍ଠାଙ୍କ କନିଷ୍ଠତମ ସନ୍ତାନ ପୁରୁ ନିଜ ପିତାଙ୍କୁ ଯୌବନ ଦାନ କରି ସଂସାରରେ ଅଧ୍ୟାତ୍ମବିଦ୍ୟାର ବାନା ଉଡ଼ାଇଲେ । ସେ ଘୋଷଣା କଲେ-ପୁତ୍ର ସଦା ସର୍ବଦା ପିତାଙ୍କଠାରେ ଦେହ ପାଇଁ ଋଣୀ ରହେ । ଋଣ ମୁକ୍ତିପାଇଁ ସନ୍ତାନ ଯାହା କରେ ତାହା ଧର୍ମ ।

ପ୍ରଶ୍ନ-୮୨. ଦେହରେ ଯୌବନ ଉନ୍ମାଦ ମଧ୍ୟ ସମୁଦ୍ର ତରଙ୍ଗ ପରି କ୍ଷଣ ଭଙ୍ଗୁର । ତାହା ଯଦି ଅନ୍ୟ କାହାରି କାମରେ ଲାଗିପାରେ ସେ ସୁଯୋଗ ଜଣେ ହାତ ଛଡ଼ା କରିବ କାହିଁକି ! ଏ ବିଷୟରେ ଉତ୍ତମ ମଧ୍ୟମ ଓ ଅଧମ ପୁତ୍ର ବୋଲି ଶାସ୍ତ୍ର କିପରି ନିର୍ଣ୍ଣୟ କରନ୍ତି ?

**ଉତ୍ତମଃ ଚିନ୍ତିତଂ କୁର୍ଯ୍ୟାତ୍ ପ୍ରୋକ୍ତକାରୀ ତୁ ମଧ୍ୟମ ।**
**ଅଧମୋଽଶ୍ରଦ୍ଧୟା କୁର୍ଯ୍ୟାତ୍ ଅକର୍ତ୍ତା ଉଚ୍ଚରିତଂ ପିତୁଃ ॥୪୪॥**

ଉ. ପିତାଙ୍କ ଉଦ୍ଦେଶ୍ୟ ଜାଣି ତାଙ୍କ କହିବା ପୂର୍ବରୁ କର୍ମ ସମ୍ପାଦନ କରିବା ପୁତ୍ରକୁ ଉତ୍ତମ, ପିତାଙ୍କ ଆଦେଶ ପାଇ କାମ କରିବା ପୁତ୍ରକୁ ମଧ୍ୟମ ଓ ଆଦେଶ ପାଇ ଇଚ୍ଛା ନଥାଇ ବାଧ୍ୟ ବାଧକତାରେ ଅଶ୍ରଦ୍ଧାରେ କାମ କରୁଥିବା କିମ୍ବା ଆଦୌ ନକରିବା

ପୁତ୍ରକୁ ଅଧମ ପୁତ୍ର କୁହାଯାଏ । ପୁଣି ପିତୃଆଦେଶ ଆଦୌ ପାଳନ ନ କରିବା ପୁତ୍ରକୁ ଶରୀର ମଳ(ଅନାବଶ୍ୟକ ପଦାର୍ଥ ମଳ ମୂତ୍ର, ଝାଳ ଆକାରରେ ବାହାରିବା ଭଳି) ବୋଲି ଶାସ୍ତ୍ର କହନ୍ତି ।

ଏକ ହଜାର ବର୍ଷ କାମ ଭୋଗ କଲେ ରାଜା ଯଯାତି । ଆଡ଼ମ୍ବର ପୂର୍ଣ୍ଣ ଅନେକ ଯଜ୍ଞାନୁଷ୍ଠାନ ମଧ୍ୟ କଲେ । ଦେବଯାନୀ ସକଳ ଭୋଗ ସାମାନ ଯୋଗଉଥାନ୍ତି ଯୌବନର ମାଦକତାର ଭୋଗମୁଖୀ ଲାଳସାର ଉପଯୋଗ ଲାଗି । ଯଯାତି ଅଧ୍ୟାତ୍ମ ମାର୍ଗର ଟେର୍ ସୁଦ୍ଧା ପାଇଲେନି । କେବଳ ଭୋଗରେ ମାତିଲେ ।

ଯଯାତିଙ୍କ କନିଷ୍ଠପୁତ୍ର ପୁରୁ ଅଧ୍ୟାତ୍ମ ବିଦ୍ୟାରେ ଅତ୍ୟନ୍ତ ବଢ଼ା ଚଢ଼ା ଥିଲେ । ତାଙ୍କ ସତ୍‌ସଙ୍ଗରେ ଯଯାତିଙ୍କ ସଂସାର ବୈରାଗ୍ୟ ଜାତ ହେଲା । ପୁରୁଙ୍କୁ ରାଜ୍ୟ ଭାର ଦେଇ ଯଯାତି ନିରନ୍ତର ହରି ଭଜନ କରି ଶେଷରେ ସଂସାର ଆସକ୍ତି ଶୂନ୍ୟ ହୋଇ ମୁକ୍ତି ପ୍ରାପ୍ତ ହେଲେ ।

## ଅଥ ଊନବିଂଶ ଅଧ୍ୟାୟଃ

## (କାମୁକ ରାଜା ଯଯାତିଙ୍କ ସଂସାର ବୈରାଗ୍ୟ ଓ ମୁକ୍ତି ପ୍ରସଙ୍ଗ)

### ଶ୍ରୀଶୁକ ଉବାଚ

ପ୍ରଶ୍ନ-୮୩. ରାଜା ଯଯାତି ଅତ୍ୟନ୍ତ କାମୁକ ଥିଲେ । ତଥାପି ତାଙ୍କ ସୌଭାଗ୍ୟ ସେ ପୁରୁଙ୍କ ଭଳି ଜଣେ ସଂସ୍କାରୀ ପୁତ୍ର ପ୍ରାପ୍ତ ହୋଇଥିଲେ । ପୁରୁଙ୍କ ସତ୍ ସଙ୍ଗ ହେତୁ ରାଜାଙ୍କର ପରା ସଂସାର ବୈରାଗ୍ୟ ଜାତ ହେବାରୁ ସେ ସଂସାରକୁ କେଉଁ ଦୁର୍ଲ୍ଲଭ ଅନୁଭୂତି ଶିକ୍ଷାଦେଲେ ?

**ଯତ୍ ପୃଥିବ୍ୟାଂ ବ୍ରୀହି ଯବଂ ହିରଣ୍ୟଂ ପଶବଃ ସ୍ତ୍ରିୟଃ ।**
**ନ ଦୁହ୍ୟନ୍ତି ମନଃ ପ୍ରୀତିଂ ପୁଂସଃ କାମହତସ୍ୟ ତେ ॥୧୩॥**

ଉ. କାମୁକ ପୁରୁଷର ମନ କେବେ ବି କାମ ଭୋଗରେ ସନ୍ତୁଷ୍ଟ ହୋଇ ପାରେ ନା । ଏପରି କି ସଂସାରର ସକଳ ଶସ୍ୟ ଭଣ୍ଡାର, ସୁବର୍ଣ୍ଣ, ହାତୀ ଘୋଡ଼ାଦି ପଶୁ ସମ୍ପଦ, ସକଳ ସୁନ୍ଦରୀ ସ୍ତ୍ରୀ ଭୋଗ କରି ସାରିବା ପରେ ମଧ୍ୟ ତାର ମନ ଅତୃପ୍ତ, ଅଶାନ୍ତ ରହିବ ହିଁ ରହିବ ।

ପ୍ରଶ୍ନ-୮୪. ସୁସ୍ୱାଦୁ ଭୋଜନ କଲେ କ୍ଷୁଧା ଶାନ୍ତ ହୁଏ । ସ୍ୱଚ୍ଛ ଜଳ ପାନ ପରେ ତୃଷା ମେଣ୍ଟି ଯାଏ । ଭୋଗ୍ୟ ପଦାର୍ଥକୁ ଭୋଗ କଲେ ମଧ୍ୟ କ୍ଷୁଧା, ତୃଷା, ଭୋଗ, କାମନାଦି ଅତୃପ୍ତ, ଅଶାନ୍ତ ରହନ୍ତି କାହିଁକି ?

**ନ ଜାତୁ କାମଃ କାମାନାଂ ଉପଭୋଗେନ ଶାମ୍ୟତି ।**
**ହବିଷା କୃଷ୍ଣବର୍ତ୍ମା-ଇବ ଭୂୟ ଏବ-ଅଭିବର୍ଦ୍ଧତେ ॥୧୪॥**

ଉ.ଅଗ୍ନିରେ (କୃଷ୍ଣବର୍ତ୍ମା) ଘୃତ(ହବିଷା) ଢ଼ାଳିଲେ ଅଗ୍ନିଙ୍କର ଲେଲିହାନ ଶିଖା କେବେ ହେଲେ (ଜାତୁ) ଶାନ୍ତ ହୁଏ କି ? ଜ୍ୱଳନ୍ତ ଶିଖା ପ୍ରଶମିତ ନ ହୋଇ ବରଂ ଅଧିକରୁ ଅଧିକ ପ୍ରଜ୍ୱଳିତ ହୁଏ । ବିଧିର ବିଧାନ ବିଚିତ୍ର । ସଂସାର ବିଷୟ ଭୋଗବାସନା ଓ ଜୀବର ଇନ୍ଦ୍ରିୟ ଗୁଡ଼ିକ ଏପରି ପଦ୍ଧତି ଶୈଳୀରେ ନିର୍ମିତ ହୋଇଛନ୍ତି ଯେ ସେମାନେ ଠିକ୍ ଅଗ୍ନି ଓ ଘୃତ ଭଳି କାମ କରିଥାନ୍ତି ।

ପ୍ରଶ୍ନ-୮୫. ବିଷୟ ଭୋଗ ବୃଦ୍ଧି ବା ଇନ୍ଦ୍ରିୟ ତୃପ୍ତି ଲାଗି ମନୁଷ୍ୟ କାହାକୁ ମୋହବତ୍ କରେ ତ କାହାକୁ ନଫରତ୍ । ଉଭୟରେ ସୁଖ-ଦୁଃଖ ରୂପୀ ବନ୍ଧନ । ଉଭୟକୁ ତ୍ୟାଗ କଲେ ସମଦର୍ଶୀ ବୋଲାଇଥାଏ । ତା ପାଇଁ ସାରା ସଂସାର ଆନନ୍ଦମୟ । ଜରାଗ୍ରସ୍ତ ହେଲେ ଇନ୍ଦ୍ରିୟ ଶକ୍ତି ନିଶ୍ଚୟ ଦୁର୍ବଳ ହୁଅନ୍ତି । ଏକଥା ଜାଣି ମଧ୍ୟ ସମସ୍ତେ ସଂସାର ବୈରାଗୀ ହୁଅନ୍ତି ନାହିଁ କାହିଁକି ?

**ଯା ଦୁସ୍ତ୍ୟଜା ଦୁର୍ମତିଭିଃ ଜୀର୍ଯତୋ ଯା ନ ଜୀର୍ଯ୍ୟତେ ।**
**ତାଂ ତୃଷ୍ଣାଂ ଦୁଃଖନିବହାଂ ଶର୍ମକାମୋ ଦ୍ରୁତଂ ତ୍ୟଜେତ୍ ॥୧୬॥**

ଉ.ମଣିଷର ଇନ୍ଦ୍ରିୟଶକ୍ତି ଦୁର୍ବଳ ହେଲେ ମଧ୍ୟ କାମନା ବାସନା ଘୋଷାରନ୍ତି ବିଷୟୀ ପୁରୁଷକୁ । କାମନା ମହାରାଣୀ ସଦା ଯୁବତୀ । ସୁଯୋଗ ପାଇବା ମାତ୍ରେ ମନ-ବୁଦ୍ଧି-ବିବେକ ସମସ୍ତଙ୍କୁ ଖାଲରେ ପକାଇବାରେ ତାଙ୍କର ଆନନ୍ଦ ।

ସୁଖ କିମ୍ବା ଦୁଃଖ ମିଳିବାରେ ମନୁଷ୍ୟର ହାତ ନ ଥାଏ । ସେସବୁ ତାହାର ପୂର୍ବ ପୂର୍ବ ଜନ୍ମ କୃତ ପୁଣ୍ୟ କିମ୍ବା ପାପର ଫଳ । ନିଜ କର୍ମର ଫଳକୁ ମନୁଷ୍ୟ ଭୋଗିବାକୁ ବାଧ୍ୟ । ଇନ୍ଦ୍ର-ଚନ୍ଦ୍ର-ବ୍ରହ୍ମା-ଶଙ୍କର ସମସ୍ତେ କର୍ମ ଫଳ ଦଉଡ଼ିରେ ବନ୍ଧା କିନ୍ତୁ ସୁଖରେ ସୁଖୀ/ଅଧୀର/ଉତ୍ସାହିତ ନ ହେବା ଓ ଦୁଃଖରେ ଦୁଃଖୀ/ଅସ୍ଥିର/ବିଚଳିତ ନ ହେବା ନିଜ ହାତର କଥା । ନିରନ୍ତର ଶ୍ରଦ୍ଧା ବିଶ୍ୱାସ ସହିତ ହରି ଭଜନ କଲେ ଏହି ବାସନା ଭୋଗ ଇଚ୍ଛା ସଦ୍‌ଗୁରୁଙ୍କ କୃପାରୁ ବା ସତ୍‌ସଙ୍ଗ ହେତୁ ତ୍ୟାଗ କରିହୁଏ । ତାହା ହିଁ ତ ବୈରାଗ୍ୟର ଚାବିକାଠି ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

ପ୍ରଶ୍ନ-୮୬.ବୁଦ୍ଧିହୀନ,ବିବେକଶୂନ୍ୟ, ମୂର୍ଖ ଲୋକମାନେ ଅବଶ୍ୟ କାମବାସନାର ଶିକାର ହୁଅନ୍ତି । ବିବେକୀ,ବିଦ୍ବାନ, ବୁଦ୍ଧିମାନ୍ ଲୋକଙ୍କର କାମଦେବ ବା କନ୍ଦର୍ପ ଆକ୍ରମଣ କ'ଣ କ୍ଷତି କରି ପାରିବ ?

**ମାତ୍ରା ସ୍ୱସା ଦୁହିତ୍ରା ବା ନ-ଅବିବିକ୍ତ-ଆସନୋ ଭବେତ୍ ।**
**ବଳବାନ୍ ଇନ୍ଦ୍ରିୟଗ୍ରାମୋ ବିଦ୍ୱାଂସଂ ଅପି କର୍ଷତି ॥୧୭॥**

ଉ.ନା, ନା ତା ବି ଠିକ୍ ନୁହେଁ । ପରାଶର ମତ୍ସ୍ୟଗନ୍ଧା, ବିଶ୍ୱାମିତ୍ର ମେନକା, ଚନ୍ଦ୍ରଦେବ ଗୁରୁପତ୍ନୀ ତାରା, ଇନ୍ଦ୍ର ଦେବ ଅହଲ୍ୟା ସୃଷ୍ଟିକର୍ତ୍ତା ବ୍ରହ୍ମାଜୀ ସରସ୍ୱତୀଙ୍କର ଅନୁଚିତ ନିନ୍ଦିତ ସମ୍ବନ୍ଧ ହେଲା କିପରି ? ଏମାନେ କ'ଣ ବିବେକୀ, ବୁଦ୍ଧିମାନ, ବିଦ୍ୱାନ ଓ ତପସ୍ୱୀ ନୁହନ୍ତି ?

ସେଥିପାଇଁ ଶାସ୍ତ୍ର ଆମକୁ ସାବଧାନ କରିଥାନ୍ତି ନିଜର ମା' ଭଉଣୀ, କନ୍ୟାଙ୍କ ସହିତ ମଧ୍ୟ ଏକାନ୍ତ ବାସ ଅନୁଚିତ । ମାୟାଧୀନ ଜୀବର ଇନ୍ଦ୍ରିୟ ସମୂହଙ୍କର (ଗ୍ରାମୋ) ଶକ୍ତି ପାଖରେ ମନର ଠକାମି, ବୁଦ୍ଧିର ବିପର୍ଯ୍ୟୟ, ବିବେକର ଅପକ୍ଷୟ ସବୁ ସମ୍ଭବ ।

ପ୍ରଶ୍ନ-୮୭.ନିଜ ଉଦାହରଣ ଦେଇ ରାଜା ଯଯାତି କହିଲେ, ଦେବଯାନୀଙ୍କୁ ହଜାର ବର୍ଷ ଉଧାର ଯୌବନ ଶକ୍ତି ବଳରେ କାମ ଭୋଗ କରି ମଧ୍ୟ ତାଙ୍କ କାମ ଇନ୍ଦ୍ରିୟ ଏବେ ବି ଉପଦ୍ରବ ପ୍ରବଣ । ପରିଣତ ବୟସରେ କାମ ଉପଦ୍ରବରୁ ନିଜକୁ ରକ୍ଷା କରିବାକୁ ଯଯାତି କି ପ୍ରସ୍ତାବ ରଖିଲେ ?

**ତସ୍ମାତ୍ ଏତାଂ ଅହଂ ତ୍ୟକ୍ତ୍ୱା ବ୍ରହ୍ମଣି-ଅଧ୍ୟାୟ ମାନସମ୍ ।**
**ନିର୍ଦ୍ୱନ୍ଦ୍ୱୋ ନିରହଂକାରଃ ଚରିଷ୍ୟାମି ମୃଗୈଃ ସହ ॥୧୯॥**

ଉ.କହିଲେ, 'ମୁଁ ସଂସାର ତ୍ୟାଗ କରି ବଣକୁ ଯିବି । ହୃଦୟରେ ନାରାୟଣ ଧ୍ୟାନ କରି ହରିଭଜନରେ ଜୀବନ କଟାଇବି । ସୁଖ-ଦୁଃଖ,ଶତ୍ରୁ-ମିତ୍ର, ଭଲ-ମନ୍ଦରେ ସମତା ରକ୍ଷା କରି ଅହଂତା ମମତା ଶୂନ୍ୟ ହୋଇ ବଣ ପଶୁ ମାନଙ୍କ ସହିତ କ୍ରୀଡ଼ା କରିବାରେ ମନୋଯୋଗ କରିବି । ସେଇ ମୋର ସଧାନା ।'

ପ୍ରଶ୍ନ-୮୮. ରାଜା ଯଯାତିଙ୍କ ମତରେ ସଂସାରରେ ଅସଲି ବିଦ୍ୱାନ୍ ଓ ଆତ୍ମଦର୍ଶୀ ପୁରୁଷ କିଏ ?

**ଦୃଷ୍ଟଂ ଶ୍ରୁତଂ ଅସତ୍ ବୁଦ୍ଧ୍ୱା ନ-ଅନୁଧ୍ୟାୟେତ୍ ନ ସଂବିଶେତ୍ ।**
**ସଂସୃତିଂଚ ଆତ୍ମନାଶଂଚ ତତ୍ର ବିଦ୍ୱାନ୍ ସ ଆତ୍ମଦୃକ୍ ॥୨୦॥**

ଉ.ଏ ଜୀବନରେ ଭୋଗୁଥିବାର ବିଷୟ ସୁଖ (ଦୃଷ୍ଟଂ) ପରକାଳରେ ସ୍ୱର୍ଗରେ ବିଷୟ ସୁଖ ଭୋଗ କରିବା ଆଶା (ଶ୍ରୁତଂ) ଦୁଇ କଥା କ୍ଷଣ ଭଙ୍ଗୁର (ଅସତ୍) । ସୁତରାଂ ସେମାନଙ୍କର ଚିନ୍ତନ ଓ ଭୋଗ ବିମୁଖତା ବୁଝିପାରି ସେଥିରୁ ଦୂରେଇ ରହିବା ଲୋକ ବାସ୍ତବରେ ବିଦ୍ୱାନ ଓ ଆତ୍ମଜ୍ଞାନୀ ।

ପ୍ରଶ୍ନ-୮୯. ବିଷୟ ଭୋଗ ଇଚ୍ଛା ସମୂଳେ ତ୍ୟାଗ ନ କଲେ ଜନ୍ମମରଣ ଚକ୍ରରେ ଘୂର୍ଣ୍ଣନ (ସଂସୃତି) ଓ ତ୍ରିତାପ ଦୁଃଖ ଭୋଗ (ଆତ୍ମନାଶ)ରୁ ଜୀବକୁ ରକ୍ଷାମିଳେନା । ଏହା ନିଶ୍ଚୟ କରି ଯଯାତି ନିଜ ପୁତ୍ରକୁ ଉଧାର ଯୌବନ ଫେରାଇ ଦେଇ ପୁଣି ଜରାବସ୍ଥା ସ୍ୱୀକାର କରିନେଲେ । ପୁରୁଙ୍କୁ ଚକ୍ରବର୍ତ୍ତୀ ସମ୍ରାଟ କରି ଅନ୍ୟ ପୁତ୍ର ମାନଙ୍କୁ ତାଙ୍କ ଅଧୀନସ୍ଥ ରାଜା କରି ବାନପ୍ରସ୍ଥାଶ୍ରମ ଆଦରି ନେଲେ । ବାନପ୍ରସ୍ଥ ଆଶ୍ରମ ଶେଷରେ ରାଜା ଯଯାତି କ'ଣ ସଂସାର ବନ୍ଧନରୁ ମୁକ୍ତ ହୋଇପାରିଲେ ?

**ଆସେବିତଂ ବର୍ଷ ପୂଗାନ୍ ଷଟ୍ ବର୍ଗଂ ବିଷୟେଷୁ ସଃ ।**
**କ୍ଷଣେନ ମୁମୁଚେ ନୀଡ଼ଂ ଜାତ ପକ୍ଷ ଇବ ଦ୍ୱିଜଃ ॥୨୪॥**

ଉ. ଅନେକ ବର୍ଷ ଧରି (ବର୍ଷ ପୂଗାନ୍ ) ଅଶେଷ କାମ ଭୋଗ କରିଥିବାରୁ ଯଯାତିଙ୍କର ପରାବୈରାଗ୍ୟ ଉତ୍ପନ୍ନ ହୋଇଥିଲା । ତାହା ଆଦୌ ଶ୍ମଶାନ ବୈରାଗ୍ୟ ବା ଫଲ୍‌ଗୁ ବୈରାଗ୍ୟ ନ ଥିଲା । ଡ଼ିମ୍ବରୁ ଚଢ଼େଇଟିଏ (ଦ୍ୱିଜଃ) ଜନ୍ମ ହୋଇ ପକ୍ଷ କଅଁଳିବା ପରେ (ଜାତ ପକ୍ଷ) ସ୍ୱତଃ ସେ ମା' ବସା ଛାଡ଼ି ପଳାଇବା ଭଳି ରାଜା ଯଯାତି ସକଳ ସଂସାର ଭୋଗ ଆସକ୍ତି ତ୍ୟାଗ କରି ଦିବ୍ୟ ଲୋକ ଯାତ୍ରାକଲେ । ଦୁଇ ପତ୍ନୀ ମଧ ତାଙ୍କ ପଦାଙ୍କ ଅନୁସରଣ କରି ସଂସାର ବନ୍ଧନରୁ ମୁକ୍ତ ହୋଇପାରିଥିଲେ । ରାଜା ପୁରୂରବାଙ୍କ ଅନ୍ତେ ସେହି ପୁରୁବଂଶରେ ବା ଚନ୍ଦ୍ରବଂଶରେ ଜନ୍ମିତ ରାଜା ଦୁଷ୍ୟନ୍ତ,ଭରତ ଓ ଋଷିଭରଦ୍ୱାଜ ମଧ ଜନ୍ମ ନେଇ ବଂଶର ଗୌରବ ବୃଦ୍ଧି କରିଥିଲେ ।

# ଅଥ ବିଂଶ ଅଧ୍ୟାୟଃ

## (ପୁରୁ ବଂଶରେ ଜନ୍ମିତ ଦୁଷ୍ୟନ୍ତ, ଭରତ ଓ ଭରଦ୍ୱାଜଙ୍କ ଚରିତ)

ପ୍ରଶ୍ନ-୯୦.ଶଳାଙ୍କ ଗର୍ଭରେ ଚନ୍ଦ୍ରପୁତ୍ର ବୁଧଙ୍କ ବଂଶ ୀାଗକୁ ବଢ଼ିଲା ପୁରୂରବାଙ୍କ ଠାରୁ । ସମସ୍ତ ବଂଶଧର ତ କ୍ଷତ୍ରିୟ ହେବା କଥା । କ୍ଷତ୍ରିୟ ବଂଶରେ ବ୍ରାହ୍ମଣ ଭରଦ୍ୱାଜଙ୍କର ପୁଣି ଜନ୍ମ ହେଲା କିପରି ?

ଶ୍ରୀବାଦରାୟଣିଃ ଉବାଚ

**ପୂରୋଃ ବଂଶଂ ପ୍ରବକ୍ଷ୍ୟାମି ଯତ୍ର ଜାତୋଽସି ଭାରତ ।**
**ଯତ୍ର ରାଜର୍ଷୟୋ ବଂଶ୍ୟା ବ୍ରହ୍ମବଂଶ୍ୟାଃଚ ଜଜ୍ଞିରେ ॥୧॥**

ଉ. ଶୁକଦେବ ପରମ ହଂସ କହିଲେ, 'ହେ' ପରୀକ୍ଷିତ (ଭାରତ) ! ତୁମେ ପ୍ରଖ୍ୟାତ ଚନ୍ଦ୍ର ବଂଶରେ ଜନ୍ମ ହୋଇଛ । ସେଇ ବଂଶରେ ଅନକେ କ୍ଷତ୍ରିୟ ରାଜା ସ୍ୱ ସାଧନା ବଳରେ ରାଜା ହୋଇ ମଧ ଋଷି ହୋଇଗଲେ । ଋଷି ମାନେ ସଂସ୍କାର ବା ସ୍ୱଭାବରେ ବ୍ରାହ୍ମଣ ଅଟନ୍ତି । ଭରଦ୍ୱାଜ ଆଦି ଅନେକ ବ୍ରାହ୍ମଣ ବଂଶ ସେଥିରୁ ଉତ୍ପନ୍ନ (ଜଜ୍ଞିରେ) ହୋଇପାରିଲା । ରାଜା ପୂରୁ ସେହି ପୁରୂରବା ବଂଶଜ ।'

ପ୍ରଶ୍ନ-୯୧. ପୂରୁବଂଶରେ ରୈଭ୍ୟଙ୍କ ପୁତ୍ରଙ୍କ ନାମ ଦୁଷ୍ୟନ୍ତ । ଋଷି ବିଶ୍ୱାମିତ୍ର ଓ ଅପ୍‌ସରା ମେନକାଙ୍କର କନ୍ୟା ଶକୁନ୍ତଳା କଣ୍ୱ ମୁନିକଂ ଆଶ୍ରମରେ ଲାଳିତ ପାଳିତ ହୋଇଥିଲେ । ଦୁଷ୍ୟନ୍ତଙ୍କ ସହିତ ଶକୁନ୍ତଳାଙ୍କ ମିଳନ ସମ୍ଭବ ହେଲା କିପରି ?

**ଦୁଷ୍ୟନ୍ତୋ ମୃଗୟାଂ ଯାତଃ କଣ୍ୱ-ଆଶ୍ରମ ପଦଂ ଗତଃ ।**
**ତତ୍ର-ଆସୀନାଂ ସ୍ୱପ୍ରଭୟା ମଣ୍ଡୟନ୍ତୀଂ ରମାଂ ଇବ ॥୮॥**

ଉ.ଏକଦା ରାଜା ଦୁଷ୍ୟନ୍ତ ସୈନ୍ୟ ସାମନ୍ତଙ୍କ ଧରି ମୃଗୟାରେ ଯାଇ ଅକସ୍ମାତ୍ ପହଞ୍ଚିଗଲେ କଣ୍ୱ ଋଷିଙ୍କ ଆଶ୍ରମରେ । ଦୁଷ୍ୟନ୍ତ ଦେଖିଲେ ଆଶ୍ରମର ଶୋଭା ବୃଦ୍ଧି କରୁଥିବା ଏଇ ଦେବକନ୍ୟାଙ୍କୁ । ତାଙ୍କର ମନେ ହେଲା-ସତେ ଯେପରି ବୈକୁଣ୍ଠ ଲୋକରେ ମହାଲକ୍ଷ୍ମୀ (ରମାଂ ଇବ) ବିରାଜମାନା ହୋଇଛନ୍ତି ।

ମେନକା କନ୍ୟା ଶକୁନ୍ତଳାଙ୍କ ରୂପ ସୌନ୍ଦର୍ଯ୍ୟରେ ମନ୍ତ୍ର ମୁଗ୍ଧ ଭଳି ଆକର୍ଷିତ ହୋଇଗଲେ ଦୁଷ୍ୟନ୍ତ । ପରିଚୟ ପଚାରି ଜାଣିଲେ ସେ ବିଶ୍ୱାମିତ୍ର- ମେନକାଙ୍କ ପରିତ୍ୟକ୍ତା ଓ କଣ୍ୱମୁନିଙ୍କ ପାଳିତା କନ୍ୟା ଅଟନ୍ତି । ରାଜା ଭାବିଲେ ଦୁଷ୍କୁଳରୁ ମଧ ସୁକନ୍ୟାକୁ ଗ୍ରହଣ କରାଯିବା ବିଧି ଅଛି । ଆଠପ୍ରକାର ବିବାହ ମଧ୍ୟରୁ ଗାନ୍ଧର୍ବ ମତରେ ରାଜା ବିବାହ କଲେ ଶକୁନ୍ତଳାଙ୍କୁ ।

ପ୍ରଶ୍ନ ୯୨. ରାଜା କିଛିଦିନ ପରେ କଣ୍ୱ ଆଶ୍ରମରୁ ଫେରିଗଲେ ନିଜ ରାଜ୍ୟ ରାଜଧାନୀକୁ । କଥା ଦେଇଗଲେ କିଛି ଦିନ ପରେ ଶକୁନ୍ତାଳାଙ୍କୁ ନେବେ ବୋଲି । ଦୈବବଶତଃ ଦୁର୍ବାସାଙ୍କ ଶାପରେ ଶକୁନ୍ତଳାଙ୍କୁ ଭୁଲିଗଲେ ରାଜା ଦୁଷ୍ୟନ୍ତ । ସେତେବେଳେକୁ ଶକୁନ୍ତଳା ଗର୍ଭବତୀ ହୋଇଥିଲେ । ଶକୁନ୍ତଳାଙ୍କ ଗର୍ଭସ୍ଥ ଜନ୍ମିତ ପୁତ୍ର ସନ୍ତାନ ରାଜକୁମାର ରୂପେ ସ୍ୱୀକୃତି ପାଇଲେ କି ?

**କଣ୍ୱଃ କୁମାରସ୍ୟ ବନେ ଚକ୍ରେ ସମୁଚିତାଃ କ୍ରିୟାଃ ।**
**ବଦ୍‌ଧ୍ୱା ମୃଗେନ୍ଦ୍ରଂ ତରସା କ୍ରୀଡ଼ତି ସ୍ମ ସ ବାଳକଃ ॥୧୮॥**

ଉ. ଆଶ୍ରମକୁ ଫେରି କଣ୍ୱମୁନି ଆନନ୍ଦରେ ଶକୁନ୍ତଳାଙ୍କର ଗର୍ଭ ସଂସ୍କାର ଆଦି କ୍ରିୟା ସଂପନ୍ନ କଲେ । ସେ ସନ୍ତାନ ଭୂମିଷ୍ଠ ହୋଇ ନିଜ କ୍ଷାତ୍ର ତେଜରେ ବଣର ସିଂହ (ମୃଗେନ୍ଦ୍ରଂ) ଶିଶୁକୁ ବଳ ପୂର୍ବକ ଧରି ଆଣି ତା ସହିତ ଖେଳିବାରେ ଲାଗିଲେ । ।

କିଛି ଦିନ ପରେ ମୁନିଙ୍କ ଆଦେଶରେ ଶକୁନ୍ତଳା ନିଜ ପୁତ୍ର ଓ ଦୁଇଜଣ ମୁନି କୁମାରଙ୍କୁ ନେଇ ପହଞ୍ଚିଲେ ରାଜା ଦୁଷ୍ୟନ୍ତଙ୍କ ରାଜ ସଭାରେ । ରାଜା ଦୁର୍ବାସା ଅଭିଶାପ ହେତୁ ଶକୁନ୍ତଳାଙ୍କ ସହ ତାଙ୍କ ମିଳନକୁ ବିସ୍ମରଣ ହୋଇ ତାଙ୍କୁ ରାଣୀ ଭାବରେ ଗ୍ରହଣ କରିବାକୁ ଅସ୍ୱୀକାର କଲେ । 'ଧର୍ମୋରକ୍ଷତ ରକ୍ଷିତ' ନ୍ୟାୟରେ ଆକାଶବାଣୀ ହେଲା ଯେ ଏହାଙ୍କୁ ରାଜାମାତା ଓ ଏହାଙ୍କ ପୁତ୍ରକୁ ତୁମେ ରାଜକୁମାର ରୂପେ ଗ୍ରହଣ କର । ଏ ସନ୍ତାନ ଭରତ ତୁମର ଔରସ ଜାତ ଅଟେ ।'

ପ୍ରଶ୍ନ-୯୩. ଭରତଙ୍କ ବିଷୟରେ ଆକାଶବାଣୀ କେଉଁ କେଉଁ ରାଜ ଲକ୍ଷଣ କଥା କହି ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତ ସମ୍ପର୍କରେ ସୂଚନା ଦେଲେ ରାଜାଙ୍କୁ ?

**ଚକ୍ରଂ ଦକ୍ଷିଣ ହସ୍ତେଽସ୍ୟ ପଦ୍ମକୋଷୋଽସ୍ୟ ପାଦୟୋଃ ।**
**ଈଜେ ମହା-ଅଭିଷେକେଣ ସୋଽଭିଷିକ୍ତୋଽଧିରାଟ୍ ବିଭୁଃ ॥୨୪॥**

ଉ. ଶୂନ୍ୟ ବାଣୀ କହିଲେ, 'ହେ' ରାଜାନ୍ ଦେଖ ! ଏ ପୁତ୍ରର ଦକ୍ଷିଣ ହସ୍ତରେ ବିଷ୍ଣୁ ଚକ୍ର ଓ ପାଦ ତଳେ ପଦ୍ମ ଚିହ୍ନର ସଂକେତ ବିଦ୍ୟମାନ । ଏ ରାଜକୁମାର ରାଜ ଚକ୍ରବର୍ତ୍ତୀ ହୋଇ ଗଙ୍ଗା କୂଳରେ ଗୋଟିଏ ଦୁଇଟି ନୁହେଁ ପଞ୍ଚାବନଟି ଅଶ୍ୱମେଧ ଯଜ୍ଞ କରି ତୁମ କୁଳରେ ଉଜ୍ୱଳ କୀର୍ତ୍ତି ସ୍ଥାପନ କରିବ ।'

ସେଇ ଦୈବବାଣୀ ସତ୍ୟ ପ୍ରମାଣିତ ହେଲା । ଭରତ ରାଜା ହୋଇ ଆର୍ଯ୍ୟ-ଅନାର୍ଯ୍ୟ-ମ୍ଳେଚ୍ଛ ଭୂମି ସମସ୍ତ ଭାରତ ଭୂଖଣ୍ଡକୁ ଏକ ଶାସନାଧୀନ କରିପାରିଥିଲେ । ସତେଇଶ ହଜାର ବର୍ଷ ଶାସନ-କଲେ ସେ ଭାରତ ବର୍ଷକୁ ।

ରାଜା ଭରତ ଜଣେ ଉପଯୁକ୍ତ ସନ୍ତାନ ହସ୍ତରେ ରାଜ୍ୟ ଭାର ଦେବାକୁ ଚାହୁଁଥିଲେ । ସେ ତାଙ୍କ ଜନ୍ମିତ ସନ୍ତାନ ମାନଙ୍କ ମଧ୍ୟରୁ କାହାକୁ ଉପଯୁକ୍ତ ବୋଲି ନ ଭାବି ମରୁତ୍‌ଗଣଙ୍କୁ ସୁସନ୍ତାନ ପ୍ରାପ୍ତି ଲାଗି ପୂଜନ କରି ପ୍ରସନ୍ନ କଲେ ।

ଦେବଗୁରୁ ବୃହସ୍ପତି ଓ ତାଙ୍କ ଗର୍ଭବତୀ ଭାତୃପତ୍ନୀଙ୍କର ବଳପୂର୍ବକ ସମ୍ଭୋଗରୁ ଉତ୍ପନ୍ନ ହେଲେ ଜଣେ ବ୍ରାହ୍ମଣ ସଂସ୍କାର ଯୁକ୍ତ ସନ୍ତାନ । ପିତା-ମାତା ଉଭୟେ ନିଜ ନିଜ ପଦମର୍ଯ୍ୟାଦା ରକ୍ଷା ନିମିତ୍ତି ଜନ୍ମିତ ସନ୍ତାନର ପାଳନ ପୋଷଣ କରିବାରେ ଅରାଜି ହୋଇଥିଲେ । ମରୁତଗଣ ସେ ସନ୍ତାନକୁ ପାଳନ ପୋଷଣ କରୁଥିଲେ । ସେହି ବ୍ରାହ୍ମଣ ସନ୍ତାନ ଭରଦ୍ୱାଜଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ ରାଜା ଭରତ । ଏହିପରି ଭରତଙ୍କ ବଂଶ ଆଗକୁ ବଢ଼ି ଚାଲିଲା । ଭରଦ୍ୱାଜଙ୍କ ଦ୍ୱାରା ଭରତ ବଂଶ ରକ୍ଷା ପାଇଗଲା । ପରବର୍ତ୍ତୀ ସମୟରେ ସେଇ ବଂଶରେ ସ୍ୱନାମ ଧନ୍ୟ ରାଜା ରନ୍ତିଦେବଙ୍କ ଜନ୍ମ ହେଲା ।

# ଅଥ ଏକବିଂଶ ଅଧ୍ୟାୟଃ

## (ଭରତ ବଂଶଜ ରାଜା ରନ୍ତିଦେବଙ୍କ ଚରିତ)

### ଶ୍ରୀଶୁକ ଉବାଚ

ପ୍ରଶ୍ନ-୯୪.ଭରଦ୍ୱାଜଙ୍କ ପୁତ୍ର ପୌତ୍ରାଦି କ୍ରମେ ପ୍ରକଟ ହେଲେ ଭକ୍ତ ରନ୍ତିଦେବ । ରନ୍ତିଦେବଙ୍କ ଭଗବତ୍ ଭକ୍ତି ବିଷୟ ସ୍ୱର୍ଗର ଦେବସଭାରେ ମଧ୍ୟ ପ୍ରଶଂସିତ ହେଉଥାଏ । ରନ୍ତିଦେବ ରାଜ୍ୟ, ରାଜ ସିଂହାସନ,ଧନ ସଂପତ୍ତି ସମସ୍ତ ଦାନ କରି ଭିକ୍ଷାବୃତ୍ତି ଆଦରି ନେଲେ । ସେ ସର୍ବସ୍ୱ ଦାନ କରି କୁଟୁମ୍ବ ପୋଷଣ କରୁଥିଲେ କିପରି ?

**ବିୟତ୍ ବିତ୍ତସ୍ୟ ଦଦତୋ ଲବ୍ଧଂ ଲବ୍ଧଂ ବୁଭୁକ୍ଷତଃ ।**
**ନିଷ୍କିଞ୍ଚନସ୍ୟ ଧୀରସ୍ୟ ସକୁଟୁମ୍ବସ୍ୟ ସୀଦତଃ ॥୩॥**

ଉ.ପ୍ରାରବ୍ଧ ଲବ୍ଧ ଚିଜକୁ ମଧ୍ୟ ରାଜା ଅନ୍ୟକୁ ଦାନ କରି କରି ଅକିଂଚନ ହେଲେ । ଅନ୍ୟକୁ ଭୋଜନ କରାଇ ନିଜେ ସକୁଟୁମ୍ବ ଉପାସ ରହିବାକୁ ଭଗବତ୍ ପ୍ରସନ୍ନତା ନିମିତ୍ତ ସାଧନା ମନେ କଲେ । ନିଜର, ନିଜ କୁଟୁମ୍ବର କ୍ଷୁଧା-ତୃଷା କଷ୍ଟ (ବୁଭୁକ୍ଷତଃ) ଦୁଃଖକୁ ପରମ ଆନନ୍ଦ ଭାବିଲେ ରନ୍ତିଦେବ ।

ପ୍ରଶ୍ନ-୯୫. ଏକଦା ଅଠଚାଳିଶ ଦିନ କ୍ଷୁଧାରେ ରହିବା ପରେ ମିଳିଥିବା କିଛି ଖାଦ୍ୟକୁ ସେ ନିଜେ କୁଟୁମ୍ବ ମଧ୍ୟରେ ବାଣ୍ଟିଭୋଜନ ନ କରି ଅନ୍ୟକୁ କାହିଁକି ଭୋଜନ କରାଇଥିଲେ ?

**ତସ୍ମୈ ସଂବ୍ୟଭଜନ୍ ସୋଽନ୍ନଂ ଆଦୃତ୍ୟ ଶ୍ରଦ୍ଧୟା-ଅନ୍ୱିତଃ ।**
**ହରିଂ ସର୍ବତ୍ର ସଂପଶ୍ୟନ୍ ସ ଭୁକ୍ତ୍ୱା ପ୍ରଯଯୌ ଦ୍ୱିଜଃ ।।୬।।**

ଉ.ଅବଶ୍ୟ ସେ ସେହି ଖାଦ୍ୟକୁ ସକୁଟୁମ୍ବ ଭୋଜନ କରିବାକୁ ଯାଉଥିଲେ କିନ୍ତୁ ବାହାରେ ଶୁଣିଲେ ଜଣେ କ୍ଷୁଧାର୍ତ୍ତ ବ୍ରାହ୍ମଣଙ୍କ କରୁଣ ସ୍ୱର । ତାହା ପୁଣି ତାଙ୍କର କ୍ଷୁଧା ନିବାରଣ ନିମିତ୍ତ । ଶାସ୍ତ୍ର ବାକ୍ୟାନୁସାରେ ଅତିଥି ହିଁ ମନୁଷ୍ୟ ଲାଗି ଭଗବାନଙ୍କ ଚଳନ୍ତି ବିଗ୍ରହ । ସୁତରାଂ ରାଜା ତାଙ୍କ ଭାଗ ଖାଦ୍ୟକୁ ଅତିଥି ସେବାରେ ଲଗାଇ ଦେଲେ ଶ୍ରୀହରିଙ୍କୁ ପ୍ରସନ୍ନ କରିବା ଲକ୍ଷ୍ୟରେ ।

ପରେ ପରେ ପହଞ୍ଚିଲେ ଜଣେ ଶୂଦ୍ର ଓ ଜଣେ ଚଣ୍ଡାଳ ସହିତ ଚାରି କୁକୁର । ସମସ୍ତେ ପୁଣି ଅତ୍ୟନ୍ତ କ୍ଷୁଧା ପୀଡ଼ିତ । ରନ୍ତିଦେବ ଚାରି କୁକୁରଙ୍କ ସହିତ କାହାକୁ ହେଲେ ନିରାଶ କଲେନି ।  ନିଜେ ଉପାସ ରହି କୁଟୁମ୍ବଙ୍କୁ ଉପାସ ରଖି ସବୁ ଅନ୍ନ ଅତିଥିଙ୍କୁ ଦେଇଦେଲେ । ଅତିଥି ସେବା ସୁଯୋଗ ଦେଇଥିବାରୁ ସେ ମନେ ମନେ ଅଶେଷ ଧନ୍ୟବାଦ ଦେଲେ ପରମେଶ୍ୱରଙ୍କୁ ।

ପ୍ରଶ୍ନ-୯୬. ଅଠଚାଳିଶ ଦିନ ଉପବାସ ପରେ ପ୍ରାପ୍ତ ସକଳ ଖାଦ୍ୟ ପାନୀୟ ଦ୍ୱାରା ଅତିଥି ସେବା କରି  ସାରି ରନ୍ତିଦେବ ମନେ ମନେ କ'ଣ ଚିନ୍ତା କରୁଥିଲେ ?

**ନ କାମୟେଽହଂ ଗତିଂ ଈଶ୍ୱରାତ୍ ପରାଂ**
**ଅଷ୍ଟରଦ୍ଧି ଯୁକ୍ତାଂ ଅପୁନର୍ଭବଂ ବା ।**
**ଆର୍ତ୍ତି ପ୍ରପଦ୍ୟେଽଖିଳ ଦେହ ଭାଜାଂ**
**ଅନ୍ତସ୍ଥିତୋ ଯେନ ଭବନ୍ତି-ଅଦୁଃଖାଃ ।।୧୨।।**

ଉ ରନ୍ତିଦେବ ଜାଣି ପାରିଥିଲେ ଯେ-ସଂସାରର ସକଳ ଜୀବ ସୁଖୀ ହେବାକୁ ଚାହାନ୍ତି । କେହି ଜଣେ ହେଲେ ଦୁଃଖ ଭୋଗ କରିବାକୁ ପ୍ରସ୍ତୁତ ନୁହନ୍ତି । ସେ ଭାବୁଥିଲେ-ଭଗବାନ ସକଳ ଜୀବଙ୍କ ଅନ୍ତଃକରଣରେ ତାଙ୍କୁ ସ୍ଥାନ ଦେଲେ  ସେ ନିଜେ ସେମାନଙ୍କର ସକଳ ଦୁଃଖ ଅଂଶ ତକ ଭୋଗ କରନ୍ତେ । ଜୀବମାନେ ସୁଖୀ ରହିପାରନ୍ତେ ସଦା ସର୍ବଦା । ସେଥି ନିମିତ୍ତ ରନ୍ତିଦେବ ପାଞ୍ଚ ପ୍ରକାର ମୁକ୍ତି, ଅଷ୍ଟସିଦ୍ଧି ଓ ସ୍ୱର୍ଗ ସୁଖ ଭୋଗ ଆଦି କାମନାଠାରୁ ଦୂରେଇ ରଖୁଥିଲେ ନିଜକୁ ।

ପ୍ରଶ୍ନ-୯୭. ରନ୍ତିଦେବଙ୍କ ଭଳି ଆଲୌକିକ ଭକ୍ତଙ୍କୁ ଭଗବାନଙ୍କ ମାୟା କ୍ଷୁଧା-ତୃଷା ଭଳି ଆଉ କେଉଁ କେଉଁ ଦୁଃଖ-ପୀଡ଼ା ଆଦିରେ ସନ୍ତାପିତ କରୁଥିଲେ ?

**ଈଶ୍ୱର-ଅଲମ୍ବନଂ ଚିତ୍ତଂ କୁର୍ବତୋଽନନ୍ୟ ରାଧସଃ ।**
**ମାୟା ଗୁଣମୟୀ ରାଜନ୍ ସ୍ୱପ୍ନବତ୍ ପ୍ରତ୍ୟଲୀୟତ୍ ॥୧୭॥**

ଉ.ରନ୍ତିଦେବ ମାୟାଙ୍କର ସତ୍ୱ-ରଜ-ତମୋ ତିନିଗୁଣରୁ ଉର୍ଦ୍ଧ୍ୱରେ ରହି ପରମାତ୍ମାଙ୍କର ଅନନ୍ୟ ଆରାଧନା କରୁଥିଲେ । ମାୟା ତାଙ୍କ ପାଖ ମାଡ଼ିବେ କୁଆଡ୍ରୁ ! ବରଂ ମୁଣ୍ଡରେ ଓଢଣା ଟାଣି ତାଙ୍କୁ ନମସ୍କାର କରି ଦୂରକୁ ପଳାୟନ କରି ଥିଲେ । ରନ୍ତିଦେବ କାଳ କାଳ ପାଇଁ ଜୀବନ୍ମୁକ୍ତ ଭକ୍ତଗଣଙ୍କର ମହିମା ଗାନ କରିଗଲେ ।

ପ୍ରଶ୍ନ-୯୮.ଏହି ବଂଶରେ ମୁଦ୍‌ଗଳଙ୍କ ଔରସରେ ଜନ୍ମହେଲେ କନ୍ୟା ଅହଲ୍ୟା । ଅହଲ୍ୟା ବିବାହ କଲେ ଗୌତମ ଋଷିଙ୍କୁ । ଦୁହିଁଙ୍କ ଔରସରେ ଜନ୍ମନେଲେ ମୁନି ଶତାନନ୍ଦ । ଏହି ଶତାନନ୍ଦଙ୍କ ପୁତ୍ର ଋଷି ଶରଦ୍ୱାନ । ଶରଦ୍ୱାନଙ୍କ ଅପ୍‌ସରା ଉର୍ବଶୀଙ୍କ ସହ ଭେଟ ହେଲା । ସେମାନଙ୍କ ବିନା ମିଳନରେ ମଧ୍ୟ ଶରଦ୍ୱାନଙ୍କ ରେତ ସ୍ଖଳନ ହେଲା । ଋଷିଙ୍କ ଅମୋଘ ରେତ ଘାସରେ ପଡ଼ିବାରୁ ଦୁଇ ଭଗ୍ୟବାନ ସନ୍ତାନ ଜାତ ହେଲେ ଯାହାଙ୍କର ନାମ କୃପ ଓ କୃପୀ । କୁରୁବଂଶୀ ରାଜା ଶାନ୍ତନୁ ମହାରାଜ ଏ ଦୁହିଁଙ୍କୁ କାହିଁକି କିପରି ଆଣି ପାଳନ ପୋଷଣ କରିଥିଲେ ?

**ତଦ୍ ଦୃଷ୍ଟ୍ୱା କୃପୟା-ଅଗୃହ୍‌ଣାତ୍ ଶାନ୍ତନୁଃ ମୃଗୟାଂ ଚରନ୍ ।**
**କୃପଃ କୁମାରଃ କନ୍ୟା ଚ ଦ୍ରୋଣ ପତ୍ନୀ ଅଭବତ୍ କୃପୀ ॥୩୬॥**

ଉ. ମହାରାଜା ଶାନ୍ତନୁ ସେତେବେଳେ ଅପୁତ୍ରିକ ଥିଲେ । ସନ୍ତାନ ବତ୍ସଳ ଶାନ୍ତନୁ ମୃଗୟାରେ ବୁଲୁ ବୁଲୁ, ସେମାନଙ୍କୁ ପାଇଲେ ଓ ରାଜବାଟୀକୁ ଆଣି ସେ ଦୁହିଁଙ୍କର ପାଳନ ପୋଷଣ କରିଥିଲେ । ସେଇ ପୁତ୍ର ସନ୍ତାନ ହେଲେ କୁରୁକୁଳର ବୈଦିକ ଗୁରୁ ଆଚାର୍ଯ୍ୟ କୃପ ଓ କନ୍ୟା ସନ୍ତାନ କୃପୀ ହେଲେ କୌରବ ମାନଙ୍କର ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ ।

# ଅଥ ଦ୍ୱାବିଂଶ ଅଧ୍ୟାୟଃ

## (ପାଞ୍ଚାଳ,କୌରବ ଓ ମଗଧ ବଂଶୀୟ ରାଜାଙ୍କ ଚରିତ)

ଶ୍ରୀଶୁକ ଉବାଚ

ପ୍ରଶ୍ନ-୯୯. ଚନ୍ଦ୍ରବଂଶରେ ବୃହଦ୍ରଥ ନାମରେ ଜଣେ ରାଜା ହୋଇଥିଲେ । ଯାହାଙ୍କର ପୁତ୍ର ଜରାସନ୍ଧ ମଗଧର ରାଜା ହେଲେ । ପୁଣି ସେହି ବଂଶରେ ଅଜମୀଢ଼, ସମ୍ବରଣ ଓ କୁରୁ ଇତ୍ୟାଦି ସୁପୁତ୍ର ଜନ୍ମ ହେଲେ । କୁରୁଙ୍କ ଠାରୁ କୌରବ ବଂଶ ବଢ଼ି ଚାଲିଲା । ଏହି ବଂଶରେ ଶାନ୍ତନୁ ରାଜା ହେଲେ ଯାହାଙ୍କର ଦୁଇ ପୁତ୍ର ଚିତ୍ରାଙ୍ଗଦ ଓ ବିଚିତ୍ର ବୀର୍ଯ୍ୟ ଜନ୍ମନେଲେ । ଚିତ୍ରାଙ୍ଗଦ ବାଳକ ଅବସ୍ଥାରେ ମୃତ୍ୟୁମୁଖରେ ପଡ଼ିଲେ । ବିଚିତ୍ର ବୀର୍ଯ୍ୟଙ୍କର ଦୁଇ ରାଣୀ ଅମ୍ବିକା ଓ ଅମ୍ବାଳିକା । ବିଚିତ୍ର ବୀର୍ଯ୍ୟ ମଧ୍ୟ ଅକାଳରେ ମୃତ୍ୟୁ ବରଣ କଲେ । ବଂଶ ରକ୍ଷା ଲାଗି ବ୍ୟାସମୁନି ନିଜ ମାତା ସତ୍ୟବତୀଙ୍କ ଆଦେଶରେ ଯୋଗ ବଳରେ ଦୁଇ ରାଣୀଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପଣ୍ଡୁଙ୍କୁ ଜନ୍ମ ଦେଲେ । ପୁଣି ସେମାନଙ୍କ ଦାସୀ କ୍ଷେତ୍ରରେ ବିଦୁର ନାମକ ପୁତ୍ରକୁ ଉତ୍ପନ୍ନ କଲେ । ମହାଭାଗବତ ଭୀଷ୍ମଦେବ କି ଭଳି ଶାନ୍ତନୁଙ୍କ ପୁତ୍ର ହେଲେ ?

**ଶଲଃଚ ଶାନ୍ତନୋଃ ଆସୀତ୍ ଗଙ୍ଗାୟାଂ ଭୀଷ୍ମ ଆତ୍ମବାନ୍ ।**
**ସର୍ବ ଧର୍ମବିଦାଂ ଶ୍ରେଷ୍ଠୋ ମହାଭାଗବତଃ କବିଃ ।।୧୯।।**

ଉ.ଶାନ୍ତନୁ ମହାରାଜାଙ୍କର ଦ୍ୱିତୀୟ ପତ୍ନୀ ଗଙ୍ଗା ଦେବୀଙ୍କ ଗର୍ଭରୁ ସକଳ ଧର୍ମବେତ୍ତା ମହାଜ୍ଞାନୀ ମହାଭକ୍ତ ଭୀଷ୍ମ ଦେବ ପ୍ରକଟ ହୋଇଥିଲେ । ପିତାଙ୍କୁ ଦେଇଥିବା ବଚନ ପାଳନ କରି ଆଜୀବନ ବ୍ରହ୍ମଚାରୀ ରହିଥିଲେ ଓ ଇଚ୍ଛାମୃତ୍ୟୁ ବର ପ୍ରାପ୍ତ ହୋଇଥିଲେ ମାତା ଗଙ୍ଗାଙ୍କ ଠାରୁ ।

ପ୍ରଶ୍ନ-୧୦୦. ଗାନ୍ଧାରୀଙ୍କ ଗର୍ଭରୁ ରାଜା ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନ ଦୁଃଶାସନ ଆଦି ଶହେ ପୁତ୍ର ଓ ଦୁଃଶୀଳା ନାମରେ ଏକ କନ୍ୟା ଜନ୍ମ ହେଲେ । କୁନ୍ତୀଙ୍କ ଗର୍ଭରୁ ପଣ୍ଡୁଙ୍କଠାରୁ ଯୁଧିଷ୍ଠିର, ଭୀମ, ଅର୍ଜୁନ ତିନପୁତ୍ର ଜନ୍ମନେଲେ । ବିବାହ ପୂର୍ବରୁ କୁନ୍ତୀଙ୍କର କାନୀନ ପୁତ୍ର କର୍ଣ୍ଣ ଜାତ ହୋଇଥିଲେ । ପଣ୍ଡୁଙ୍କର ଦ୍ୱିତୀୟା ପତ୍ନୀ ମାଦ୍ରୀଙ୍କଠାରୁ ନକୁଳ ଓ ସହଦେବ ଜାତ ହୋଇଥିଲେ । ଶେଷରେ ପାଣ୍ଡବ ବଂଶରେ ପରୀକ୍ଷିତଙ୍କ ପ୍ରାକଟ୍ୟ ବିଷୟରେ ଶୁକଦେବ ପରମହଂସ କ'ଣ ଶୁଣାଇଲେ ?

**ତବ ତାତଃ ସୁଭଦ୍ରାୟାଂ ଅଭିମନ୍ୟୁଃ ଅଜାୟତ ।**
**ସର୍ବ-ଅତିରଥଜିତ୍ ବୀର ଉତ୍ତରାୟାଂ ତତୋ ଭବାନ୍ ।।୩୩।।**

ଉ. ଶୁକଦେବ କହିଲେ,'ଦେଖ ପରୀକ୍ଷିତ ! ତୁମର ପିତା ଅଭିମନ୍ୟୁ ଅର୍ଜୁନଙ୍କ ଔରସରେ ଶ୍ରୀକୃଷ୍ଣଙ୍କ ଭଗିନୀ ସୁଭଦ୍ରାଙ୍କ ଗର୍ଭରେ ଜନ୍ମ ନେଇଥିଲେ । ସେହି ଅଭିମନ୍ୟୁଙ୍କ ପତ୍ନୀ ବିରାଟ ରାଜ୍ୟର କନ୍ୟା ଉତ୍ତରାଙ୍କ ଗର୍ଭରୁ ତୁମର ଜନ୍ମ । ସେହି ଚନ୍ଦ୍ରବଂଶର ଅନ୍ୟ ଏକ ଶାଖାରେ ରାଜା ଦ୍ରୁପଦ ଜନ୍ମ ନେଇଥିଲେ । ସେ ଯଜ୍ଞ କରି ଅଗ୍ନି କନ୍ୟା ଯାଜ୍ଞସେନୀ ଦ୍ରୌପଦୀ ଓ ପୁତ୍ର ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ନାମରେ ଦୁଇ ପୁତ୍ରଙ୍କୁ ଉତ୍ପନ୍ନ କରାଇଥିଲେ । ତାଙ୍କ ବଂଶ ପାଞ୍ଚାଳ ବଂଶ ନାମରେ ଖ୍ୟାତି ଲାଭ କରିଥିଲା ।'

# ଅଥ ୨୩ଶ ଅଧ୍ୟାୟଃ

## (ଯଦୁବଂଶୀ ଜ୍ୟାମଘଙ୍କ କୌତୁକ ଚରିତ)

### ଶ୍ରୀଶୁକ ଉବାଚ

ପ୍ରଶ୍ନ- ୧୦୧.ବିଖ୍ୟାତ ଯଦୁ ବଂଶରେ କୃତବୀର୍ଯ୍ୟଙ୍କ ପୁତ୍ର ଭାବରେ ଜନ୍ମନେଲେ କାର୍ତ୍ତବୀର୍ଯ୍ୟ ଅର୍ଜୁନ । ସେ କି ଭଳି କାହା କୃପାବଳରେ ସପ୍ତଦ୍ୱୀପା ମହିମଣ୍ଡଳର ଏକ ଛତ୍ର ଅଧିପତି ହୋଇପାରିଲେ ?

**ଅର୍ଜୁନଃ କୃତବୀର୍ଯ୍ୟସ୍ୟ ସପ୍ତଦ୍ୱୀପ-ଈଶ୍ୱରୋଽଭବତ୍ ।**
**ଦତ୍ତାତ୍ରେୟାତ୍ ହରେଃ ଅଂଶାତ୍ ପ୍ରାପ୍ତ ଯୋଗ ମହାଗୁଣଃ ।।୨୪।।**

ଉ. ଏ ଅର୍ଜୁନ କୁନ୍ତୀ ପୁତ୍ର ଅର୍ଜୁନ ନୁହନ୍ତି । ରାଜା କୃତବୀର୍ଯ୍ୟଙ୍କ ପୁତ୍ର କାର୍ତ୍ତବୀର୍ଯ୍ୟାର୍ଜୁନ ଅଟନ୍ତି । ଭଗବାନଙ୍କ ଅବତାର ଦତ୍ତାତ୍ରେୟଙ୍କୁ ଗୁରୁ ରୂପେ ସେବା କରି ତାଙ୍କଠାରୁ ଅଲୌକିକ ଯୋଗଶକ୍ତି ଓ ଯୋଗ ସିଦ୍ଧି ପ୍ରାପ୍ତ ହୋଇଥିଲେ । ଫଳତଃ ସେ ସପ୍ତଦ୍ୱୀପା ମହିମଣ୍ଡଳରେ ସର୍ବମୟ ଶାସକ ହେବାର ଗୌରବ ଲାଭ କରିଥିଲେ । ଯଜ୍ଞ-ଦାନ-ତପ-କ୍ରିୟା ଇତ୍ୟାଦିରେ ସେତେବେଳେ କେହି ତାଙ୍କ ସମକକ୍ଷ ନ ଥିଲେ ।

କାର୍ତ୍ତବୀଯ୍ୟାର୍ଜୁନଙ୍କ ବଂଶରେ ବୃଷ୍ଣିନାମରେ ଜଣେ ରାଜା ସୁଶାସନ ଲାଗି ସଂସାରରେ ବିଖ୍ୟାତ ହେଲେ । ତାଙ୍କ ନାମରେ ବୃଷ୍ଣିବଂଶର ପ୍ରଚଳନହେଲା ।

ପ୍ରଶ୍ନ-୧୦୨. ଯଦୁବଂଶରେ ବିଖ୍ୟାତ ସ୍ତ୍ରୈଣ(ନାରୀ ବଶିଭୂତ) ରାଜା ଜ୍ୟାମଘ କେଉଁ କୌତୁକ କଥା ଲାଗି ବିଖ୍ୟାତ ହେଲେ ଚନ୍ଦ୍ରବଂଶ ଇତିହାସରେ ?

**ଜ୍ୟାମଘଃ ତୁ-ଅପ୍ରଜୋଽପି ଅନ୍ୟାଂ ଭାର୍ଯ୍ୟାଂ ଶୈବ୍ୟାପତିଃ ଭୟାତ୍ ।**
**ନ-ଅବିନ୍ଦତ୍ ଶତ୍ରୁ ଭବନାତ୍ ଭୋଜ୍ୟାଂ କନ୍ୟାଂ ଅହାରଷୀତ୍ ।।୩୫।।**

ଉ.ରାଜା ଜ୍ୟାମଘ ମହାନ ଶକ୍ତିଶାଳୀ ହେଲେ ମଧ୍ୟ ନିଜ ପତ୍ନୀ ଶୈବ୍ୟାଙ୍କ ନିକଟରେ ଅତ୍ୟନ୍ତ ଶକ୍ତିହୀନ ଥିଲେ । ସେ ନିଃସନ୍ତାନ ଥିଲେ । ଥରେ ଶତ୍ରୁରାଜ୍ୟ ଜୟ କରି ଜ୍ୟାମଘ ଏକ ସୁନ୍ଦରୀ ନାରୀ ଧରି ଆଣିଲେ ବିବାହ କରିବାକୁ । ରାଣୀମହଲରେ ପହଞ୍ଚିବା କ୍ଷଣି ଶୈବ୍ୟା ଲାଲ୍ ଲାଲ୍ ଆଖି ଦେଖାଇ ପଚାରିଲେ, 'ଏ ସୁନ୍ଦରୀ ନାରୀର ପରିଚୟ କ'ଣ ? ଏ ଆଉ ମୋର ସଉତୁଣୀ ନୁହେଁ ତ !!' ରାଜା ଅତ୍ୟନ୍ତ ଡ଼ରରେ ହଠାତ୍ କହି ପକାଇଲେ ଏ ତୁମର ପୁତ୍ରବଧୂ ।'

ପ୍ରଶ୍ନ-୧୦୩. ସଉତୁଣୀ କରିବାକୁ ଆଣିଥିବା ନାରୀକୁ ପୁତ୍ରବଧୂ ବୋଲି କହିବାରୁ ରାଣୀ ଶୈବ୍ୟା ରାଜାଙ୍କୁ କ'ଣ କହି ହାସ୍ୟ ଥଟ୍ଟାରେ ଉଡ଼ାଇଦେଲେ ?

**ଅହଂ ବନ୍ଧ୍ୟା-ଅସପତ୍ନୀ ଚ ସ୍ନୁଷା ମେ ଯୁଜ୍ୟତେ କଥମ୍ ।**
**ଜନୟିଷ୍ୟସି ଯଂ ରାଜ୍ଞି ତସ୍ୟ-ଇୟଂ ଉପଯୁଜ୍ୟତେ ।।୩୭।।**

ଉ. ରାଣୀ ଶୈବ୍ୟା ହସି ହସି କହିଲେ, 'ମୁଁ ମୂଳରୁ ବନ୍ଧ୍ୟା । ମୋର ସଉତୁଣୀ କେହି ନାହାନ୍ତି । ଏପରି ସ୍ଥଳେ ପୁଅ କେଉଁଠୁ ଆସିବ ଯେ ତୁମେ ଏହାକୁ ତା ପାଇଁ ପୁତ୍ରବଧୂ କରିବ ବୋଲି ଧରି ଆଣିଛ ?'

ଅତ୍ୟନ୍ତ ଦୈନ୍ୟଯୁକ୍ତ ପରିସ୍ଥିତିରେ ପଡ଼ି ରାଜା କହି ପକାଇଲେ ଆମର ପୁଅ ହେଲେ ତାକୁ ଏହି ସୁନ୍ଦରୀ ଝିଅକୁ ବିବାହ ଦେବା । ତପ୍ରରେ ରାଜା ଅନେକ ଦିଅଁ ଦେବତା ପୂଜି ସାଧୁ ସେବା କରି ପରମାତ୍ମାକୁ ପ୍ରସନ୍ନ କରି ପୁତ୍ରଟିଏ ପ୍ରାପ୍ତ ହେଲେ ମଧ୍ୟ । ଇତିହାସ କହେ-ରାଜା ନିଜ କଥା ରକ୍ଷା କରି ସେ ଦୁହିଁଙ୍କର ବିବାହ କରାଇ ନିଜ ସ୍ତ୍ରୈଣ ସ୍ୱଭାବର ଚରମ ପରକାଷ୍ଠା ପ୍ରଦର୍ଶନ କରାଇଥିଲେ ।

ଠିକଣା ସମୟରେ ଚନ୍ଦ୍ର ବଂଶରେ ଭଗବାନ ଶ୍ରୀକୃଷ୍ଣ ପ୍ରକଟ ହୋଇ ଯାଦବ, ବୃଷ୍ଣି ବଂଶର ଗୌରବ ବୃଦ୍ଧି କରିବେ ଦେବତାମାନଙ୍କ ଦୁଃଖ ହରଣ କରି ଓ ଭକ୍ତମାନଙ୍କର ଆନନ୍ଦ ବର୍ଦ୍ଧନ କରି । ଅନ୍ୟାନ୍ୟ ବହୁତ ଅବତାରମାନଙ୍କରେ ବାକୀଥା ପଡ଼ିଥିବା ପ୍ରତିଶ୍ରୁତି ପୂରଣ କରି ନିଷ୍କାମ ପ୍ରେମର ଜୟ ପତାକା ଉଡ଼ାଇବେ ପରବର୍ତ୍ତୀ ଅଧ୍ୟାୟରେ ।

|| ଅପଣ୍ଡିତ ଦାମୋଦର ବଳୀୟାରସିଂହ ||

# ଅଥ ୨୪ଶ ଅଧ୍ୟାୟଃ

## (ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରାକଟ୍ୟ ଲାଗି ଚନ୍ଦ୍ରବଂଶରେ ମହାପ୍ରସ୍ତୁତି)

### ଶ୍ରୀଶୁକ ଉବାଚ

ପ୍ରଶ୍ନ-୧୦୪. ପବିତ୍ର ବୃଷ୍ଣି ବଂଶରେ ଶ୍ରୀକୃଷ୍ଣ ଓ ଅକ୍ରୂର ଉଭୟ ଜନ୍ମନେଇଛନ୍ତି । ଅକ୍ରୂର ପିତା ଶ୍ୱଫଳ୍କ ଓ ମାତା ଗାନ୍ଦିନୀଙ୍କର ତେର ସନ୍ତାନ ମଧ୍ୟରେ ଜ୍ୟେଷ୍ଠ ଥିଲେ । ବୃଷ୍ଣି ବଂଶରେ ଶୂରସେନ ରାଜାଙ୍କ ଦଶ ପୁତ୍ର ମଧ୍ୟରେ ବସୁଦେବ ଥିଲେ ଜ୍ୟେଷ୍ଠତମ । ବସୁଦେବଙ୍କୁ ଲୋକେ କାହିଁକି ଆନକ ଦୁନ୍ଦୁଭି ବୋଲି ଡ଼ାକୁଥିଲେ ?

**ବସୁଦେବଂ ହରେଃ ସ୍ଥାନଂ ବଦନ୍ତି-ଆନକ ଦୁନ୍ଦୁଭିମ୍ ।**
**ପୃଥା ଚ ଶ୍ରୁତ ଦେବା ଚ ଶ୍ରୁତକୀର୍ତ୍ତିଃ ଶ୍ରୁତଶ୍ରବାଃ ॥୩୦॥**

ଉ.ଶୁଦ୍ଧ ସତ୍ତ୍ୱଗୁଣ ଯୁକ୍ତ ବସୁଦେବ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରାକଟ୍ୟର ଭିତ୍ତି ସ୍ଥାପନ କଲେ । ଦେବତାମାନେ ଏ ରହସ୍ୟ ଜାଣିଥିଲେ । ସୁତରାଂ ବସୁଦେବଙ୍କ ଜନ୍ମ କାଳରେ ସେମାନେ ସ୍ୱର୍ଗ ବାଦ୍ୟ ଦୁନ୍ଦୁଭି ବଜାଇ ତାଙ୍କ ଧରା ଆଗମନଙ୍କୁ ସ୍ୱାଗତ ଜଣାଇଥିଲେ । ଏହା ଏକ ଅତ୍ୟନ୍ତ ଦୁର୍ଲ୍ଲଭ ଘଟଣା । ସେଇକଥାକୁ ସ୍ମରଣ କରାଇବା ଲାଗି ଋଷିମୁନି ମାନେ ବସୁଦେବଙ୍କୁ ଆନକ ଦୁନ୍ଦୁଭି ନାମ ଦେଇଥିଲେ ।

ବସୁଦେବଙ୍କ ପୃଥା (କୁନ୍ତୀ-କୁନ୍ତଭୋଜଙ୍କ ପାଳିତା କନ୍ୟା) ଶ୍ରୁତଦେବା, ଶ୍ରୁତକୀର୍ତ୍ତୀ ଓ ଶ୍ରୁତଶ୍ରବା ଆଦି ଚାରି ଭଉଣୀ ଥିଲେ । ଶ୍ରୁତଦେବା ବିବାହ କଲେ ବୃଦ୍ଧ ଶର୍ମାଙ୍କୁ ଯାହାଙ୍କ ପୁତ୍ର ହେଲେ ଦନ୍ତାବକ୍ର (ପୂର୍ବଜନ୍ମର ହିରଣ୍ୟାକ୍ଷ) । ଶ୍ରୁତଶ୍ରବା ବିବାହ କଲେ ଚେଦି ରାଜା ଦମ ଘୋଷଙ୍କୁ ଯାହାଙ୍କ ପୁତ୍ର ହେଲେ ଶିଶୁପାଳ (ପୂର୍ବ ଜନ୍ମର ହିରଣ୍ୟ କଶିପୁ) ।

ପ୍ରଶ୍ନ-୧୦୫. ବସୁଦେବ ଉଗ୍ରସେନଙ୍କ ସାତ କନ୍ୟା ଦେବକୀ, ପୌରବୀ, ରୋହିଣୀ, ଭଦ୍ରା, ମଦିରା, ରୋଚନା ଓ ଇଳାଙ୍କୁ ବିବାହ କରିଥିଲେ । ଦେବକୀଙ୍କ ଗର୍ଭରେ ଅଭିଶପ୍ତ ଅଷ୍ଟବସୁ ମଧ୍ୟରୁ କୀର୍ତ୍ତିମାନ, ସୁଷେଣ, ଭଦ୍ରସେନ, ଋଜୁ, ସମ୍ମର୍ଦ୍ଦନ ଓ ଭଦ୍ର ଛଅ ସନ୍ତାନ ଜନ୍ମହୋଇ କଂସ ଦ୍ୱାରା ନିହତ ହେଲେ । ସପ୍ତମ ସନ୍ତାନ ବଳରାମଜୀ ସଂକର୍ଷଣ ସପ୍ତମ ଗର୍ଭରେ ସଂଚାରିତ ହୋଇ ଯୋଗମାୟାଙ୍କ ଦ୍ୱାରା ରୋହିଣୀ ଗର୍ଭକୁ ସ୍ଥାନାନ୍ତରିତ ହୋଇ ଗୋକୁଳରେ ଜନ୍ମନେଲେ । ଦେବକୀଙ୍କର ଅଷ୍ଟମ ଗର୍ଭରୁ କିଏ ପ୍ରକଟ ହେଲେ ?

**ଅଷ୍ଟମଃ ତୁ ତୟୋଃ ଆସୀତ୍           ସ୍ୱୟଂ ଏବ ହରିଃ କିଳ ।**
**ସୁଭଦ୍ରା ଚ ମହାଭାଗା              ତବ ରାଜନ୍ ପତାମହୀ ।।୫୫।।**

ଉ.କହିଲେ,‘ହେ, ପରୀକ୍ଷିତ ! ଅଷ୍ଟମ ଗର୍ଭରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ପ୍ରକଟ ହେଲେ । ସେ ଅବତାର ପୁରୁଷ ନୁହଁନ୍ତି । ଅବତାରୀ ପୁରୁଷ ଅଟନ୍ତି ।

ଶେଷ ଗର୍ଭଜାତ କନ୍ୟା ସନ୍ତାନ ମାତା ସୁଭଦ୍ରା । ସେହି ସୁଭଦ୍ରା ତୁମର ପିତାମହୀ ମହାବୀର ଅର୍ଜୁନଙ୍କ ପତ୍ନୀ ହେବାର ସୌଭାଗ୍ୟ ଲାଭ କରିଥିଲେ ।

ପ୍ରଶ୍ନ-୧୦୬. ଧର୍ମର ଅବକ୍ଷୟ ଓ ଅଧର୍ମର ବୃଦ୍ଧି ହେଲେ ବେଳକାଳ ଉଣ୍ଡି ଭଗବାନଙ୍କର ବିଭିନ୍ନ ଅବତାର ହୁଏ ସନ୍ଥପାଳନ ଓ ଦୁଷ୍ଟ ଦଳନ ଲାଗି । ଅବତାରୀ କୃଷ୍ଣ ସ୍ୱୟଂ ଜନ୍ମ ହେବାର କାରଣ କ’ଣ ହୋଇପାରେ ?

**ନ ହି-ଅସ୍ୟ ଜନ୍ମନୋ ହେତୁଃ        କର୍ମଣୋ ବା ମହୀପତେ ।**
**ଆତ୍ମମାୟାଂ ବିନା-ଈଶସ୍ୟ           ପରସ୍ୟ ଦ୍ରଷ୍ଟୁଃ ଆତ୍ମନଃ ।।୫୭।।**

ଉ. କର୍ମଫଳ ଭୋଗ କରିବାକୁ ବ୍ରହ୍ମା ଶଙ୍କର ଆଦି ଜୀବ ଗଣଙ୍କର ଜନ୍ମ-ଜନ୍ମାନ୍ତର ଲୋକ-ଲୋକାନ୍ତରରେ ଜନ୍ମ-ମରଣ ହୁଏ । ଶ୍ରୀକୃଷ୍ଣଙ୍କର ସକାମ କର୍ମ କରିବାର ସମ୍ଭବନା ନ ଥିବାରୁ ଜନ୍ମ-ମରଣର ପ୍ରଶ୍ନ ଉଠେନା । ସେ ସକଳ ପୁରୁଷ/ ଜୀବଙ୍କ ଅନ୍ତଃକରଣ ନିବାସୀ ପରମ ପୁରୁଷ ଅଟନ୍ତି । ଯେଉଁ ମାୟା ବ୍ରହ୍ମା-ଶଙ୍କରଙ୍କୁ ନଚାଏ ଶ୍ରୀକୃଷ୍ଣ ତାକୁ ଆଙ୍ଗୁଠି ଅଗରେ ନଚାନ୍ତି । ସୁତରାଂ ତାଙ୍କର ଜନ୍ମ-କର୍ମ -ଲୀଳା ଦୁର୍ଜ୍ଞୟା ଅବୋଧ୍ୟା ମାୟାଙ୍କ ଦ୍ୱାରା ସଦା ରସହସ୍ୟାବୃତ୍ତ ରହିଥାଏ । ସେ କଥା କେବଳ ତାଙ୍କୁ ଓ ତାଙ୍କ ଭକ୍ତମାନଙ୍କୁ ଜଣା । ଭକ୍ତକୁ ଆନନ୍ଦ ଦେବାକୁ ତାଙ୍କର ଜନ୍ମ ।

ପ୍ରଶ୍ନ-୧୦୭. ଭଗବାନଙ୍କ ଏକାନ୍ତ ଶରଣାଗତ ଭକ୍ତମାନେ (ବ୍ୟାସ,ନାରଦ, ଭୀଷ୍ମ ଓ କୁନ୍ତୀ ମାତା ଆଦି) ଭଗବନାଙ୍କର ଜନ୍ମର କାରଣ କ’ଣ ହୋଇପାରେ ବୋଲି ମତବ୍ୟକ୍ତ କରନ୍ତି ?

**ଯତ୍ ମାୟା ଚେଷ୍ଟିତଂ ପୁଂସଃ        ସ୍ଥିତି-ଉତ୍ପତ୍ତି-ଅପ୍ୟୟାୟହି ।**
**ଅନୁଗ୍ରହଃ ତତ୍ ନିବୃତ୍ତେଃ           ଆତ୍ମଲାଭାୟ ଚ ଇଷ୍ୟତେ ।।୫୮।।**

ଉ. ଭଗବାନଙ୍କ ଜଗତ ଦ୍ୱିବିଧ । ଭୌତିକ ଓ ଆଧ୍ୟାତ୍ମିକ । ସେହି ଭଳି ତାଙ୍କ ମାୟା ଶକ୍ତି ମଧ୍ୟ ଦ୍ୱିବିଧ । ମହାମାୟା ଓ ଯୋଗମାୟା । ମହାମାୟା ଶକ୍ତି ଦ୍ୱାରା ସେ ଜୀବମାନଙ୍କର ଭୌତିକ ଶରୀର ସହିତ ଭୌତିକ ସଂସାରର ସୃଷ୍ଟି-ପାଳନ-ସଂହାର

କରିଥାନ୍ତି ବ୍ରହ୍ମା-ବିଷ୍ଣୁ-ଶଙ୍କରଙ୍କ ମାଧ୍ୟମରେ । ଠିକ ସେହି ଭଳି ସୃଷ୍ଟି-ପାଳନ-ସଂହାର କାର୍ଯ୍ୟର ନିବୃତ୍ତି ମଧ୍ୟ କରାନ୍ତି ତାଙ୍କ ଭକ୍ତି ସ୍ୱରୂପ ଯୋଗମାୟାଙ୍କ ସହାୟତାରେ ଜନ୍ମନେଇ ଜୀବକୁ ନିଜ ପ୍ରେମଦାନ କରିବାକୁ (ଆତ୍ମଲାଭାୟ ଚ ଈଷ୍ୟତେ) ।

ପ୍ରଶ୍ନ-୧୦୮. ସତ୍ତ୍ୱଗୁଣରେ ଦେବତା, ରଜୋଗୁଣରେ ମନୁଷ୍ୟ ଓ ତମୋ ଗୁଣରେ ଅସୁରଙ୍କୁ ନିଜ ମାୟାଶକ୍ତି ଦ୍ୱାରା ସ୍ୱ ନିୟନ୍ତ୍ରଣରେ ରଖନ୍ତି । ଦେବତାମାନେ ବେଳେବେଳେ ଅଧିକ ଅଭିମାନୀ ହୋଇଗଲେ ଆସୁରଶକ୍ତି ବୃଦ୍ଧି କରନ୍ତି । ତାଙ୍କ ଦ୍ୱାରା ଦେବତାମାନଙ୍କୁ ଗୁଳାରେ ଚଳାଇବା ବ୍ୟବସ୍ଥା କରନ୍ତି । ତଥାପି ସେହି ଅସୁରମାନେ ଭାର ସ୍ୱରୂପ ହେଲେ ମା' ଧରିତ୍ରୀ ବ୍ରହ୍ମା-ଶଙ୍କର ଆଦି ଦେବତାଙ୍କୁ ଧରି ଫେରାଦ କଗନ୍ତି ଭଗବାନ ନାରାୟଣଙ୍କ ପାଖରେ । ଭଗବାନଙ୍କ ସ୍ୱୟଂ ଅବତାର ଗ୍ରହଣ କରି ସେ ଭାର ଉତାରିବାକୁ ପଡ଼େ । ବେଳେ ବେଳେ ଭଗବାନ ଏପରି ଅଲୌକିକ ଅଚିନ୍ତ୍ୟ ଲୀଳା କରନ୍ତି ଯେ ସେ ସବୁ ରହସ୍ୟ ସ୍ୱୟଂ ବ୍ରହ୍ମା-ଶଙ୍କର-ଇନ୍ଦ୍ରାଦି ଦେବତାମାନେ ମଧ୍ୟ ବୁଝିପାରନ୍ତି ନାହିଁ । ଗତ ଦ୍ୱାପର ଯୁଗରେ ସପ୍ତମ ମନ୍ୱନ୍ତରର ଅଠେଇଶତମ ଚତୁର୍ଯୁଗରେ ବୈକୁଣ୍ଠ ବିହାରୀ ବିଷ୍ଣୁ କିମ୍ବା ମହାବୈକୁଣ୍ଠ ଅଧିପତି ମହାବିଷ୍ଣୁ ଅବତାର ଗ୍ରହଣ ନ କରି ଗୋଲକ ବିହାରୀ ସ୍ୱୟଂ ଶ୍ରୀକୃଷ୍ଣଙ୍କ ବିରଳ ଅବତାର ହେଲା କାହିଁକି ?

**କଲୌ ଜନିଷ୍ୟମାଣାନାଂ ଦୁଃଖ ଶୋକ ତମୋ ନୁଦମ୍ ।**
**ଅନୁଗ୍ରହାୟ ଭକ୍ତାନାଂ ସୁପୁଣ୍ୟଂ ବ୍ୟତନୋଦ୍ ଯଶଃ ॥୬୧॥**

ଉ. ଚଉଦ ମନ୍ୱନ୍ତର ବା ଏକ ସହସ୍ର ଚତୁର୍ଯୁଗକୁ ଏକ ବ୍ରହ୍ମଦିନ ବା କଳ୍ପ କୁହାଯାଏ । ଆମର ଏହି ବ୍ରହ୍ମାଣ୍ଡରେ ଏକ କଳ୍ପରେ ସ୍ୱୟଂ ଶ୍ରୀକୃଷ୍ଣ ଥରେ ମାତ୍ର ଆସନ୍ତି ତାଙ୍କ ଅଲୌକିକ ଲୀଳା କରିବା ନିମିତ୍ତ । ଆମର ସୌଭଗ୍ୟକୁ ତାହା ଘଟିଥିଲା ଏଇ ମାତ୍ର ଗତ ହୋଇଥିବା ଦ୍ୱାପରାନ୍ତରେ ।

ପରମ ପୁରୁଷ ଶ୍ରୀକୃଷ୍ଣ ଜାଣିଥିଲେ ତାଙ୍କ ପୂର୍ବ ଅବତାର ପରେ କଳ୍ପାନ୍ତ ସମୟ ବିତିସାରିଲାଣି । ଆଗକୁ ଘୋର କଳି କାଳ ମାଡ଼ି ଆସୁଛି । କୃତା ଦିଷ୍ଣୁ ପ୍ରଜା ରାଜନ୍ କଲୌ ଇଚ୍ଛନ୍ତି ସମ୍ଭବମ୍ । ଏହି ଏକାଦଶ ସ୍କନ୍ଧ ଭାଗବତ ବାଣୀ ଅନୁସାରେ ପୂର୍ବବର୍ତ୍ତୀ ଅନ୍ୟ ତିନି ଯୁଗ (ସତ୍ୟ,ତ୍ରେତା, ଦ୍ୱାପର)ର ଜୀବମାନେ ସାଧନା ସିନା କରିଥିଲେ । ମୋକ୍ଷ ପ୍ରାପ୍ତି ପାଇଁ ସେମାନେ ପୁଣି ଏହି କଳିଯୁଗରେ ଦେହ ଧାରଣ କରିବେ । ସେମାନଙ୍କୁ ମୋକ୍ଷ କରିବାକୁ ନାରାୟଣଙ୍କ ଭଳି ମାରଧର କଲେ ଶ୍ରୀରାମଙ୍କ ଭଳି ସୂର୍ପଣଖା ନାକ କାନ କାଟି ଦଣ୍ଡଦେଲେ ଚଳିବନି । ପ୍ରେମ ଦାନ କରିବାକୁ

ହେବ । ସୁତରାଂ ଐଶ୍ୱର୍ଯ୍ୟ ଶକ୍ତିକୁ ଆଡୁଆଳ କରି କୃପାଶକ୍ତିକୁ ଆଗୁସାର କରି ପ୍ରଥମେ ଲୀଳାପୁରୁଷୋତ୍ତମ ଶ୍ରୀକୃଷ୍ଣ ରୂପରେ ଓ ପରେ ପରେ ପ୍ରେମ ପୁରୁଷୋତ୍ତମ ଶ୍ରୀଚୈତନ୍ୟ ରୂପରେ ନିଜ ନିଜ ପାରିଷଦମାନଙ୍କ ଗହଣରେ ଆସି ଲୀଳା କରିବାକୁ ପଡ଼ିଲା ।

ସେଇ ଶ୍ରୀରାଧା -କୃଷ୍ଣ ଲୀଳା ଓ ଶ୍ରୀ ଚୈତନ୍ୟ ଲୀଳାକୁ କଳିଯୁଗୀ ତ୍ରିତାପ ସନ୍ତାପିତ ଲୋକେ କର୍ଣ୍ଣ ରନ୍ଧ୍ରରେ ଶ୍ରବଣ କରି, ମୁଖରେ କୀର୍ତ୍ତନ କରି ଓ ମନରେ ମନନ କଲେ ବିଷୟ ବାସନାରୁ ମୁକ୍ତ ହୋଇ ହରି ପ୍ରେମର ଭରପୁର ଲାଭ ଉଠାଇ ପାରିବେ ।

ନବମ ସ୍କନ୍ଧରେ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶର ଅମଳ କୀର୍ତ୍ତି ବର୍ଣ୍ଣନ କରି ସାରି ଏଣିକି ଆଗାମୀ ଦଶମ ସ୍କନ୍ଧରେ ନବେ ଅଧ୍ୟାୟରେ ସଗୁଣ-ସାକାର-ଭଗବାନ ଶ୍ରୀରାଧା-କୃଷ୍ଣଙ୍କର ଲୀଳା ଶୁଣାଇ ମୁକ୍ତିକୁ ହାତରେ ଧରାଇବାର ଉଦାହରଣଟିଏ ଉପସ୍ଥାପନ କରିବେ ଜନ୍ମଜାତ ପରମହଂସ ଶ୍ରୀଶୁକଦେବ ମହାଭାଗବତ ପରୀକ୍ଷିତ ମହାରାଜଙ୍କୁ ବ୍ରହ୍ମଶାପରୁ ମୁକ୍ତ କରାଇ । ସାକ୍ଷୀ ରହିବେ ପୁଣି ବ୍ୟାସ-ନାରଦ-ପରାଶର ଆଦି ଛଅଷଠି ହଜାର ମୁନିଋଷି ଗଣ ମୁକ୍ତିମାତା ଗଙ୍ଗାକୂଳରେ ।

## ୨୬.ଚନ୍ଦ୍ର ବଂଶ ପ୍ରକରଣ ସାର (ମନ ନିର୍ମଳର ଉପାୟ)

### ଅଧ୍ୟାୟ ୧୪ଶ-୨୪ଶ

ବୁଦ୍ଧିର ଦେବତା ସୂର୍ଯ୍ୟ । ମନର ଦେବତା ଚନ୍ଦ୍ର । ପୂର୍ବ ପ୍ରକରଣରେ ବୁଦ୍ଧିର ଶୁଦ୍ଧିକରଣ ପରେ ଏବେ ଆମ ଦାୟିତ୍ୱ ମନର ଶୁଦ୍ଧିକରଣ । ନୃସିଂହ, ବାମନ, ଶ୍ରୀରାମ ଆଦି ଅନ୍ୟ ଅବତାର ଆଦର୍ଶ ଅବତାର । ଏସବୁ ଅବତାର ହୁଏ ମନୁଷ୍ୟର ଇନ୍ଦ୍ରିୟମାନଙ୍କୁ ବିଷୟ ଭୋଗ ସଂଗ୍ରହ କାମନାରୁ ବିମୁଖ କରାଇବା ପାଇଁ ବା ତାର ବୁଦ୍ଧି ଶୁଦ୍ଧ କରିବା ନିମିତ୍ତ । ମନ ଶୁଦ୍ଧ କରିବାକୁ ଏ ସବୁ ଔଷଧ ଯଥେଷ୍ଟ ନୁହନ୍ତି । ସେଥିପାଇଁ ପ୍ରତ୍ୟେକ ଚତୁର୍ଯୁଗରେ ଥରେ କୃଷ୍ଣଙ୍କୁ ଅବତାର ନେବାକୁ ପଡେ । ତାଙ୍କ ପ୍ରକଟ ପାଇଁ ଏହି ଚନ୍ଦ୍ରବଂଶକୁ ସେ ପସନ୍ଦ କରନ୍ତି । ଏହି ନବମ ସ୍କନ୍ଧରେ ଅସଂଖ୍ୟ ଜ୍ଞାନୀ, ବୈରାଗୀରାଜାଙ୍କ ଚରିତ ସକ୍ଷିପ୍ତ ବା ବିସ୍ତୃତ ଭାବରେ ବର୍ଣ୍ଣିତ । ସତ୍ୟଯୁଗରେ ହରିଶ୍ଚନ୍ଦ୍ର, ଶିବି ଇତ୍ୟାଦିଙ୍କ ଜନ୍ମ ପରେ ପରେ ଆସେ ତ୍ରେତାଯୁଗ । ଆରମ୍ଭରେ ଜନ୍ମ ନିଅନ୍ତି ରାଜା ପୁରୂରବା । ସେ ଅଲୌକିକ ତପଶକ୍ତିର ଅଧିକାରୀ ଥିଲେ । ସ୍ୱର୍ଗରୁ

ଉର୍ବଶୀ ଅପସରାଙ୍କୁ ଆଣି ବିଷୟ ଭୋଗରେ ମାତିଲେ । ତିନିଶହ ପାଞ୍ଚଶହ ବର୍ଷ ନୁହେଁ, ହଜାର ହଜାର ବର୍ଷ ଧରି । ପରିଶେଷରେ ସେ ଦାର୍ଶନିକ ପାଲଟିଗଲେ । କହିଲେ,'କାମକୁ ଭୋଗ ଦ୍ୱାରା ଶାନ୍ତ ବା ତୃପ୍ତ କରିବା ଅସମ୍ଭବ । କେବଳ ସାଧୁ ସଙ୍ଗ ଓ ଈଶ୍ୱର ଭକ୍ତିରେ କାମର ସଂଯମ ସମ୍ଭବ ।' ସେଇ ତ ମନ ସଂଯମର ଚାବିକାଠି ।

ପୁରୁବଂଶରେ ନହୂଷ କିଛିଦିନ ପାଇଁ ସ୍ୱର୍ଗର ଇନ୍ଦ୍ର ମଧ୍ୟ ହୋଇପାରିଲେ । ତାଙ୍କ ପୁତ୍ର ଯଯାତି ଏହି ଚନ୍ଦ୍ରବଂଶର ଜଣେ ବହୁ ଚର୍ଚ୍ଚିତ ସମ୍ରାଟ୍ । ପୁଅର ଯୌବନ ଉଧାର ନେଇ କାମ ଭୋଗ କରିଥିଲେ ସେ । ଅନ୍ୟ ପୁତ୍ରମାନେ ନିଜ ନିଜର ଯୌବନ ଦେବାକୁ ମନା କରନ୍ତେ ସେମାନଙ୍କୁ ଅଭିଶାପ ଦେବାବାଲା ପିତା ସେ । ତଥାପି ରାଜା ମହାଭାଗ୍ୟବାନ । ଅତି ଦୀର୍ଘକାଳ ଯୌବନ ସୁଖ ଭୋଗ କରି ମଧ୍ୟ ଶେଷ ଜୀବନରେ ସେ ମହା ବୈରାଗ୍ୟ ପ୍ରାପ୍ତ ହେଲେ । ସିଂହାସନ ଛାଡି ବଣରେ ପଶିଲେ । ହରିଭଜନ କରି ଦିବ୍ୟ ଆନନ୍ଦରେ ବୁଡି ଗଲେ । ଜୀବନ ଧନ୍ୟ ହେଲା ରାଜାଙ୍କର ।

ଏହି ଚନ୍ଦ୍ରବଂଶର ଅନ୍ୟ ଜଣେ ବିଖ୍ୟାତ ସମ୍ରାଟ ପୁରୁ । ସେଇ ରାଜବଂଶରେ ପୁଣି ପ୍ରକଟ ହେଲେ ରାଜା ଦୁଷ୍ୟନ୍ତ ଓ ଦୁଷ୍ୟନ୍ତଙ୍କ ପୁତ୍ର ଭରତ । ଦୁଷ୍ୟନ୍ତ ଶକୁନ୍ତଳାଙ୍କ ଚରିତ ଯେତିକି ଅଲୌକିକ ସେମାନଙ୍କ ପ୍ରେମ କାହାଣି ମଧ୍ୟ ମନୁଷ୍ୟ ଜାତିକୁ ଏକ ଚେତାବନୀ । ତାଙ୍କର ପୁତ୍ର ଭରତଙ୍କ କାହାଣୀ ସେତିକି ଅଲୌକିକ । ବାଳକ ଅବସ୍ଥାରେ ଜିଅନ୍ତା ସିଂହ ପାଟିରେ ହାତ ପୁରାଇବା ସିଂହର କାନ ଧରି ଟାଣିବା ଓ ସିଂହ ସହ କୌତୁକରେ ଖେଳିବା କ'ଣ କମ୍ ଆଶ୍ଚର୍ଯ୍ୟର କଥା ! ସେମାନେ ସମସ୍ତେ ଚନ୍ଦ୍ରବଂଶର ଗୌରବ ।

ଭଗବାନଙ୍କ ଏକ ଆଦର୍ଶ ଯୋଦ୍ଧା ଅବତାର ହୋଇଛି ଏହି ଚନ୍ଦ୍ରବଂଶ ପ୍ରକରଣରେ । ଅନ୍ୟାୟୀ ବିଷୟ ଭୋଗୀ କ୍ଷତ୍ରିୟ ରାଜାମାନଙ୍କୁ ପର୍ଶୁରାମ୍ ଅବତାରରେ ସବଂଶେ ନିପାତ କରି ସେମାନଙ୍କ ତାଜା ରକ୍ତରେ ପିତୃ ତର୍ପଣ କରିବା କାହାଣୀ ମନୁଷ୍ୟ ମନକୁ ନିଶ୍ଚୟ ଆନ୍ଦୋଳିତ କରିବା ପାଇଁ ଉଦ୍ଦିଷ୍ଟ । ବ୍ରହ୍ମପୁତ୍ର ନଦୀର ଗତିପଥକୁ ପରିବର୍ତ୍ତନ କରିବା, କେରଳର ଖାଲୁଆ ଜମିକୁ ଯୋଗ ବଳରେ ଉଠାଇ ଏକ ଉପକୂଳୀୟ ସମତଳ ପ୍ରଦେଶ ସୃଷ୍ଟି କରିବା ତାଙ୍କ ଅଲୌକିକ ଯୋଗ ଶକ୍ତିର ନିଛକ ପ୍ରଦର୍ଶନ । ଏବେ ମଧ୍ୟ ସେଇ ଚିରଞ୍ଜିବୀ ପର୍ଶୁରାମଜୀ ଓଡିଶା ପ୍ରଦେଶର ମହେନ୍ଦ୍ର ପର୍ବତରେ ତପସ୍ୟା ମଗ୍ନ ବୋଲି ଏ ଚନ୍ଦ୍ରବଂଶ ପ୍ରକରଣରେ ଉଲ୍ଲେଖ କରାଯାଇଛି ।

କୁରୁ, ପାଞ୍ଚାଳ, ମଗଧ ରାଜବଂଶୀ ରାଜାମାନଙ୍କ ସହିତ ରାଜା ଯଦୁଙ୍କ

ବର୍ଣ୍ଣନା କରି ଏହି ପ୍ରକରଣ ଧନ୍ୟ ହୋଇଯାଇଛି । ଯେଉଁ ଯଦୁବଂଶକୁ ବାଛିଛନ୍ତି ଲୀଳା ପୁରୁଷୋତ୍ତମ ଭଗବାନ ଶ୍ରୀକୃଷ୍ଣ ତାଙ୍କ ଲୀଳା ପ୍ରକଟ କରିବାକୁ । ରାଜା ଯଯାତିଙ୍କ ଅନେକ ପତ୍ନୀ ଥିଲେ । ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କ ଗର୍ଭରେ ତାଙ୍କର ଅନୁ, ଦ୍ରୁହୁ ଓ ପୁରୁ ନାମରେ ତିନି ପୁତ୍ର ହେଲେ । ରାଜା ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା ମଧ୍ଯ ଯଯାତିଙ୍କ ରାଜ ମହଲରେ ସେବା କରୁଥିଲେ । ଶର୍ମିଷ୍ଠାଙ୍କର ପୁତ୍ର ସଂଖ୍ୟା ଦୁଇ । ଯଦୁ ଓ ତୁର୍ବସୁ । ଜ୍ୟେଷ୍ଠ ପୁତ୍ର ଯଦୁଙ୍କ କୁଳ ଯାଦବ ବଂଶ ଭାବରେ ଖ୍ୟାତି ଲାଭ କଲା । କାରଣ ଏହି ଚନ୍ଦ୍ର ବଂଶର ଉପବଂଶ ଯଦୁ ବଂଶରେ ଶ୍ରୀକୃଷ୍ଣ ତାଙ୍କ ଲୀଳା ବିସ୍ତାର କଲେ ।

ଯଦୁଙ୍କ ବଂଶ ପରମ୍ପରାରେ ଥାଆନ୍ତି ଦୁଇ ମହାନ୍ ସମ୍ରାଟ ଶଶବିନ୍ଦୁ ଓ ଜ୍ୟାମଘ । ଜ୍ୟାମଘଙ୍କ ଚରିତ ବର୍ଣ୍ଣନା ଏକ ଅତୀବ କୌତୁକ ପ୍ରସଙ୍ଗ । କାରଣ ସେ ଜଣେ ପତ୍ନୀଭକ୍ତ ରାଜା ଥିଲେ । ରାଜ୍ୟ ଜୟ କରି ଗୋଟିଏ ସୁନ୍ଦରୀ କନ୍ୟା ଆଣିଥିଲେ । ତାଙ୍କ ରାଣୀ ସେ କନ୍ୟାଙ୍କ ପରିଚୟ ପଚାରିଥିଲେ । ରାଜା ପତ୍ନୀଙ୍କ ଭୟରେ ତାଙ୍କୁ ପୁତ୍ରବଧୂ କରି ଆଣିଛନ୍ତି ବୋଲି ହଠାତ୍ କହିଦେଲେ । ସେତେବେଳକୁ ରାଜା ଓ ରାଣୀ ସନ୍ତାନ ହୀନ ଥିଲେ । ମହାରାଣୀ ହସି ହସି ଗଡ଼ିଗଲେ । ଦେବତାମାନେ ଏକଥା ବିଚାର କରି ଦୟାବଶତଃ ତାଙ୍କୁ ପୁତ୍ର ସନ୍ତାନଟିଏ ପ୍ରଦାନ କଲେ । ଶେଷରେ ରାଜା ରାଣୀ ସେ କନ୍ୟାକୁ ନିଜ ପୁତ୍ର ସହିତ ବିବାହ କରାଇଥିଲେ ।

ମନୁଷ୍ୟ ଜୀବନ ମଧ୍ୟରେ ଗୃହସ୍ଥର ଜୀବନ ଅତ୍ୟନ୍ତ ଭାରାକ୍ରାନ୍ତ କଠିନ ବୋଲି ସକଳ ସନ୍ଥ, ଗ୍ରନ୍ଥ ସ୍ୱୀକାର କରନ୍ତି । ଗୃହସ୍ଥ ଜଞ୍ଜାଳରୁ ମନକୁ ହାଲୁକା କରିବାକୁ କିଛି ସରଳ, ସହଜ ଉପାୟ ଦରକାର ପଡ଼େ । ତାହା ହେଲା ହରିକଥା ଶ୍ରବଣ । ମନୁଷ୍ୟର ଦୁର୍ଜୟ ମନକୁ ଜୟ କରିବାକୁ ହରିକଥା ଶ୍ରବଣ, କୀର୍ତ୍ତନ; ହରିଲୀଳା ଅଭିନୟ, ଏହା ମହୌଷଧିର କାମ ଦିଏ । ଏହାଦ୍ୱାରା ଶ୍ରଦ୍ଧା, ରତି, ଭକ୍ତି ପ୍ରେମ ଇତ୍ୟାଦି ସ୍ୱତଃପ୍ରାପ୍ତ ହୁଏ ସାଧକକୁ । ପାଞ୍ଚ ମୁକ୍ତିକୁ ତୁଚ୍ଛ କରି ସେ କୃଷ୍ଣ ଲୀଳାରେ ଚିତ୍ତ ତନ୍ମୟ କରେ ଜନ୍ମ ପରେ ଜନ୍ମ । ଏହା ମନୁଷ୍ୟର ମନ ଶୁଦ୍ଧିକରଣର ଜ୍ୱଳନ୍ତ ପ୍ରମାଣ ।

**ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ନବମସ୍କନ୍ଧେ ଚର୍ତୁବିଂଶୋଽଧ୍ୟାୟଃ ।**

**॥ ହରିଃ ଓଁ ତତ୍ସତ୍ ॥**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

-୦-

# ଗ୍ରନ୍ଥ ସହାୟକ ସୂଚୀ

| ଗ୍ରନ୍ଥର ନାମ | ଭାଷା | ଲେଖକ କିମ୍ବା ପ୍ରକାଶକ |
|---|---|---|
| ଶ୍ରୀମଦ୍ଭାଗବତ | ହିନ୍ଦି | ଗୀତାପ୍ରେସ, ଗୋରଖପୁର |
| ଶ୍ରୀମଦ୍ଭାଗବତ | ଓଡ଼ିଆ | ଗୀତାପ୍ରେସ, ଗୋରଖପୁର |
| ଶ୍ରୀମଦ୍ଭାଗବତ | ହିନ୍ଦି | ଇସ୍କନ୍, ବି.ବି.ଟି., ମୁମ୍ବଇ |
| ଭାଗବତ ସୁଧା | ହିନ୍ଦି | ଶ୍ରୀକରପାତ୍ରି ଜୀ |
| ଭାଗବତ ରହସ୍ୟ | ହିନ୍ଦି | ଶ୍ରୀରାମ କେଶବ ଡ଼ୋଙ୍ଗରେ ଜୀ |
| ଶ୍ରୀମଦ୍ଭାଗବତ ଦର୍ଶନ | ହିନ୍ଦି | ଶ୍ରୀ ଅଖଣ୍ଡାନନ୍ଦ ସରସ୍ୱତୀ |
| ଶ୍ରୀମଦ୍ଭାଗବତ (ପଦ୍ୟାନୁବାଦ) | ଓଡ଼ିଆ | ଶ୍ରୀ ଜଗନ୍ନାଥ ଦାସ |
| ଶ୍ରୀମଦ୍ଭାଗବତ (ପଦ୍ୟାନୁବାଦ) | ଓଡ଼ିଆ | ଶ୍ରୀ ଦୀନବନ୍ଧୁ ଖାଡ଼ଙ୍ଗା |
| ସାରାର୍ଥ ଦର୍ଶିନୀ ଟୀକା | ହିନ୍ଦି | ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ |
| ଭାଗବତ ଟୀକା | ସଂସ୍କୃତ | ଶ୍ରୀଧର ସ୍ୱାମୀଜୀ |
| ଭାଗବତ କଥା | ହିନ୍ଦି | ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ |
| ଭାଗବତ ରସ ସାଗର | ଓଡ଼ିଆ | ଶ୍ରୀ ଗୋରାଚାନ୍ଦ ମିଶ୍ର |
| ପ୍ରେମ ରସ ସିଦ୍ଧାନ୍ତ | ହିନ୍ଦି | ଶ୍ରୀ କୃପାଳୁ ଜୀ ମହାରାଜ |
| ଗୀତା-ସାଧକ ସଞ୍ଜିବନୀ ଟୀକା | ହିନ୍ଦି | ଶ୍ରୀ ରାମସୁଖ ଦାସଜୀ |
| ଗୀତା-ତତ୍ତ୍ୱବିବେଚନୀ ଟୀକା | ହିନ୍ଦି | ଶ୍ରୀ ଜୟଦୟାଲ୍ ଗୋଏଙ୍କା ଜୀ |
| ଗୀତା-ରହସ୍ୟ | ହିନ୍ଦି | ଶ୍ରୀ ବାଳ ଗଙ୍ଗାଧର ତିଲକ ଜୀ |
| ଶ୍ରୀମଦ୍ଭଗବତ ଗୀତା | ଓଡ଼ିଆ | ଶ୍ରୀ ବିହାରୀ ଲାଲ ପଣ୍ଡିତ |
| ନାରଦ ଭକ୍ତ ସୂତ୍ର ପ୍ରବଚନ (କମ୍ପ୍ୟୁଟରେ) | ହିନ୍ଦି | ଶ୍ରୀ ମୁକୁନ୍ଦାନନ୍ଦ ଜୀ |
| ନାରଦ ଭକ୍ତି ସୂତ୍ର | ଓଡ଼ିଆ | ଶ୍ରୀ ଶ୍ରୀ ରବିଶଙ୍କର ଜୀ |
| କଥା ଭାଗବତ | ଓଡ଼ିଆ | ଶ୍ରୀ ନୃସିଂହ ପ୍ରସାଦ ମିଶ୍ର |
| ନବଧା ଭକ୍ତି | ଓଡ଼ିଆ | ଶ୍ରୀ ଦୋଳଗୋବିନ୍ଦ ପଟ୍ଟନାୟକ |

-୦-

## ଅଷ୍ଟାଦଶ ପୁରାଣ

### ୬ ସାତ୍ତ୍ୱିକ ପୁରାଣ

୧. ବିଷ୍ଣୁ
୨. ଶ୍ରୀମଦ୍ ଭାଗବତ
୩. ନାରଦ
୪. ଗରୁଡ଼
୫. ପଦ୍ମ
୬. ବରାହ

### ୬ ରାଜସିକ ପୁରାଣ

୧. ବ୍ରହ୍ମ
୨. ବ୍ରହ୍ମାଣ୍ଡ
୩. ବ୍ରହ୍ମବୈବର୍ତ୍ତ
୪. ମାର୍କଣ୍ଡେୟ
୫. ଭବିଷ୍ୟ
୬. ବାମନ

### ୬ ତାମସିକ ପୁରାଣ

୧. ଶିବ
୨. ଲିଙ୍ଗ
୩. ସ୍କନ୍ଦ
୪. ଅଗ୍ନି
୫. ମତ୍ସ୍ୟ
୬. କୂର୍ମ

## ଅଷ୍ଟାଦଶ ଉପପୁରାଣ

୧. ସନତ୍ କୁମାର
୨. ନୃସିଂହ
୩. ବୃହତ୍ ନାରଦୀୟ
୪. ଶିବ ରହସ୍ୟ
୫. ଦୁର୍ବାସା
୬. କପିଳ
୭. ବାମନ
୮. ଭାର୍ଗବ
୯. ବରୁଣ
୧୦. କାଳିକା
୧୧. ଶାମ୍ବ
୧୨. ନନ୍ଦୀ
୧୩. ସୂର୍ଯ୍ୟ
୧୪. ପରାଶର
୧୫. ବଶିଷ୍ଠ
୧୬. ଦେବୀ ଭାଗବତ
୧୭. ଗଣେଶ
୧୮. ହଂସ